ବିନୋଦ କାନୁନ୍‌ଗୋ



# ପାଠ ପଦେ ପଦେ ଅପାଠ୍ୟ

# ପାଠ ପଢୁ ପଢୁ ଅପାଠୁଆ

## A DROPOUT TEACHES HIMSELF

ବିନୋଦ କାନୁନ୍‌ଗୋ

# ପାଠ ପଛେ ପଛେ ଅପାଠୁଆ

ଲେଖକ :
**ବିନୋଦ କାନୁନ୍‌ଗୋ,** ଜ୍ଞାନମଣ୍ଡଳ ଅଫିସ, ବାରବାଟୀ ଷ୍ଟେଡ଼ିଅମ
କଟକ-753005

ଶ୍ରୀମତୀ ଦୀପ୍ତି ପଟ୍ଟନାୟକ, **ବସୁଧାରା ପ୍ରକାଶନୀ,** ଲକ୍ଷ୍ମୀସାଗର
ଭୁବନେଶ୍ୱର-751006ଙ୍କ ଦ୍ୱାରା ପ୍ରକାଶିତ

ପ୍ରଥମ ପ୍ରକାଶ : 10 ଏପ୍ରିଲ୍ 1987

**ଦୀପକ ପ୍ରେସ,** କଟକ-୭୫୩୦୦୨ରେ ମୁଦ୍ରିତ

## PATHA PACHHE PACHHE APATHUA

*A Dropout Teaches Himself*

By BINODE KANUNGO

Published By Smt. Dipti Pattanayak
Basudhara Prakashani, Laxmisagar,
Bhubaneswar-751006

ମୂଲ୍ୟ—ତିରିଶ ଟଙ୍କା ମାତ୍ର
Rs. 30-00

# ଏଇଟି ଗୋଟିଏ କରାଦୀ ବହି

କାହାର ବରାଦରେ ବହିଟିଏ ଲେଖିଦେବା କାମ ମୋଦ୍ୱାରା କେବେହେଲେ ହୋଇପାରି ନ ଥିଲା । ଓଡ଼ିଶାର ଦୁଇ ତିନ ଜଣ ପାଠ୍ୟ-ପୁସ୍ତକ ପ୍ରକାଶକ ମୋତେ ଶତାଧିକବାର ଅନୁରୋଧ କରିଛନ୍ତି କେତୋଟି ପାଠ୍ୟ ପୁସ୍ତକ ଲେଖିଦେବା ପାଇଁ । ସେଭଳି ଲେଖି ଓଡ଼ିଶାର କେତେ ଜଣ ଲେଖକ ଲକ୍ଷ ଲକ୍ଷ ଟଙ୍କା ରୋଜଗାର କରିଛନ୍ତି । ସେମାନଙ୍କ ବରାଦ ଅନୁସାରେ ବହି ଲେଖିଲି ନାହିଁ । ବରାବର ଅନୁଭବ କଲି ସେମିତିକା ଉଦ୍ୟମ କଲେ କଲମଟା କମେ ଲଞ୍ଜୁଆ ହୋଇଯିବ ।

ମୋର ସେହି ଦମ୍ଭ କିନ୍ତୁ ଶେଷ ଜୀବନରେ ରହିପାରିଲା ନାହିଁ । ୧୯୮୭ ଫେବୃୟାରି ମାସରେ ଦିଲ୍ଲୀଠାରେ ଭାରତ ସରକାରଙ୍କ ଶିକ୍ଷା ବିଭାଗ ନାସନାଲ୍ ବୁକ୍ ଟ୍ରଷ୍ଟ ଜରିଆରେ ଗୋଟିଏ ବୈଠକ କରାଇଥିଲେ । ଦେଶରେ ଯେଉଁ ବିପ୍ଳବାତ୍ମକ ଶିକ୍ଷାନୀତି ପ୍ରଚଳନର ସ୍ୱପ୍ନ ଦେଖାଯାଉଛି ତାକୁ ବାସ୍ତବ ରୂପ ଦେବାକୁ ହେଲେ ସ୍କୁଲ କଲେଜରେ ପଢ଼ାହେବା ପାଇଁ ନୂତନ ଧରଣର ପୁସ୍ତକସବୁ ତ ଲେଖାହେବ—ତାହା ସାଙ୍ଗକୁ ଯେଉଁ ଲକ୍ଷ ଲକ୍ଷ କୋଟି କୋଟି ପିଲା ଅଳ୍ପ ପାଠ ପଢ଼ି ରହିଯାଉଛନ୍ତି ଓ ଅଧିକ ଜ୍ଞାନ ଅର୍ଜନର ସୁଯୋଗରୁ ବଞ୍ଚିତ ହୋଇଯାଉଛନ୍ତି ସେମାନଙ୍କ ପାଇଁ ମଧ୍ୟ ଭଲ ଭଲ ବହି ଲେଖାଯିବ । ଏହି ବିଷୟରେ ଆଲୋଚନା କରି ଭାରତ ସରକାରଙ୍କୁ ପରାମର୍ଶ ଦେବା ପାଇଁ ଏହି ତିନଦିନିଆ ବୈଠକର ଆୟୋଜନ । ନିମନ୍ତ୍ରିତ ହୋଇ ସେଥିରେ ଯୋଗଦେଇଥିଲି । ସେହି ଅବସରରେ ବହୁ ବିଶିଷ୍ଟ ଲୋକଙ୍କ ସହିତ ପରିଚୟ ହେଲା ।

ସେତିକବେଳେ କେତେଜଣ ବିଶିଷ୍ଟ ଶିକ୍ଷାବିତ୍ ପଣ୍ଡିତ ଏବଂ ଉଚ୍ଚ ଶିକ୍ଷିତ ବ୍ୟକ୍ତି ହସି ହସି ମୋତେ କହିଲେ—ଆପଣ ଏକା ଏକା ଗୋଟିଏ ସେଟ୍ ଏନସାଇକ୍ଲୋପିଡିଆ ଲେଖିଦେଲେଣି, ଏହାବାଦେ ବହୁ ସଂଖ୍ୟକ ଛୋଟ ବଡ଼ ବହି ଲେଖି ସାରିଲେଣି । ମାନବ ଜ୍ଞାନର ପ୍ରତ୍ୟେକ ବିଭାଗ ଉପରେ ଆପଣ ଅତି ସରଳ ଭାଷାର ଶୈଳୀରେ ଲେଖିଯାଉଛନ୍ତି । ଆମେ ଶୁଣୁଥିଲୁ ଆପଣ ଅଳ୍ପ ପାଠ ପଢ଼ି ମଧ୍ୟ ଏମିତି କରିଯାଉଛନ୍ତି । ସେହି "ଅଳ୍ପପାଠ" କଥାଟିକୁ ଆମେ ଆଳଙ୍କାରିକ ଅର୍ଥରେ ବୁଝିଥିଲୁ ।

କିନ୍ତୁ ଏବେ ଜାଣିଲୁ ଆପଣ କେବଳ ନବମ ଶ୍ରେଣୀ ପର୍ଯ୍ୟନ୍ତ ପାଠ ପଢ଼ିଛନ୍ତି —ଦଶମ ଶ୍ରେଣୀକୁ ଗଲା ସଙ୍ଗେ ସଙ୍ଗେ ସ୍ୱାଧୀନତା ସଂଗ୍ରାମରେ ୧୯୩୦ରେ ଯୋଗଦେଇ ଜେଲ ଗଲେ । ତାହାପରେ ଆଉ କୌଣସି ଶିକ୍ଷାନୁଷ୍ଠାନକୁ ଫେରିନାହାନ୍ତି । ଆମ୍ଭଙ୍କ ଭାଷାରେ ଆପଣ ହେଉଛନ୍ତି ଜଣେ ଡ୍ରପ୍‌ଆଉଟ୍ ବା ଅଳ୍ପ ପାଠ ପଢ଼ି ପୋଥିରେ ଡୋର ବାନ୍ଧିଦେଲେ । ଜଣେ ଡ୍ରପ୍‌ଆଉଟ୍ ଯିଏ ଗୋଟିଏ ସେଟ୍ ଏନ୍‌ସାଇକ୍ଲୋପିଡିଆ ଲେଖିଦେଲା । ସେଭଳି ଲେଖିବା ପାଇଁ ଯେଉଁ ଯୋଗ୍ୟତା ଲୋଡ଼ା, ଯେତିକି ପାଠ ଅନ୍ତତଃ କମ୍‌ରେ ଲୋଡ଼ା, ସେତିକି ଆପଣ କେମିତି ହାସଲ କଲେ ତାହା ଯଦି ଅନ୍ୟମାନଙ୍କୁ ନିଜେ ଜଣାଇ ଦେଇ ନପାରିବେ ଏ ଦେଶର ଲକ୍ଷ ଲକ୍ଷ ଅଳ୍ପ ପଢ଼ା ଲୋକଙ୍କ ପ୍ରତି ନିଷ୍ଠୁର ଅନ୍ୟାୟ କରିବେ । ଆପଣଙ୍କଠାରୁ ଶୁଣିଲେ ସେମାନଙ୍କ ମନରେ ଆଶାର ସଞ୍ଚାର ହେବ । ତାହା ସଙ୍ଗେ ସଙ୍ଗେ ଆମେ ସବୁ ମଧ୍ୟ ଜାଣିବୁ ଏହା କିପରି ସମ୍ଭବ ହେଲା । ଦୟାକରି ସେହିସବୁର ଉଲ୍ଲେଖକରି ଖଣ୍ଡିଏ ବହି ଲେଖିଦିଅନ୍ତୁ ଓ ସମ୍ଭବ ହେବତ ଇଂରାଜୀରେ ଲେଖନ୍ତୁ ।”

ସେମାନଙ୍କ କଥା ଶୁଣି ଟିକିଏ ହସିଦେଲି ସିନା—ତାହା ଉପରେ ସେମିତି କିଛି ଗୁରୁତ୍ୱ ଦେଲି ନାହିଁ । କିନ୍ତୁ ସେମାନେ ନଛୋଡ଼ବା ଲୋକ । ବରାବର ଚିଠି ଲେଖିଲେ ।

ଶେଷରେ ଠିକ୍ କଲି ଏହି ବରାଦୀ ବହିଟି ଲେଖିଦେବି । ଲେଖୁ ଲେଖୁ ଏତେ ବଡ଼ ହୋଇଗଲା । ଏଇଟିକୁ ଉଚ୍ଚଶିକ୍ଷିତ ଲୋକେ ପଢ଼ିବେ ବୋଲି ମୁଁ ଆଶା ରଖୁନାହିଁ । ମୋଭଳି ଯେଉଁମାନେ ଅତି ଅଳ୍ପ ବୟସରୁ ସ୍କୁଲ ଛାଡ଼ିଦେଇଛନ୍ତି—ସ୍ୱଇଚ୍ଛାରେ ହେଉ ବା ପରିସ୍ଥିତିର ବାଧ୍ୟ ବାଧକତାରେ ହେଉ—ସେମାନେ ଏଇଟିକୁ ପଢ଼ିଲେ ଅନ୍ତତଃ ଏତିକି ଜାଣିବେ ଯେ ଟିକିଏ ଉଦ୍ୟମ କଲେ ସେମାନେ କିଛି ଦୂରକୁ ଶିକ୍ଷାଲାଭ କରିବେ ଅର୍ଥାତ ଅପାଠୁଆ ହୋଇ ରହିବେ ନାହିଁ ।

ସଂସାରରେ ପାଠ ଆଗେଇ ଚାଲିଛି । ଅପାଠୁଆ ଜଣେ ତା’ ପଛେ ପଛେ ଚାଲିଲେ ମଧ୍ୟ ଉପକୃତ ହେବ । ମୁଁ ସେମିତି କରୁଛି । ଦୀର୍ଘ ଅଠାବନ ବର୍ଷ ହେଲା ପାଠ ସହିତ ତାଳ ପକାଇ ଚାଲିଛି—ଥକିଯାଉ ନାହିଁ । ଏହି ବହିଟିକୁ ପଢ଼ି ଅଳ୍ପ କେତେ ଜଣ ମଧ୍ୟ ଯଦି ଉପକୃତ ହେବେ ମୋ ଶ୍ରମ ସାର୍ଥକ ହେବ ।

**ବିନୋଦ କାନୁନ୍‌ଗୋ**
**10-4-87**

# ନିଜେହିଁ ନିଜକୁ ପଢ଼ାଉଛି

ସତର ବର୍ଷ ବୟସର ଗୋଟିଏ ପିଲା । କେମିତି ପେଟ ପୋଷିବ ବୋଲି ବିଚାରୁଥାଏ । ଜଣେ କହିଲେ—'ବେପାର କଲେ ଚଳିଯିବୁ' । ସେ ଟିକିଏ ହସିଲା । ସେଥିପାଇଁ ତ କିଛି ମୂଳଧନ ଲୋଡ଼ା । ତାକୁ ସେ କହିଲେ—'ପାଞ୍ଚ ଦଶଟା ଟଙ୍କା ଯୋଗାଡ଼ କରିପାରିବୁ ନାହିଁ ? ପାନ ଦୋକାନ କରି ବସିଗଲେ କିଛି ଦିନ ପରେ ପେଟ ପୋଷିବୁ ।' ସେ କିଛି ନକହି ଚୁପ୍ ରହିଲା । ପାଞ୍ଚ ଦଶ ଟଙ୍କା ତାକୁ କିଏ ବା ଦେବ ? ୧୯୩୦ ମସିହା ଆରମ୍ଭ ବେଳେ ପାଞ୍ଚ ଦଶ ଟଙ୍କା କହିଲେ କେତେଗୁଡ଼ାଏ କଅଣ ବୁଝାଉଥିଲା । ମାସେ ଦି'ମାସ ଚାଲିଗଲା । ତାଆର ଜଣେ ମାମୁଁ ପୁଅ ଭାଇ ଦେଖାଦେଲା । କଥା କଥା ତା' ପାଟିରୁ ବାହାରି ପଡ଼ିଲା—'ଦି'ଟା ଟଙ୍କା ମିଳନ୍ତା କି ପାନଦୋକାନଟିଏ କରି ବସିଯାଆନ୍ତି' । ଭାଇର ମନ ତରଳିଗଲା । ସେ କହିଦେଲା—'କାଲି ତତେ ଦି'ଟଙ୍କା ଦେବି । ତୋ ଇଚ୍ଛା ହେଲେ ଫେରାଇବୁ, ନହେଲେ ନାହିଁ' । ପିଲାଟି ନିଜ କାନକୁ ବିଶ୍ୱାସ କରି ପାରିଲା ନାହିଁ । ସତକୁ ସତ ସେ ଆଣି ଦୋଟି ଟଙ୍କା ଦେଇଗଲା ।

ଟଙ୍କାଟିକର ସଉଦା ଆଣି ଗୋଟିଏ ଛୋଟିଆ କାଠ ବାକ୍ସରେ ରଖିଲା । ତା' ମା ପାଖରେ ସେଇ ଚାରିପଣିଆ ଭଙ୍ଗା ବାକ୍ସଟି ଥିଲା । ଗାଁ ପାଖରେ ଛୋଟ ବଜାରଟିଏ । ରାସ୍ତାକଡ଼ରେ ତଳେ ବସିଯାଇ ଭଙ୍ଗା ପାନ ବିକିଲା । ପଇସାକୁ ଚାରିଖଣ୍ଡ ପାନ । ତାଆର ଗୋଟାଏ ବଡ଼ ସମ୍ବଳ ଥିଲା ହସ ହସ ମୁହଁ । ଯିଏ ପାନ କିଣିବାକୁ ଆସନ୍ତି ସିଏ ତା' ହସ ହସ ମୁହଁ ଦେଖି ଟିକିଏ ଖୁସି ହୋଇଯାଆନ୍ତି । ଅତି ଯତ୍ନରେ ପାନ ଭାଙ୍ଗେ । ବରାବର ପଚାରୁଥିବ କେତେ ଚୂନ ଦେବ—ଗୁଜୁରାତି, ଲବଙ୍ଗ, ଅଳେଇଚଦାନା ଗୋଟାଏ ଗୋଟାଏ ପକାଇଦିଏ । ଯିଏ ସାଦାପାନ ଖାଆନ୍ତି ତାଙ୍କ ଖିଲରେ ଲବଙ୍ଗଟିଏ ମାରିଦିଏ ।

କ୍ରମେ ତାଆର ସୁନାମ ହେଲା । କେହି କେହି ଘର ପାନ ନ ଖାଇ ତା'ଠାରୁ କଣି ଖାଆନ୍ତି । କିଛିଦିନ ପରେ ଏମିତି ହୋଇଗଲା ଯେ ସକାଳୁ ସଞ୍ଜଯାଏ ତା' ହାତ ବନ୍ଦ ନଥାଏ । ଦିନକୁ ତିନିଟଙ୍କା ପର୍ଯ୍ୟନ୍ତ ଲାଭ ହୋଇଗଲା ।

ଖଗବର୍ଷୀ ଅଛି । ଖଣ୍ଡିଏ ଛୋଟ କୁଡ଼ିଆ କରିଦେଲା । ବେଶୀ ଜିନିଷ ରଖିବାପାଇଁ ସ୍ଥାନ ମିଳିଗଲା । ପାନ ବାଦେ ଅନ୍ୟ ଜିନିଷ ସବୁ ରଖିଲା । ଦେଖିଲା ଦିନକୁ ଆଠ ଦଶ ଟଙ୍କା ଲାଭ ହୋଇଯାଉଛି । ଗୋଟିଏ ଛୋଟ ଘର ଭଡ଼ାରେ ନେଲା । ଭଡ଼ା ମାସକୁ ମାତ୍ର ତିନିଟଙ୍କା । ଆସ୍ତେ ଆସ୍ତେ ନାନା ପ୍ରକାରର ମନୋହରୀ ଜିନିଷ ଆଣି ରଖିଲା । ଛୁଞ୍ଚି ସୂତାରୁ ଆରମ୍ଭ କରି ଗିଲଟି ବାସନ ପର୍ଯ୍ୟନ୍ତ ବହୁତ କିଛି ରଖିବାକୁ ଆରମ୍ଭ କଲାଣି ।

ଦିନେ ଜଣେ ଆସି କହିଲେ—କଟକରେ ବଜାର ଉପରେ ଛକ ଯାଗାରେ ଘରଟିଏ ମିଳୁଛି । ମାସକୁ ଭଡ଼ା ମାତ୍ର ପଚିଶ ଟଙ୍କା— ସେଇଠିକି ଦୋକାନ ଉଠାଇ ନେଲେ ଖୁବ ଭଲ ହେବ ।

ଏଣେ କଟକ ସହରରେ ଦୋକାନଟି ବେଶ୍ ଜମିଲା । ପ୍ରାୟ ପଞ୍ଚହଜାର ଟଙ୍କାର ମାଲ ମହଜୁଦ୍ ହୋଇଗଲାଣି । ବେଶ୍ ଲାଭ ହେଲା । ବେଶୀ ବିକି ହେଉ—ଅଳ୍ପ ଲାଭ ହେଉ—ଏହିଥିଲା ତାହାର ମତ । ସେହି ମତ ଚମତ୍କାର କାମ ଦେଖାଇଲା । ନାନାପ୍ରକାରର ଚିଜ ରଖିଲା ଦୋକାନରେ । ଅନ୍ୟ ଦୋକାନରେ ଯେଉଁ ଦରକାରୀ ଛୋଟ ଛୋଟ ଜିନିଷ ମିଳେନାହିଁ ତା' ଦୋକାନରେ ମିଳେ । କେହି କେହି ସନ୍ଦେହ କଲେ ଏ ଲୋକ କେଉଁଠୁ ଚୋରିଧନ ଆଣି ଦୋକାନରେ ପୂରାଉଛି କି !

କ୍ରମେ ଲୋକେ ସବୁ ସତକଥା ଜାଣିଗଲେ । ତା' ବିରୁଦ୍ଧରେ କିଛି କହିଲେ ନାହିଁ । ନିଜ ଶିଙ୍ଗରେ ମାଟି ଖୋଳି ଖୋଳି ଜଣେ କେମିତି ହୋଇଛି ସେ ବିଷୟରେ ଆଲୋଚନା କଲେ । ବହୁ ଲୋକଙ୍କ ମୁହଁରେ ତାହାର ପ୍ରଶଂସା । ଯେଉଁମାନେ ତା'ର ନିନ୍ଦା କରୁଥିଲେ ସେମାନଙ୍କୁ ମଧ୍ୟ ସେ ସମ୍ମାନ ଦେଖାଏ—ଟିକିଏ ହେଲେ ବିରକ୍ତିଭାବ ପ୍ରକାଶ କରେ ନାହିଁ ।

ଏମିତି ଗୋଟାଏ ସମୟ ଆସିଲା ପ୍ରାୟ ସମସ୍ତେ ତା' ବିଷୟରେ ଏକମତ ହୋଇଗଲେ । ଅନ୍ୟମାନଙ୍କ କଥା ଛଳରେ କହିଲେ—ଚେଷ୍ଟାର ଅସାଧ୍ୟ କିଛି ନାହିଁ । ସେ ତ ଆମ ସମସ୍ତଙ୍କୁ ବାଟ ଦେଖାଇଛି ଓ ଦେଖାଉଛି ମଧ୍ୟ ।

ଏଇଟି ସଂପୂର୍ଣ୍ଣ ଭାବରେ ଗୋଟିଏ ମନଗଢା କାହାଣୀ । ଏଭଳି କାମ ଯେ ନହୋଇଛି ତା' ନୁହେଁ—କିନ୍ତୁ ମୁଁ ଯାହା ଲେଖିଲି ସେତକ ମୋ ମନରୁହିଁ ଲେଖିଦେଲି । ସେଭଳି କରିବାକୁ ବାଧ୍ୟ ହେଲି । କାହିଁକି ବାଧ୍ୟ ହେଲି ତାହାର କାରଣ କହୁଛି । 1986 ଶେଷ ବେଳକୁ ସମସ୍ତେ ଜାଣିଗଲେଣି ମୁଁ କେତେଗୁଡ଼ିଏ ବହି ଲେଖି ପ୍ରକାଶ କରି ଦେଇଛି । ଚାଳିଶ ଖଣ୍ଡ ଜ୍ଞାନମଣ୍ଡଳ, ଶହେ ଖଣ୍ଡ ପିଲାଙ୍କପାଇଁ ବହି, ଓଡ଼ିଶାର ସ୍ୱାଧୀନତା ସଂଗ୍ରାମର ଦୁଇଖଣ୍ଡ ଇତିହାସ, ଋଣ ପରିଶୋଧ, ଗୋପବନ୍ଧୁ, ଜାତୀୟ କବି ବୀରକିଶୋରଙ୍କ ଜୀବନୀ, ଜଣେ ସ୍ୱାଧୀନତା ସଂଗ୍ରାମୀର ସ୍ମୃତି ସାଙ୍ଗକୁ ଆହୁରି ପ୍ରାୟ କୋଡ଼ିଏ ତିରିଶ ଖଣ୍ଡ ଛପାହୋଇଛି ବା ପାଣ୍ଡୁଲିପି ଆକାରରେ ଅଛି । ପିଲାଙ୍କ ବହିଗୁଡ଼ିକର ହିନ୍ଦୀ ଅନୁବାଦ ହୋଇ ସାଇତା ଯାଇଛି । କେତୋଟି ପ୍ରକାଶ ପାଇଲାଣି । ବହୁସଂଖ୍ୟକ ଲୋକ ସେଗୁଡ଼ିକୁ ପଢ଼ିଛନ୍ତି । ରେଡ଼ିଓ, ଟେଲିଭିଜନ, ଭାରତ ସରକାରଙ୍କ ଫିଲ୍‌ମ୍‌ଡିଭିଜନ, ଓଡ଼ିଶା ବାହାରର ଓ ଭିତରର କେତେକ ସମ୍ବାଦପତ୍ର ଓ ପତ୍ରପତ୍ରିକା ଗଲା ଦୁଇବର୍ଷ ଭିତରେ ଯେତିକି ପବ୍ଲିସିଟୀ ଦେଲେଣି ତାହାର ପ୍ରଭାବ ଲୋକଙ୍କ ଉପରେ ପଡ଼ିଛି । ଶୀଘ୍ର ଶୀଘ୍ର ବହିଗୁଡ଼ିକ କାହିଁକି ପ୍ରକାଶ ପାଉ ନାହିଁ ବୋଲି ଲୋକେ ବ୍ୟସ୍ତ । ଅଭିମାନଭରା ସ୍ୱରରେ ଅଭିଯୋଗ କରୁଛନ୍ତି । ପଦ୍ମଶ୍ରୀ ଉପାଧି ପାଇବା ପରେ ଭାରତର ଶିକ୍ଷିତ ସମାଜ ମୋ ବହିଲେଖା ବିଷୟରେ କିଛି କିଛି ଆଗ୍ରହ ପ୍ରକାଶ କଲେଣି । ଓଡ଼ିଆରେ ମୁଁ ଯାହା ଲେଖୁଛି ତାହା କିଭଳି ହେଉଛି ତାହା ଯେଉଁମାନେ ଜାଣିନାହାନ୍ତି ସେମାନେ ମୋର ଆଉ ଗୋଟିଏ କାମ ବା ଦିଗ ବିଷୟରେ ଆଲୋଚନା କରୁଛନ୍ତି । ଦୀର୍ଘ ଚାଳିଶ ବର୍ଷ ଧରି ବହୁସଂଖ୍ୟକ ଖବରକାଗଜ, ପତ୍ରପତ୍ରିକା, ଅନ୍ୟାନ୍ୟ ସୂତ୍ରରୁ ଯେଉଁସବୁ ତଥ୍ୟ ଉପାଦାନ ସଂଗୃହୀତ ହୋଇଛି ସେଗୁଡ଼ିକୁ ଯଥାସମ୍ଭବ ବିଜ୍ଞାନ ସମ୍ମତ ପ୍ରଣାଳୀରେ ସାଇତି ରଖାଯାଇଥିବାରୁ ବହୁ ଲୋକ ସେସବୁର ସାହାଯ୍ୟ ନେଉଛନ୍ତି । ସମସ୍ତେ କହିବାକୁ ଆରମ୍ଭ

କଲେଣି "କାନୁନ୍‌ଗୋ ନିଶ୍ଚୟ ଗୋଟିଏ ତଥ୍ୟଭଣ୍ଡାର ଗଢ଼ିଦେଇ ଯାଉଛନ୍ତି ।"

ଯେଉଁମାନେ ଏହିସବୁ ବିଷୟରେ ଆଗ୍ରହୀ ସେମାନେ ଗୋଟିଏ ପ୍ରଶ୍ନ ବରାବର ପଚାରୁଛନ୍ତି ଓ ମୁଁ ଯେତେ ସ୍ପଷ୍ଟଭାବରେ ଉତ୍ତର ଦେଲେ ମଧ୍ୟ ସେମାନଙ୍କ ମନରେ କାହିଁକି କେଜାଣି କିଛିଟା ସନ୍ଦେହ ରହିଯାଉଛି । ସେମାନେ କହୁଛନ୍ତି ମାତ୍ର ନବମ ଶ୍ରେଣୀର ପାଠକୁ ମୂଳଧନ କରି ଜଣେ କେମିତି ଗୋଟାଏ ସେଟ୍ ଏନ୍‌ସାଇକ୍ଲୋପିଡିଆ ଲେଖି ଦେଲଣି । ଯେତେ ବେଳେ ଭଲ ଭାବରେ ଜାଣୁଛନ୍ତି ଯେ କଥାଟା ଶହକେ ଶହେ ସତ ସେତେବେଳେ ମୋତେ କହୁଛନ୍ତି—"ତୁମେ ହେଲ ଜଣେ ସ୍ୱୟଂଶିକ୍ଷାପ୍ରାପ୍ତ ଲୋକ ବା Self Taught man. ଆଉ କେହି କେହି କହୁଛନ୍ତି 'A Self Taught man teaching others :—ଜଣେ ନିଜେ ନିଜକୁ ଶିକ୍ଷିତ କଲାପରେ ଅନ୍ୟମାନଙ୍କୁ ଶିକ୍ଷା ଦେଉଛି । ବିନା ଦ୍ୱିଧାରେ କେହି କେହି କହୁଛନ୍ତି—"କାନୁନ୍‌ଗୋ ହେଉଛନ୍ତି ଲୋକ ଶିକ୍ଷା ବା Adult Educationର ଜଣେ ଜୀବନ୍ତ ପ୍ରତୀକ ।" ତାହା ସାଙ୍ଗକୁ ୧୯୮୭ର ମାର୍ଚ୍ଚ-ଏପ୍ରିଲରୁ ଯେତେବେଳେ କହିଲଣି—"ପ୍ରତ୍ୟେକ ପିଲାକୁ ପ୍ରତ୍ୟେକ ଘରେ ଶିକ୍ଷିତ କରିବାକୁ ପଡ଼ିବ" ଗୋଟାଏ ଜାତି ନିଜକୁ ଶିକ୍ଷିତ କରିବ—ଏବଂ ତାହା ପୁଣି ହେବ କୌଣସି ସରକାର ବା ଅନୁଷ୍ଠାନର ବିନା ସାହାଯ୍ୟରେ—ସେତେବେଳେ ଆଲୋଚନାଟା ଗୋଟାଏ ନୂଆ ମୋଡ଼ ନେଉଛି । ଜଣେ ମଣିଷରେ ମାସରେ ଯଦି ମାତ୍ର ଦଶଟି ପଇସା ଖର୍ଚ୍ଚ କରିବାକୁ ପ୍ରସ୍ତୁତ ହେବ ତା' ଘରେ ଆସନ୍ତା ତିନି ବର୍ଷରେ ପାଞ୍ଚଶହ ବହି ନେଇ ପହଞ୍ଚାଇ ଦେଇ ହେବ ଓ ସେଗୁଡ଼ିକ ପଢ଼ିବାର ପୂର୍ଣ୍ଣ ସୁଯୋଗ ପାଇବ ସେତେବେଳେ ଅନ୍ୟମାନେ ଉତ୍ସାହିତ ହେଲେଣି ।

ଭାବିଲି ମୁଁ ବା କେତେ "ମୂଳଧନ" ନେଇ ନିଜକୁ ଶିକ୍ଷା ଦେବା କାର୍ଯ୍ୟ ଆରମ୍ଭ କଲି ? ନବମ ଶ୍ରେଣୀରୁ ୧୯୩୦ ଜାନୁୟାରୀରେ ଦଶମ ଶ୍ରେଣୀକୁ ଗଲି । ସେହି ମାସରେ ସ୍ୱାଧୀନତାର ଶପଥ ପଢ଼ାଗଲା ୨୬ ତାରିଖରେ । ପାଠ ପାଇଁ ଅଳ୍ପ ସମୟ—ଅନ୍ୟ ଆଲୋଚନା ପାଇଁ ଅଧିକ ସମୟ; ସଭାସମିତିରେ ଯୋଗ ଦେବା—କ୍ଲାସରେ ସେହି ବିଷୟରେ ଆଲୋଚନାରେ ମନ ଦେବାଟା ଥାଏ ସବୁଦିନପରିକି ରୁଟିନ୍ । ପାଠ୍ୟ

ପୁସ୍ତକ ଗୁଡ଼ିକର ଗୁରୁତ୍ୱ ମୋ ପାଇଁ କମି ଆସୁଥାଏ । ଯେତେବେଳେ ଏପ୍ରିଲ ଦଶ ତାରିଖରେ ଲବଣ ସତ୍ୟାଗ୍ରହରେ ଯୋଗ ଦେଲି ସେତେବେଳେ ମୋର ବୌଦ୍ଧିକ ବା ଶିକ୍ଷାଗତ ମୂଳଧନ ହେଉଛି—ଓଡ଼ିଆ ଟିକିଏ ଭଲ ଭାବରେ ଜାଣିଥାଏ, ଇଂରାଜୀ ଭାଷାଉପରେ ଦଖଲ ହେବାର ପ୍ରଥମ ସୋପାନରେହିଁ ଥାଏ, ମୋର ସହପାଠୀ ମାନଙ୍କ ତୁଳନାରେ ସାଧାରଣ ଜ୍ଞାନ ଟିକିଏ ବେଶୀ ଥାଏ । ପ୍ରତିଦିନ ଯେ ଗୋଟାଏ ଖବର କାଗଜ ଛପା ହୁଏ ଏକଥା ମୋ ସହିତ ପଢ଼ୁଥିବା ଅଶୀଜଣ ପିଲାଙ୍କ ଭିତରୁ ଦଶଜଣ ହୁଏତ ଜାଣିଥିଲେ । ଓଡ଼ିଆ ଭାଷାରେ କୌଣସି ଦୈନିକ କାଗଜ ପ୍ରକାଶ ପାଉ ନଥାଏ । ବ୍ରହ୍ମପୁର ସହରରୁ 'ଆଶା' ବୋଲି ଯେଉଁଟି ପ୍ରକାଶ ପାଉଥିଲା ତାକୁ ଆମେ କେହି ସେତେବେଳେ ଦେଖି ନ ଥିଲୁ । ମୁଁ କଲେଜ ହତାରେ ଥିବାରୁ ପରିଜା ସାହେବଙ୍କ ଘରେ ଷ୍ଟେଟସ୍‌ମ୍ୟାନ କାଗଜଟିକୁ ଦେଖେ—ପଢ଼େ ବୋଲି କହିବା ଠିକ ହେବ ନାହିଁ । ରେଭେନସା କଲେଜର କନିକା ଲାଇବ୍ରେରୀ ଭିତରେ ବୁଲିବାର ସୁଯୋଗ ଥିବାରୁ କେତେ ସଂଖ୍ୟକ ବହି ଛପାଯାଇଛି ଓ ସେଗୁଡ଼ିକୁ ପୁଣି ଲୋକେ ପଢ଼ୁଛନ୍ତି ଭାବି ବିସ୍ମୟ ପ୍ରକାଶ କରେ । ଏତିକି ପାଠ ନେଇ ଭିନ୍ନ ଜୀବନ ଆରମ୍ଭ କଲି । ସେହି ମୂଳ ଧନକୁ ବଢ଼ାଇ ବଢ଼ାଇ ୧୯୮୭ର ଶେଷ ଭାଗରେ କେଉଁଠି ପହଞ୍ଚାଇଛି ତାହାର ସଂକ୍ଷିପ୍ତ ବର୍ଣ୍ଣନା ଏହି ପୁସ୍ତକରେ ରହିଛି ।

ଏଇଟିକୁ କେଉଁମାନେ ପଢ଼ନ୍ତୁ ବୋଲି ମୋର ଇଚ୍ଛା ସେ ବିଷୟରେ ସ୍ପଷ୍ଟ ଭାବରେ ଦାଖଦ ଲେଖି ଦିଏ । ତା' ନକଲେ ଜଣେ ହୁଏତ ଟିକିଏ ପଢ଼ି ପଢ଼ି, କହିଦେବେ—'ଏଥିରେ କଅଣ ଅଛି ଯେ ମୁଁ ପଢ଼ିବି ?' କେଉଁମାନେ ନ ପଢ଼ିଲେ ଚଳିବ ଓ ମୋର ଆଦୌ ଦୁଃଖ ହେବ ନାହିଁ ସେମାନଙ୍କ କଥା ଆଗେ କହିଦିଏ । ଯେଉଁମାନେ ବିଶ୍ୱ ବିଦ୍ୟାଳୟରୁ ଡ଼ିଗ୍ରୀ ହାସଲ କରିଛନ୍ତି, ସେମାନେ ଜ୍ଞାନର ଯେଉଁ ବିଭାଗରେ ଦକ୍ଷତା ହାସଲ କରି ଥାଆନ୍ତୁନା କାହିଁକି ଇଚ୍ଛାକଲେ ଅଧିକ ଜ୍ଞାନ ଅର୍ଜନ କରିବା ପାଇଁ ସେମାନଙ୍କ ପାଖରେ ଯଥେଷ୍ଟ ବୌଦ୍ଧିକ ମୂଳଧନ ରହିଗଲା । ତାକୁ ସେମାନେ ବଢ଼ାଇ ପାରନ୍ତି ବା ସେତିକରେ ସନ୍ତୁଷ୍ଟ ହୋଇ ଜୀବନଟା କଟାଇ ଦେଇ ପାରନ୍ତି । ହଜାର ହଜାର ଲୋକ ସେହିଭଳି କରୁଛନ୍ତି । ଯେଉଁମାନେ ସାହିତ୍ୟ କ୍ଷେତ୍ରରେ ବା ଅନ୍ୟ କ୍ଷେତ୍ରରେ ବୌଦ୍ଧିକ ଦକ୍ଷତା ଦେଖାଇ ସମସ୍ତଙ୍କ ଦୃଷ୍ଟି ଆକର୍ଷଣ କରିପାରିଛନ୍ତି ସେମାନେ ମଧ୍ୟ ପାଠର ଉଚ୍ଚ ବା

ଷଷ୍ଠତମ ସୋପାନକୁ ଯାଇ ସେ ଦିଗରେ କାର୍ଯ୍ୟ ଆରମ୍ଭ କରିଛନ୍ତି । ବିଶ୍ୱ ବିଦ୍ୟାଳୟ ବା କଲେଜର ଜଣେ ଅଧ୍ୟାପକ କାହିଁକି ବା ଏହି ବହିଟିକୁ ପଢ଼ିବେ ? ଜ୍ଞାନର ଗୋଟିଏ ଗୋଟିଏ ବିଭାଗରେ ସଫଳତା ହାସଲ କରି ଯେଉଁମାନେ ସନ୍ତୁଷ୍ଟ ରହୁଛନ୍ତି ସେମାନେ ମଧ୍ୟ ଏ ବହିର ପାଠକ ନୁହନ୍ତି ।

ବାକି ଯେଉଁମାନେ ରହିଗଲେ ସେମାନେ ଏହି ବହିଟି ପଢ଼ନ୍ତୁ ବୋଲି ମୋର ଇଚ୍ଛା । ସେମାନଙ୍କ ସଂଖ୍ୟା ଲକ୍ଷଲକ୍ଷ । ମାଟ୍ରିକ ପଢ଼ୁଛି ପିଲାଟିଏ—ନବମ ବା ଦଶମରୁ ଛାଡ଼ିଦେଲା । ମାଟ୍ରିକ୍ ଫେଲ ହୋଇ ଦି’ଥର ପୁଣି ଉଦ୍ୟମ କଲା—ସଫଳତା ମିଳିଲା ନାହିଁ । ମାଇନର ସ୍କୁଲରେ ପଢ଼ୁ ପଢ଼ୁ କେଉଁଠିଯାଇ ଚାକିରି କଲା ବା ଦୋକାନ କଲା । ଝିଅଟି କେବଳ ସପ୍ତମ ଅଷ୍ଟମରେ ପଢ଼ି ରହିଗଲା । ବିବାହ ହେଲା ପାଞ୍ଚସାତ ବର୍ଷ ପରେ । ତା’ ସାଙ୍ଗ ସେତେବେଳକୁ ବିଏ ପାଶ୍ କଲାଣି—ତାକୁ ଦେଖି ଦେଲେ ଏହାର ମୁହଁ ଶୁଖିଯାଉଛି । ଗୋଟିଏ ଶବ୍ଦରେ କହିଲେ ଏମାନେ ସମସ୍ତେ “ଡ୍ରପ୍‌ଆଉଟ୍”—ବା ଅଧାରୁ ପାଠଛାଡ଼ି ଦେଇଛନ୍ତି । ସେମାନେ ଯେ ଦିନେ ଶିକ୍ଷିତ ହୋଇ ପାରିବେ ଏ ଆଶା ଆଉ ନାହିଁ । ସରକାର ଯୋଜନା କରିଛନ୍ତି ଆଡଲ୍ଟ ଏଡ଼ୁକେଶନ ବା ବୟସ୍କମାନଙ୍କୁ ଶିକ୍ଷା ଦେବା ପାଇଁ । ସେ ଯୋଜନାର ଅର୍ଥକୁ ସଙ୍କୁଚିତ କରି କରି ଏମିତି କରି ଦିଆ ଗଲାଣି ଯେ ତାହା ଆସି କେବଳ ନିରକ୍ଷରତା ଦୂରୀକରଣରେ ପହଞ୍ଚି ଗଲାଣି । ସେତିକି ହୋଇଗଲେ ଆଡ଼ଲ୍ଟ୍ ଏଡ଼ୁକେଶନ ସଫଳ ହେଲା ବୋଲି କୁହାଗଲା । ଯେଉଁମାନେ ଅଧିକପାଠ ପଢ଼ିଲେଣି ସେମାନଙ୍କ ଅଧିକ ଶିକ୍ଷା ପାଇଁ ସରକାରଙ୍କର କିଛି ଦାୟିତ୍ୱ ନାହିଁ । ମୂଳରୁ ଧରିନିଆ ଯାଇଥିଲା ଯେ ଓଡ଼ିଆରେ ଏମ : ଏ : ପାଶ୍ କରିଥିବା ଲୋକଙ୍କ ପାଇଁ ଯଦି ପଦାର୍ଥବିଦ୍ୟା ବା ଡାକ୍ତରି ବିଦ୍ୟାର ମୂଳ କଥା ଜାଣିବାର ବ୍ୟବସ୍ଥା କରିଯିବ ତାକୁହିଁ କୁହାଯିବ ପ୍ରକୃତ ଅର୍ଥରେ “ବୟସ୍କ ଶିକ୍ଷା” । ସେହିମାନେ କିଭଳି ଶିକ୍ଷା ପାଇବେ ସେ ବିଷୟରେ ମୁଁ ଗଲା ଛପନ ସତାବନ ବର୍ଷ ହେଲା ଆଗ୍ରହୀ । ଆଜିମଧ୍ୟ ପଚସ୍ତରି ବର୍ଷ ବୟସରେ ସ୍ୱପ୍ନ ଦେଖୁଛି ଯେ ଦିନ ଆସିବ ଯେତେବେଳେ କି ପ୍ରତ୍ୟେକ ବୟସ୍କ ଲୋକ, ପ୍ରତ୍ୟେକ ପଢ଼ାଛାଡ଼ି ଦେଇଥିବା ପିଲା ଜ୍ଞାନ ଅର୍ଜନ କରିବେ । ଦୁନିଆର ବହୁତ କଥା ଜାଣିବେ ।

ସେଭଳି ଜାଣିବାର ସୁଯୋଗ ସେମାନେ ପାଇବେ । ଯେଉଁମାନେ କହୁଛନ୍ତି ଏଇଟା ଦିବା ସ୍ୱପ୍ନ, ବ୍ୟାପକ ଭାବରେ ଏହାକୁ ସଫଳ କରାଯାଇ ପାରିବ ନାହିଁ ସେମାନଙ୍କ ସହିତ ମୁଁ ଏକମତ ହୋଇପାରୁ ନାହିଁ ।

ଏଭଳି ନହେବାର କାରଣ ରହିଛି । କେବଳ ତର୍କ ଛଳରେ ଅଭିଜ୍ଞତାରୁ ଗୋଟିଏ କଥା କହୁଛି । ମୁଁ ନିଜେ ଜଣେ ଡ୍ରପ୍ ଆଉଟ୍ ବା ଦଶମ ଶ୍ରେଣୀ ଆରମ୍ଭରୁ ପାଠ ଛାଡ଼ିଥିବା ଲୋକ । ଯେଉଁ ଦିନ ସ୍କୁଲ ଛାଡ଼ି ଗାନ୍ଧୀ ଆନ୍ଦୋଳନରେ ଯୋଗଦେଲି ସେହି ଦିନହିଁ ଶପଥ ନେଇଥିଲି ଯେ ସ୍କୁଲ ଛାଡ଼ିଲି ସିନା ପଠ ଛାଡ଼ିବି ନାହିଁ । ମଝିରେ ମଝିରେ ଜେଲ ଯାଉଥିଲି ବେଳେ ମୋ ସାଙ୍ଗମାନେ ଛ' ଆଠ ବର୍ଷ ଭିତରେ ବି. ଏ., ଏମ୍. ଏ. ପାଶ୍ କରିଗଲେ । ସେତେବେଳକୁ ମୋ ଜେଲ ଯିବା କାମ ଶେଷ ହୋଇ ନାହିଁ— ଶେଷ ହେଲାଯାଇ ୧୯୪୫ ମସିହା ଶେଷରେ । ଜେଲ ଭିତରେ ଯେଉଁ ଚାରି ପାଞ୍ଚ ବର୍ଷ କଟାଇଲି ମନ ଦେଇ ପଢ଼ିଲି । ପଢ଼ାରେ ସାହାଯ୍ୟ କରିବା ପାଇଁ ବହୁ ଉଚ୍ଚ ଶିକ୍ଷିତ ସହବନ୍ଦୀ ଥିଲେ । ମୋ ସାଙ୍ଗଙ୍କ ଭିତରୁ କିଏ ଅର୍ଥନୀତି ପଢ଼ିଲା ତ କିଏ ଇଂରାଜୀ ବା ଓଡ଼ିଆ ଭାଷାରେ ଏମ୍. ଏ. ପଢ଼ିଲା । ଆଉ କେହି ବିଜ୍ଞାନ ଆଡ଼େ ମାଡ଼ିଗଲେ । ଜେଲ ଭିତରେ ଓ ବାହାରେ ମୁଁ କିନ୍ତୁ ପଢ଼ିଲି ମାନବ ଜ୍ଞାନର ପ୍ରତ୍ୟେକ ବିଭାଗର କିଛି କିଛି ବହି, ଦୀର୍ଘ ପନ୍ଦର ବର୍ଷ ପରେ ଯେତେବେଳେ ଜେଲ ଯିବାର ଆବଶ୍ୟକତା ଆଉ ରହିଲା ନାହିଁ ସେତେବେଳେ ଅନ୍ୟ କାମ ଭିତରେ ମଧ ମୋର ପଢ଼ାପଢ଼ି ଚାଲିଥାଏ । ଖଣ୍ଡେ ଖଣ୍ଡେ ବହି ମଝିରେ ମଝିରେ ଲେଖିଦିଏ—ସେ ଗୁଡ଼ିକ ପ୍ରକାଶିତ ହୋଇଗଲେ ଲୋକେ କୁହନ୍ତି ଭଲ ହେଲା । ଏମିତି ହେଉ ହେଉ ଆସିଗଲା ୧୯୫୪ ମସିହା । ଅନ୍ୟ ବହୁ କାମ ଆଡ଼ୁ ମୁହଁ ଫେରାଇ ଲାଗିଗଲି କେବଳ ଲେଖା ପଢ଼ାରେ । ତେତିଶ ବର୍ଷ ପରେ ମୁଁ କହିପାରୁଛି ଜଣେ ଡ୍ରପ୍ ଆଉଟ ଇଚ୍ଛା କଲେ ମଧ ନିଜକୁ କିଛି ଦୂରକୁ ଶିକ୍ଷିତ କରି ପାରିବ । ତେଣୁ ସେହି ଶ୍ରେଣୀର ଲୋକେ ଏହି ବହି ଖଣ୍ଡିକ ପଢ଼ିଲେ ଆଉ କିଛି ହେଉ ବା ନହେଉ ଅନ୍ତତଃ ଏତିକି ଭରସା ରଖିବେ ଯେ ଯଦି ଚେଷ୍ଟା କରନ୍ତି ସୁଯୋଗ ପାଆନ୍ତି ତେବେ ସେମାନେ ଜଣେ ବିନୋଦ କାନୁନ୍‌ଗୋ ହୋଇ ପାରିବେ । 'ନାଁ—ସେତେ ଦୂରକୁ ଯାଇ ପାରିବେ ନାହିଁ' ବୋଲି ଯେଉଁ ଯୁକ୍ତି କରାଯାଉଛି ତାହାର ସେଭଳି କିଛି ଅର୍ଥ ନାହିଁ । ମୁଁ ସମ୍ଭାବନା

ବର୍ଷ ପରିଶ୍ରମ କଲଣି । ଆଉ ଜଣେ ଦଶବର୍ଷ ବା ବାର ବର୍ଷରେ ମୋ ପାଖ ଲଗିଯିବ । ତାହାର କାରଣ ଅଛି । ମୁଁ ଯେତିକି ବୌଦ୍ଧିକ ମୂଳଧନ ବା ବିଦ୍ୟାକୁ ସମ୍ବଳ କରି ଆରମ୍ଭ କରିଥିଲି ସେହି ତୁଳନାରେ ଆଜିର ଜଣେ ଛାତ୍ର ଆଉଠ ଢ଼େର ବେଶୀ "ଆରମ୍ଭ ମୂଳଧନ" ପାଇଯାଉଛି । ସେ ରେଡିଓ ଶୁଣୁଛି, ଟେଲିଭିଜନ ଦେଖୁଛି, ଫିଲ୍ମ୍ ଦେଖୁଛି, ସରକାରଙ୍କ ପ୍ରଚାର ବିଭାଗ ଶିକ୍ଷାପ୍ରଦ ଫିଲ୍ମ୍ ସବୁଦେଖାଉଛନ୍ତି । ସେ ସବୁରେ ସେ ନାନା କଥା ଜାଣି ଯାଉଛନ୍ତି, ଯାହା ଜାଣିବାର ସୁଯୋଗ ମୋର ବା ମୋର ସେ ଯୁଗର ସାଙ୍ଗମାନଙ୍କର କେବେ ହେଲେ ନଥିଲା । ଖବର କାଗଜ ଆଜି ଦୋକାନ ବଜାରରେ ମିଳୁଛି । ବିଶେଷରେ ମୁଁ ତା' ପାଇଁ ଅର୍ଥାତ୍ ଯିଏ ଅଳ୍ପ ପାଠ ପଢ଼ି ରହିଯାଇଛି ତା' ପାଇଁ ବହୁସଂଖ୍ୟକ ବହି ଲେଖିଦେଇ ଯାଉଛି—ଯେଉଁ ସବୁର ବିଷୟ ବସ୍ତୁକୁ ସେ ବୁଝି ପାରିବ, ସରଳ ଭାଷାରେ ସେଗୁଡ଼ିକ ଲେଖି ଯାଉଛି । କଥାଟିକୁ ଆଉ ଟିକିଏ ସ୍ପଷ୍ଟ କରିଦିଏ । ପାଞ୍ଚଶହ ନହେଉ ପଛକେ ଆସନ୍ତା ତିନି ବର୍ଷରେ ନିଶ୍ଚୟ ତିନିଶହ ଛୋଟ ଛୋଟ ବହି ଲେଖିଦେବି । ସେତିକି ପଢ଼ିଦେଲେ ଜଣେପିଲା ଅନେକ କଥା ଜାଣିଯିବ, ତାହାପରେ ପଢ଼ିବ ପଚସ୍ତୁଷ ଖଣ୍ଡ ଜ୍ଞାନମଣ୍ଡଳ । ସେଥିରୁ ମଧ୍ୟ କିଛି ଶିଖିଯିବ । ଏଇତକ "ପାଠ ମୂଳଧନ" ସେ ସହଜରେ ପାଇଗଲା । ସେତିକି ପଢ଼ିସାରିଲାପରେ ତା' ମନର ଅବସ୍ଥା ଏମିତି ହୋଇ ଯାଇଥିବ ଯେ ସେ ଅନ୍ୟ ବହୁ ବଡ଼ ବଡ଼ ବହି ପଢ଼ିପାରୁଥିବ । ତେଣୁ ମୋର ଭରସା ହେଉଛି ଯେ କଅଣ ସବୁ କଲାରୁ, କାହା ପଛରେ କି ଉଦ୍ୟମ ହେବାରୁ ମୁଁ ଶିଖିବା ପଥରେ ବା ଶିକ୍ଷିତ ହେବା ପଥରେ ଆଗେଇଗଲି ସେ ସବୁ ଜାଣିଲେ ସେ ଉତ୍ସାହିତ ହେବ । ସାହସର ସହିତ ସେ କହି ପାରିବ—'ମୁଁ ଅପାଠୁଆ ହୋଇ ରହିବାର କୌଣସି କାରଣ ନାହିଁ । ବେଶୀ ନପଢ଼ିଲେ ମଧ୍ୟ ବିନୋଦ କାନୁନ୍‌ଗୋ ଯେତିକି ଜାଣିଛନ୍ତି ତାହାର ଅଧାଅଧି ତ ସହଜରେ ଜାଣିଯିବ । ହୋଇପାରେ ମୁଁ ତାଙ୍କ ସମକକ୍ଷ ହୋଇଯିବି ଜାଣିବାରେ । ତାଙ୍କ ଶୈଳୀରେ ହୁଏତ ଲେଖିପାରିବି ନାହିଁ—କିନ୍ତୁ ଜାଣିବାରେ ତ କିଛି ଅସୁବିଧା ନାହିଁ ।'

ଆଉ ଗୋଟିଏ କଥା । ଅନେକ ଲୋକ ପଚାରୁଛନ୍ତି ଜ୍ଞାନବିଜ୍ଞାନର ସବୁ ବିଭାଗ ଉପରେ ମୁଁ ଲେଖିପାରୁଛି କିପରି । ଜ୍ଞାନମଣ୍ଡଳର ଶ୍ଳକଶ ଖଣ୍ଡରେ ମାନବ ଜ୍ଞାନର ସବୁ ବିଭାଗ ଉପରେ କିଛି କିଛି ଛୋଟ ବଡ଼

ପ୍ରବନ୍ଧ ରଚନାବିବାରୁ ସେମାନେ ସେପରି ବସ୍ତୁର ଛନ୍ତି । ସେପରି କରିବା ପଛରେ ମୋର ଦୀର୍ଘ ଚଉଦ୍ୱାଳିଶ ବର୍ଷର ପରିଶ୍ରମ ରହିଛି—ଯାହାକୁ କି କେହି କେହି 'ସାଧନା' ବୋଲି କହିଦେଉଛନ୍ତି—ଯଦିଏ ଏପରି ଗୋଟାଏ ପ୍ରଶଂସା ଗ୍ରହଣ କରିବା ପାଇଁ ମୋର ମନ ଡାକୁନାହିଁ । କି ଅନ୍ୟ ପନ୍ଥା ଅବଲମ୍ବନ କଲେ ଜଣେ ଲୋକ ଜ୍ଞାନବିଜ୍ଞାନର ସବୁ ବିଭାଗ ବିଷୟରେ ଅଳ୍ପେ ବହୁତେ ଜାଣିଯିବ ସେ ବିଷୟରେ ମୋର ପ୍ରତ୍ୟକ୍ଷ ଅନୁଭୂତି ହୋଇଛି । ସେଇ କେତେକକୁ ଏହି ବହିରେ ଲିପିବଦ୍ଧ କରିଯାଉଛି—ତାହାଠାରୁ ଅଧିକ କିଛି ନୁହେଁ ।

ଯେଉଁମାନେ ଉଚ୍ଚଶିକ୍ଷିତ ବୋଲି ପରିଚିତ ସେମାନଙ୍କୁ ଅତି ନମ୍ରତାର ସହିତ ଗୋଟିଏ କଥା କହିଦେଉଛି । ଯେତିକି ପଢ଼ିଦେଲେ ଜଣେ ଖୁବ୍ ଉଚ୍ଚଶିକ୍ଷିତ ବୋଲି ପରିଚିତ ହୋଇଯାଉଥିଲେ ଆଜି ଏଣିକି ସେତିକି ପାଠରେ ସେହି ସମ୍ମାନ ମିଳୁନାହିଁ । ସମାଜରେ ଶିକ୍ଷାକ୍ଷେତ୍ରରେ ଚିନ୍ତା ରାଜ୍ୟରେ ଦ୍ରୁତପରିବର୍ତ୍ତନ ହେବା ଫଳରେ 'ଶିକ୍ଷା' ଶବ୍ଦର ଅର୍ଥରେ ନୂତନ ଦିଗନ୍ତ ଯୋଡ଼ି ହୋଇ ଗଲାଣି । ଏଣିକି ଲିବରାଲ ଏଡୁକେଶନ କଥା କୁହାଗଲାଣି । ଏହି ସମନ୍ୱିତ ବା ପର୍ଯ୍ୟାପ୍ତ ଶିକ୍ଷା କଅଣ ସେ ବିଷୟରେ ବିଭିନ୍ନ ଦୃଷ୍ଟିକୋଣରୁ ପଣ୍ଡିତମାନେ ଆଲୋଚନା କଲେଣି । ଯେଉଁ ପ୍ରକାରର ଶିକ୍ଷା ପାଇଲେ ଜଣେ ମନୁଷ୍ୟ ଭଲ ବଞ୍ଚିପାରିବ, ମନୁଷ୍ୟ ଜୀବନ କଟାଇବ ଓ ଉନ୍ନତ ଜୀବନ ବିତାଇବା ପାଇଁ ପାଥେୟ ପାଇଯିବ ତାକୁହିଁ ଲିବରାଲ ଶିକ୍ଷା ବୋଲି କୁହାଯିବ । ଏହି ଶିକ୍ଷାର ଲକ୍ଷ୍ୟ ହେଲା ମାନବିକ ଉତ୍କର୍ଷତା ବା ଶ୍ରେଷ୍ଠତା । ବ୍ୟକ୍ତିଗତ ଜୀବନରେ ସେ ରହିବ ଅତି ଉଚ୍ଚ ସୋପାନରେ ଓ ତାହାର ସାଧାରଣ ଜୀବନ ମଧ୍ୟ ସେଥିସହିତ ତାଳ ମିଳାଇ ପାରୁଥିବ । ଉତ୍କର୍ଷତାହିଁ ତାକୁ ଉପଯୁକ୍ତ ନାଗରିକ ରୂପରେ ଗଢ଼ି ତୋଳିବ । ସେହି ଶିକ୍ଷା କହିବ ମନୁଷ୍ୟ ହେଉଛି 'ଲକ୍ଷ୍ୟ'—ସାଧନ ନୁହେଁ । ଅନ୍ୟ ପ୍ରକାରର ଶିକ୍ଷା ମନୁଷ୍ୟକୁ ସାଧନ ଭଳି ବ୍ୟବହାର କରି ଅନ୍ୟ କୌଣସି ଲକ୍ଷ୍ୟ ପୂରଣ କରିବା ପାଇଁ ଯୋଜନା କରୁଛି । ଯେଉଁ ଲୋକ ଉଦାର ବା ପର୍ଯ୍ୟାପ୍ତ ଶିକ୍ଷା ପାଇଛି—ତା' ମନର ପାଗ ଏପରି ହୋଇ ଯାଇଛି ଯେ, ଯେକୌଣସି ପରିସ୍ଥିତିରେ, ଯେକୌଣସି କ୍ଷେତ୍ରରେ ସେ କାର୍ଯ୍ୟ କରିଯାଇ ପାରିବ — ନିଜର ଦକ୍ଷତାର ପରିଚୟ ଦେଇ ପାରିବ । ସେ କୌଣସି ଗୋଟାଏ ନିର୍ଦ୍ଦିଷ୍ଟ

ବିଷୟରେ ବିଶେଷଜ୍ଞ ନହୋଇ ପାରିଥାଏ, କିନ୍ତୁ ଜ୍ଞାନର ଯେକୌଣସି ବିଭାଗରେ କେଉଁଟା ଗୁରୁତ୍ୱପୂର୍ଣ୍ଣ, କେଉଁଟା ଅସଲ ସୂତ୍ର ବା ମର୍ମ ତାହା ସେ ବୁଝିପାରୁଥିବ । ତା' ନିଜର ଜ୍ଞାନ ବିଭାଗ ଉପରେ ସେ ଅନ୍ୟ ବିଭାଗର ଆଲୋକ ପକାଇ ଦେଖିପାରିବ । ନିଜ ଜ୍ଞାନର ବ୍ୟାପକତା ବା ମହତ୍ତ୍ୱ କିଭଳି ଭାବରେ ତା'ଠାରୁ ଟିକିଏ ଦୂରେଇ ଗଲାଭଳି ରହିଥିଲା । ନିଜ ଜ୍ଞାନର ଓ ତାକୁ ନୂତନ ଭାବରେ ଆଲୋକିତ କରୁଥିବା ଅନ୍ୟ ଜ୍ଞାନର— ଉଭୟଙ୍କର ମହତ୍ତ୍ୱକୁ ସେ ଅଧିକ ପରିସ୍ଫୁଟ ଭାବରେ ଦେଖିପାରିବେ, ଅନୁଭବ କରିପାରିବେ । ଏହି ମତ ଯଦି ଆମେ ଗ୍ରହଣ କରିପାରୁ ଓ ଗ୍ରହଣ କରିଗଲେ କିଛି କ୍ଷତି ନାହିଁ, ତେବେ ଆମକୁ "ଲିବରାଲ ଶିକ୍ଷିତ" ହେବାକୁ ପଡ଼ିବ । ତାହା ସମ୍ଭବ ହେବ ଯଦି ମାନବ ଜ୍ଞାନର ପ୍ରତ୍ୟେକ ବିଭାଗର ଅସଲ ସୂତ୍ର ବିଷୟରେ ଆମର କିଛି କିଛି ଧାରଣା ରହିବ । ଅନ୍ୟ ଭାବରେ କହିବାକୁ ଗଲେ ଜଣେ ଓଡ଼ିଆ ଅଧ୍ୟାପକ ବରାବର ଚେଷ୍ଟା କରିବେ କେମିଷ୍ଟ୍ରି, ଫିଜିକ୍ସ୍, ଭୂତତ୍ତ୍ୱ, ଚିକିତ୍ସା ବିଜ୍ଞାନର ଅଗ୍ରଗତି କିଭଳି ହେଉଛି ଜାଣିବାପାଇଁ । ତାହାର ବିପରୀତଟି ମଧ୍ୟ ଠିକ୍ । ରସାୟନ ଶାସ୍ତ୍ରୀ ବା ପଦାର୍ଥ ବିଦ୍ୟାବିତ୍ ମଧ୍ୟ ଭାଷାର ଉନ୍ନତି କିଭଳି ହୋଇଚାଲିଛି ଓ ଭାବପ୍ରକାଶ ପାଇଁ ଭାଷା କିଭଳି ନିଜ ଭିତରେ ଅଧିକରୁ ଅଧିକ ସାମର୍ଥ୍ୟ ଭରିଦେଇ ପାରୁଛି, ସେ ବିଷୟରେ ଖବର ରଖିବେ, ଭାଷା ବିଜ୍ଞାନ ବିଷୟରେ ଆଗ୍ରହୀ ହେବେ ।

ଉପରେ ଯାହା କହିଲି ସେଥିରୁ ଯେପରି କେହି ଅନୁମାନ ନକରନ୍ତି ଯେ ମୋ ଅର୍ଜିତ ଜ୍ଞାନ ବିଷୟରେ ମୁଁ ବଡ଼ାଇ କରି ଗୁଡ଼ାଏ କହିଯାଉଛି । କୌଣସି ବିଷୟରେ ମୁଁ ବିଶେଷଜ୍ଞ ନୁହେଁ ବା ହେବାକୁ ଚେଷ୍ଟା କରିନାହିଁ । ସେଭଳି ଚେଷ୍ଟା କରିବା ମୋ ପକ୍ଷରେ ପାଗଳାମି ହୁଅନ୍ତା । କିନ୍ତୁ ମୁଁ ତୀବ୍ର ଭାବରେ ଅନୁଭବ କରିଛି ଜ୍ଞାନର ସବୁ ବିଭାଗର ଅଳ୍ପ କିଛି ସହିତ ପରିଚିତ ନହେଲେ ଜଣକୁ ପ୍ରକୃତ ଅର୍ଥରେ ଶିକ୍ଷିତ ବୋଲି କୁହାଯାଇ ପାରିବନାହିଁ । ସେହିଭଳି ସ୍ତରରେ ରହିବା ପାଇଁ ଚେଷ୍ଟା କରିଛି ବା କରୁଛି । ମୁଁ ଜଣେ ଡାକ୍ତର ଭଳି ହୋଇଯିବି, ଅନ୍ୟକୁ ଔଷଧ ଦେବି ବା ଚିକିତ୍ସା କରିବି ଏଭଳି କଳ୍ପନା ମୋ ମନଭିତରେ ଆସିନାହିଁ । କିନ୍ତୁ ଶରୀର ବିଦ୍ୟା ବିଷୟରେ ମୋଟାମୋଟି ଧାରଣା ରହିବନାହିଁ— ଏଭଳି

ଗୋଟାଏ ପରିସ୍ଥିତିକୁ ମୁଁ ବରଦାସ୍ତ କରିପାରିବ ନାହିଁ । ୧୯୪୬ ସେପ୍ଟେମ୍ବର ମାସରେ ମୁଁ ଯେତେବେଳେ ଡାକ୍ତରୀ ବହି ପଢ଼ିବାକୁ ଆରମ୍ଭ କଲି ସେତେବେଳେ ମୋର ମଧ୍ୟ ବିଶ୍ୱାସ ନଥିଲା ଯେ ଚାଳିଶ ବର୍ଷ ପରେ ଯେକୌଣସି ଡାକ୍ତରୀ ବହି ସବୁକୁ ଚଉଦ ପଣିଆ, ପନ୍ଦର ପଣିଆ ବୁଝିଯାଉଥିବି । ଯେଉଁମାନେ ମେଡ଼ିକାଲକଲେଜରୁ ଦକ୍ଷତାର ସହିତ ପାଶ୍ କରିପାରିଛନ୍ତି ସେମାନେ ଓ ତାହାପରେ ପୋଷ୍ଟ ଗ୍ରାଜୁଏଟ ସ୍ତରରେ ଯେଉଁସବୁ ବହି ପଢ଼ିଛନ୍ତି ସେସବୁ ଉପରେ ମୁଁ ଆଖିବୁଲାଇ ଦେଇ ଯାଉଛି ଓ କେତେଗୁଡ଼ିଏ ବହିକୁ ପଢ଼ିଲାବେଳେ ଉପନ୍ୟାସ ପଢ଼ୁଛି ବୋଲି ମନେ ହେଉଛି । ସେଥିରୁ ରସ ପାଇବାରେ ମୁଁ କେବେ ହେଲେ ପଛାଇ ନାହିଁ । ପ୍ରତ୍ୟେକ ଉଚ୍ଚ ଶିକ୍ଷିତ ଲୋକଙ୍କର ସେହିଭଳି ହେଉ ବୋଲି ମୋର ଇଚ୍ଛା । ସେମିତି ବିଜ୍ଞାନର ଅନ୍ୟ ସବୁ ବିଭାଗ ଉପରେ ମୁଁ ଯେଉଁ ସବୁ ପ୍ରବନ୍ଧ ଗୃହଶିଖ ଓ ଜ୍ଞାନମଣ୍ଡଳରେ ଲେଖିଗଲିଣି ସେଗୁଡ଼ିକ ପ୍ରମାଣ ଦେଉଛନ୍ତି ଯେ ବିଜ୍ଞାନ ବିଷୟରେ ମୋର ମୋଟାମୋଟି ଧାରଣା ରହିଛି ।

କେମିତି ଆରମ୍ଭ କଲି ଓ କ୍ରମ ପଦକ୍ଷେପ ନେଇ ୧୯୮୬ର ସୋପାନରେ ପହଞ୍ଚିଲି ତାହାର ବର୍ଣ୍ଣନା କରିଯିବି । ଏଭଳି କେତେକ ପନ୍ଥା ଅବଲମ୍ବନ କରିଛି ଯେଉଁଗୁଡ଼ିକ ଆଜି ଅନ୍ୟମାନଙ୍କୁ ହାସ୍ୟାସ୍ପଦ ବୋଲି ମନେ ହେବ । କିନ୍ତୁ ମୋ ପାଇଁ ସେଗୁଡ଼ିକ ଥିଲା ଅପରିହାର୍ଯ୍ୟ ! ସେମିତି ନ କରିଥିଲେ ମୁଁ ଡେଇଁ ଡେଇଁକା ଉପରକୁ ଉଠିଲା ଭଳି ହୋଇ ଥାଆନ୍ତା—ଧୀର ପଦକ୍ଷେପରେ ଉପରକୁ ଉଠିପାରି ନଥାନ୍ତି ।

ଏଭଳି ଖଣ୍ଡିଏ ବହି କାହିଁକି ଲେଖିଲି ତାହାର କଇଫିୟତ ମୋଟାମୋଟି ଭାବରେ ଦେଇଦେଲି । ଏହାକୁ ପଢ଼ି ଯଦି ମାତ୍ର ପଚିଶ ଜଣ ଉପକୃତ ହୁଅନ୍ତି, ନିଜକୁ ପ୍ରକୃତ ଅର୍ଥରେ ଶିକ୍ଷିତ କରିବାପାଇଁ ଉତ୍ସାହିତ ହୁଅନ୍ତି ତେବେ ମୋର ବହି ଲେଖିବାର ଶ୍ରମ ସାର୍ଥକ ହେଲା ବୋଲି ବିଚାରିବି । ବିଂଶ ଶତାବ୍ଦୀ ଶେଷ ହୋଇ ଆସୁଛି । ଏକବିଂଶ ଶତାବ୍ଦୀ କିଭଳି ହେବାକୁ ଯାଉଛି ତାହାର ଗୋଟାଏ ଛବି ଆଙ୍କି ଦେଇଥିଲେ ଜଣେ ପ୍ରସିଦ୍ଧ ଲେଖକ "ଏକବିଂଶ ଶତାବ୍ଦୀରୁ ରିପୋର୍ଟ" (A report from the 21st Century) ବୋଲି ଗୋଟିଏ ବହି

ଲେଖିଦେଇ । ପଚଶ ବର୍ଷ ପୂର୍ବେ ଏହି ବହିଟି ପଢ଼ିଲା ବେଳେ ମୋ ମନଭିତରେ ଗୋଟିଏ କଥା ସ୍ପଷ୍ଟ ହୋଇଯାଇଥିଲା । ଯେଉଁ ନୂତନ ଯୁଗ ୨୦୦୦ ଖ୍ରୀଷ୍ଟାବ୍ଦ ପରେ ଆସିବ ସେ ଯୁଗରେ ଜଣେ ଯଦି କେବଳ ସାମାନ୍ୟ ନାଗରିକ ହୋଇ ରହିବାକୁ ଇଚ୍ଛା କରିବ ତାକୁ ଅନ୍ତତଃପକ୍ଷରେ କିଛି ଜ୍ଞାନ ହାସଲ କରିବାକୁ ହିଁ ପଡ଼ିବ । ସେହି "ଅନ୍ତ କମ" ଜ୍ଞାନ ଯୋଗାଇବା ପାଇଁ ମୁଁ ଉଦ୍ୟମ କରୁଛି ଏତେ ସଂଖ୍ୟକ ଷ୍ଟେଟ ବଡ଼ ବହି ଲେଖିଦେଇ ।

ସମସ୍ତଙ୍କ ମନରୁ ହୀନମନ୍ୟତା ଦୂର ହୋଇଯାଉ—ଏହି ହେଲା ମୋର ଇଚ୍ଛା । ୧୯୩୦ରେ ମୋ ସହିତ ଯେଉଁମାନେ ପଢ଼ା ଛାଡ଼ିଥିଲେ ହାଇସ୍କୁଲରୁ, ସେମାନଙ୍କ ଭିତରୁ ଅଳ୍ପ କେତେଜଣ ସାହିତ୍ୟ ରାଜନୀତି ଇତ୍ୟାଦି କ୍ଷେତ୍ରରେ ବେଶ୍ ସୁନାମ ଅର୍ଜନ କଲେ । ସ୍କୁଲ କଲେଜରେ ନ ପଢ଼ିଛନ୍ତି ବୋଲି କୌଣସି ପ୍ରକାରର ହୀନମନ୍ୟତା ସେମାନଙ୍କଠାରେ ଦେଖାଦେଲାନାହିଁ । ମୁଁ ମଧ୍ୟ ସେହିମାନଙ୍କ ଭିତରୁ ଜଣେ । କିନ୍ତୁ ଆଉ ବହୁସଂଖ୍ୟକ ଅଧାପଢ଼ା ଛାତ୍ର ରହିଗଲେ ଯେଉଁମାନେ କି ଆଜି ମଧ୍ୟ କୁହନ୍ତି ଯେ ସେମାନେ ଅପାଠୁଆ ହୋଇ ରହିଗଲେ—ତେଣୁ ସମାଜରେ ସେମାନଙ୍କ ସ୍ଥାନ ବହୁ ତଳେ ରହିଗଲା । ମୋର ବିଶ୍ୱାସ ଯେ ଯଦି ବ୍ୟାପକ ଭାବରେ ପ୍ରକୃତ ଶିକ୍ଷାର ପ୍ରସାର କରାଯାଏ ଓ ଲକ୍ଷ ଲକ୍ଷ ଅଧାପାଠୁଆ ଲୋକଙ୍କୁ ବହୁ କଥା ଜାଣିବାର ସୁଯୋଗ ଦେଇ ଦିଆଯାଏ ତେବେ ସେମାନଙ୍କ ମନରୁ ହୀନମନ୍ୟତା ଦୂର ହୋଇଯିବ । ଏଭଳି ହୋଇଗଲେ ସେମାନଙ୍କ ଭିତରେ ଗୋଟାଏ ନୂତନ ଶକ୍ତିର ସଞ୍ଚାର ହେବ । ସେହି ଶକ୍ତି ସେହି ଉତ୍ସାହ ଉନ୍ମାଦନା ଗୋଟାଏ ଉନ୍ନତ ସମାଜ ଗଢ଼ିବାରେ ସହାୟକ ହେବ ।

●

## ମାତ୍ର ଖଣ୍ଡିଏ ବ୍ୟାକରଣ ବହି

୧୯୩୦ ଏପ୍ରିଲ ଏଗାର ତାରିଖ ପାହାନ୍ତାଟି ମୋ ପାଇଁ ଥିଲା ଗୋଟିଏ ଅତି କଠିନ ପରୀକ୍ଷାର ସମୟ । ଦଶ ତାରିଖରେ ତ ସ୍କୁଲ ନୋଟିସ ବୋର୍ଡ଼ରେ ତାଲିକା ଟଙ୍ଗା ହୋଇଯାଇଛି କେଉଁମାନଙ୍କୁ ସ୍କୁଲରୁ ବିତାଡ଼ିତ କରାଗଲା । ଯେଉଁମାନେ ତାକୁ ଦେଖିଥିଲେ ସେମାନେ ଆସି କହିଲେ—'ତମ ନାଁଟି ପ୍ରଥମରେ ଅଛି' । ହେଡମାଷ୍ଟର ନିଜେ ମୋ ହାତଧରି ଟାଣି ସ୍କୁଲ ଫାଟକରେ ପିକେଟିଙ୍ଗ୍ ନ କରିବାକୁ କହିଥିଲେ । ତାଙ୍କ କଥା ମାନିନଥିଲି—ତେଣୁ ମୋ ନାଁଟି ପ୍ରଥମରେ ହିଁ ରହିବା କଥା । ଆଉ ସ୍କୁଲକୁ ଫେରିବାର ନାହିଁ । ସେ ବିଷୟରେ ମନଭିତରେ କିଛି ହେଲେ କିନ୍ତୁ କମ୍ପ ନଥିଲା । ମନଟା ଟିକିଏ ଖରାପ ହୋଇଯାଉଥାଏ ପଢ଼ାଟା ବନ୍ଦ ହୋଇଗଲା ବୋଲି । ଟେକସ୍ଟ୍‌ବୁକ୍ ସାଙ୍ଗକୁ ମୋ ପାଖରେ ଆଉ କେତେଖଣ୍ଡ ଭଲ ବହି ଥାଏ । ସବୁଗୁଡ଼ିକୁ ସଜାଡ଼ି ଦେଲି । ଦୁଇଟି ଥାକରେ ବହିତକ ଖାତାତକ ରଖିଦେଇ ମୋର ବାଲ୍ୟବନ୍ଧୁ ବାଳମୁକୁନ୍ଦକୁ କହିଲି—'ଏହିସବୁ ବହି ତୋ ପାଇଁ ରହିଲା । ମୁଁ କେବଳ ଏଇ ନେସ୍‌ଫିଲ୍‌ଡ଼୍ ଗ୍ରାମାର ଖଣ୍ଡିକ ନେଇ ଯାଉଛି ।' ତା ଆଖିରୁ ଦି ଧାର ଲୁହ ଗଡ଼ିପଡ଼ିଲା—ମୋ ଆଖିରୁ ମଧ୍ୟ । ସେହି ବହିଟିକୁ ଗୋଟିଏ ଗାମୁଛାରେ ଗୁଡ଼ାଇ ଦେଇ ସୂତାରେ ବାନ୍ଧି ଦେଲି । ପୁଣି ଥରେ ବହି ଥାକକୁ ଶୁହିଁ ମୁଣ୍ଡିଲଗାଇ ଦଣ୍ଡବତ ହୋଇ କଲେଜ ହତା ଭିତରୁ ବାହାରକୁ ଚାଲିଗଲି । କିଛି ସମୟ ପରେ ଆଶ୍ରମରେ ପହୁଞ୍ଚି କହିଲି—'ଏଣିକି ମୁଁ ଦେଶ କାମ କରିବି' ।

'ନେସ୍‌ଫିଲ୍‌ଡ ଗ୍ରାମାର' ବିଷୟ ସ୍ୱତନ୍ତ୍ର ଭାବରେ ଏଠାରେ ଉଲ୍ଲେଖ କରିବାର ଗୋଟାଏ ଉଦ୍ଦେଶ୍ୟ ଅଛି । ଛ'ବର୍ଷ ବୟସରୁ ଏଭଳି ଗୋଟିଏ ପରିବେଶ ଭିତରେ ବଢ଼ିଲି ଯେ ଇଂରାଜୀ ଭାଷାର ଶ୍ରେଷ୍ଠତ୍ୱ

ବୟସ୍ପୂରେ ଗୋଟାଏ ଗ୍ରୁପ ମନଭିତରେ ରଖିଦିଆଯାଇଥିଲା—ମୁଣ୍ଡଭିତରେ ବସା ବାନ୍ଧିଯାଇଥିଲା । ସେହି ବୟସରୁ ବରାବର ଉଦ୍ୟମ କରୁଥିଲି ଭଲ ଭାବରେ ଇଂରାଜୀ ଭାଷା ଶିଖିବା ପାଇଁ । ପାଠ୍ୟପୁସ୍ତକ-ହିଁ ଥିଲା ଶିକ୍ଷାର ଏକମାତ୍ର ମାଧ୍ୟମ । ରେଭେନ୍‌ସା କଲେଜ ହତାରେ ଗୁରୁ ଅଧ୍ୟାପକ ସମସ୍ତେ ପରସ୍ପର ଭିତରେ ମଝିରେ ମଝିରେ ଇଂରାଜୀରେ କଥାବାର୍ତ୍ତା କରିବାରେ ଗୌରବ ଅନୁଭବ କରନ୍ତି । ଯିଏ ଭଲ ଭାବରେ କଥାବାର୍ତ୍ତା କରି ପାରନ୍ତି ସେ ଟିକିଏ ଦରବ ରହିଯାଏ । ସେହିସବୁ କଥାବାର୍ତ୍ତା ଶୁଣିବାର ସୁଯୋଗ ମୋର ଥାଏ । ୧୯୨୭ରୁ ୧୯୩୦ ଭିତରେ ମୁଁ କୌଣସି ଗୋଟିଏ ହେଲେ ଇଂରାଜୀ ଦୈନିକ କାଗଜ ବା ପତ୍ରିପତ୍ରିକା ପଢ଼ିନାହିଁ । କଲେଜ ଲାଇବ୍ରେରୀ ଭିତରେ ବହୁ ବହିର ପୃଷ୍ଠା ଓଲଟାଇ ଯାଏ ଚିତ୍ର ଦେଖିବା ପାଇଁ—ସେହି ଅବସରରେ ହୁଏତ କେତୋଟି ଶବ୍ଦ ଉପରେ ଆଖି ପଡ଼ିଯାଏ । ମୋର ଭାରି ଇଚ୍ଛା ଯେଉଁ କ୍ଷେତ୍ରରେ ରହିଲେ ମଧ୍ୟ ଇଂରାଜୀ ଶିଖିବି । ସେଇଥିପାଇଁ ଏହି ଗ୍ରାମାର ବହି ପ୍ରତି ମୋହ ରହିଯାଇଥିଲା ଓ ସେହି ଗୋଟିକୁ ସାଙ୍ଗରେ ନେଇଗଲି ।

ଏଇଠି ହିସାବ କରିଦେଲେ ଭଲ ହେବ ଯେଉଁ ଦିନ ସାଧାରଣ କ୍ଷେତ୍ରରେ ପ୍ରବେଶ କଲି ସେଦିନ ମୋ ପାଖରେ କେତେ ପରିମାଣରେ ବୌଦ୍ଧିକ ବା ବିଦ୍ୟାଗତ ମୂଳଧନ ଥିଲା । ବୟସ ତୁଳନାରେ—ସ୍କୁଲ ପାଠ ତୁଳନାରେ ଓଡ଼ିଆ ଭାଷାଟି ଭଲ ଭାବରେ ଜାଣିଥିଲି । ସପ୍ତମ ଶ୍ରେଣୀରେ ପଢ଼ିଲା ବେଳେ ଯେଉଁ ସବୁ ପ୍ରବନ୍ଧ ଲେଖୁଥିଲି ତାକୁ ନେଇ କେମିଷ୍ଟ୍ରି ପ୍ରଫେସର ଗୁରୁଚରଣ ମହାନ୍ତି କଲେଜ ପିଲାଙ୍କୁ ଦେଖାଇ କହୁଥିଲେ—"ଆମେ ଯେଉଁ ନୂଆ ରଣୀହାଟ ଏମ୍. ଇ. ସ୍କୁଲ ବସାଇଛୁ ସେଥିର ପିଲା କେମିତି ପ୍ରବନ୍ଧ ଲେଖୁଛନ୍ତି ଦେଖ ।" ମାମୁଁ ଥିଲେ ସଂସ୍କୃତ ପ୍ରଫେସର—ଓଡ଼ିଆ ପ୍ରଫେସର । ତାଙ୍କର ଘରେ ଗୋଟିଏ ନୂଆ କଥା ହୋଇ ଯାଉଥାଏ ଯାହାର ସୁଦୂର ପ୍ରସାରୀ ପ୍ରଭାବ ପରବର୍ତ୍ତୀ କାଳରେ ଓଡ଼ିଆ ସାହିତ୍ୟ ତଥା ଭାଷା ଉପରେ ପଡ଼ିଥିଲା । ଆର୍ତ୍ତବଲ୍ଲଭ ମହାନ୍ତି ରେଭେନ୍‌ସା କଲେଜରୁ ବି. ଏ. ପାସ୍ କରି କଲିକତା ଗଲେ ବିଶ୍ୱବିଦ୍ୟାଳୟରେ ପଢ଼ିବା ପାଇଁ । ସେ ମାଟ୍ରିକୁଲେଶନରୁ ବି. ଏ. ପର୍ଯ୍ୟନ୍ତ ସବୁ ପରୀକ୍ଷାରେ ଖରାପ କରୁଥିଲେ ମଧ୍ୟ ତାଙ୍କର ଇଂରାଜୀ ଜ୍ଞାନ ଭଲ ଥିଲା । ତେଣୁ ସେ ଇଂରାଜୀରେ ଏମ୍. ଏ.

ପଢ଼ିବେ ବୋଲି ନାମ ଲେଖାଇଲେ । ତାଙ୍କ ଉପର ଶ୍ରେଣୀରେ ପଢ଼ୁଥିବା କୃତ୍ତିବାସ ସାମନ୍ତରାୟ କିନ୍ତୁ ତାଙ୍କୁ କହିଲେ ରେଭେନ୍ସା କଲେଜରେ ଇଂରାଜୀ ଅଧ୍ୟାପକ ହେବାର କୌଣସି ସୁଯୋଗ ସେ ପାଇ ପାରିବେ ନାହିଁ । କାରଣ ସେ ନିଜେ ମିରବ ଓ ଟିକିଏ ପୂର୍ବରୁ ଗୋଦାବରୀଶ ମିଶ୍ର ଗଲେଣି । ସେ ଯଦି ଡେପୁଟୀ ମାଜିଷ୍ଟ୍ରେଟ ହେବେ—ଭିନ୍ନ କଥା । କିନ୍ତୁ ଯଦି ସଂସ୍କୃତ ନେବେ ଅଧ୍ୟାପକ ହୋଇପାରିବେ । ସେ ତାହା ହିଁ କଲେ । ଯେଉଁ ଓଡ଼ିଆମାନେ କଲିକତାରେ ରହି ଏମ୍. ଏ. ପଢ଼ୁଥାଆନ୍ତି ସେମାନଙ୍କ ଭିତରେ ଗୋଟିଏ ବିଷୟରେ ଆଲୋଚନା ପଡ଼େ—ବଙ୍ଗାଳୀମାନଙ୍କ ସହିତ ସାହିତ୍ୟ କ୍ଷେତ୍ରରେ କିଭଳି ସମକକ୍ଷ ହେବେ । ଓଡ଼ିଆରେ କବିତା ଲେଖି ବଙ୍ଗଳା କବିତା ସହିତ ତୁଳନା କରନ୍ତି । ଓଡ଼ିଆରେ ସେହି ଦୃଷ୍ଟିରୁ ନାଟକ ଲେଖନ୍ତି—ପ୍ରବନ୍ଧ ମଧ୍ୟ । ଏମିତିକା ବିଚାର ଚାଲିଥିଲା ବେଳେ ୧୯୧୩ରେ ରବୀନ୍ଦ୍ରନାଥ ପାଇଗଲେ ସାହିତ୍ୟରେ ନୋବେଲ ପୁରସ୍କାର । ବଙ୍ଗଳା ଭାଷାର ସମ୍ମାନ କାହିଁରେ କ'ଣ ବଢ଼ିଗଲା । ବଙ୍ଗାଳୀମାନେ ନିଜ ଭାଷା ତଥା ସାହିତ୍ୟକୁ ଉପରକୁ ଉପରକୁ ଉଠାଇ ନେବା ପାଇଁ ଅତିମାତ୍ରାରେ ପ୍ରେରଣା ପାଇଗଲେ । 'ଜଣେ ବଙ୍ଗାଳୀ ବିଶ୍ୱକବି ହୋଇଗଲେ'—ଏଇ ହେଲା ପ୍ରତ୍ୟେକ ବଙ୍ଗାଳୀଙ୍କ ମୁହଁରେ ଗୌରବଭରା କଥା । ବଙ୍ଗଳା ସହିତ ଆଧୁନିକ କବିତା ବା ସାହିତ୍ୟ କ୍ଷେତ୍ରରେ ଓଡ଼ିଆ ଭାଷା ସେ ଆଉ ପ୍ରତିଯୋଗିତା କରିପାରିବ—ଏ ଆଶା ଓଡ଼ିଆ ଉଚ୍ଚ ଶିକ୍ଷିତ ଛାତ୍ର ଯୁବକ ମାନେ ଛାଡ଼ିଦେଲେ । କିନ୍ତୁ ଗୋଟିଏ କଥା ସେମାନଙ୍କ ମୁଣ୍ଡରେ ପ୍ରବେଶ କରିଗଲା । ସେମାନଙ୍କ ଭିତରୁ ପ୍ରତ୍ୟେକେ ଭଲ ଭାବରେ ବଙ୍ଗଳା ପଢି ଥିଲେ—ବଙ୍ଗଳା ସାହିତ୍ୟ ବିଷୟରେ ପରିଚିତ ଥିଲେ । ଇଂରେଜମାନେ ଭାରତରେ ରାଜୁତି ଜମାଇଲା ପରଠାରୁ ବଙ୍ଗଦେଶ, ଓଡ଼ିଶା, ବିହାର, ଆସାମ ଥିଲା ବଙ୍ଗ ପ୍ରେସିଡ଼େନ୍ସୀ ଭିତରେ । ଶିକ୍ଷିତ ବଙ୍ଗାଳୀମାନେ ଏହି ବିସ୍ତୃତ ଅଞ୍ଚଳର ପ୍ରତ୍ୟେକ ଅଫିସରେ କାମ କରୁଥିଲେ । ହାଇସ୍କୁଲ ଗୁଡ଼ିକର ଅଧିକାଂଶ ଶିକ୍ଷକ କଲେଜ ଗୁଡ଼ିକର ଅଧ୍ୟାପକ, ବଡ଼ ବଡ଼ ହାକିମ – ସମସ୍ତେ ଥିଲେ ବଙ୍ଗାଳୀ । ପାଠ୍ୟପୁସ୍ତକ ଗୁଡ଼ିକ ବଙ୍ଗଳାରେ ପ୍ରଥମେ ଛପା ହେଲା । ମାନେବହିଯାକ ବଙ୍ଗଳାରେ । ବଙ୍ଗଳା ରାମାୟଣ, ମହାଭାରତ ଓଡ଼ିଶାର ବହୁ ଶିକ୍ଷିତ ପରିବାରରେ ସ୍ଥାନ ପାଇଲା । ମୋ

ବୋଉ, ମାଇଁ ବଙ୍ଗଳା ଗ୍ରାମ୍ୟଶ୍ଳ ହିଁ ପଢ଼ନ୍ତି । ଏହିସବୁ ଅଭିଜ୍ଞତା ସେମାନଙ୍କୁ ନେଇ ଗୋଟିଏ ସିଦ୍ଧାନ୍ତରେ ପହୁଞ୍ଚାଇ ଦେଲା । ଆଧୁନିକ ସାହିତ୍ୟ କ୍ଷେତ୍ରରେ ଯିନା ଓଡ଼ିଆମାନେ ବଙ୍ଗାଳୀଙ୍କ ସହିତ ପ୍ରତିଯୋଗିତା କରି ପାରିବେ ନାହିଁ—ଓଡ଼ିଆ ପ୍ରାଚୀନ ସାହିତ୍ୟର ମହତ୍ତ୍ୱକୁ ସମସ୍ତଙ୍କ ପାଖରେ ଭଲ ଭାବରେ ପରିଚିତ କରାଇ ଦେବାକୁ ପଡ଼ିବ । ତାହାହେଲେ ଓଡ଼ିଆ ଭାଷାର ସମ୍ମାନ ବଙ୍ଗାଳୀଙ୍କ ପାଖରେ ରହିବ । ପ୍ରାଚୀନ ସାହିତ୍ୟ ବିଷୟରେ ସମସ୍ତେ କିଛି କିଛି ଗବେଷଣା କରନ୍ତୁ ଓ ତାହାର ବିଭିନ୍ନ ଦିଗ ବିଷୟରେ ଓଡ଼ିଆରେ ତଥା ଇଂରାଜୀରେ ପ୍ରବନ୍ଧ ସବୁ ଲେଖନ୍ତୁ ।

ଏହି ଚିନ୍ତା ଜନ୍ମ ଦେଲା ପରବର୍ତ୍ତୀକାଳର 'ପ୍ରାଚୀସମିତିକୁ' । ସବୁତକ ଲେଖାଯାଇଥିଲା ତାଳ ପତ୍ର ପୋଥିରେ । ଜଣେ ଉତାରିଲା ବେଳେ କେଉଁଠି କେଉଁଠି ଛାଡ଼ିଯାଇଛି ବା ଯୋଗକରି ଦେଇଛି ଅନ୍ୟ ଶବ୍ଦ—ଯେତେବେଳେ ପ୍ରକୃତ ଶବ୍ଦଟିର ଅର୍ଥ ବୁଝି ପାରିନାହିଁ । ପ୍ରାଚୀ ସମିତିର କାମ ହେଲା ଏକାଧିକ ଏବଂ ସମ୍ଭବ ହେଲେ ବହୁ ସଂଖ୍ୟକ ପୋଥି ଆଣି, ମିଳାଇ ଶୁଦ୍ଧ ସଂସ୍କରଣ ପ୍ରକାଶ କରିବା । ବିଦଗ୍ଧ ଚିନ୍ତାମଣିର ଶୁଦ୍ଧ ସଂସ୍କରଣ ପ୍ରଥମେ ପ୍ରକାଶ କରାଗଲା । ଏହି 'ପୋଥିମିଳା' କାମରେ ମୋ ସହଯୋଗ ମଧ୍ୟ ଲୋଡ଼ାହୁଏ । ପାଞ୍ଚସାତ ଜଣଙ୍କ ହାତରେ ଖଣ୍ଡେ ଖଣ୍ଡେ ପୋଥି—ମୋ ହାତରେ ମଧ୍ୟ ଖଣ୍ଡିଏ । ପ୍ରଫେସର ଗୁରୁଚରଣ ମହାନ୍ତି, ପରବର୍ତ୍ତୀ କାଳର ସଫଳ ଲେଖକ ପ୍ରାବନ୍ଧିକ କବି ଜଗଦାନନ୍ଦ ମହାନ୍ତି, ଅମରବଲ୍ଲଭ ଦେ, ବିଚ୍ଛନ୍ଦ ଚରଣ ପଟ୍ଟନାୟକ ପ୍ରଭୃତିଙ୍କ ସହିତ ପୋଥିମିଳା କାମରେ ଏକାଠି ବସିବାର ସୌଭାଗ୍ୟ ମୋର ହୋଇଛି । ଏହି ଶବ୍ଦଟି କବି କେବେହେଲେ ବ୍ୟବହାର କରିନଥିବେ—ପରେ କେହି ବସାଇ ଦେଇଛନ୍ତି ବୋଲି ଯେତେବେଳେ କଥାପଡ଼େ ଶବ୍ଦ ଭାଷା ସାହିତ୍ୟ ସଂପର୍କରେ ବହୁତ କିଛି ଆଲୋଚନା ହୁଏ । ସେ ସବୁ ଆଲୋଚନାର ଶତକଡ଼ା ପଚାଶ ବୁଝିବା ଭଳି ଯୋଗ୍ୟତା ବା ବୌଦ୍ଧିକ ସାମର୍ଥ୍ୟ ମୋର ନଥାଏ । କିନ୍ତୁ ଗୋଟାଏ ଗୋଟାଏ କଥା ମନରେ ରହିଯାଏ । 'ସୁହାସିନୀ' ଶବ୍ଦରୁ କେମିତି 'ଭୁଆସୁଣୀ' ଶବ୍ଦ ଜନ୍ମନେଲା, ମୃଦୁହାସିନୀରୁ ମୁଦୁସୁଲି ଆସିଛି ଇତ୍ୟାଦି କହି ମାମୁଁ ଯେତେବେଳେ ଓଡ଼ିଆ ଭାଷାର ବିଶେଷତ୍ୱ ନେଇ ତନ୍ମୟ ହୋଇ ଯାଆନ୍ତି ସେତେବେଳେ ଅନ୍ୟମାନଙ୍କ ପାଇଁ

ଆଲୋଚନାର ବିଷୟ ବସ୍ତୁ ବେଶ୍ ଉପଭୋଗ୍ୟ ହୋଇଯାଏ । ରହସ୍ୟ ମଧ୍ୟ ହୁଏ । ପରବର୍ତ୍ତୀ ଯୁଗର ଜଣେ ସଫଳ ସାହିତ୍ୟିକ ଜଗବନ୍ଧୁ ମହାପାତ୍ର ମାମୁଙ୍କୁ ଥଟ୍ଟା କରି ହ’ ଗୃହଟା ଶବ୍ଦ ଏମିତି ଭାବରେ କହି ଦିଅନ୍ତି ଯେ ଅନ୍ୟମାନେ ହସନ୍ତି, ମାମୁଁ ମଧ୍ୟ ତାକୁ ବେଶ୍ ଉପଭୋଗ କରି କହିପକାନ୍ତି— ‘ଚୋଉଳ ଚଗଲ୍ କେବଳ କାନମୋଡ଼ା ଖାଇବା ଯୋଗ୍ୟ ।’ ଏହିସବୁ ଆଲୋଚନାର ପରୋକ୍ଷ ପ୍ରଭାବ ମୋ ଉପରେ ପଡ଼ିଥିଲା ଓ ଚତୁର୍ଥ ପଞ୍ଚମ ଶ୍ରେଣୀରେ ମଧ୍ୟ ଭଲ ଓଡ଼ିଆ ଲେଖିଥିଲି । ତା’ ସାଙ୍ଗକୁ ମୋ ମାମୁଁଙ୍କ ବୋଉକୁ ପ୍ରତିଦିନ ପୁରାଣ ପଢ଼ି ଶୁଣାଇବା ଫଳରେ ଭାଷାଉପରେ କିଛି କିଛି ଦଖଲ ହୋଇସାରିଥିଲା । ଅଷ୍ଟମ ନବମ ଶ୍ରେଣୀରେ ଓଡ଼ିଆରେ ଯେ ମୁଁ ଶହେରୁ ଅଶୀ ପଞ୍ଚାଅଶୀ ବା ସମୟେ ସମୟେ ଟିକିଏ ଅଧିକ ନମ୍ବର ରଖି ଦେଇ ପାରୁଥିଲି ତାହାର ଏହି ହେଲା କାରଣ । ଓଡ଼ିଆ ତୁଳନାରେ ଇଂରେଜୀଜ୍ଞାନ ଥିଲା ଅଳ୍ପ । କ୍ଲାସ ପରୀକ୍ଷାରେ ୨୦୦ ନମ୍ବରରୁ ୧୬୦ ରଖିବାଟା କଷ୍ଟ ନ ଥିଲା । କେବଳ ତୁଳନା ପାଇଁ ଗୋଟିଏ ଉଦାହରଣ ଦେଉଛି । ୧୯୮୫-୮୬ ବେଳକୁ ମାଟ୍ରିକ୍ କ୍ଲାସରେ ଇଂରାଜୀ ଅଛି ଶହେ ନମ୍ବର । ସେଥିରୁ ମାତ୍ର କୋଡ଼ିଏ ରଖିଲେ ଜଣେ ପାଶ୍ କରିଯାଉଛି । ପରୀକ୍ଷକଙ୍କୁ ପୁଣି କୁହାଯାଉଛି ଜଣେ ଯଦି ତେର ଚଉଦ ନମ୍ବର ରଖୁଛି ତାକୁ ବଢାଇ କୋଡ଼ିଏ କରିଦିଅ । ଏହି ମାପକାଠି ଥିଲେ ମଧ୍ୟ ହଜାର ହଜାର ପିଲା ଇଂରାଜୀରେ ଫେଲ୍ ହେଉଛନ୍ତି । ସେହିମାନେ ଯେତେବେଳେ କଲେଜକୁ ଯାଉଛନ୍ତି ଓ ବଡ଼ ବଡ଼ ଇଂରାଜୀ ବହି ପଢ଼ିବା ପାଇଁ ପଡୁଛି ସେତେବେଳେ ସେମାନଙ୍କର କି ଦୟନୀୟ ଅବସ୍ଥା ବେଶ୍ ଅନୁମାନ କରାଯାଇପାରେ ।

ଏଇଠି ସ୍ପଷ୍ଟ ଭାଷାରେ ଓ ଭାବରେ ଗୋଟିଏ କଥା କହିଦିଏ । ନ କହିଲେ ଆଜିର ଛାତ୍ରମାନେ ଗୋଟାଏ ଭୁଲ ଧାରଣାରେ ବଶବର୍ତ୍ତୀ ହୋଇଯିବେ । ୧୯୩୦ ଦଶନ୍ଧି ବେଳେ ଆମ କ୍ଲାସରେ ବିଜ୍ଞାନ ପଢ଼ାଯାଉ ନଥିଲା । ମକା ଓ ଶିମ୍ବ ଗଛର ତୁଳନାକର ବୋଲି ଗୋଟିଏ ଅଧ୍ୟାୟ କେଉଁଠି ଥିଲା । ଆଉ ଗୋଟିଏ ବହି ମାଇନର କ୍ଲାସରେ ଥିଲା । ତା’ ନାଁ ‘ଜୀବନ ଆଲୋକ ପରିଚ୍ଛନ୍ନତା’ । ଇଂରାଜୀ ଭାଷରେ ସେହି ଜଣାଶୁଣା ବହି Life, light and cleanlinessର ଏଇଟି ଅନୁବାଦ । ‘ରାଜା ପଚାରିଲେ—

ମନ୍ତ୍ରୀ କହିଲେ' ଏହି ଶୈଳୀରେ କେତେ ଗୁଡ଼ିଏ କଥା କହି ଦିଆଯାଉ ଥିଲା । ରାଜା ପଚାରିଲେ -'ହଇଜା କାହିଁକି ହୁଏ ?' ମନ୍ତ୍ରୀ ଉତ୍ତର ଦେଲେ—ଗୋଟିଏ ଜୀବାଣୁ ଏହି ରୋଗ ଜନ୍ମାନ୍ତି ଏମିତିକା ପାଠ ଆମେସବୁ ମୁଖସ୍ଥ କରି ଦେଉଥିଲୁ ସେ ବହିଟିରୁ । ଜୀବାଣୁ ବୋଇଲେ କଅଣ ବୁଝାଏ ତାହା ବି ଜାଣି ନଥିଲୁ । ଏତିକି ଥିଲା ଆମର ବିଜ୍ଞାନ ଶିକ୍ଷା । ଏବେ ପଞ୍ଚମ ଶ୍ରେଣୀରେ ଯେତିକି ବିଜ୍ଞାନ ପଢ଼ା ଯାଉଛି ଆମ ବେଳେ ଓଡ଼ିଆ ବା ସଂସ୍କୃତରେ ଏମ୍. ଏ. ପଢ଼ିଲାବାଲା ବି ତା' ଜାଣି ନଥିଲେ । ମୋଟ ଉପରେ ପାଠ ବୋଇଲେ ଭାଷା ଜ୍ଞାନକୁହିଁ ବୁଝାଉ ଥିଲା କହିଲେ ଚଳେ । ମାଟ୍ରିକ କ୍ଲାସରେ ଇତିହାସ ଭୂଗୋଳ ପଢ଼ାଯାଉ ଥିଲା । ଅଙ୍କ ଉପରେ ମଧ୍ୟ ଜୋର ଦିଆଯାଉ ଥିଲା । କିନ୍ତୁ ଦଶମ ଏକାଦଶ ଶ୍ରେଣୀରେ ହିଁ ଉପର ସ୍ତରରେ ଅଙ୍କ ଶିକ୍ଷା ଦିଆଯାଉଥିଲା ।

## କହିବାର ଢ଼ଙ୍ଗ ମୂଳରୁ—

ଏହି ସବୁ 'ନୈରାଶ୍ୟ' ଭିତରେ ଗୋଟିଏ ଆଶାର ଆଲୋକ ଦେଖିବାକୁ ପାଇଲି । ସ୍ୱାଧୀନତା ସଂଗ୍ରାମ ଯୁଗରେ ଗୋଟାଏ ବଡ଼ କାମ ଥିଲା ଉତ୍ତେଜନା ପୂର୍ଣ୍ଣ ଭାଷଣ ଦେଇ ଲୋକଙ୍କୁ ମତାଇବା, ବ୍ରିଟିଶ ଶାସନ ଫଳରେ ଦେଶର କି ଦୁର୍ଦ୍ଦଶା ହୋଇଛି ସେ ବିଷୟରେ ନାନା ଭାବରେ କହିବା ଥିଲା ବାହାଦୁରୀ । ଆମେ ସବୁ ବି ସେହିଭଳି ଭାଷଣ ଦ୍ୱାରା ପ୍ରଭାବିତ ହୋଇ ସ୍କୁଲ ପଢ଼ା ଛାଡ଼ି ଦେଇଥିଲୁ । ମହାତ୍ମା ଗାନ୍ଧୀଙ୍କ ଦାଣ୍ଡି ଯାତ୍ରାପରେ ସେ ଏପ୍ରିଲ ୬ ତାରିଖରେ ଲବଣ ଆଇନ ଅମାନ୍ୟ କରି ଗିରଫ ହେଲେ । ଓଡ଼ିଶାରେ ଜାତୀୟ ସପ୍ତାହର ଶେଷ ଦିନ ୧୩ର ତାରିଖରେ ଲୁଣ ଆଇନ ଅମାନ୍ୟ କରାଗଲା ଇଂଚୁଡ଼ିଠାରେ । ଓଡ଼ିଶାର ନେତାମାନଙ୍କୁ ଗିରଫ କରି, ସେମାନଙ୍କ ନାମରେ ମକଦ୍ଦମା କରି ଜେଲ ଭିତରକୁ ସେମାନଙ୍କୁ ପଠାଇ ଦିଆଗଲା । ବାହାରେ ଭଲ ଭାବରେ ଭାଷଣ ଦେବା ପାଇଁ କେହି ନ ଥିଲେ । ଆମ ମାନଙ୍କ ଉପରେ ଦାୟିତ୍ୱ ପଡ଼ିଲା ସେହି କାମ କରିବା ପାଇଁ । ଏବକାର ଛାତ୍ରମାନେ ସଭାସମିତିରେ କହୁଛନ୍ତି, ଛାତ୍ର ଇଉନିୟନ ନିର୍ବାଚନ ବେଳେ ଭାଷଣ ଦେଉଛନ୍ତି । ରାଜନୈତିକ ଦଳ ଗୁଡ଼ିକ ସେମାନଙ୍କ ଭିତରୁ କେତେକଙ୍କୁ ବ୍ୟବହାର କରୁଛନ୍ତି ଓ ସେମାନେ ମୁହଁଫଟା ହୋଇ ଯାଉଛନ୍ତି । ଆମେ ସବୁ ସେଭଳି ସୁଯୋଗରୁ ବଞ୍ଚିତ ଥିଲୁ । ଡିବେଟିଙ୍ଗ

କ୍ଲାସରେ ଯାହାବା କହୁଥିଲୁ । କଥାହେଲା ସଭାରେ ଲିଖିତ ଭାଷଣ ପଢ଼ିବୁ । ଆମେ ଦୁ’ତିନିଜଣ ସେହି କାମ କରି ପାରିବୁ ବୋଲି ବଛାଗଲୁ । ରାଧାନାଥ ରଥ ଗୋଟିଏ ଗୋଟିଏ ‘ଭାଷଣ’ ଡାକି ଦିଅନ୍ତି, ମୁଁ ଲେଖିନିଏ । ସେଇଟିକୁ ନେଇ ସଭାରେ ପଢ଼େ । କ୍ରମେ ପଢ଼ିବା ଢଙ୍ଗଟା ଭଲ ହୋଇଗଲା । ଲୋକେ ପ୍ରଶଂସା କଲେ । ରାଧାନାଥ ବାବୁ ବହୁସଂଖ୍ୟକ ବହି ମେଳାଇ, ସେ ସବୁଥିରୁ ଉଦ୍ଧାର କରି ଡାକନ୍ତି । ନିଜେ ତ ପଢ଼ିବେ ନାହିଁ— ତେଣୁ ବେପରୁଆ ହୋଇ କେତେ କଅଣ କହିଯାଆନ୍ତି । ଏମିତି ଦୁ’ଗୁରିଥର ପଢ଼ିଲା ପରେ ମୋର ଅଭ୍ୟାସ ହୋଇଗଲା । କୌଣସି ଗୋଟାଏ କଥାକୁ ଭଲ ଭାବରେ ବୁଝାଇବା ଦରକାର ପଡ଼ିଲେ ମନରୁ କହିଯାଏ । ଲୋକଙ୍କ ମୁହଁକୁ ଲକ୍ଷ୍ୟ କରି ସେମାନଙ୍କ ମନକୁ ପାଉଛିକି ନାହିଁ ଅନୁମାନ କରିବାଟା ଗୋଟାଏ ସ୍ୱତନ୍ତ୍ର କଳା ବୋଲି ସେ ବୟସରେ ମଧ୍ୟ ଜାଣିଲି । ଶୁଦ୍ଧ ଓ ଶକ୍ତିଶାଳୀ ଭାଷାରେ କହିବାଟା କିଛି ସହଜ କଥା ନୁହେ ।

ଆଉ ଗୋଟିଏ ସୁଯୋଗ ଜୁଟିଗଲା । ଖବରକାଗଜ ଗୁଡ଼ିକ ଉପରେ କଟକଣା ଲଦି ଦିଆଗଲା । ସେମାନେ ସରକାରଙ୍କ ପାଖରେ ଟଙ୍କା ଡିପୋଜିଟ୍ କରିବେ । ଯଦି କୌଣସି ଲେଖାଟିକୁ ସରକାର ରାଜଦ୍ରୋହ ମୂଳକ ବୋଲି ବିଗ୍ଭରିବେ ସେହି ଡିପୋଜିଟ ଟଙ୍କାକୁ ବାଜ୍ୟାପ୍ତ କରି ନେବେ । ଏଭଳି ଆଦେଶର ପ୍ରତିବାଦ କରି ଭାରତର ଅନେକ ସମ୍ବାଦପତ୍ର ପ୍ରକାଶ ବନ୍ଦ କରିଦେଲେ । ଏହାର ଫଳ ହେଲା ଦେଶରେ କେଉଁଠି କଅଣ ହେଉଛି ତାହା ଜନସାଧାରଣ ଜାଣି ପାରିଲେ ନାହିଁ । ସରକାର ଦେଶ-ବ୍ୟାପୀ ଯେଉଁ ଅତ୍ୟାଗ୍ଭର ଚଳାଇ ଥିଲେ । ଯେଉଁ ସବୁ ଗିରଫ କରୁଥିଲେ ସେ ସଂପର୍କରେ ଲୋକେ କେମିତି ଜାଣିବେ ତାହାହିଁ ଥିଲା ସମସ୍ୟା । ଠିକ୍ ହେଲା ହାତଲେଖା ଖଣ୍ଡିଏ କାଗଜ ବାହାର କରାଯିବ । ଏହି କାଗଜଟିକୁ ଗୁପ୍ତରେ ଲିଥୋ କରାଯିବ ଓ ପଇସା ଦୁ’ ପଇସାରେ ବିକ୍ରି କରାଯିବ । ତା’ ନାଁ ରଖାଗଲା ‘ସମ୍ବାଦ’ ସେଥିରେ ଲେଖିଲେ ରାଧାନାଥ ରଥଙ୍କ ଭଳି ଜଣେ ଦୁ’ ଜଣ ନେତା, ଯେଉଁ ମାନଙ୍କ ଭିତରେ ଦେଶପ୍ରେମ ଭରି ରହିଥିଲେ ମଧ୍ୟ ଜେଲଯିବା ପାଇଁ ସେମାନେ ପ୍ରସ୍ତୁତ ନଥିଲେ । ‘ସମ୍ବାଦ’ରେ ଲଗାମ ଛଡ଼ା ଲେଖା ଯିବାରୁ ଲୋକେ ଅତି ଆଗ୍ରହରେ କିଣିଲେ । ଅତି ଗୋପନରେ ଛପାଇବା ଥିଲା ସମସ୍ୟା । ଛପା ହେଲେ ମଧ୍ୟ ଲୋକଙ୍କ

ଭିତରେ ବିକିବା ପାଇଁ ସ୍ୱତନ୍ତ୍ର କୌଶଳର ଆବଶ୍ୟକତା ଦେଖା ଦେଇ ଥାଏ । ଯେତେବେଳେ ଜେଲ ସହର ବାହାରେ ଏହାକୁ ଛପାଇବାର ବ୍ୟବସ୍ଥା କରାଗଲା ସେତେବେଳେ ଜେଲରୁ ଲେଖାନେବା ସବୁସମୟରେ ସମ୍ଭବ ହେଲା ନାହିଁ । ତେଣୁ ଆମେ କେତେଜଣ ଲେଖିଲା ଲୋକଙ୍କ ଭାଷାରେ ଲେଖିବାର ଅଭ୍ୟାସ ସେତିକି ବେଳେ ହେଲା । ସଭାରେ ଭାଷଣ ଦେବା, 'ସମ୍ବାଦ'ରେ ଲେଖିବା—ଏହି ଦୁଇଟି କାମ ମୋତେ ସୁଯୋଗ ଦେଲା ଓଡ଼ିଆ ଭାଷା ଉପରେ କିଛି ଦୂରକୁ ଦଖଲ ଦେବାରେ । କାମର ଭିଡ଼ ଏତେ ପଡ଼ୁଥାଏ ଯେ କୌଣସି ବହି ପଢ଼ିବା ପାଇଁ ସମୟ ମିଳୁ ନ ଥାଏ ।

ଏହିଭଳି ଭାବରେ କଟିଗଲା ପ୍ରାୟ ଆଠମାସ । ୧୯୩୦ ନଭେମ୍ବର ୧୬ ତାରିଖ ଦିନ ଗିରଫ ହେଲି ଓ ନ' ମାସ ସଶ୍ରମ କାରାଦଣ୍ଡ ମିଳିଲା । ବିହାରର ପାଟନାଠାରେ ଯେତେବେଳେ ଗୋଟିଏ କ୍ୟାମ୍ପ ଜେଲରେ ପ୍ରାୟ ପାଞ୍ଚ ହଜାର ବନ୍ଦୀଙ୍କ ସହିତ ରହିଲି ସେତିକି ବେଳେହିଁ ପଢ଼ାପଢ଼ିରେ ମନଦେଲି । ବହୁ ସଂଖ୍ୟକ ଉଚ୍ଚ ଶିକ୍ଷିତ ଲୋକ ଥିଲେ ମୋର ସହବନ୍ଦୀ । ସେମାନେ ଆମକୁସବୁ ପଢ଼ାଇ ଦେଉଥିଲେ । ଇଂରାଜୀ ଏବଂ ହିନ୍ଦୀ ଶିଖିବା ଦିଗରେ ମନ ଦେଲି । ଜଣଙ୍କ ଉପଦେଶ ମୋ ପାଇଁ ଥିଲା ଗୋଟିଏ ବଡ଼ ଆଶୀର୍ବାଦ । ତାଙ୍କ ନାମ ହେଲା ବିନୋଦାନନ୍ଦ ଝା । ପରବର୍ତ୍ତୀ କାଳରେ ସେ ବିହାରର ମୁଖ୍ୟମନ୍ତ୍ରୀ ହୋଇଥିଲେ ଓ ବେଶ୍ ସୁନାମ କରିଥିଲେ । ତାଙ୍କ ପାଖକୁ ଓଡ଼ିଶାର ଆମେ କେତେଜଣ ଯୁବ ଯାଇଥିଲୁ ଆମ ମାନଙ୍କ ଭବିଷ୍ୟତ ବିଷୟରେ ଆଲୋଚନା କରିବା ପାଇଁ । ଆମେସବୁ କହିବାକୁ ଯାଇଥିଲୁ 'ସ୍କୁଲ ଛାଡ଼ିଛୁ ସିନା ପାଠ ଛାଡ଼ିବା ଆମର ଉଦ୍ଦେଶ୍ୟ ନୁହେଁ । ଇଂରାଜୀ ହିନ୍ଦୀ ପଢ଼ିବୁ । କେମିତି କଅଣ କଲେ ଭଲ ଭାବରେ ସେଇ ଦୁଇ ଭାଷା ଶିଖିପାରିବୁ ।' ସେ ଭାରି ଖୁସୀ ହୋଇଗଲେ । ରାମବୃକ୍ଷ ବେଣିପୁରୀ, ଗୋକୁଳାନନ୍ଦ ମହାନ୍ତି, ଜଗନ୍ନାଥ ରଥ ପ୍ରଭୃତି ଭଲ ଇଂରାଜୀ ପଢ଼ାଇ ଦେବେ । ସେ ନିଜେ ପଢ଼ାଇ ଦେବେ ହିନ୍ଦୀ । ଏହି ଭରସା ଦେଲାବେଳେ ସେ କହିଲେ—ଇଂରାଜୀ ପଢ଼, ପଢ଼ିବା ଉଚିତ । କିନ୍ତୁ ମନରୁ ତମ ମାନଙ୍କ ମନରେ ଗୋଟିଏ ସ୍ପଷ୍ଟ କଥା ବସା ବାନ୍ଧିଯାଉ । ଇଂରାଜୀ ଭାଷା ପଢ଼ ଦୁନିଆର ବହୁକଥା ଜାଣିବା ପାଇଁ । ପୃଥିବୀର ସେଇଟି

ଗୋଟିଏ ଜ୍ଞାନ ଭଣ୍ଡାର । ସେଥିରେ ଲେଖାଯାଇ ଥିବା ବହି ପଢ଼ିଲେ ଆମର ଜ୍ଞାନ ବଢ଼ିବ । ସେହି ଜ୍ଞାନ ସାହାଯ୍ୟରେ ଆମେ ନିଜ ନିଜର ଭାଷା ଗୁଡ଼ିକୁ ସମୃଦ୍ଧ କରିବା । ଆମ ଦେଶର ଯେଉଁ କୋଟି କୋଟି ଲୋକ ଇଂରାଜୀ ପଢ଼ିବାର ସୁଯୋଗ ପାଉ ନାହାନ୍ତି ବା ପାଇବେ ନାହିଁ, ସେମାନଙ୍କ ପାଇଁ ଆମେ ଭାରତୀୟ ଭାଷାରେ ବହି ଲେଖିବା । ଏହା କରିବାକୁ ଗଲେ ଇଂରାଜୀ ଭାଷାକୁ ଭଲ ଭାବରେ ବୁଝିବା ଦରକାର । ସେତିକି ହେଲେ ବର୍ତ୍ତମାନ ପାଇଁ କାମ ଚଳିଗଲା । କେମିତି ଭଲ ଇଂରାଜୀ କହିବା ଲେଖିବା—ସେ ଦିଗରେ ଗୁଡ଼ାଏ ମୁଣ୍ଡ ଖେଳାଇବାର ଆବଶ୍ୟକତା ନାହିଁ । ଇଂରାଜୀ ଭଲ ଉଚ୍ଚାରଣ ନକଲେ କେତେକେ ଆମକୁ ମୂର୍ଖ ବୋଲି କହିବେ—ଏଭଳି ଭାବନା ତୁମ ମାନଙ୍କର ମନରେ ନରହୁ । ଇଂରାଜୀଭାଷା ଏଭଳି ଭାବରେ ଶବ୍ଦ ସମୃଦ୍ଧ ଯେ ବହୁ ପରିଶ୍ରମ ନକଲେ ସେ ଭାଷାରେ ଲେଖା ଯାଇଥିବା ଅନେକ ବହିକୁ ଆମେ ପଢ଼ି ବୁଝି ପାରିବା ନାହିଁ । ଜେଲ୍ ଭିତରେ ବହୁ ସଂଖ୍ୟକ ବହି ବନ୍ଦୀ ମାନଙ୍କ ପାଖରେ ଅଛି । ସେଗୁଡ଼ିକୁ ପଢ଼ । ଯେଉଁଠି ବୁଝି ନପାରୁଛ ଅନ୍ୟମାନଙ୍କ ସାହାଯ୍ୟ ନିଅ । କ୍ରମେ ଭଲ ଇଂରାଜୀ ଶିଖିଯିବ । ଗଙ୍ଗା ଶରଣ ସିଂହ ମଧ୍ୟ ସେହିମର୍ମରେ ବୁଝା- ଇଲେ । ମୋ ମନକୁ ଏହି କଥା ପାଇଲା । ଇଂରାଜୀ ବୁଝିବାଟା ବଡ଼କଥା, ଲେଖିବା କହିବା ବା ଉଚ୍ଚାରଣ କରିବା ସେଭଳି କିଛି ଗୁରୁତ୍ୱ ପୂର୍ଣ୍ଣ ନୁହେଁ —ଯଦିଓ ସବୁତକ ଆୟତ୍ତ କରିପାରିଲେ ଆହୁରି ଭଲ । ସେଭଳି କରିବାକୁ ମୋ ହାତରେ ସମୟ ନାହିଁ—ଜେଲ୍ ବାହାରକୁ ଗଲେ ମାତ୍ରେ ନାନା କାମ ଲାଗିଯିବ ।

କ୍ୟାମ୍ପ ଜେଲ ଭିତରେ ବରାବର କିଛି ନା କିଛି ଗୋଳମାଳ ଲାଗି ଥାଏ—କର୍ତ୍ତୃପକ୍ଷଙ୍କ ସହିତ । ଏହା ବାଦେ ଟିକିଏ ଟିକିଏ ପାଟିଭୁଣ୍ଡ ହୁଏ ପରସ୍ପର ଭିତରେ । କିଏ ବଡ଼ କ ସିଏ ବଡ଼—ପାଟି ଭୁଣ୍ଡ ହେବାର କାରଣ ହୋଇଉଠେ । କିଏ ଅଧିକ ଅଗ୍ରଗାମୀ—କିଏ ଟିକିଏ ନରମା— ଏଇଟା ମଧ୍ୟ ଆଲୋଚନାର ବିଷୟ । ଅତି ସାମାନ୍ୟ କଥାରେ ଥରେ ଥରେ ବ୍ୟକ୍ତିଗତ କଳି । ତା ଭିତରେ ଚାଲିଥାଏ ପଢ଼ାପଢ଼ି । ଜଣେ କହିଲେ— ବ୍ୟକ୍ତିଗତ ଭାବରେ ଯିଏ ଯାହା ପଢ଼ୁଛନ୍ତି ପଢ଼ନ୍ତୁ । ମିଳିତ ଭାବରେ ମଧ୍ୟ କିଛି ପଢ଼ାଯାଉ । ଜଣଙ୍କ ପାଖରେ ମାକସିମ ଗର୍କୀଙ୍କ ‘ମଦର’ ବହିଖଣ୍ଡିକ

ଥିଲ । ୧୯୨୦ ଏକୋଇଶ ବେଳେ ରୁଷରେ କମିଉନିଜମର ପ୍ରତିଷ୍ଠା ହେଲାଣି ବୋଲି ଭାରତର ଅଗ୍ରଗାମୀ ଚିନ୍ତାର ଶିକ୍ଷିତ ଲୋକଙ୍କ ଭିତରେ ଗୋଟାଏ ଚହଳ ପଡ଼ିଯାଇଥିଲା । ୧୯୩୦ ବେଳକୁ ତାହାର ପ୍ରଭାବ ଅକ୍ଷୁନ୍ନ ଥାଏ । 'ମଦର Mother) ବହିରେ ଗର୍କୀ ଦଳିତ ଶୋଷିତ ଶ୍ରମିକର ଜୀବନକୁ ଏଭଳି ଜୀବନ୍ତ ଭାଷାରେ ବର୍ଣ୍ଣନା କରିଥାଆନ୍ତି ଯେ ସେ ଖଣ୍ଡିକ ପଢ଼ିଦେଲେ ଶରୀର ଭିତରେ ଗୋଟାଏ ଶିହରଣ ଖେଳିଯିବ ବୋଲି ତାଙ୍କୁ ପଢ଼ିଲା ବାଲା କହିଲେ । ଆମେ ପ୍ରାୟ ଶହେଜଣ ଏକାଠି ବସିଲୁ । ଓଡ଼ିଶାର ଗୋକୁଳାନନ୍ଦ ମହାନ୍ତି ବିହାରର ରାମବୃକ୍ଷ ବେଣିପୁରୀ ଓ ଆଉ ଚାରି ପାଞ୍ଚଜଣ ଆମ ସହିତ ବସି ରୁଷର ଲୋକେ କିଭଳି ଭାବରେ ଜାରଙ୍କ ଦ୍ୱାରା ଅତ୍ୟାଚରିତ ହେଉଥିଲେ, ଲେନିନଙ୍କ ନେତୃତ୍ୱରେ ରୁଷ ଲୋକେ କିଭଳି ବିପ୍ଳବ କଲେ ତାହାର ବର୍ଣ୍ଣନା ସେମାନେ ବଲ୍‌ଷ୍ଟୟ ଗର୍କୀଙ୍କ ଲେଖାସବୁ କିଭଳି ଭାବରେ ରୁଷର ଶିକ୍ଷିତ ଜନ ସାଧାରଣଙ୍କ ମନକୁ ଧୀରେ ଧୀରେ ବିପ୍ଳବ ପାଇଁ ପ୍ରସ୍ତୁତ କରିଦେଲା—ସେ ସବୁ ବିଷୟରେ ସେମାନେ ଚମତ୍କାର ଭାବରେ ବର୍ଣ୍ଣନା କଲେ । ମୁଁ ଯେ ସେମାନଙ୍କର ସବୁକଥା ଭଲ ଭାବରେ ବୁଝିପାରୁଥାଏ—ଏହା କହିଲେ ଅତିରଞ୍ଜନ ହେବ । ଆଠପଣିଆ ବାର ପଣିଆ ବୁଝୁଥାଏ । ଯେତିକି ବୁଝୁଥାଏ ସେତିକି ମୋ ମନରେ ଉତ୍ସାହ ସୃଷ୍ଟି କରିବା ପାଇଁ ଯଥା ଇଷ୍ଟ ଠାରୁ ଅଧିକ । ବଡ଼ମାନେ ପଢ଼ିଲେ—ଆମେ ଶୁଣିଲୁ । ପଢ଼ାହୁଏ, କଥାଟାର ପ୍ରାସଙ୍ଗିକତା ବିଷୟରେ ବୁଝାଇ ଦିଆଯାଏ । କେହିଜଣେ କହିଲେ—ଏଇସବୁ ଅଳ୍ପ ବୟସର ପିଲାଏ ନିଜେ ନିଜେ ପଢ଼ିଲେ ଭଲ ହେବ । ଇଂରାଜୀ ଉଚ୍ଚାରଣ ସାଙ୍ଗକୁ ପଢ଼ିବାରୁ ଜଣାପଡ଼ିଯିବ ଜଣେ କେତେ ଦୂରକୁ ବିଷୟବସ୍ତୁକୁ ବୁଝୁଛି । ଜଣକେ ୧୫ ମିନଟ ଲେଖାଁ ପଢ଼ିବେ । ମୋ ପାଳି ପଡ଼ିଲେ ମୁଁ ଜାଣିପାରେ କି କି ଶବ୍ଦର ଅର୍ଥ ବୁଝି ପାରୁଛି—କେତେ ଦୂରକୁ ବୁଝୁଛି । କେହି କେହି ବତାଇ ଦିଅନ୍ତି—ଇଂରାଜୀ ଭାଷାର ଗୋଟିଏ ଗୋଟିଏ ଶବ୍ଦ ଭିତରେ ସେ ଜାତିର ଲେଖକ କବିମାନେ କିଭଳି କଅଣ ଅର୍ଥ ନୂତନ ଅର୍ଥ ସବୁ ଭରି ଦେଇଥାନ୍ତି । ଜଣେ ପଚାରି ଦେଲେ 'ଆପ୍ରିସିଏଟ' ଶବ୍ଦର ଅର୍ଥ କଅଣ ? ଅନ୍ୟମାନଙ୍କ ସହିତ ମିଶି ମୁଁ ଉତ୍ତର ଦେଲି—ପସନ୍ଦ କରିବା ଭଲ ବୋଲି କହିବା । ଜଣେ ଆଉ ଟିକିଏ କଅଣ କହିଲେ । କିନ୍ତୁ ଗୋକୁଳ ବାବୁ ବୁଝାଇଦେଲେ—ହଁ, ସେ ଅର୍ଥ ତ ଅଛି । ପସନ୍ଦ ବା ଭଲ

ବୋଲି ନକହି କେବଳ ବୁଝିବା ଅର୍ଥରେ ମଧ୍ୟ ତାହାର ବ୍ୟବହାର ଅଛି । ସେ ଦିନ ଲାଲ ବିହାରୀ ବାବୁଙ୍କୁ (ପଟ୍ଟନାୟକ) ରାଜେନ୍ଦ୍ର ପ୍ରସାଦଙ୍କଠାରୁ ଉତ୍ତର ଖଣ୍ଡେ ପାଇ କହୁଥିଲେ---'ସେ ମୋ କଥାକୁ ସମର୍ଥନ କରୁଛନ୍ତି, ମୋ ସହିତ ଏକମତ ହେଉଛନ୍ତି ? ତାଙ୍କୁ ମୁଁ ଯେତେବେଳେ କହିଲି—ସେ ତ କେବଳ ଏତିକି ଲେଖିଛନ୍ତି ଯେ I have no difficulty in apprecеating. what you want to canvey I am thinking what could be done. ଏହାର ଅର୍ଥ ହେଲା ଆପଣଙ୍କ କଥା ସେ ବୁଝିପାରିଲେ । ସମର୍ଥନ କରିବା ବା ଏକମତ ହେବା ଅର୍ଥ ଏହା ଭିତରେ ନିହିତ ଅଛି ବୋଲି କେମିତି କୁହାଯିବ ? ସେ ମୋ ଉପରେ ରାଗିଗଲେ । ତାଙ୍କ କଥା ମୋ ମନକୁ ପଛିଲା । ଏତିକି ଜାଣିଗଲି—ଗୋଟିଏ ଶବ୍ଦ ଭିତରେ କ କ ଅର୍ଥ ଆଇପାରେ ସେ ବିଷୟରେ ସଠିକ ଧାରଣା ରଖିବା ଉଚିତ । ନହେଲେ ଠିକ ଏ ଅଡୁଆ ହୋଇଯିବ କଥାଟାର ମର୍ମ ବୁଝିବାରେ । ଏହି ଲାଲ ବିହାରୀ ପଟ୍ଟନାୟକ ଥିଲେ ମାନ୍ଦ୍ରାଜ ସରକାରଙ୍କର ଅଧୀନରେ ଜଣେ ଶିକ୍ଷା ବିଭାଗ କର୍ମଚାରୀ । ତାଙ୍କ ଦେଶପ୍ରୀତି ଅପରାଧ ଯୋଗୁଁ ଚାକିରିଟି ଗଲା ଓ ସେ ଓଡ଼ିଶାକୁ ଫେରି ଆସି ପାଟନା କ୍ୟାମ୍ପ ଜେଲରେ ବନ୍ଦୀ ଭାବରେ ଥାଆନ୍ତି । ରାଜେନ୍ଦ୍ର ପ୍ରସାଦଙ୍କୁ ସମସ୍ତେ ତ ଜାଣନ୍ତି । ଜେଲ ଭିତରେ ଆମେମାନେ କେତେକ କାମ କରୁଥିଲୁ ଯାହାକି ଲାଲ ବିହାରୀ ବାବୁ ପସନ୍ଦ କରୁନଥିଲେ । ଆବଶ୍ୟକତା ଠାରୁ ଅଧିକ ମତଗତ ପ୍ରଶ୍ନ ସବୁ ଉଠାଇ ସେ ଆମ ମାନଙ୍କ ଉପରେ ରାଗନ୍ତି ବା କ୍ଷୁବ୍ଧ ହୁଅନ୍ତି । ଜେଲ ଭିତରେ ବହୁତ କିଛି ଗୋଳମାଳ ହେବାରୁ ବିହାର ଓଡ଼ିଶା ଗଭର୍ଣ୍ଣର ରାଜେନ୍ଦ୍ର ବାବୁଙ୍କ ଅନୁରୋଧ କରିଥିଲେ ଜେଲ ଭିତରକୁ ଯାଇ ଆମକୁସବୁ ବୁଝାଇ ସୁଝାଇ ଗୋଟାଏ ଶାନ୍ତିର ବାୟୁମଣ୍ଡଳ ସୃଷ୍ଟି କରନ୍ତୁ । ଜେଲ କର୍ତ୍ତୃପକ୍ଷ ଓ ବନ୍ଦୀମାନଙ୍କ ଭିତରେ ଗୋଟାଏ ମିଳାମିଶା ହୋଇଯାଉ ଓ ପାଞ୍ଚହଜାର ବନ୍ଦୀ ଶାନ୍ତିରେ ରହନ୍ତୁ । ସହବନ୍ଦୀମାନେ କେମିତି କେତେକ କ୍ଷେତ୍ରରେ ଅନ୍ୟାୟ କାମ କରୁଛନ୍ତି ତାହାହିଁ ବୁଝାଇ ଲାଲ ବିହାରୀ ବାବୁ ତାଙ୍କ ପାଖକୁ ଖଣ୍ଡେ ଚିଠି ଲେଖିଥିଲେ ଓ ରାଜେନ୍ଦ୍ରବାବୁ ତାହାର ଉତ୍ତର ଉପରୋକ୍ତ ମର୍ମରେ ଦେଇ ଥିଲେ । କିଛିଦିନ 'ମଦର' ବହି ପଢ଼ାହେଲା ପରେ ଆବଟଙ୍କ ଦ୍ୱାରା ଲିଖିତ ନେପୋଲିଅନଙ୍କ ଜୀବନୀ ପଢ଼ାହେଲା (Abbot'is life of Napolean) ଘରଭିତର ଶିକ୍ଷିତ ଲୋକେ

ନେପୋଲିୟନଙ୍କ ବିଷୟରେ ବେଶ କିଛି ଆଗ୍ରହ ଦେଖାଉ ଥାଆନ୍ତି । କାରଣ ସେ ଥିଲେ ବ୍ରିଟେନର ଶତ୍ରୁ । ତାଙ୍କ ବୀରତ୍ୱର ଭୂରି ଭୂରି ପ୍ରଶଂସା ହେଉଥାଏ । ସେଭଳି ଜଣେ ବୀରଙ୍କୁ ଇଂରେଜମାନେ କିଭଳି ବିଶ୍ୱାସ ଘାତକତା କରି ପରାସ୍ତ କଲେ ଓ ସେଣ୍ଟ-ହେଲେନା ଦ୍ୱୀପରେ ନିର୍ବାସିତ କରି ରଖି ମାରିଲେ ଇତ୍ୟାଦି ବିଷୟରେ ଆଲୋଚନା ହେଉଥାଏ । ନେପୋଲିୟନ କହୁଥିଲେ ତାଙ୍କ ଅଭିଧାନରେ 'ପରାଜୟ' ବୋଲି ଗୋଟାଏ ଶବ୍ଦ ନାହିଁ । ଆବଟ ଲେଖିଥିଲେ ଜଣେ ନେପୋଲିୟନଙ୍କୁ ସୃଷ୍ଟି କରିବାକୁ ଯାଇ ପ୍ରକୃତି ତା'ହାର ସମସ୍ତ ଶକ୍ତି ବ୍ୟୟ କରିଦେଲା — Nature has exhausted all her energies in producing one Bonaparte. ପରବର୍ତ୍ତୀ କାଳରେ ଏଇଟି ଗୋଟିଏ ନିଛକ ଅତିରଞ୍ଜନ ବୋଲି ଜାଣିଲେ ମଧ୍ୟ ସେ ବୟସରେ ଏହାକୁ ମୁଖସ୍ତ କରି ଦେଇଥିଲୁ । ପ୍ରାୟ ଦୁଇ ଅଢ଼େଇ ଶହ ଯୁବକ ଗୋଟିଏ ଏକାଠି ବସି ପଢ଼ୁ । ସ୍କୁଲରେ ଇଡ଼ିଙ୍ଗ ଗୋଟାଏ ପାଠ ଥିଲେ ମଧ୍ୟ ଦୁ' ଘଣ୍ଟା ଧରି ପଢ଼ିବା ଓ ଟିକିଏ ଭୁଲ ହେଲେ ଗାଳି ଖାଇବା ଅଭିଜ୍ଞତା ହୋଇ ନଥିଲା ।

ଏହି ଜେଲରେ ପ୍ରଥମେ ହିନ୍ଦୀ ପଢ଼ିଲି । ଦେବ ନାଗରୀ ଲିପି ଚିହ୍ନିଲି । ଏହି ଲିପି ନ ଚିହ୍ନି ସ୍କୁଲରେ ସଂସ୍କୃତ କେମିତି ପଢ଼ାହୁଏ— ଏଇଟା ଥାଏ ବିହାରର ଅନେକଙ୍କ ପାଇଁ ବିସ୍ମୟ । ସେମାନେ ଯେତେବେଳେ ଜାଣିଲେ ଓଡ଼ିଆ ଲିପି ସାହାଯ୍ୟରେ ଆମେ ସବୁ ସଂସ୍କୃତ ପଢ଼ୁ ଓ ଲେଖୁ— ଟିକିଏ ହସନ୍ତି । ହିନ୍ଦୀ ପଢ଼ୁଥିଲେ ମଧ୍ୟ ଜୋର ଦେଇଥିଲି ଇଂରାଜୀ ଉପରେ । ୧୯୮୭ ଫେବୃୟାରୀ ମାସରେ ଭାରତ ସରକାରଙ୍କ ତରଫରୁ ଯେଉଁ ସେମିନାର ନେଶନାଲ ବୁକ ଟ୍ରଷ୍ଟ କଲେ ସେଥିକୁ ମୁଁ ନିମନ୍ତ୍ରିତ ହୋଇଥିଲି । 'ଜାତୀୟ ପୁସ୍ତକ ନୀତି' ଉପରେ ଥିଲା ସେମିନାର । ଅଖିଳ ଭାରତୀୟ ହିନ୍ଦୀ ପ୍ରକାଶକ ସଂଘ ଆମ ସମସ୍ତଙ୍କୁ ରାତ୍ରି ଭୋଜନରେ ଆପ୍ୟାୟିତ କରିଥିଲେ । ଉଭୟ ପୂର୍ବରୁ ପ୍ରତିନିଧିମାନଙ୍କ ତରଫରୁ କାନ୍ତ ଚୌଧୁରୀ ଓ ମୁଁ ଭାଷଣ ଦେଇଥିଲୁ । ଚୌଧୁରୀ ବେ ଧରୁଏ ଭଲ ହିନ୍ଦୀ ଜାଣନ୍ତି ନାହିଁ । ସେ ଆଠ ଦଶଟି ବାକ୍ୟ କହିଲା ପରେ ବନ୍ଦ କରିଥିଲେ । କେଉଁ ପରିସ୍ଥିତିରେ କେଉଁଠାରେ ଓ କାହାଙ୍କଠାରୁ ମୁଁ ହିନ୍ଦୀ ଶିଖିଥିଲି—ବର୍ଣ୍ଣନା କଲାବେଳେ ସମସ୍ତଙ୍କୁ ଟିକିଏ ମଜା ଲାଗିଲା ।

ସେତିକବେଳେ ଯେତିକ ସ୍ୱାଧୀ ମୂଳଧନ ଥ ଇଥିଲ ସେତକ ଆଜ ମଧ ମୋର ସମ୍ବଳ ।

ଇତିହାସ ଏବଂ ଅର୍ଥନୀତି ଉପରେ ବହୁ ସମୟ ଧରି ଭାଷଣ ହୁଏ । ଦଶଟାରେ ପର୍ଯ୍ୟନ୍ତ ଯୁବକ ବସି ଯାନ୍ତି । ଜଣେ ଜଣେ କହୁଥାଆନ୍ତି ଇଂରେଜ ମାନେ କେଉଁ ପରିସ୍ଥିତିରେ ଏ ଦେଶର ମାଲିକ ହୋଇଗଲେ ଓ ମାଲିକ ହେଲା ପରେ କିଭଳି ଭାବରେ ବିଜ୍ଞାନସମ୍ମତ ପ୍ରଣାଳୀରେ ଶୋଷଣ କରିବା ପାଇଁ ଲାଗିଲେ । ସେହି ଶୋଷଣ ଆମ ଅର୍ଥନୈତିକ ମେରୁଦଣ୍ଡକୁ ବଙ୍କା କରିଦେଲା । ଶୋଷଣର ବୋଝ ସମ୍ଭାଳି ନ ପାରି ବହୁ କ୍ଷେତ୍ରରେ ମେରୁଦଣ୍ଡ ଭାଙ୍ଗିଗଲା । ପ୍ରକୃତ ଇତିହାସକୁ ବିକୃତ କରି ଆମ ଦେଶରେ ସ୍କୁଲ କଲେଜର ପାଠ୍ୟ ପୁସ୍ତକ ସବୁ ଲେଖାଗଲା । ଏଭଳି କୌଶଳର ସହିତ ଇତିହାସ ସବୁ ଲେଖାହେଲା ଯେ ଆମ ଭିତରେ ହୀନମନ୍ୟତା ଭରିଗଲା । ପାଶ୍ଚାତ୍ୟ ଜଗତର ସଂସ୍କୃତି ଚାଲିଚଳଣି ଧର୍ମ ଆମ ତୁଳନାରେ କେତେ ମହତ କେତେ ଉଚ୍ଚ ସେ କଥାଟିକୁ ନାନା ଭାବରେ ଲେଖାଗଲା । ଯେଉଁମାନେ କଲେଜରେ ସେହିସବୁ ବିଷୟକୁ ଭଲ ଭାବରେ ଲେଖି ପାରିଲେ ସେମାନେ ଭଲ ପାଠ ପଢ଼ିଛନ୍ତି— ଏହା ବିଶ୍ୱାସ କରିବା ପାଇଁ ଏ ଜାତିଟାକୁ ବାଧ୍ୟ କରାଗଲା । ଇଂରାଜୀ ଭାଷା ଶିଖିବାକୁ ବାଧ୍ୟ କରି ଭାରତୀୟମାନଙ୍କୁ ସତେ ଯେପରି ବୁଝାଇ ଦିଆଗଲା ଯେ ଭାରତୀୟ ଭାଷାଗୁଡ଼ିକ ଆଦୌ ସମୃଦ୍ଧ ନ ହୋଇ ଥିବାରୁ ଭାବ ପ୍ରକାଶ ପାଇଁ ଅସମର୍ଥ । ତିଳକ ଗାନ୍ଧୀ ରବୀନ୍ଦ୍ରଙ୍କ ଯୁଗ ଆରମ୍ଭ ହେଲା ପର୍ଯ୍ୟନ୍ତ ଶିକ୍ଷିତ ଭାରତୀୟମାନଙ୍କ ମନରେ ଦୃଢ଼ ଧାରଣା ଜନ୍ମାଇ ଦିଆଯାଇଥିଲା ଯେ ଭାରତୀୟ ଭାଷା ମାଧ୍ୟମରେ ବିଜ୍ଞାନର ଅସଲ ତତ୍ତ୍ୱ ଗୁଡ଼ିକ ପ୍ରକାଶ ତ କରାଯାଇ ପାରିବ ନାହିଁ— ଏପରିକି ଅର୍ଥନୀତି ରାଜନୀତି ବିଜ୍ଞାନର ସବୁକଥା କହିବା ପାଇଁ ଭାରତୀୟ ଭାଷା ଗୁଡ଼ିକର ସାମର୍ଥ୍ୟ ନାହିଁ ଏହିସବୁ ଉପରେ ଜେଲରେ ଘଣ୍ଟା ଘଣ୍ଟା ଧରି ଭାଷଣ ହୁଏ —ଆମେ ଶୁଣୁ । ମଝିରେ ମଝିରେ ଆମକୁ ପୁଛାଯାଏ କ'ଣ ବୁଝିଲୁ ସେ ବିଷୟରେ କହିବା ପାଇଁ । କିଏ ଭଲ କହୁଛି ପରୀକ୍ଷା କରାଯାଏ । ବହୁ ସଂଖ୍ୟକ ବହି ବନ୍ଦୀ-ମାନଙ୍କ ପାଖରେ ଥାଏ । ସେ ସବୁ ପଢ଼ି ନିଜ ନିଜକୁ ପ୍ରସ୍ତୁତ କରି ସଭାକୁ ଯାଉ । ଏଭଳି ପ୍ରସ୍ତୁତି ମୋର ବହୁତ କିଛି ଉପକାର କଲା । ଭାଷା ଶିଖିବା ସଙ୍ଗେ ସଙ୍ଗେ ଅନେକ କିଛି ଜାଣିଗଲି । ଯେତେ ଜାଣୁଥାଏ

ତାହାଠାରୁ ଅଧିକ ଜାଣିବାର ବ୍ୟାକୁଳତା ମୋତେ ଗୋଟାଏ ପ୍ରକାରର ନୂତନ ଆନନ୍ଦ ଦେଉଥାଏ ।

ନଅମାସ ଜେଲଦଣ୍ଡରୁ ପ୍ରାୟ ଛତିଶ ଦିନ କଟିଯିବ—ରବିବାର ଗୁଡ଼ିକ । ବାକିତକ ସମସ୍ତ ପଢ଼ାପଢ଼ି ହେଲେ ବହୁତ କିଛି ଜାଣି ହୋଇ ଯିବ—ଯାହାକି ସ୍କୁଲ୍ କଲେଜରେ ଦୁଇବର୍ଷ ପଢ଼ି ମିଳି ନଥାନ୍ତା—ଏଇ ଥିଲା ହିସାବ । ସେହି ଅନୁସାରେ ପରିକଳ୍ପନା । କିନ୍ତୁ ୧୯୩୦ ଫେବୃୟାରି ଶେଷ ବେଳକୁ ଶୁଣାଗଲା ଅଳ୍ପ କେତେଦିନ ପରେ ଆମେ ସମସ୍ତେ ଖଲାସ ହୋଇ ଯାଇପାରୁ । ବ୍ରିଟିଶ ସରକାର ଭାରତକୁ ଆଂଶିକ କ୍ଷମତା ହସ୍ତାନ୍ତର କରିବାକୁ ଇଚ୍ଛା କରୁଛନ୍ତି, ଭାରତର ଯେଉଁମାନେ ପ୍ରତିନିଧି ସ୍ଥାନୀୟ ବ୍ୟକ୍ତି ସେମାନଙ୍କୁ ଡକାଇ ବିଲାତରେ ଗୋଟିଏ ଗୋଲଟେବୁଲ ବୈଠକ କରାଇବେ; ସେହିମାନଙ୍କ ମତ ନେଇ ଗୋଟିଏ ଶାସନ ଖସଡ଼ା ପ୍ରସ୍ତୁତ କରିବେ । ଗାନ୍ଧୀ ଓ କଂଗ୍ରେସର ହଜାର ହଜାର ଲୋକଙ୍କୁ ଜେଲରେ ରଖି ଗୋଲଟେବୁଲ ବୈଠକରେ ଆଲୋଚନା ଚାଲିବ । ଯେଉଁମାନଙ୍କର ଏ ଦେଶରେ ଲୋକଙ୍କ ଭିତରେ ଆଦୌ ଚେର ଲାଗି ନାହିଁ ସେହିଭଳି କେତେଜଣଙ୍କୁ ଡକା ଯାଇଥାଏ । ସରକାର ଯାହା କହିବେ ସେଇଥିରେ ସେମାନେ ହଁ ମାରିବେ । ସେମାନେ 'ହାଁ ଜୀ' ଲୋକ ବୋଲି କୁହାଯାଉ ଥାଏ । ହରିଜନମାନଙ୍କ ନେତା ଆମ୍ବେଦକର ଓ ମହମ୍ମଦ ଅଲ୍ଲୀ ଜିନ୍ନାଙ୍କୁ ବାଦ୍ ଦେଲେ ପ୍ରକୃତ ଅର୍ଥରେ ଲୋକଙ୍କ ମତର ପ୍ରତିନିଧିତ୍ୱ କରୁଥିବା ଆଉ ସେଭଳି କେହି ନଥିଲେ ବୋଲି କୁହାଯାଇପାରେ । ବଡ଼ ବଡ଼ ଓକିଲ ରାଜା ମହାରାଜା ଜମିଦାର ପ୍ରଭୃତିଙ୍କର ପ୍ରାଧାନ୍ୟ ହୁଏ ତ ଥାଇପାରେ—କିନ୍ତୁ ସେମାନେ କୌଣସି ହେଲେ ଅର୍ଥରେ ଭାରତର କୌଣସି ଗୋଷ୍ଠୀର ପ୍ରତିନିଧି ନଥିଲେ । ବୈଠକରେ କିଛିଦିନ ଆଲୋଚନା ପରେ ଖୋଦ ବ୍ରିଟିଶ ସରକାର ଓ ତାଙ୍କ ସାଙ୍ଗକୁ ପ୍ରତିନିଧି ଭାବରେ ଯାଇଥିବା ଅଧିକାଂଶ ଲୋକ ଅନୁଭବ କଲେ ଯେ ଗାନ୍ଧୀ ଓ ତାଙ୍କ ଜରିଆରେ କଂଗ୍ରେସକୁ ଏହି ବୈଠକକୁ ନ ଡାକିଲେ ଯେଉଁ ସବୁ ନିଷ୍ପତ୍ତି ଗ୍ରହଣ କରାଯିବ ସେଗୁଡ଼ିକର କିଛି ମୂଲ୍ୟ ନାହିଁ—କାରଣ ସେଥିରେ ଭାରତର ଜନ ସାଧାରଣ ସନ୍ତୁଷ୍ଟ ହେବେନାହିଁ ଓ ଗଣ୍ଡଗୋଳ ଲାଗି ରହିଥିବ । ଏଇଭଳି ଚିନ୍ତାର ପରିଣତି ସ୍ୱରୂପ ଭାରତର ବଡ଼ଲାଟ ଓ ଗାନ୍ଧୀଙ୍କ ଭିତରେ ଗୋଟାଏ ଅସ୍ଥାୟୀ ଚୁକ୍ତି ସ୍ୱାକ୍ଷରିତ ହେଲା ଓ ଗାନ୍ଧିଜୀ

ବଲାତକୁ ଯାଇ ଗୋଲଟେବୁଲ ବୈଠକରେ ଯୋଗ ଦେବେ । ଚୁକ୍ତି ବା ଅସ୍ଥାୟୀ ସନ୍ଧି (ଟ୍ରୁସ୍)ରେ ଗୋଟିଏ ଦଫା ଥିଲା ବନ୍ଦୀ ହୋଇଥିବା ସତ୍ୟାଗ୍ରହୀ ମାନଙ୍କୁ କାରାମୁକ୍ତ କରି ଦିଆଯିବ । ସେହି ଅନୁସାରେ ୧୯୩୧ ମାର୍ଚ୍ଚରେ ଆମେ ସବୁ ଜେଲମୁକ୍ତ ହୋଇଗଲୁ ।

## ଉଲ୍ଲାସ ଉନ୍ମାଦନା ଭିତରେ ପଡ଼ା

ଏହି ଟ୍ରୁସ ବା ଗାନ୍ଧୀ ଆରୱିନ୍ ସନ୍ଧିବେଳେ ଓଡ଼ିଶାର ସ୍ଥାନ ସତ୍ୟାଗ୍ରହୀ ଯୁବକ ସତ୍ୟାଗ୍ରହୀ ମାନଙ୍କୁ ଗୋଟିଏ ଅପ୍ରତ୍ୟାଶିତ ସୁଯୋଗ ମିଳିଗଲା—ନିଜର ବୌଦ୍ଧିକ ପୁଞ୍ଜିକୁ ବଢ଼ାଇବା ପାଇଁ । କରାଚୀଠାରେ ସର୍ଦ୍ଦାର ପଟେଲଙ୍କ ସଭାପତିତ୍ୱରେ କଂଗ୍ରେସର ସାଧାରଣ ଅଧିବେଶନ ବସି ଗାନ୍ଧୀ ଆରୱିନ୍ ସନ୍ଧିକୁ ସମର୍ଥନ ଜଣାଇଲା । ଦେଶରେ ନୂତନ ଉନ୍ମାଦନା ଉଲ୍ଲାସ । ସ୍ୱରାଜ୍ୟ ପାଇଁ ପଥ ଉନ୍ମୁକ୍ତ ହୋଇଗଲା । ନୂତନ ଭାରତର ରୂପରେଖ ପ୍ରକାଶ ପାଇବ ପରବର୍ତ୍ତୀ କଂଗ୍ରେସ ଅଧିବେଶନରେ । ଭାରତର ବହୁ ପ୍ରଦେଶ ଏହି ଅଧିବେଶନ ବସାଇବାକୁ ନିମନ୍ତ୍ରଣ କରି ଥାଆନ୍ତି । ଓଡ଼ିଶାର ପ୍ରତିନିଧିମାନେ ଆଶା କରି ନଥିଲେ ଯେ ସେମାନଙ୍କ ନିମନ୍ତ୍ରଣ ରକ୍ଷା କରାଯିବ । କିନ୍ତୁ ଠିକ ହେଲା ଯେ ଓଡ଼ିଶାରେ ହିଁ ୧୯୩୧ ର କଂଗ୍ରେସ ଅଧିବେଶନ ହେବ । ସମସ୍ତେ ଉତ୍ସାହର ସହିତ କରାଚୀରୁ ଫେରିଲେ । ସ୍ଥାନ ନିରୂପଣ ପାଇଁ ଟିକିଏ ଭିନ୍ନ ଭିନ୍ନ ମତ ପ୍ରକାଶ ପାଇଲା ସତ; କିନ୍ତୁ ଶେଷରେ ଠିକ ହୋଇଗଲା ପୁରୀରେ ଅଧିବେଶନ ବସିବ । ସେମିତି—ଟିକିଏ ଏପାଖ ସେପାଖ ଆଲୋଚନା ପରେ ପଣ୍ଡିତ ନୀଳକଣ୍ଠ ଦାସଙ୍କୁ ଅଭ୍ୟର୍ଥନା ସମିତିର ଚେୟାରମ୍ୟାନ ଓ ହରେକୃଷ୍ଣ ମହତାବଙ୍କୁ ଜ: ଓ: ସି: ଭାବରେ ବଛାଗଲା । ଦୁଇଟି ଗୁରୁତ୍ୱପୂର୍ଣ୍ଣ ସିଦ୍ଧାନ୍ତ ନିଆଗଲା । ଅନ୍ତତଃ ଦୁଇଲକ୍ଷ ଟଙ୍କା ସଂଗ୍ରହ କରିବାକୁ ପଡ଼ିବ । ତାହା ସାଙ୍ଗକୁ ହଜାରେ ଜଣେ ସ୍ୱେଚ୍ଛାସେବକଙ୍କୁ ତାଲିମ ଦିଆଯିବ । ଭଲ ଭାବରେ ତାଲିମ ନ ପାଇଲେ କେତେ ହଜାର ପ୍ରତିନିଧି ଏବଂ ହଜାର ହଜାର ଦର୍ଶକଙ୍କ ଚର୍ଚ୍ଚା ଠିକ ଭାବରେ କରାଯାଇ ପାରିବ ନାହିଁ ।

ତୁରନ୍ତ ସେବାଦଳ ଟ୍ରେନିଙ୍ଗ କ୍ୟାମ୍ପ ଆରମ୍ଭ ହୋଇଗଲା । ବୋମ୍ବେରୁ ତାଲିମ ଦେବାପାଇଁ ଜଣେ ଆସିଥିଲେ ତାଙ୍କ ଧର୍ମପତ୍ନୀଙ୍କ ସହିତ । ପ୍ରଥମ ବ୍ୟାଚରେ ଆମେ ଏକୋଇଶ ଜଣ ଅଫିସର—ଟ୍ରେନିଙ୍ଗ

ପାଇଲି । ନବକୃଷ୍ଣ ଚୌଧୁରୀ, ମାଳତୀ ଦେବୀ ଥାଆନ୍ତି ସେହିମାନଙ୍କ ଭିତରୁ ଜଣେ ଜଣେ । ଖାଁଟି ମିଲିଟାରି ପ୍ରକାର ଟ୍ରେନିଙ୍ଗ ଭଳି ତାଲିମ ଦିଆଯାଉଥିଲା । ଏକା ପ୍ରକାରର ପୋଷାକ । ସମସ୍ତେ କାନ୍ଧରେ ଲଠି ନେଇ କଟକ ସହର ରାସ୍ତାରେ ଘଣ୍ଟାଏ ଅଂଶରେ ଥିବା ବହାଡ଼ବାଗ ଭିତରକୁ ସକାଳେ ଡ୍ରିଲ, ଆସନ, ନମସ୍କାର ତାଲିମ ପାଇଁ ଯାଉ, ପୂରା ଦୁଇଘଣ୍ଟାର ତାଲିମ ପରେ ସ୍ୱରାଜ୍ୟ ଆଶ୍ରମକୁ ଫେରୁ । ଜଳଖିଆ ପରେ ବୌଦ୍ଧିକ ତାଲିମ ଆରମ୍ଭ ହୋଇଯାଏ । ମୁଖ୍ୟତଃ ଭୁଲାଭଣା ଶିଖିବା ଥାଏ ବାଧ୍ୟତାମୂଳକ । ଜଣେ ଜଣେ ବିଶିଷ୍ଟ ଲୋକ ଆସନ୍ତି ନାନା ବିଷୟରେ କହିବା ପାଇଁ । ମହତାବ, ନବବାବୁ, ଗୋପବନ୍ଧୁ ଚୌଧୁରୀ, ଯଦୁମଣି ମଙ୍ଗରାଜ ବିଭିନ୍ନ ବିଷୟରେ କୁହନ୍ତି । ଆମ ଭିତରୁ ପ୍ରାୟ ପ୍ରତ୍ୟେକ କିଛି କିଛି କୁହନ୍ତି— କେତେ ଦୂରକୁ ଆମେ ବକ୍ତାମାନଙ୍କ କଥାକୁ ହଜମ କରି 'ଦେହରେ' ମିଶାଇ ଦେଇଛୁ ତାହାର ପ୍ରମାଣ ଦେବା ପାଇଁ ଭଳି । ଖାଲି ଦ'ଟେ ଇଂରାଜୀ କହିବା ହିନ୍ଦୀ କହିବା ଉପରେ ମଧ୍ୟ ଜୋର ଦିଆଯାଉଥାଏ । ନହେଲେ ସମଗ୍ର ଭାରତରୁ ଆସିଥିବା ପ୍ରତିନିଧି ମାନଙ୍କ ଚର୍ଚ୍ଚା କରିହେବ ନାହିଁ । ମୋର ମନେପଡ଼ୁଛି ଆମକୁ ସବୁ କିଭଳି ଭାଷାଜ୍ଞାନ ଶିକ୍ଷା ଦିଆଯାଉଥାଏ । ସେହି ଅଫିସର ତାଲିମ କ୍ୟାମ୍ପର ଉଦ୍‌ଯାପନ ପରେ ଆମେ ସବୁ ପୁରୀ ଚଳୁ ଅଉ ଦୁଇଟି ବଡ଼ ଦଳକୁ ତାଲିମ ଦେବାପାଇଁ । ସେତେବେଳକୁ ଗୋଲଟେବୁଲ ବୈଠକର ବିବରଣୀ ସବୁ ପ୍ରକାଶ ପାଉଥାଏ । ତିନି ଚାରିକୋଟି ଦୈନିକ କାଗଜ ପ୍ରତିଦିନ ପଢ଼ାଯାଏ । ମହାତ୍ମାଗାନ୍ଧୀଙ୍କ ଭାଷଣଗୁଡ଼ିକୁ ମୁଖସ୍ଥ କରି ପକାଇଲେ ଯଥେଷ୍ଟ ଲାଭ ହେବ ବୋଲି ମୁଁ ସେ ଦିଗରେ ମନ ଦେଇଥାଏ । ସୀମିତ ଇଂରାଜୀ ଜ୍ଞାନ ଥାଏ ପ୍ରଧାନ ପ୍ରତିବନ୍ଧକ । ଇଂରାଜୀ ଜ୍ଞାନ ବଢାଇବାକୁ ସ୍ୱତନ୍ତ୍ର ଉଦ୍ୟମ କରୁଥାଏ । ଖଣ୍ଡିଏ ପକେଟ ଅଭିଧାନ ରଖିଥାଏ ବୋଲି ମୋତେ କେହି କେହି ଥଟ୍ଟା କରନ୍ତି ।

୧୯୩୧ ଶେଷ ବେଳକୁ ଜଣା ପଡ଼ିଗଲାଣି ଯେ ମହାତ୍ମାଗାନ୍ଧୀ ଶୂନ୍ୟ ହସ୍ତରେ ବିଲାତରୁ ଫେରିବେ । ତାଙ୍କର କୌଣସି କଥା ରହୁନାହିଁ । ଭାରତବାସୀଙ୍କ ହାତକୁ କିଛି କ୍ଷମତା ବଢ଼ାଇ ଦେବା ଭଳି ଚିନ୍ତା ମଧ୍ୟ ବିଳାତ ସରକାରଙ୍କର ନାହିଁ । ଗାନ୍ଧୀଙ୍କ ଦାବୀର ବିରୋଧ କରିବା ପାଇଁ ସତେ ଯେପରିକି କେତେଜଣ ପ୍ରତିନିଧିଙ୍କୁ ବାଛି ବାଛି ନିଆଯାଇଥାଏ ।

ସତକୁ ସତ ସେଇଆ ହେଲା । କଟକଜିଲ୍ଲାର ଯାଜପୁରଠାରେ ଗୋଟିଏ ସେବାଦଳ ଶିବିର ପରିଚାଳନା କରୁଥିବା ବେଳେ ଶେଷ ଦିନ ଖବର ମିଳିଲା ଯେ ଗାନ୍ଧୀ ଗିରଫ ହୋଇଗଲେଣି ୧୯୩୨ ଜାନୁୟାରୀ ଚାରି ତାରିଖ ଦିନ । ଗାନ୍ଧିକ ଭିତରେ ତାଲିମ ପାଉଥିବା ସ୍ୱେଚ୍ଛାସେବକମାନଙ୍କୁ ଶିବିରରୁ ବିଦା କରିଦେଇ କଟକ ଆସିଲି । କଟକରେ ହିଁ ଜାଣିଲି—ଏଥର କଠୋର ଦମନ ଚଳାଇବା ପାଇଁ ସରକାର ଦୃଢ଼ପ୍ରତିଜ୍ଞ । ୧୯୩୦ରେ ଯାହା କରାଯାଉନଥିଲା ଏଥର କରାଯାଉଛି । ଭାରତ ଜାତୀୟ କଂଗ୍ରେସକୁ ବେଆଇନ ଘୋଷଣା କରି ଦିଆଯାଇଛି । ଯେତେ ଯେଉଁଠି କଂଗ୍ରେସ ଅଫିସ ଥିଲା ସେଗୁଡ଼ିକୁ ପୁଲିଶ ଦଖଲ କରି ଦେଇଛନ୍ତି । ଏହି ବେଆଇନ ସଂସ୍ଥାକୁ ଚାନ୍ଦା ଦେବା ଅପରାଧ । ଏହାର ସଭ୍ୟଙ୍କୁ ଘରେ ରଖିବା ମଧ୍ୟ ଅପରାଧ । ମୁଁ ବୁଲିଲି ରାସ୍ତାରେ । ଯଦିଓ କଟକ ସହରରେ ମୋର ବ୍ୟକ୍ତିଗତ ଭାବେ ବହୁ ପ୍ରତିଷ୍ଠିତ ଲୋକଙ୍କ ସହିତ ପରିଚୟ ଥିଲା, ସେମାନଙ୍କୁ ବିବ୍ରତ କରିବା ପାଇଁ ବା ବିପଦରେ ପକାଇବା ପାଇଁ ମୁଁ ଇଚ୍ଛାକରୁନଥିଲି । ଆମେ କେତେଜଣ ସ୍ଥିର କଲୁ ଆନ୍ଦୋଳନକୁ ଜୋର୍‌ସୋର୍‌ରେ ଚଳାଇବାକୁ ପଡ଼ିବ । ରହିବା ଖାଇବା ପିଇବା କିଛି ଗୋଟାଏ ବଡ଼ କଥା ନୁହେଁ । ସେ ସମୟର ଗୋଟିଏ ଗୋଟିଏ ଦୃଶ୍ୟ ମୁଁ କେବେ ଭୁଲି ପାରିନାହିଁ ବା ପାରୁନାହିଁ । କଟକସହର ରାସ୍ତାରେ ଅଖିଆ ବୁଲୁଥାଏ । ହଠାତ ଜଣଙ୍କ ଘର ବାଟେ ଚାଲିଯାଉଛି । ସେ ମୋର କେବଳ ଘନିଷ୍ଠ ଆତ୍ମୀୟ ନୁହନ୍ତି—ବିତ୍ତଶାଳୀ ମଧ୍ୟ । ସରକାରୀ କର୍ମଚାରୀ । ମୋତେ ଦେଖି ତାଙ୍କ ଘରର ସମସ୍ତେ ଫାଟକ ପାଖକୁ ଚାଲିଆସୁଛନ୍ତି । ପ୍ରାୟ ସମସ୍ତଙ୍କ ଆଖିରେ ଲୁହ । ଦି' ଚାରିମିନଟ ବଥାବାର୍ତ୍ତା ହୁଏ । ମୋ ମୁହଁରେ ହସ । କିଛି ଜଳଖିଆ ଲୁଚାଇ ବଢ଼ାଇ ଦେବାର ସଙ୍କେତ । ଦି' ଚାରିଟଙ୍କା ମଧ୍ୟ ଲୁଚାଇ ମୋ ହାତରେ ଗୁଞ୍ଜି ଦେବାକୁ ଇଚ୍ଛା । କିନ୍ତୁ ମୁଁ ଅତି ନମ୍ରଭାଷାରେ କୁହେ—କାହାରିଠାରୁ କିଛି ଲୁଚାଇ କରି ନେବାକୁ ମନ ଡାକୁନାହିଁ । ଏ ଦେଶରେ ପୁଣି ତ ଲକ୍ଷ ଲକ୍ଷ ଲୋକ ଉପବାସରେ ମରିରେ ମରିରେ ଦିନେ ଦି' ଦିନ କଟାଇ ଦିଅନ୍ତି । ମୁଁ ସେହିମାନଙ୍କ ଭିତରୁ ଜଣେ ବୋଲି ଧରିନେଉନାହିଁ କାହିଁକି ? ସେମାନଙ୍କ ଆଖିରେ ଅଧିକ ଲୁହ—ମୁଁ ହସି ହସି ଚାଲିଯାଏ । ଏହି ଅନୁଭୂତି ଆମ ଭିତରୁ ଦଶ ପନ୍ଦର ଜଣଙ୍କର ଅନେକବାର ହୋଇଛି । ଅନ୍ୟମାନଙ୍କ ଭିତରୁ ଅନେକେ ନିଜ ନିଜ ଗାଁକୁ

ଫେରିଗଲେ । କେତେଜଣଙ୍କର କଣ୍ଟକରେ ଘର ଥିଲା—ସେମାନେ ନିଜ ଘରେ ରହିବାରେ ପୁଲିଶଙ୍କର ତ ଆପତ୍ତି ନଥିଲା ।

ଅଳ୍ପ କେତେ ଦିନ ଭିତରେ ଗିରଫ ହୋଇଗଲି । ସେହି ପାଟନା କ୍ୟାମ୍ପ ଜେଲକୁ ଫେରିଗଲି । ପଢ଼ାପଢ଼ିରେ ମନ ଦେଲି । ଏଥର ଜେଲ କର୍ତ୍ତୃପକ୍ଷଙ୍କ ସହିତ ଆଉ ଟିକିଏ ଟିକିଏ କଥାରେ ଝଗଡ଼ା ହେଉ ନଥାଏ । ପାଞ୍ଚମାସ ପରେ ଖଲାସ ହେବାର କୋଡ଼ିଏଦିନ ପରେ ଗିରଫ ହୋଇ ପୁଣି ସେହି ଜେଲରେ ଯାଇ ହାଜର ।

ଗୋଟିଏ ଘଟଣା ବନ୍ଦୀମାନଙ୍କୁ ବିଚଳିତ କରି ଦେଇଥିଲା । ସେଇଟି ହେଲା ମହାତ୍ମାଗାନ୍ଧୀଙ୍କ ଆମରଣ ଅନଶନ । ବ୍ରିଟିଶ ସରକାରଙ୍କ ନୂତନ କ୍ଷମତାଦାନ ଇସ୍ତାହାର ବା ଆଇନ ଖଠାରେ ବ୍ୟବସ୍ଥା ଥିଲା ଯେ ଅସ୍ପୃଶ୍ୟ ଜାତିର ଲୋକେ ସ୍ୱତନ୍ତ୍ର ଭୋଟ ଅଧିକାର ପାଇବେ । ଗାନ୍ଧୀଜୀ ବିଚାରିଲେ ଏପରି କଲେ ଭାରତର ହିନ୍ଦୁ ସମାଜ ଦୁଇଟି ବିବଦମାନ ଗୋଷ୍ଠୀରେ ବିଭକ୍ତ ହୋଇଯିବ । ନାନା କୌଶଳ ଓ ଚରମ ବୁଦ୍ଧିପ୍ରୟୋଗ କରି ଇଂରେଜମାନେ ହିନ୍ଦୁ ମୁସଲମାନଙ୍କ ଭିତରେ ଭେଦଭାବ ସୃଷ୍ଟି କରି ଦେଇଛନ୍ତି । ଅସ୍ପୃଶ୍ୟ ବୋଲି ଯଦି ଆଉ ଗୋଟିଏ ରାଜନୈତିକ ଗୋଷ୍ଠୀ ସୃଷ୍ଟି ହୋଇଯିବ ଭାରତୀୟ ସମାଜ ଉପରକୁ ବିପଦ ମାଡ଼ିଆସିବ । ଏଭଳି କରିଗଲେ ସେ ଜୀବନ ଦେଇ ତାହାର ବିରୋଧ କରିବେ ବୋଲି ଗୋଲଟେବୁଲ ବୈଠକରେ ବ୍ରିଟିଶ ସରକାରଙ୍କୁ ଜଣାଇ ଦେଇ ଆସିଥିଲେ ମଧ୍ୟ ସେମାନେ ତାହା ଉପରେ କୌଣସି ଗୁରୁତ୍ୱ ଆରୋପ କଲେ ନାହିଁ । ତେଣୁ ଗାନ୍ଧୀଜୀ ଜେଲ ଭିତରେ ଅନଶନ ଆରମ୍ଭ କଲେ ଓ ଏହି ବ୍ୟବସ୍ଥାର ପରିବର୍ତ୍ତନ ନହେଲେ ଅନଶନ ଭାଙ୍ଗିବେ ନାହିଁ ବୋଲି ଜଣାଇଦେଲେ । ଦିନୁ ଦିନ ଯେତେବେଳେ ତାଙ୍କ ସ୍ୱାସ୍ଥ୍ୟର ଦ୍ରୁତ ଅବନତି ଘଟୁଛି ବୋଲି ଖବର ଆସୁଥାଏ ବନ୍ଦୀମାନଙ୍କ ଭିତରେ ଶୋକର ଛାୟା ଖେଳି ଯାଉଥାଏ । ପ୍ରତିଦିନ ସଭା ହୁଏ । ଗାନ୍ଧୀଜୀଙ୍କ ଦୀର୍ଘ ଜୀବନ କାମନା କରିଯାଇ ପ୍ରାର୍ଥନା କରିଯାଏ । ଦିନକୁ ଆଠ ଦଶ ଘଣ୍ଟା ଧରି ରାମଚରିତ ମାନସ ପଢ଼ାଯାଏ । ଯାହା ହେଉ ଶେଷରେ ଖବର ମିଳିଲା ଯେ 'ପୁନା ଚୁକ୍ତି' ସ୍ୱାକ୍ଷରିତ ହେଲା ପରେ ବ୍ରିଟିଶ ସରକାର ମତ ବଦଳାଇଛନ୍ତି ଓ ଗାନ୍ଧୀଜୀ ଅନଶନ ଭଙ୍ଗ କରିଛନ୍ତି ।

୧୯୩୨ରୁ ୧୯୩୪ର ପ୍ରଥମ ଭାଗ ପର୍ଯ୍ୟନ୍ତ ମଝିରେ ମଝିରେ ଜେଲ ଯିବା ଓ ଖଲାସ ହେବା ଥାଏ ମୋର କାମ । ଜେଲ ଭିତରେ ଥିବା ସମୟ୍ପୁଚକ ପଢ଼ାପଢ଼ିରେ କଟିଯାଏ । କ୍ରମେ ଅନୁଭବ କରୁଥାଏ ଯେ ମୋର ଯେଉଁ ସାଙ୍ଗମାନେ କଲେଜରେ ବି: ଏ: ଶ୍ରେଣୀରେ ପଢ଼ୁଛନ୍ତି ସେମାନଙ୍କ ତୁଳନାରେ ମୁଁ କିଛି କମ୍ ପଢ଼ୁନାହିଁ । ବାହାରେ ଦେଖାହେଲେ ସେମାନଙ୍କ ସହିତ ଯେତେବେଳେ କଥାବାର୍ତ୍ତା ହୁଏ ସେମାନେ ଅନୁଭବ କରନ୍ତି ଯେ ଜ୍ଞାନ ଅର୍ଜନ କ୍ଷେତ୍ରରେ ସେମାନଙ୍କ ସହିତ ମୁଁ ପ୍ରାୟ ତାଳଦେଇ ଚାଲିଛି ବା ବିଶେଷ କିଛି ପଛରେ ପଡ଼ିନାହିଁ । ବରଂ ସାଧାରଣ ଜ୍ଞାନ ଅର୍ଜନ କ୍ଷେତ୍ରରେ ସେମାନଙ୍କର ବହୁ ଆଗରେ ରହିପାରିଛି ।

ଗାନ୍ଧିଜୀ ତ ସତ୍ୟାଗ୍ରହକୁ ସ୍ଥଗିତ ରଖିଦେଲେ । ତାହା ସଙ୍ଗେ ସଙ୍ଗେ କହିଦେଲେ ଯେଉଁମାନେ ତୀବ୍ର ଭାବରେ ଅନୁଭବ କରୁଛନ୍ତି ବ୍ରିଟିଶ ଶାସନ ବିରୁଦ୍ଧରେ ସଂଗ୍ରାମ ଚଳାଇଯିବା ଉଚିତ ସେମାନେ ଆଇନ ଅମାନ୍ୟ କରି ଜେଲ ବରଣ କରିପାରନ୍ତି । ତାଙ୍କର ଏହି ଡାକ ଓଡ଼ିଶାର କଂଗ୍ରେସ ଅନୁଷ୍ଠାନର ପ୍ରାୟ କେହି ଶୁଣି ନ ଥିଲେ । କେବଳ ଆମେ ପ୍ରାୟ ଦଶଜଣ ସ୍ଥିର କଲୁ ଯେ ଆଇନ ଅମାନ୍ୟ ଚଳାଇଯିବୁ । ୧୯୩୦ ଏପ୍ରିଲ ୧୦ ତାରିଖ ଦିନ ସ୍କୁଲ ଛାଡ଼ିଥିବା ଦୁଇଜଣ ବନ୍ଧୁ ବିପିନ ବିହାରୀ ମହାନ୍ତି ଓ ସୁରେନ୍ଦ୍ରନାଥ ପଟ୍ଟନାୟକ ସେମାନଙ୍କ ଭିତରେ ଥିଲେ । ପଣ୍ଡିତ କୃପାସିନ୍ଧୁ ହୋତା ମଧ୍ୟ । ସମସ୍ତେ ମାଗିବ ଭିନ୍ନ ଗଲେଣି, ଗାନ୍ଧୀ ସତ୍ୟାଗ୍ରହ ପ୍ରତ୍ୟାହାର କରି ନେଲେଣି, ପୁଲିଶ ମାଜିଷ୍ଟ୍ରେଟଙ୍କର ଆମ କେତେଜଣଙ୍କ କାର୍ଯ୍ୟ ପ୍ରତି ତାଚ୍ଛଲ୍ୟ ଭାବ । ତଥାପି ଚାଲିଥାଉ । ସୁରେନ୍ଦ୍ର ତା' ସହିତ ଗୁରିଜଣଙ୍କୁ ଧରି ଚାଲିଗଲା ବାଙ୍କୀରେ ଜଙ୍ଗଲ ଆଇନ ଅମାନ୍ୟ କରିବା ପାଇଁ । ସେଠା ପୁଲିଶ ସେମାନଙ୍କୁ ଚୋର କେସରେ ପକାଇଲେ—ଅପରାଧ ହେଉଛି- ସେମାନେ ଜଙ୍ଗଲରୁ କାଠ ଚୋରି କରୁଥିଲେ । ବିପିନ ମୁଁ ଓ ଆଉ ପାଞ୍ଚଜଣ ମଦ ଅଫିମ ଦୋକାନ ପିକେଟିଙ୍ଗ ଅପରାଧରେ ଗିରଫ ହେଲୁ । କଟକ ଜେଲରେ ଜଣେ ପଞ୍ଜାବୀ ଜମାଦାର କଣ୍‌ଣ ଗୋଟାଏ ସାମାନ୍ୟ କାରଣରୁ ମୋ ଦି' ଗାଲରେ ଚଟକଣା କଷି ଦେଇଗଲା । ଦି'ଟିଯାକ ଗାଲ ଫୁଲିଗଲା । ଯେ ପର୍ଯ୍ୟନ୍ତ ଜମାଦାର କ୍ଷମା ନ ମାଗିଛି ଓ ତାକୁ ଶାସ୍ତି ନ ଦିଆଯାଉଛି ସେ ପର୍ଯ୍ୟନ୍ତ ଆମେ ଖାଦ୍ୟ ସ୍ପର୍ଶ କରିବୁ ନାହିଁ ବୋଲି ଜାଣି ଇଦେଇ ଅନଶନ ଆରମ୍ଭ କଲୁ । ତିନିଦିନ ପରେ ଆମ

ସମସ୍ତଙ୍କ ଦେହ ଖରାପ ହୋଇଗଲା—ଅଇ ହେଲୁ । ପାଟନାରେ ଥାଏ ଜେଲ ଆଇଜିଙ୍କ ଅଫିସ । ତାଙ୍କ ପାଖକୁ ଖବର ଗଲା । ସେ ଆସିଲେ । ସେତେବେଳକୁ ନ' ଦିନ । ବେଶ୍ ଦୁର୍ବଳ ହୋଇ ଗଲୁଣି । ସବୁ ଶୁଣିଲା ପରେ ଆଇଜି ଜମାଦାରଙ୍କୁ କହିଲେ କ୍ଷମା ମାଗିବା ପାଇଁ ଓ ଆମକୁ ପ୍ରତିଶ୍ରୁତି ଦେଲେ ଯେ ତାକୁ ଶାସ୍ତି ଦିଆଯିବ । ଅନଶନ ଭାଙ୍ଗିଲୁ ସିନା— ପ୍ରାୟ ପନ୍ଦର ଦିନ ପର୍ଯ୍ୟନ୍ତ ଦୁର୍ବଳତା ରହିଲା । ହୁଏତ ପ୍ରାସଙ୍ଗିକତା ନଥିଲେ ମଧ୍ୟ ଗୋଟିଏ କଥାର ଉଲ୍ଲେଖ କରି ଦେଉଛି । ଦି' ମାସ ପରେ ଯେତେବେଳେ ଖଲାସ ହେଲୁ ଜେଲ ଅଫିସକୁ ଗଲୁ । ଆମ 'ଟିକଟ' ଦେଖିଲୁ । ପ୍ରତି ବନ୍ଦୀଙ୍କ ପାଇଁ ଫୁଲ୍‌ସ୍କେପ୍ ସାଇଜର ଗୋଟିଏ ଟିକଟ ଥାଏ । ସେଥିରେ ଲେଖାଥାଏ ବନ୍ଦୀ ଆସିଲାବେଳେ କ' କ' ଜିନଷ ଆଣିଥିଲେ । ଜେଲ ଭିତରେ କେବେ ତାଙ୍କୁ କଛି ଶାସ୍ତି ଦିଆଯାଇଛି କି ନାହିଁ ତାହାର ଉଲ୍ଲେଖ ମଧ୍ୟ ଥାଏ । ଦେଖିଲା ବେଳକୁ ମୋ ଟିକଟରେ ଲେଖା ଅଛି— 'ଏହି ବନ୍ଦୀ ଜେଲରେ ଜମାଦାରଙ୍କ ସହିତ ଖରାପ ବ୍ୟବହାର କରିଥିଲେ । ସେ ପୁଣି ଖାଦ୍ୟ ଛାଡ଼ି ଦେଇଥିଲେ । ଆଇଜି ସବୁକଥା ଶୁଣିଲା ପରେ ବନ୍ଦୀଙ୍କୁ ସତର୍କ କରିଦେଲେ । ଜମାଦାରଙ୍କର କଛି ଦୋଷ ନାହିଁ ବୋଲି ବୁଝିଗଲେ । ମୁଁ ଟିକଏ ରାଗିଗଲି ଜେଲର ହସି ହସି କହିଲେ— 'ସରକାରୀ କାଗଜ ସବୁ ଏମିତି ହୁଏ । ଯଦି ଲେଖାଯାଇ ଥାଆନ୍ତା ତମର ଦୋଷ ନଥିଲା—ଜମାଦାର ମାଡ଼ ଦେଇଛି ତା' ଚାକରୀ ଯାଇଥାଆନ୍ତା । ବିନା ଉତ୍ତେଜନାରେ ବନ୍ଦୀଙ୍କୁ ଜମାଦାର ମାଡ଼ ଦେବାଟା ଗୋଟାଏ ବଡ଼ ଅପରାଧ ।' ଏହା କହି ସେ ହସିଲେ ଓ ମୋ ସମେତ ଅନ୍ୟ ବନ୍ଦୀମାନେ ମଧ୍ୟ ହସିଲୁ । ଯେଉଁମାନେ ସରକାରୀ ରେକର୍ଡ଼କୁ ଭିତ୍ତି କରି ଏବେ ସ୍ୱାଧୀନତା ସଂଗ୍ରାମର ଇତିହାସ ସବୁ ଲେଖି ଯାଉଛନ୍ତି ଓ ତାହା ପୁଣି "ତଥ୍ୟ ଭିତ୍ତିକ" ବୋଲି କହୁଛନ୍ତି ସେମାନେ କି' ଭୁଲ କରୁଛନ୍ତି ତାହା ଦର୍ଶାଇଦେବା ପାଇଁ ଏହି ଘଟଣାର ଉଲ୍ଲେଖ କଲି । ୧୯୮୫-୮୬ରେ ଯେତେବେଳେ ବାର ତେରବର୍ଷର ପ୍ରସ୍ତୁତି ପରେ ଓଡ଼ିଶାର ସ୍ୱାଧୀନତା ସଂଗ୍ରାମର ଇତିହାସ 'ମୁଠାଏ ଲୁଣ ଗୋଟାଏ ସାମ୍ରାଜ୍ୟ' ବହିଟି ଲେଖିଲି, ସେତେବେଳେ ବହୁ ସରକାରୀ ଦଲିଲ ପୁଲିଶ ରିପୋର୍ଟ ଦେଖିବାର ସୁଯୋଗ ପାଇଲି । ସେସବୁ କିଭଳି ବିକୃତ ତାହା ଦେଖି ବିସ୍ମିତ ହୋଇଗଲି ।

ଜେଲରୁ ଖଲାସ ହେଲା ପରେ ଆଉ ପିକେଟିଙ୍ଗ୍ ଇତ୍ୟାଦି ନକରି କଟକ ସହରରେ ଖଦଡ଼ର ପ୍ରଚାର କରି ତାହାର ମାଧ୍ୟମରେ ଲୋକ ସମ୍ପର୍କ ପ୍ରତିଷ୍ଠା କରିବା ପାଇଁ ସ୍ଥିର କଲୁ ଆମେ ଚାରିପାଞ୍ଚ ଜଣ । ଗୋଟିଏ କଥା ମୁଣ୍ଡକୁ ଉଠିଲା । ଯେଉଁମାନେ ଅରଟରେ ସୂତା କାଟୁଛନ୍ତି ସେମାନଙ୍କ ସୂତା ଆଣି ଯଦି ବନା ଚାଇମାନେ ଲୁଗା ବୁଣି ଦିଆଯିବ ତେବେ ଅଧିକ ସଂଖ୍ୟକ ଲୋକେ ସୂତା କାଟିବା ପାଇଁ ଉତ୍ସାହିତ ହେବେ । କଟକ ସହରର କେଉଁ ପରିବାର ରାଜି ହୋଇଗଲେ କେଉଁ ମନ୍ଦିରରେ ତନ୍ତ ପକାଇ ଲୁଗା ବୁଣିବା ପାଇଁ ସ୍ଥାନ ଛାଡ଼ିଦେବେ । କିନ୍ତୁ ତନ୍ତୀ ରଖି ଲୁଗା ବୁଣାଇ ମାହାଲିଆରେ ତ ଆଉ ଯୋଗାଇ ହେବ ନାହିଁ । ନିଜେ ଲୁଗା ବୁଣା ଶିଖି ତନ୍ତ ପକାଇ ବୁଣିଲେ ଯାଇ ତାହା ସମ୍ଭବ ହେବ । ଆମେ ତିନିଜଣ ଗଲୁ ପଣ୍ଡିତ ଗୋବିନ୍ଦ ଚନ୍ଦ୍ର ମିଶ୍ରଙ୍କ ଚମ୍ପାପୁର ଆଶ୍ରମକୁ । ସେହିଠାରେ ତନ୍ତୀ ବସ୍ତିରେ ଲୁଗା ବୁଣା ଶିଖିବୁ । ଏହି ଗୋବିନ୍ଦ ଚନ୍ଦ୍ର ମିଶ୍ରଙ୍କ ସହିତ ଗୋଟାଏ ଚମକପ୍ରଦ ଇତିହାସ ଜଡ଼ିତ । ଓଡ଼ିଶାର ଗୋଟିଏ ଦେଶୀୟ ରାଜାଙ୍କ ରାଜ୍ୟ ଦଶପଲ୍ଲାରେ ତାଙ୍କର ଜନ୍ମ । ତାଙ୍କୁ ଯେତେବେଳେ ବୋଧହୁଏ ମାତ୍ର ଷୋହଳ ସତର ବର୍ଷ ବୟସ ସେତେବେଳେ ଦଶପଲ୍ଲାରେ ଆଦିବାସୀ ମେଳିହେଲା । ରାଜା ଗୋବିନ୍ଦ ମିଶ୍ରଙ୍କୁ ସନ୍ଦେହ କଲେ । ତାଙ୍କୁ ଫାଶୀ ଦିଆଯିବ ବୋଲି ମନେ ମନେ ସ୍ଥିର କଲେ । ତେଣୁ ଗୋବିନ୍ଦ ଲୁଚି ପଳାଇ ଆସିଲେ ଓ ରବୀନ୍ଦ୍ରନାଥଙ୍କ ପାଖରେ ପହଞ୍ଚିଲେ । ରବୀନ୍ଦ୍ର କହିଲେ---ସେ ଏ ବିଷୟରେ କିଛି କରି ପାରିବେ ନାହିଁ । ଗୁଜୁରାଟର ଜଣେ ବାରିଷ୍ଟର ଗାନ୍ଧୀ ଭାରତକୁ ଫେରିଛନ୍ତି ଦକ୍ଷିଣ ଆଫ୍ରିକାରୁ, ତାଙ୍କର ପାଖକୁ ଯାଅ । ସେ ଅହମଦାବାଦରେ ରହୁଛନ୍ତି । ଗୋବିନ୍ଦଜୀ ସେହିକଥା କଲେ । ଗାନ୍ଧୀ ତାଙ୍କୁ ନିଜ ପାଖରେ ରଖିଲେ । ସେତେବେଳକୁ ଅସହଯୋଗ ଆନ୍ଦୋଳନ ଆରମ୍ଭ ହୋଇନାହିଁ କି ମୋହନ ଦାସ କରମଚାନ୍ଦ ଗାନ୍ଧୀଙ୍କୁ କେହି ମହାତ୍ମା ଗାନ୍ଧୀ ବୋଲି କହୁନାହାନ୍ତି । ପରେ ଗାନ୍ଧୀଙ୍କ ନିର୍ଦ୍ଦେଶରେ ସେ ଆସି କଟକଜିଲ୍ଲାରେ ଚମ୍ପାପୁରଠାରେ ଗୋଟିଏ ଆଶ୍ରମ ସ୍ଥାପନା କଲେ । ଲୋକଙ୍କ ଭିତରେ ଖଦଡ଼ର ପ୍ରସାର କଲେ । ସେ ଅତି ଆଗ୍ରହରେ ଆମ ତିନିଜଣଙ୍କୁ ଆଶ୍ରମରେ ରଖାଇଲେ । ପ୍ରାୟ ଦେଢ଼ମାସ ଭିତରେ ଆମେ ସବୁ ଲୁଗାବୁଣା ଶିଖିଗଲୁ । କଟକରେ ଆସି ତନ୍ତ ପକାଇ ଲୁଗା ବୁଣିଲୁ । ଆମର ମାସିକ

ଖର୍ଚ୍ଚ ତିନିଜଣଙ୍କର ଥାଏ ମାତ୍ର ପନ୍ଦର ଟଙ୍କା । ସେତକ ଗୃହଅଣା ଦ’ଅଣା ଅଣାଏ ଚାନ୍ଦାରେ ଉଠିଯାଏ । ଯେଉଁ ପ୍ରାୟ ପଚିଶ ବର୍ଷକାଳ ଧରି ଚମ୍ପାପୁର ଆଶ୍ରମରେ ରହିଲି ସେହି ସମୟମଧ୍ୟରେ ଗୋପବନ୍ଧୁଙ୍କଠାରୁ ଶୁଣିବାକୁ ପାଇଲି ଗାନ୍ଧୀ ଯେତେବେଳେ ଭାରତକୁ ସାବରମତୀ ଆଶ୍ରମର ପ୍ରତିଷ୍ଠା କଲେ ସେତେବେଳେ ତାଙ୍କ ଚିନ୍ତାଧାରା କିପରି ଥିଲା ଓ ସେ କଅଣ ସବୁ କରୁଥିଲେ । ସେ ଯାହା କହୁଥିଲେ ସବୁତକ ତାଙ୍କ ପ୍ରତ୍ୟକ୍ଷ ଜ୍ଞାନରୁ ହିଁ ବର୍ଣ୍ଣନା କରି ଯାଉଥିଲେ । ଏଠାରେ ଉଲ୍ଲେଖ କରିଦେଲେ ଭଲ ହେବ ଯେ ସେ ହେଉଛନ୍ତି ପ୍ରଥମ ଓଡ଼ିଆ ଯିଏକି ଗାନ୍ଧୀଙ୍କ ସମ୍ପର୍କରେ ଆସିଲେ । ୧୯୩୪ ହରିଜନ ପଦଯାତ୍ରା ବେଳେ ଗାନ୍ଧୀଜୀ ଏହି ଚମ୍ପାପୁର ଆଶ୍ରମରେ ଦୁଇଦିନ ରହିଥିଲେ । ମୁଁ ତ ତାଙ୍କ ସଙ୍ଗେ ସଙ୍ଗେ ଆରମ୍ଭରୁ ଥିଲି । ଗୋପବନ୍ଧୁଜୀ ତାଙ୍କୁ ଯେତେବେଳେ କହିଲେ ଆମେ କେମିତି ଲୁଗାବୁଣା ଶିଖିଲୁ ଓ ଗାଁ ଲୋକଙ୍କ ସମ୍ପର୍କରେ ଆସି ସେମାନଙ୍କୁ ସ୍ୱରାଜ୍ୟର ବାର୍ତ୍ତା ଶୁଣାଇଲୁ, ବାପୁଜୀ ଭାରି ଖୁସି ହୋଇଗଲେ । ତାଙ୍କ ପଦଯାତ୍ରା ପରେ ମୋତେ ଚମ୍ପାପୁରରେ ରହି ସଙ୍ଗଠନ କାମରେ ଲାଗି ପାରିଲେ ଭଲ ହୁଅନ୍ତା ବୋଲି ସେ କହିଲେ । ଗାଁ ଲୋକଙ୍କ ସହିତ ରାତିରେ ଦୁ’ ତିନିଘଣ୍ଟା ବସି ଗପ କଲେ ବହୁତ କିଛି ଶିକ୍ଷା ହୁଏ । ଯେଉଁ ବିଷୟଟିକୁ ଆମେ ବୁଝିଥାଉ ଓ ଗ୍ରାମବାସୀଙ୍କୁ କହିଲେ ସେମାନେ ବୁଝିଯିବେ ବୋଲି ଧରି ନେଇଥାଉ ସେହି ବିଷୟଟି ଯେତେବେଳେ ଗାଁ ଗହଳର ଲୋକଙ୍କ ସହ "ଆଲୋଚନା କଷଟିପଥର"ରେ କଷି ହୋଇଯାଏ ସେତେବେଳେ ଯାଇ ଜାଣିହୁଏ କେଉଁ କଥାଟି କିଭଳି ଭାବରେ ପ୍ରଭାବ ପକାଉଛି । ଭାରତର ବହୁ କର୍ମୀ ଗ୍ରାମବାସୀଙ୍କ ସହିତ ଘନିଷ୍ଠ ସମ୍ପର୍କରେ ଆସିଲା ପରେ ଯାଇ ଅନୁଭବ କରି ପାରିଛନ୍ତି ଏ ଦେଶର ଗାଁ ଗହଳର ଲୋକେ କେମିତି କଅଣ ଚିନ୍ତା କରୁଛନ୍ତି ଓ ସେମାନେ କେତେ ଦୂରକୁ ଯିବାକୁ ପ୍ରସ୍ତୁତ ଅଛନ୍ତି । ସେତକ ଜାଣିଲା ପରେ କର୍ମୀମାନେ ବହୁ କ୍ଷେତ୍ରରେ ନିଜର ମତର କାର୍ଯ୍ୟକାରିତା ବିଷୟରେ ସଚେତନ ହୋଇଯାଇଛନ୍ତି ।

## ଗୋଟାଏ ନୂଆ ତାଲିମ୍

୧୯୩୪ରେ ବାପୁଜୀ ଓଡ଼ିଶାକୁ ଆସିଲେ ହରିଜନ ଗସ୍ତରେ । ଏହି ଗସ୍ତର ସ୍ୱତନ୍ତ୍ର ମାହାତ୍ମ୍ୟ ବା ଗୁରୁତ୍ୱ ରହିଛି । ଗାନ୍ଧିଜୀଙ୍କୁ ଭାରତରେ ଥିବା ବ୍ରିଟିଶ ଅଫିସରମାନେ ଯେ 'କୌଶଳୀ' ଆଖ୍ୟା ଦେଇଛନ୍ତି ତାହା କିଛି

ଦୂରକୁ ଠିକ୍, ଯଦିଓ ସେମାନେ ଯେଉଁ ଅର୍ଥରେ ଏହି ଶବ୍ଦର ବ୍ୟବହାର କରୁଥିଲେ ତାହାର ବିପରୀତ ଅର୍ଥହିଁ ଠିକ୍ । ଗାନ୍ଧିଜୀ ୧୯୩୪ ବେଳକୁ ଭଲ ଭାବରେ ଜାଣିଗଲେଣି ଯେ ଜନସାଧାରଣଙ୍କ ଭିତରେ ଅବସାଦ ଆସି ଯାଇଛି । ସ୍ୱାଧୀନତା ଆନ୍ଦୋଳନର ୧୯୩୨ ଅଧ୍ୟାୟଟି ପରାଜୟର ସମ୍ମୁଖୀନ ହୋଇଛି । ରାଜନୈତିକ ପ୍ରଚାର, ସଭାସମିତି କଲେ ସରକାର ପୁଣି ହୁଏତ ବହୁ ଲୋକଙ୍କୁ ଗିରଫ କରିବେ—ଏମିତିକି ଗାନ୍ଧୀଙ୍କୁ ମଧ୍ୟ ବନ୍ଦୀ କରିନେବେ । ତାହା ପୂର୍ବରୁ ଗାନ୍ଧୀଙ୍କୁ କେତେଥର ଗିରଫ କଲେଣି । ଜେଲ୍ ଭିତରେ କୌଣସି ନା କୌଣସି କାରଣ ଦେଖାଇ ଅନଶନ କଲେ ତାଙ୍କୁ ଛାଡ଼ ଦେଉଛନ୍ତି । ଏଭଳି ଗୋଟାଏ 'ବିଲେଇ ମୂଷା ଖେଳ' (Cat and Mouse game) ଖେଳିବା ପାଇଁ ଗାନ୍ଧିଜୀଙ୍କର ଇଚ୍ଛା ନୁହେଁ । ଏହି ପରିସ୍ଥିତିରୁ ପୁଣି ତ ପଦାକୁ ବାହାରି ଯିବାକୁ ପଡ଼ିବ । ଲୋକ ସମ୍ପର୍କ ସ୍ଥାପନ କରିବାକୁ ପଡ଼ିବ । ସଭାସମିତିକୁ ଯେପରି ଲୋକେ ବହୁ ସଂଖ୍ୟାରେ ଆସିବେ ତାହାର ବାଟ ବାହାର କରିବାକୁ ହେବ । ସେତିକି ବେଳେ ସେ ଘୋଷଣା କଲେ ଦେଶର ଚାରିଆଡ଼େ ବୁଲି ଅସ୍ପୃଶ୍ୟତା ନିବାରଣ ପାଇଁ ପ୍ରଚାର ଚଳାଇବେ । ରାଜନୀତି ପ୍ରଚାର ତାଙ୍କର ଲକ୍ଷ୍ୟ ନୁହେଁ । ଏଭଳି ଗୋଟିଏ ଗସ୍ତକୁ ସରକାର ବାଧା ଦେବାର ପ୍ରଶ୍ନ ଉଠୁନାହିଁ—ଯଦିଓ ସେମାନଙ୍କୁ ଏଭଳି ହେବାଟା ସୁଖ ଲାଗୁନଥାଏ ।

୧୯୩୪ ମେ ମାସରେ ସେ ଓଡ଼ିଶା ଗସ୍ତରେ ଆସିବେ । ମଧ୍ୟପ୍ରଦେଶରୁ ଆସି ସମ୍ବଲପୁରରେ ପହଞ୍ଚିବେ । ସେଠାରୁ ମଟରଯୋଗେ ଅନୁଗୁଳ ବାଟେ ଆସି ମେରାମୁଣ୍ଡଳୀ ଷ୍ଟେସନରେ ତାଳଚେର ଗାଡ଼ିରେ ଆସି ପୁରୀରେ ପହଞ୍ଚିବେ । ସେତେବେଳର ଓଡ଼ିଶାର ଏକମାତ୍ର ଦୈନିକ ସମ୍ବାଦପତ୍ର 'ସମାଜ' । ପଣ୍ଡିତ ଲିଙ୍ଗରାଜ ମିଶ୍ର ଥାଆନ୍ତି ଏହାର ସମ୍ପାଦକ । ରାଧାନାଥ ରଥ ତାଙ୍କର ସହକର୍ମୀ । କାଗଜର ସମ୍ବାଦଦାତା ବା ରିପୋଟର ଭଳି ସେମିତି କେହିନଥିଲେ । ସେ ଦୁ' ଜଣ ବସି ସ୍ଥିର କଲେ—ଜଣେ କେହି ଗାନ୍ଧୀଙ୍କ ସଙ୍ଗେ ସଙ୍ଗେ ଯିବେ ସେ ଯୁଆଡ଼କୁ ଯିବେ । ତାଙ୍କ ଭାଷଣ ଏବଂ ଗସ୍ତ ବିବରଣୀ 'ସମାଜ'ରେ ବିସ୍ତୃତ ଭାବରେ ଛପାଯିବ । ସେମିତିକା ଲୋକ ମିଳୁନଥାନ୍ତି । ମୁଁ ସେ କାମ କରିପାରିବି ବୋଲି ବିଚାରି ମୋତେ ଡକାଇଲେ ଓ ଏହି ପ୍ରସ୍ତାବଟି ରଖିଲେ । ମୁଁ ତ ପୂର୍ବରୁ ସ୍ଥିର କରିଥିଲି—ଗାନ୍ଧୀଙ୍କ ସଙ୍ଗେ ସଙ୍ଗେ ରହି କିଛି ଶିଖିବି । ଜଣେ ସ୍ୱେଚ୍ଛାସେବକ ଭାବରେ

ରହିବା ପାଇଁ ଉଦ୍ୟୋକ୍ତାମାନେ ହୁଏତ ରାଜି ହୋଇଯିବେ । ଯେତେବେଳେ ଏହି ପ୍ରସ୍ତାବଟି ଶୁଣିଲି ସଙ୍ଗେ ସଙ୍ଗେ ରାଜି ହୋଇଗଲି । ଟେଲିଗ୍ରାମ ଅଥରିଟୀ, ସମ୍ବାଦଦାତା କାର୍ଡ଼ ସଙ୍ଗରେ ଧରି ଅନଗୁଳ ଗଲିଲି । କାରଣ ବାପୁଜୀ ସେତେବେଳକୁ ସମ୍ବଲପୁର ଛାଡ଼ି ସାରିଲେଣି । ସେଠାରୁ ସେ ପୁରୀ ଆସିଲେ ଟ୍ରେନ୍‌ଯୋଗେ । ପୁରୀରେ ଘୋଷଣା କରିଦେଲେ—ମୁଁ ଆଜି ରେଳ ମଟରରେ ବୁଲିବି ନାହିଁ—ଚାଲି ଚାଲି ହରିଜନ ଗସ୍ତ କରିବି । ଏହାକୁ ମୁଁ ନାମ ଦେଇଛି 'ପ୍ରଚଣ୍ଡ ପଦଯାତ୍ରା' । ପ୍ରତିଦିନ ସକାଳେ ବାହାରି କିଛି ଦୂରରେ ରହିବେ — ସଭାହେବ । ଉପରବେଳା ଚାରିଟା ପର୍ଯ୍ୟନ୍ତ ରହି ପୁଣି ବାହାରିବେ । ସନ୍ଧ୍ୟାବେଳେ ସଭାହେବ—ତାହାପରେ ରାତି ରହଣୀ । ଏହି ପଦଯାତ୍ରାକୁ ପରିଚାଳନା କରିବେ ଠକ୍‌କର ବାପା (ଅମୃତଲାଲ ଭି ଠକ୍‌କର) । ମୋ ଦାୟିତ୍ୱ ଅତିମାତ୍ରାରେ ବଢ଼ିଗଲା । ପ୍ରତିଦିନର ଭାଷଣ, କର୍ମୀମାନଙ୍କ ସହିତ ଦୁଇ ତିନୋଟି ବୈଠକରେ ଆଲୋଚନା, ପଦଯାତ୍ରା ବେଳେ ଘଟିଯାଉଥିବା ବହୁ ଘଟଣାର ଉଲ୍ଲେଖ ବିସ୍ତୃତ ଭାବରେ କରାଯିବ ବୋଲି ସମ୍ପାଦକଙ୍କ ନିର୍ଦ୍ଦେଶ । ପଦଯାତ୍ରାର ଚାଳକ ଠକ୍‌କର ବାପା ଥିଲେ ମଧ୍ୟ ଓଡ଼ିଶା ତରଫରୁ ଥାଆନ୍ତି ଗୋପବନ୍ଧୁ ଚୌଧୁରୀ, ରମାଦେବୀ । ପ୍ରଦେଶର ସବୁ ବଡ଼ ବଡ଼ ନେତା ଓ ବହୁ ସଂଖ୍ୟକ ଜଣାଶୁଣା କର୍ମୀ କିଛି କିଛି ବାଟ ତାଙ୍କ ସହିତ ଚାଲନ୍ତି । ମୋର ସୌଭାଗ୍ୟ ଯେ ଆଜି ଗୋଟିଏ ଦାୟିତ୍ୱ ମୋ ଉପରେ ଲଦି ଦିଆଗଲା । ଗୋପବନ୍ଧୁ ଚୌଧୁରୀ କହିଲେ—ବାପୁଜୀ ଯେତେବେଳେ ଚାଲୁଛନ୍ତି ତାଙ୍କ ସାମନାରେ ବହୁତ ଲୋକ ଭିଡ଼ କରୁଛନ୍ତି । ଧୂଳି ଉଡ଼ୁଛି—ତାଙ୍କ ଚାଲିବାରେ ବାଧା ପଡ଼ୁଛି । ତୁ ଗୋଟିଏ ଦାୟିତ୍ୱ ନେ । ତୁ ବାପୁଜୀଙ୍କ ଠାରୁ କିଛି ଦୂରରେ ସାମନାରେ ଚାଲୁଥିବୁ । ତୋତେ ଦି'କଡ଼ରେ ଦୁଇଜଣ ଲେଖାଁ ସ୍ୱେଚ୍ଛାସେବକ ସାହାଯ୍ୟ କରୁଥିବେ —ତାହା ହେଲେ ସାମନାଟା ଫାଙ୍କା ରହିବ । ରାତିରେ ତୁ ବାପୁଜୀଙ୍କ ରହଣୀ ସ୍ଥାନ ପାଖରେ ହିଁ ରହିବୁ —ନହେଲେ ଲୋକେ ତାଙ୍କ ଦର୍ଶନ ପାଇଁ ବ୍ୟସ୍ତ କରି ତାଙ୍କୁ ଶୁଆଇ ଦେବେନାହିଁ ।

ବାପୁଜୀ ଯେତେବେଳେ ଚାଲନ୍ତି ଦୁଇଜଣଙ୍କ କାନ୍ଧରେ ଦୁଇହାତ ରଖି ଥାଆନ୍ତି । ସେମାନେ ହୁଏତ ତାଙ୍କ ସହିତ କୌଣସି ଗୁରୁତ୍ୱପୂର୍ଣ୍ଣ ଆଲୋଚନା ଚଳାଇ ଥାଆନ୍ତି—ସ୍ୱେଚ୍ଛାସେବକ ହୋଇଥିଲେ ଗାଁ ଲୋକଙ୍କ

କଥା ସେମାନଙ୍କ ପଗ୍ଭର ବୁଝିଥାଆନ୍ତି । ଦେଦଯାହା ଗ୍ଭଲିଲା ମାସକରୁ ଅଧିକ କାଳ—ପ୍ରାୟରୁ ଭିତ୍ରଷ୍ଟ ପର୍ଯ୍ୟନ୍ତ । ବର୍ଷା ଋତୁ ଅଟେ ହୋଇଯିବାରୁ ସେଇଠାରେ ଶେଷ ହେଲା । ଦିନେ ମସାନି (M. R. Masani) ଆସିଗଲେ । ତାହାର ଦୁଇଦିନ ପରେ ଆସିଲେ ଘନଶ୍ୟାମ ଦାସ ବିରଳା । ଉଭୟଙ୍କ ସହିତ ସେ କଅଣ ଗୋଟାଏ ଗୁରୁତ୍ୱପୂର୍ଣ୍ଣ ବିଷୟ ଉପରେ ଆଲୋଚନା ଚଳାଉ ଥାଆନ୍ତି । ଯେତେବେଳେ ହିନ୍ଦୀ ବା ଇଂରାଜୀରେ ଆଲୋଚନା ହୁଏ ମୁଁ କାନ ତେରି ଶୁଣେ—ପଦେ ପଦେ କାନରେ ବାଜିଗଲେ ବି କେତେ କଥା, ଅବଶ୍ୟ ଏହି ଦୁଇଜଣଙ୍କ ସହିତ ଗୁଜୁରାଟି ଭାଷାରେ ସେ କଥାବାର୍ତ୍ତା କରୁଥାଆନ୍ତି ।

ଏସବୁ କଥାର ସୂଚନା ଟିକିଏ ଟିକିଏ ଦେବାର ଉଦ୍ଦେଶ୍ୟ ଅଛି । ଏତେଦିନ ଧରି ବାପୁଜୀଙ୍କ ମୁହଁରୁ କଥା ଶୁଣିବା ଗୋଟାଏ ସୌଭାଗ୍ୟ । ଦିଲ୍ଲୀରେ ସକାଳ ସନ୍ଧ୍ୟା ପରେ ସେ ଦଳ ଦଳ ଲୋକଙ୍କୁ ଭେଟନ୍ତି । ସେମାନଙ୍କୁ ଯେଉଁ ସବୁ ଉପଦେଶ ଦିଅନ୍ତି ତାହାର ଗୁରୁତ୍ୱ ରହିଛି । ଅନେକ ସମୟରେ ମୋତେ ଦିଭାଷୀ ସାଜିବାକୁ ପଡ଼େ । ଲୋକେ ନାନା ପ୍ରଶ୍ନ ଉଠାନ୍ତି । ଟିକିଏ ହେଲେ ଧୈର୍ଯ୍ୟ ନ ହରାଇ ବାପୁଜୀ ସେ ସବୁର ଉତ୍ତର ଦିଅନ୍ତି ଦି' ପହରେ ଓଡ଼ିଶାର ଓ ଓଡ଼ିଶା ବାହାରୁ ଆସିଥିବା କର୍ମୀଙ୍କ ସହିତ ଆଲୋଚନା କରନ୍ତି । ସେ ଆଲୋଚନା ଏକାବେଳକେ ଶିକ୍ଷାପ୍ରଦ—ଶଢେରୁ ଶଢେ ମାନିବାରେ । ମୋତେ ସୁଯୋଗ ମିଳିଯାଏ କେତେକ ପ୍ରଶ୍ନ ପଗ୍ଭରିବା ପାଇଁ । ଏହିସବୁକୁ ମିଶାଇ ଦେଲେ ମୁଁ ସତେ ଯେପରିକି ଗୋଟାଏ ପାଠ-ଚକ୍ରେନଙ୍କ କ୍ଲାସରେ ସେହି କେତେଦିନ କଟାଇଥିଲି । ମୁଁ ଯେଉଁସବୁ ରିପୋର୍ଟ ପଠାଉଥିଲି ସେଥିରୁ ଗୋଟିଏ ହେଲା କମା ନଉଠାଇ ସମାଜ ଛାପି ଦେଉଥିଲା । ସେତିକି ବେଳେ ରିପୋର୍ଟିଂ କରିବା ବିଷୟରେ ମୋ ହାତ ଦୋରସ୍ତ ହୋଇଗଲା । ପଦଯାତ୍ରାର ବିବରଣୀ ଓଡ଼ିଶାର କିଭଳି ଭାବରେ ପ୍ରକାଶ ପାଉଛି ତାହା ଜାଣିବା ପାଇଁ ଠକ୍କର ବାପା, ଲାଲ୍ ଅଚନ୍ତରାମ ପ୍ରଭୃତି ବାହାରର ଲୋକେ ସମାଜ ପଢ଼ାଇ ଶୁଣନ୍ତି—ଅନୁବାଦ ମାଧ୍ୟମରେ । ସେମାନେ ମଧ୍ୟ ଟିକିଏ ପ୍ରଶଂସା କରନ୍ତି । ବାପୁଜୀଙ୍କ ମୃତ୍ୟୁର ବର୍ଷକ ପରେ ଏହି ପଦଯାତ୍ରା ଉପରେ ଗୋଟିଏ ବହି ଲେଖି ଦେଇଥିଲି । ସେହି ଖଣ୍ଡିକ ହେଉଛି ସେହି ଐତିହାସିକ

ପଦଯାତ୍ରା ସମ୍ପର୍କରେ ପ୍ରାମାଣିକ ବିବରଣୀ । ତାକୁ ଆଜିଠିକଏ ବଡକରି ଇଂରାଜୀ ଓ ହିନ୍ଦୀରେ ଛପାଇ ଦେବା ପାଇଁ ଲୋକେ କହୁଛନ୍ତି ।

ଏହି ପଦଯାତ୍ରା ବେଳେ ବାପୁଜୀ ଥରେ ମୋତେ ଗାଳି ଦେଇଥିଲେ । ସେହି ଗାଳି ଭିତରେ ମୋ ପ୍ରତି ସ୍ନେହ ଏବଂ ଆଶୀର୍ବାଦ ଭରି ରହିଥିଲା ବୋଲି ଆଜି ମଧ୍ୟ ବିଶ୍ୱାସ କରୁଛି । ସେହି ଗୋଟିଏ ଗାଳି ମୋତେ ଶିଖାଇ ଦେଲା କଲମ ଚଳାଇଲା ବେଳେ କେତେ ସାବଧାନତା ଅବଲମ୍ବନ କରିବାକୁ ହୁଏ ! ଏହା ବିଷୟରେ ମୋର ଗୋଟିଏ ବହି "ଋଣ ପରିଶୋଧ"ରେ ଉଲ୍ଲେଖ ରହିଛି । ତା' ସତ୍ତ୍ୱେ ଏଠାରେ ତାହାର ପୁନରାବୃତ୍ତି କରୁଛି । ତାହାର କାରଣ ହେଲା 'ଋଣ ପରିଶୋଧ ବହିଟିକୁ' ଓଡ଼ିଶାର ଲୋକେ ପଢ଼ିବେ । ତାହାର ଯେ ଦିନେ ଇଂରାଜୀ ବା ହିନ୍ଦୀ ଅନୁବାଦ ପ୍ରକାଶ ପାଇବ ଏଭଳି ଆଶା ମୁଁ ରଖୁନାହିଁ । ପ୍ରକାଶ ପାଇଲେ ମଧ୍ୟ ସେଥିଭିତରୁ ଅନେକ ବିଷୟର କି କି ପ୍ରାସଙ୍ଗିକତା ବା ଗୁରୁତ୍ୱ ଓଡ଼ିଶା ବାହାରର ପାଠକମାନେ ଜାଣିପାରିବେ ନାହିଁ । କିନ୍ତୁ ବାପୁଙ୍କ ଗାଳିର ପ୍ରାସଙ୍ଗିକତା ଓଡ଼ିଶା ବାହାରର ସବୁ ପାଠକଙ୍କ ପାଇଁ ରହିଛି । ଏହି ବହିଟି ହୁଏତ ଇଂରାଜୀ ଓ ହିନ୍ଦୀରେ ଅନୁବାଦିତ ହୋଇପିବ ।

ପଦଯାତ୍ରା ବେଳେ କେନ୍ଦ୍ରାପଡ଼ା ଥାନାର ଧୁମାଓ ଇନ୍ଦ୍ରପୁରଠାରେ ବାପୁଜୀ ଦିନବେଳା ରହିଥିଲେ । ଆଗରୁ ଠିକ୍ ହୋଇଥିଲା ଯେ କେତେଜଣ ପଣ୍ଡିତ ବାପୁଜୀଙ୍କୁ ଭେଟି ହିନ୍ଦୁ ଧର୍ମରେ ଅସ୍ପୃଶ୍ୟତା ଉପରେ ଆଲୋଚନା ଚଳାଇବେ । ଏଭଳି ହେଉ ବୋଲି ଗାନ୍ଧିଜୀ ଇଚ୍ଛା କରୁଥିଲେ । କି କି କାରଣରୁ ଦଳେ ଲୋକ ନିଶ୍ଚୟ ଅସ୍ପୃଶ୍ୟ ହୋଇ ରହିବା ଉଚିତ ସେ ବିଷୟରେ ପଣ୍ଡିତମାନେ ଯୁକ୍ତି ପରେ ଯୁକ୍ତି କରିଚାଲିଥାନ୍ତି । ଶାସ୍ତ୍ର ପୁରାଣରୁ ଶ୍ଳୋକସବୁ ଉଦ୍ଧାର କରୁଥାଆନ୍ତି । ଗୋଟିଏ ସ୍ଥଳରେ କହିଲେ—ପାଣ ହାଡ଼ି ଗୋ ମାଂସ ଖାଉଛନ୍ତି ଆମେ ସେମାନଙ୍କୁ କେମିତି ଛୁଇଁବୁ ? ବାପୁଜୀ କହିଲେ—ଖ୍ରୀଷ୍ଟ ଧର୍ମରେ, ମୁସଲମାନ ମାନଙ୍କ ଭିତରେ ଗୋ ମାଂସ ଖାଇବାର ବାରଣ ତ ନାହିଁ, ଯଦିଓ କେତେକ ଖ୍ରୀଷ୍ଟାନ ମୁସଲମାନ ଗୋ ମାଂସ ଖାଆନ୍ତି ନାହିଁ । ସେମାନଙ୍କୁ ହିନ୍ଦୁମାନେ ଛୁଉଁଛନ୍ତି କେମିତି ? ସେମାନଙ୍କ କଥା ଟିକଏ ପଛକୁ ରଖନ୍ତୁ ମୁଁ ···ଙ୍କୁ ଜାଣେ । ସେ ଭାରତରେ ହିନ୍ଦୁମାନଙ୍କର ଜଣେ ନେତା । ସେ ବିଲାତଗଲେ ଗୋରୁ ମାଂସ ଖାଆନ୍ତି ।

ତାଙ୍କୁ ତ ହିନ୍ଦୁ ଧର୍ମରୁ ବାହାର କର ଦିଆଯାଉ ନାହିଁ । ସେ ଏଭଳି ଦୃଢ଼ତାର ସହିତ କହିଲେ ଯେ ପଣ୍ଡିତମାନେ ନୀରବ ରହିଗଲେ । ତାହା ପରେ କିଛି ସମୟ ପର୍ଯ୍ୟନ୍ତ ଆଲୋଚନା ଚାଲିଲା ।

ମୁଁ 'ସମାଜ' କାଗଜକୁ ଯେଉଁ ରିପୋର୍ଟ ପଠାଇଲି ସେଥିରେ ସେ ନେତାଙ୍କ ନାମଥିଲା । ତାହା ହୁଏତ ଛପା ହୋଇ ଯାଇଥାଆନ୍ତା । ଯୋଗକୁ ସଂପାଦକ ପଣ୍ଡିତ ଲିଙ୍ଗରାଜଙ୍କ ଦୃଷ୍ଟିରେ ପଡ଼ିଗଲା । ସେ ସେହି ନାମଟି କାଟିନେଇ ବ୍ରାକେଟ୍‌ରେ ଲେଖି ଦେଲେ—'ଆମ ପ୍ରତିନିଧି ଜଣେ ବିଶିଷ୍ଟ ହିନ୍ଦୁ ନେତାଙ୍କ ନାମ ଲେଖି ଥିଲେ । ସେହି ନାମଟି ପ୍ରକାଶ କରାଗଲା ନାହିଁ ।' ମୁଁ ଧରିନେଲି କଥାଟା ଏଇଠି ଛିଣ୍ଡିଗଲା । ପଣ୍ଡିତ ଲିଙ୍ଗରାଜ ବାଟରେ ବରୀଠାରେ ବାପୁଜୀଙ୍କୁ ଯାଇ ଭେଟିଲେ । ଯେ, ଗାନ୍ଧିଜୀ ଓ ମୁଁ ବସିଥିଲୁ ବେଳେ ଏହି କଥାଟି ପଡ଼ିଲା । ବାପୁଜୀ ପଚାରିଲେ—'ଆପଣ କ'ଣ ସେ ନାଁ ଦେଇଛନ୍ତି ? ପଣ୍ଡିତଜୀ 'ନାହିଁ' ବୋଲି ଉତ୍ତର ଦେବା ସଙ୍ଗେ ସଙ୍ଗେ ପଚାରି ଦେଲେ—ବାପୁଜୀ, ଆପଣ ସେ ନାମ କହି ନଥିଲେ ? ଏହି ନାମ ବିନୋଦ ପଠାଇ ଥିଲେ । ସେତେବେଳକୁ ମୁଁ ଏକପ୍ରକାର ଥରିଲିଣି । ବାପୁଜୀ—'ହଁ, ମୁଁ ସେହିନାମ କହିଛି । କିନ୍ତୁ ବିନୋଦ, ତୋରତ ପଠାଇବା ଉଚିତ ନଥିଲା । ସେଇଟି ଥିଲା ଏକରକମ ଘରୋଇ ଆଲୋଚନା । ସେଇଥି ପାଇଁ ମୁଁ ନାଁଟି କହିଦେଲି । ଅବଶ୍ୟ ମୁଁ ତୋତେ ମନା କରିନଥିଲି ପଠାଇବା ପାଇଁ । ହେଲେ ମଧ୍ୟ ତୁ ତ ଜାଣିଛୁ ଆଲୋଚନାଟି ପ୍ରକାଶ୍ୟରେ ହେଉନଥିଲା । ତୁ ମୋତେ ପଚାରି ଥାଆନ୍ତୁ ତାଙ୍କ ନାମର ଉଲ୍ଲେଖ କରିବି ନା ନାହିଁ ।' କଥାଟିତ ସେଇଠି ସରିଲା—କିନ୍ତୁ ମୋ ଜୀବନର ଗୋଟାଏ ଶିକ୍ଷା ହୋଇଗଲା । ତାହା ପରେ କେତେ ବର୍ଷ ସାମ୍ବାଦିକତା କରିଛି—କିଭଳି ସାବଧାନ ହୁଏ ଜାଣି ଯାଇଥିବାରୁ ଆଉ ସେ ଧରଣର ଭୁଲ କରିନାହିଁ । 'ଜ୍ଞାନମଣ୍ଡଳ' ଲେଖିଲାବେଳେ ତ ଆହୁରି ସାବଧାନ ହେବାକୁ ପଡ଼େ । ସେଇଥି ପାଇଁ ଆରମ୍ଭରେ କହିଲି ଯେ ତାଙ୍କ ଗାଳି ଭିତରେ ଆଶୀର୍ବାଦ ହିଁ ଥିଲା ।

## ନୂତନ "ଶିକ୍ଷା କ୍ଷେତ୍ର"

ଓଡ଼ିଶାରୁ ବିଦାୟ ନେବା ପୂର୍ବରୁ ଗାନ୍ଧିଜୀ ବାଲେଶ୍ୱର ଜିଲାର ଭଦ୍ରଖରେ ତିନି ଦିନ ରହିଗଲେ । ଓଡ଼ିଶାର ବହୁ ସଂଖ୍ୟକ କର୍ମୀ

ସେଠାରେ ଏକତ୍ରିତ ହୋଇ ଯାଇଥିଲେ । ସେମାନଙ୍କୁ ସେ ପ୍ରାଣର ଆବେଗରେ କେତେଟି କଥା କହିଲେ ଦୁଇଟି ବୈଠକରେ । ୧୯୩୨ର ଦ୍ୱିତୀୟାର୍ଦ୍ଧରୁ ୩୪ ଆରମ୍ଭ ପର୍ଯ୍ୟନ୍ତ ଯେଉଁ ସମୟଟା କଟିଗଲା ସେଇଟି ଥିଲା ଶହ ଶହ କର୍ମୀଙ୍କ ପାଇଁ ନୈରାଶ୍ୟର ସମୟ । ବ୍ରିଟିଶଙ୍କ ବିରୁଦ୍ଧରେ ଯୁଦ୍ଧରେ ଆମର ସଂପୂର୍ଣ୍ଣ ପରାଜୟ ହୋଇଛି ବୋଲି କେତେକ କହୁଥାଆନ୍ତି । ସେମାନେ ୧୯୩୧ର ଗାନ୍ଧୀ ଇରୱଇନ ଚୁକ୍ତିର ପରବର୍ତ୍ତୀ ବାୟୁମଣ୍ଡଳ ସହିତ ତୁଳନା କରି ଏଭଳି କହୁଥାଆନ୍ତି । ଗାନ୍ଧୀ କିନ୍ତୁ ଥିଲେ ଜଣେ ଅଦମ୍ୟ ଆଶାବାଦୀ । ତାଙ୍କର ଦୃଢ଼ବିଶ୍ୱାସ ଥିଲା ଯେ ଲୋକଙ୍କ ଭିତରେ ପୁଣିଥରେ ଜାଗରଣ ଦେଖା ଦେବ । ସ୍ୱରାଜ୍ୟ ଆସିବହିଁ ଆସିବ । ଭାରତ ଭଳି ଗୋଟିଏ ସଭ୍ୟ ଦେଶ କେବେହେଲେ ସବୁଦିନ ପାଇଁ ପରାଧୀନ ହୋଇ ରହିପାରିବ ନାହିଁ । ତାଙ୍କର ପରାମର୍ଶ ହେଲା ଦଳେ ଦଳେ କର୍ମୀ ଯାଇ ଗୋଟିଏ ଗୋଟିଏ ଅଞ୍ଚଳରେ ବସିଯାଆନ୍ତୁ । ସବୁ ପ୍ରକାରର ସଂଗଠନ କାମ କରି ଲୋକଙ୍କ ସହିତ ପ୍ରତ୍ୟକ୍ଷ ସଂପର୍କ ସ୍ଥାପନ କରନ୍ତୁ । ସେଭଳି କରିବା ବେଳେ ସେମାନଙ୍କ ଭିତରେ ଦେଶପ୍ରେମ ଜାଗ୍ରତ କରାନ୍ତୁ । ବଡ଼ ସାନ ସବୁ ଶ୍ରେଣୀର କର୍ମୀ ଚାଲି ଯାଆନ୍ତୁ ଗାଁ ଗହଳକୁ । ତାଙ୍କର ଦୁଇଟିଯାକ ଭାଷଣର ଗଭୀର ପ୍ରଭାବ ପଡ଼ିଲା କର୍ମୀମାନଙ୍କ ଭିତରେ । ସେମାନଙ୍କ ଭିତରୁ ସତେ ଯେପରିକି ଅବସାଦ ଦୂର ହୋଇଗଲା ।

ଗୋପବନ୍ଧୁ ଚୌଧୁରୀ ରମାଦେବୀ ଚାଲିବେ କଟକ ଜିଲ୍ଲାର ଗୋଟିଏ ବନ୍ୟାଗ୍ରସ୍ତ ଅଞ୍ଚଳକୁ । ସେମାନଙ୍କ ସାଙ୍ଗରେ ସାତ ଆଠଜଣ ନାରୀ କର୍ମୀ ଯିବେ ବୋଲି ସ୍ଥିର ହେଲା । ବାପୁଜୀଙ୍କ ସହିତ ପରାମର୍ଶ କରି ସେମାନେ ନିଷ୍ପତ୍ତି ନେଇ ଥାଆନ୍ତି । ସେମାନଙ୍କ ତୁଳନାରେ ବାପୁଜୀଙ୍କର ବ୍ୟବହାରିକ ଜ୍ଞାନ ଟିକିଏ ଅଧିକ ଥିଲା ନିଶ୍ଚୟ । ତାଙ୍କର ମତହେଲା ଦୁ'ତିନିଜଣ ଯୁବକ କର୍ମୀ ନଗଲେ ବ୍ୟାପକ ଭାବରେ ସଂଗଠନ କାମ କରିହେବ ନାହିଁ । ସେ ସୂଚନା ଦେଲେ—'ବିନୋଦ ଭଳି କେତେଜଣଙ୍କୁ ନିଅ' । ମୋତେ ପଚରା ଗଲା । ସ୍ଥିରହେଲା ସୁରେନ୍ଦ୍ର ନାଥ ପଟ୍ଟନାୟକ, ମୁଁ ଓ ଆଉଜଣେ କର୍ମୀ ତାଙ୍କ ସହିତ ଯିବୁ ।

୧୯୩୪ରୁ ୧୯୩୮ ଶେଷ ପର୍ଯ୍ୟନ୍ତ ସେହି ବନ୍ୟା ପ୍ରପୀଡ଼ିତ ବାରି ଅଞ୍ଚଳରେ ରହିଗଲି । ସେହି ସମୟ ଭିତରେ ବାପୁଜୀ 'ମୌଳିକ ଶିକ୍ଷା'କୁ

ଜନ୍ମ ଦେଲେ । ଓଡ଼ିଶାରେ ନିର୍ବାଚନ ହୋଇଗଲା । ଗାନ୍ଧୀ ସେବା ସଂଘର ଗୋଟିଏ ଆଠ ଦିନିଆ ସମ୍ମିଳନୀ ବେରବୋଇ ଡେଲାଙ୍ଗଠାରେ ହେଲା, ଭାରତର ଅନେକ ପ୍ରଦେଶରେ କଂଗ୍ରେସ ମନ୍ତ୍ରୀ-ମଣ୍ଡଳ ଗଢ଼ାଗଲା । ଓଡ଼ିଶାର ବହୁସ୍ଥାନରେ ସଂଗଠନ କେନ୍ଦ୍ର ସବୁ ସ୍ଥାପନ କରି ପ୍ରତିଷ୍ଠିତ କର୍ମୀମାନେ ଲୋକଙ୍କ ଭିତରେ କାମ କଲେ । ଏଗୁଡ଼ିକ ପରସ୍ପରଠାରୁ ବିଚ୍ଛିନ୍ନ ଘଟଣା ନୁହେଁ । ପରସ୍ପର ସମ୍ବନ୍ଧ ସଂପୃକ୍ତ ।

ଗାନ୍ଧୀଙ୍କ ସଂଗଠନ କାମ ଭିତରୁ କେତୋଟିକୁ ମୁଁ ବାଛିନେଲି । ତୂଳାଭିଣା ସୂତାକଟା ଶିଖାଇବା ଥିଲା ପ୍ରଥମ କାମ । ସେ ଯୁଗରେ କାଠ ଅରଟ, ବାକ୍ସ ଅରଟ, କିସାନ ଚର୍ଖା, ଅମ୍ବର ଚରଖା ପ୍ରଭୃତି ନଥିଲା । ବାଉଁଶ ଚରଖା ଶହ ଶହ ସଂଖ୍ୟାରେ ତିଆରି କରାଇଲୁ । ଲୋକଙ୍କୁ ସୂତା କଟା ଶିଖାଇଲୁ ।

ଦ୍ୱିତୀୟଟି ହେଲା "ପ୍ରୌଢ଼ ଶିକ୍ଷା" । ଏହାର ମାଧ୍ୟମରେ ବହୁ ଜାଣିବା କଥା ଲୋକଙ୍କୁ ଶିଖାଇଲି । କଂପୋଷ୍ଟ ତିଆରି ପାଇଁ ପ୍ରଥମେ ସେହିଠାରେ ଉଦ୍ୟମ ହେଲା । ଅଳିଆ ସହିତ ଗୋରୁଗୋବର ବା ସ୍ଥଳ ବିଶେଷରେ ମନୁଷ୍ୟ ମଳ ମିଶାଇ କିଭଳି କଂପୋଷ୍ଟ ତିଆରି କରି ଯାଇପାରେ ତାହାର ପରୀକ୍ଷା ନିଜେକଲୁ ଓ ଲୋକଙ୍କୁ ଶିଖାଇଲୁ । ପ୍ରକୃତି ଯେଉଁ ଉଦ୍ଭିଦ ଆମକୁ ଦେଇଛି ତାହାର ସବୁମନ୍ତେ ଉପଯୋଗ କଲାପରେ ଯେତିକ ବଳିଲା ସେତିକରୁ କିଭଳି ଚମତ୍କାର କଂପୋଷ୍ଟ ଖତ ତିଆରି ହୋଇ ପାରିବ ସେ ବିଷୟରେ ଲୋକଙ୍କ ହୃଦ୍‌ବୋଧ କରାଇଲା ବେଳେ ଏହାଦ୍ୱାରା ଗାଁ ଗହଳ କିଭଳି ପରିଷ୍କାର ରହିବ ସେକଥା କହିଲୁ । 'ଅଳିଆରୁ ସୁନା' 'ଅଳିଆରୁ ସଂପଦ' ଭଳି ସ୍ଲୋଗାନର ପ୍ରକୃତ ଅର୍ଥ ବୁଝାଇଲୁ । ମାଟିଭିତରେ ଯେଉଁ ସୂକ୍ଷ୍ମ ଜୀବାଣୁ ଅଛନ୍ତି ସେହି ଗୁଡ଼ିକ କଂପୋଷ୍ଟ ତିଆରି ପ୍ରକ୍ରିୟାକୁ ତ୍ୱରାନ୍ୱିତ କରି ଦିଅନ୍ତି । କିନ୍ତୁ ସେଗୁଡ଼ିକ ମାଟିରେ ଅଧିକ ଗଭୀରରେ ନଥାନ୍ତି । ତେଣୁ ଏତିକ ଫୁଟରୁ ଅଧିକଗଭୀର ଗାତ ଖୋଳି ଅଳିଆ ଗୋବର ପକାଇଲେ ତଳ ଅଂଶଟି କଞ୍ଚା ରହିଯିବ, ଖତ ପାଲଟିବ ନାହିଁ ବୋଲି ବୁଝାଉ, କାର୍ଯ୍ୟରେ ଦେଖାଉ । ମୋର ଯେତେ ଦୂର ମନେ ହେଉଛି ୧୯୩୪ରେ କଂପୋଷ୍ଟ ବିଷୟରେ ଖୁବ୍ ଅଳ୍ପ ଲୋକେ ଜାଣିଥିଲେ । ମାଟିର ଗଠନ ଇତ୍ୟାଦି (Soil Chemistry) ବିଷୟରେ

ସାଧାରଣ ନିରକ୍ଷର ଲୋକଙ୍କୁ ବୁଝାଇ ହୃଦବୋଧ କରାଇବା ଟିକିଏ କଷ୍ଟସାଧ୍ୟ । କିନ୍ତୁ ସେମାନେ ତ ମୋଟା ମୋଟି ଭାବରେ ବୁଝି ଯାଉଥାଆନ୍ତି ।

ମହୁଚାଷ କରାଯାଉ ବୋଲି ଗାନ୍ଧିଜୀ କହିଲେ ଗୋପବାବୁଙ୍କୁ । ସେ ଶୁଣିଲେ ଯେ ଆମେ ଯେଉଁ ଅଞ୍ଚଳରେ ଅଛୁ, ସେ ଅଞ୍ଚଳରେ ଶହ ଶହ ଏକର ଜମିରେ ଧନିଆ, ସୋରିଷ ହୁଏ । ଟିକିଏ ସୁଦ୍ଧା ଅପେକ୍ଷା ନ କରି ପରାମର୍ଶ ଦେଲେ ମହୁଚାଷ ଆରମ୍ଭ କରିବା ପାଇଁ । ଖରସ୍ରୋତା ନଦୀ ଓ ବ୍ରାହ୍ମଣୀ ନଦୀ ଭିତରେ ଥିବା ଏହି ଅଂଚଳରେ ବନ୍ୟା ଫଳରେ ଆଣୁ ଏ ବହଳର ମଟାମାଡ଼ି ଜମିଯାଏ । ଲୋକେ ବହନ ଛାଟି ଦେଇ ଧନିଆ, ସୋରିଷ ପ୍ରଭୃତି ଫସଲ ଅମଳ କରନ୍ତି । ଏହା ସାଙ୍ଗକୁ କନ୍ଦମୂଳ ବାଇଗଣ ବୋଇତାଳୁ କଖାରୁ ମଧ୍ୟ ଶଗଡ଼ ଶଗଡ଼ ଅମଳ ହୁଏ । କରଂଜ ଗଛ ଥାଏ ଶହଶହ ସଂଖ୍ୟାରେ । ସେ ସବୁଥିରେ ଫୁଲ ଲଦି ହୋଇଯାଏ । ମହୁମାଛିଙ୍କ ସଂଖ୍ୟା ଯେତେ ଅଧିକ ହେବ ପରାଗଣ ବା ଫଳନେଶନ ସେହି ତୁଳନାରେ ଅଧିକ ହେବ । ଫସଲ ଅଧିକ ହେବା ସଙ୍ଗେ ସଙ୍ଗେ ମହୁ ମିଳିବ । ନିତ୍ୟାନନ୍ଦ କାନୁନ୍‌ଗୋଙ୍କୁ ପଠାଗଲା ମାନ୍ଦ୍ରାଜର କୟୁମ୍ବତୁର ଯାଇ ମହୁମାଛି ପାଳନ ସଂପର୍କରେ ପ୍ରତ୍ୟକ୍ଷ ଜ୍ଞାନ ଅର୍ଜନ କରିବା ପାଇଁ । ସେ ଫେରିଲା ପରେ ଆମେ ଆରମ୍ଭ କରିଦେଲୁ ମହୁଚାଷ । ଗୋପବାବୁ ଓ ମୁଁ ତାଲିମ ପାଇଗଲୁ ଭଲ ଭାବରେ । ସେବା ଘରେ ଓ ମୁଁ ଯେଉଁ ହରିଜନ ବସ୍ତିରେ ରହୁଥିଲି ସେଠାରେ ମହୁ ବାକ୍‌ସ ରଖିଲୁ । ପ୍ରଥମ ବର୍ଷହିଁ ଯଥେଷ୍ଟ ମହୁ ହେଲା । ସେତିକିବେଳେ ବହି ପଢ଼ି ଜାଣିଲି ମହୁମାଛି କେମିତି ଗୋଟିଏ ଗୋଟିଏ ଜାତିର ଫୁଲରେ ପଡ଼ୁଥାଆନ୍ତି—ସେଠାରୁ ମକରନ୍ଦ ଶେଷ ହେଲେ ଯାଇ ଅନ୍ୟ ଫୁଲକୁ ଯାଆନ୍ତି । ଭାରି ଆନନ୍ଦ ହେଲା ଯେତେବେଳେ ଧନିଆ ମହୁ ପାଇଗଲୁ । ଦେଖିବାକୁ ସ୍ୱଚ୍ଛ-ଟିକିଏ ଧଳାସିଆରଙ୍ଗ, ସ୍ୱାଦ ଚମତ୍କାର, ଗନ୍ଧମଧ୍ୟ ମନକୁ ପାଇଲା ଭଳି । ସୋରିଷ ମହୁର ରଙ୍ଗ ଟିକିଏ ହଳଦି ଆସିଆ—ସ୍ୱାଦରେ ଧନିଆ ମହୁଠାରୁ ପାର୍ଥକ୍ୟ ରହିଛି । କିନ୍ତୁ କରଞ୍ଜ ମହୁର ଗାଢ଼ରଙ୍ଗ ସାଙ୍ଗକୁ ସ୍ୱାଦ ମଧ୍ୟ ପିତାଳିଆ । ଲୋକଙ୍କୁ ବୁଝାଇବାକୁ ପଡ଼େ—ମହୁଫେଣାରେ ଯେଉଁ ମହମ ଦେଖୁଛ ତାହା ମହୁମାଛି ନିଜ ଦେହରୁ ହିଁ ବାହାର କରେ । ଏତେ ପରିମାଣରେ ମହୁଖାଇଲେ ଏତିକି ମହମ ବାହାରିବ ବୋଲି ବୁଝାଯାଏ—ଗଛ କୋରଡ଼ରୁ ମହୁଫେଣା ଭାଙ୍ଗି ଆଣି ଚୁପୁଡ଼ି ଦେଲେ ମହମତକ ଗଲା । ପୁଣି ମହୁମାଛି ବହୁ ପରିମାଣରେ ମହୁ

ଖାଇଲେ ଯାଇ ମହମ ବାହାର କରିବ ନିଜ ଦେହରୁ । ମହୁଗୃଷ କଲେ ବାକ୍‌ସ୍‌ରେ ଫେଣାତକ ଫ୍ରେମରେ ରହିବ ଓ ସେଥିରେ ମାଛିତକ ସେହିମହୁ ସାଇତିବେ ଯାହାକି ମହମ ତିଆରିରେ ଖର୍ଚ୍ଚ କରନ୍ତେ । ସେତିକିବେଳେ ମୁଁ ପଦାର୍ଥ ବିଦ୍ୟାର Centrifugal ଓ Centrepetal forceର ପାର୍ଥକ୍ୟ ବୁଝିଲି । ଏକ୍‌ସ୍‌ଟ୍ରାକ୍ଟର ବା ମହୁ ବାହାର କରିବା ସରଳ ଯନ୍ତ୍ର ଭିତରେ ଫେଣା ଫ୍ରେମ୍ ଗୁଡ଼ିକ ଖଞ୍ଜି ଦେଇ ବୁଲାଇଲେ Centrifugal force (ଅପକେନ୍ଦ୍ର) ଫଳରେ ମହୁ କେମିତି ଛୁଡ଼ିକି ଯାଇ ଏକ୍‌ସ୍‌ଟ୍ରାକ୍ଟର କାନ୍ଥରେ ଲାଗି ତଳକୁ ବହି ଆସୁଛି ଦେଖି ମନ ଭିତରେ ନାନା ପ୍ରଶ୍ନଉଠେ । ଯେଉଁ ଲୋକର ସ୍ୱଭାବ ଏମିତି ଯେ ଅନ୍ୟମାନେ ତା'ଠାରୁ କ୍ରମେ ଦୂରେଇ ଯାଉଛନ୍ତି—ତା' ଭିତରେ ଏହି Centrifugal force (ଅପକେନ୍ଦ୍ର ବଳ) କାମ କରୁଛି ବୋଲି ହସୁ ଓ ସାଙ୍ଗ ସୁଖଙ୍କୁ ଚିଡ଼ାଉ । କିନ୍ତୁ ବାପୁଜୀଙ୍କ କ୍ଷେତ୍ରରେ ତାହାର ବିପରୀତ ପ୍ରଭାବ ଥିବାରୁ ହଜାର ହଜାର ଲୋକତ ତାଙ୍କ ଚାରିପଟେ ରୁଣ୍ଡ ହୋଇ ଯାଉଛନ୍ତି ବୋଲି କୁହା କୋହି ହେଉ । ଗଛ କୋରଡ଼ରୁ ସାତଫେଣିଆ ମାଛିଙ୍କୁ ଯତ୍ନର ସହିତ ଧରି ଆଣି ବାକ୍‌ସରେ ରଖିବା ଗୋଟାଏ ସୂକ୍ଷ୍ମ କୌଶଳ । ରାଣୀ ମହୁମାଛିଟିକୁ ଧରି ବାକସ ଭିତରେ ଛାଡ଼ିଦେଲେ ଅନ୍ୟ ମାଛିଯାକ ଧୀରେ ଧୀରେ ତା' ଚାରିପଟେ ରୁଣ୍ଡ ହୋଇଯିବେ । ଏତିକିବେଳେ ଟିକିଏ ଅସାବଧାନ ହେଲେ ରାଣୀ ଉଡ଼ି ପଳାଇବ ଓ ତା' ସହିତ ଅନ୍ୟ ମାଛିସବୁ ଉଡ଼ିଯାଇ ଗୋଟାଏ ଗଛଡାଳରେ ବସିଯିବେ । ଗଛରେ ଚଢ଼ି ସେମାନଙ୍କୁ 'ପ୍ରବର୍ତ୍ତାଇ' ପୁଣି ବାକ୍‌ସ ଭିତରକୁ ଆଣିବାଟା ନିଶ୍ଚୟ ଗୋଟାଏ କଷ୍ଟର କଥା । ଥରେ ସେମିତି କରିବାକୁ ଯାଇ ମୁଁ ଗୋଟାଏ ଉଚ୍ଚା ଗଛରେ ଚଢ଼ିଗଲି । ବାକ୍‌ସଟାକୁ ଦଉଡ଼ିରେ ବାନ୍ଧି ସେଠାକୁ ନେଇ ଝୁଲାଇ ଦେଇ ଗୋଟିଏ ପର ସାହାଯ୍ୟରେ ମାଛିଙ୍କୁ ବାକ୍‌ସମୁହାଁ କରିବାବେଳେ ଟିକିଏ ଅସାବଧାନ ହୋଇଗଲି । ମାଛିଯାକ ରାଗିଯାଇ ବିନ୍ଧି ଦେଇ ଗଲେ । ଗୋପବାବୁ ତଳେ ଥାଇ ପାଟିକରୁଥାନ୍ତି ମୁହଁଟାରେ ଦ' ହାତ ଦେଇ ରକ୍ଷା କରି ନେ— ଆଖିର କିଛି ନହେଉ । ସେଦିନ ଶହ ଶହ ମାଛି ବିନ୍ଧି ଦେଇଥିଲେ । ବହୁ କଷ୍ଟରେ ତଳକୁ ଓହ୍ଲାଇ ଆସିଲା ପରେ ଗୋଟି ଗୋଟି କରି ମୋ ଦେହରୁ ନାଉଡ଼ିତକ ବାହାର କରାଗଲା ଓ ଗୋଟାଏ କଅଁଣ ପକ ଘଷା ହେଲା । କିନ୍ତୁ ଯନ୍ତ୍ରଣା ଥାଏ ଓ ଜର ହୋଇଗଲା । ତିନି ଚାରିଦିନ ବିଛଣାରେ

ଚଢ଼ଉରନ୍ସଲ ଜରନରେ । ବହୁ ଲୋକ ମହୁ ବକ୍ସ ରଖି ଯଥେଷ୍ଟ ପଇସା ରୋଜଗାର କଲେ । ବାକ୍ସକୁ କଲୋନି ବୋଲି କୁହାଯାଏ । ମୋର ଥିଲା ଅଠରଟି କଲୋନି । ପ୍ରତ୍ୟେକରୁ ମହୁସିଜନରେ ପଚଶ ତିରିଶ ପାଉଣ୍ଡ ଲେଖାଁ ମହୁ ମିଳୁଥିଲା । ବସ୍ତିର ଧନଆ ମହୁନେଇ କେନ୍ଦ୍ରଅସେଂବ୍ଲିର ସଭ୍ୟ ଭୁବନ ନନ୍ଦ ଦାସ (B. Das) ବହୁ ବିଶିଷ୍ଟ ଲୋକଙ୍କୁ ଚଖାଇଥିଲେ ଓ ଏହାର ତୁଳନା ଅଷ୍ଟ୍ରେଲିଆର ସର୍ବୋତ୍କୃଷ୍ଟ ଇଉକାଲିପ୍ଟସ ମହୁ ସହିତ କରାଯାଇପାରେ ବୋଲି ଗର୍ବର ସହିତ କହୁଥିଲେ । କହିବା ନିଷ୍ପ୍ରୟୋଜନ ଯେ ଗାନ୍ଧିଜୀଙ୍କ ପାଖକୁ ସେବାଗ୍ରାମକୁ ବହୁବାର ମହୁ ଯାଇଛି ଓ ଅନ୍ୟ ନେତାମାନେ ଜାଣିପାରିଛନ୍ତି ମହୁଚାଷରେ ଆମେ କେମିତି ସଫଳତା ହାସଲ କରିପାରୁଥିଲୁ । ପରେ ସେ ଅଞ୍ଚଳରେ ଗୋଟିଏ ମହୁ ସମବାୟ ସମିତି ଗଢ଼ାଗଲା ଓ ସଫଳତା ଦେଖାଇଲା । ପରବର୍ତ୍ତୀ କାଳରେ ଆବଶ୍ୟକତା ଦେଖାଦେଲାରୁ ମହୁ ବିଷୟରେ ଓ ମହୁମାଛିଙ୍କ ବିଷୟରେ ବହୁତ କିଛି ପଢ଼ିଲି । ଜ୍ଞାନମଣ୍ଡଳର ୧୯-ଖଣ୍ଡରେ ମହୁମାଛି ଉପରେ ଯେଉଁ ଦୀର୍ଘ ପ୍ରବନ୍ଧ ଲେଖାଯାଇଛି ତାହା ହେଉଛି ଏହିସବୁ ପଢ଼ା ଓ ଅଭିଜ୍ଞତାର ଫଳ । ପିଲଙ୍କ ପାଇଁ, ଅତି ଅଳ୍ପ ପଢ଼ିଥିବା ଲୋକଙ୍କ ପାଇଁ ଯେତେବେଳେ ଏ ବହିସବୁ ଲେଖିଲି ସେତେବେଳେ ମହୁ ବହିର ନାମଟି କଅଣ ହୋଇବ ସେ ବିଷୟରେ ବହୁତ ଚିନ୍ତା କଲି । ଶେଷରେ ଗୋଟିଏ ନାଁ ମୁଣ୍ଡ ଭିତରକୁ ଆସିଗଲା । ସେଇଟି ହେଲା—ମିଠାଇ ଦେହରେ ଲାଗିଲା ଡେଣା" (ଫ୍ରେଞ୍ଚ ଲର୍ ଗପ୍ୟୁ ମିଠାଇକେ—Sweets took to wings ନାମଟି ପଛରେ ଗୋଟିଏ ଗଳ୍ପ ବି ଥିଲା । ଯେଉଁ ଯୁଗରେ ଚିନି ଗୁଡ଼ କଅଣ ବୋଲି ମଣିଷ ଜାଣିନଥିଲା ସେ ଯୁଗରେ କୌଣସି ପ୍ରକାରର ମିଠାଇ ସେ ଚାଖିନଥିଲା । ନିଆଁର ବ୍ୟବହାର ଶିଖିଲା ପରେ ସେ ଯେତେବେଳେ ମହୁଫେଣାରେ ନିଆଁ ଲଗାଇ ମାଛିତକ ଘୋଡ଼ଦେଲା ଖାଇବ ବୋଲି ସେତେବେଳେ ସେ ମହୁର ସନ୍ଧାନ ପାଇଲା ସେଥିରୁ ଟିକିଏ ଚାଖିଦେଇ ସେ ଆନନ୍ଦରେ ବିଭୋର ହୋଇଗଲା । ତେଣୁ କୁହାଯାଏ ଯେ ମହୁ ହେଉଛି ମନୁଷ୍ୟ ଜାତିର ଆଦ୍ୟ "ଘନମିଠା" ବା ମିଠାଇ । ସେଥିରେ ଡେଣା ଲାଗିଗଲା ବୋଲି ଏଇଥିପାଇଁ କୁହାଯାଇଛି ଯେ—ମହୁମାଛି ଫୁଲରୁ ମକରନ୍ଦ ବା ନେକ୍ଟାର ସଂଗ୍ରହ କରି ନିଜ ପେଟ ଭିତରେ ଗୋଟିଏ ସ୍ୱତନ୍ତ୍ର ଖୋଳରେ ରଖିଦେଇ ଫେଣାକୁ ଫେରିଆସେ । ଉଡ଼ି ଉଡ଼ି ଆସିଲା

ବେଳେ ରସାୟନିକ ପ୍ରକ୍ରିୟା ପେଟ ଭିତରେ ସାଧିତ ହୁଏ ଓ ମକରନ୍ଦ ମହୁ ପାଲଟିଯାଏ । ତାକୁ ଆଣି ଫେଣାର ଖୋପ ଭିତରେ ରଖିଦିଏ । ଏମେ ଖୋପଟି ଭର୍ତ୍ତିହୋଇ ଗଲାବେଳେ ବା ପରେ ଦଳେ ମାଛି ତାକୁ ଡେଣାରେ ବିଞ୍ଚନ୍ତି । ଜଳୀୟ ଅଂଶତକ ଶୁଖିଗଲେ ମହୁ ପାଚିଲ, ପୋଖତ ବା ମଚ୍ଛଡ଼ ହୋଇଯାଏ । ତାହାପରେ ଖୋପ ମୁହଁଟିକୁ ମହମ ଦ୍ୱାରା ବନ୍ଦ କରିଦିଏ । ବନ୍ଦର ନାମଟି ପିଲାଙ୍କୁ ଖୁବ ଭଲ ଲାଗିଛି ଓ ସେମାନେ ମଉଜ କଲାବେଳେ 'ଆଜ ମିଠାଇ ଦେହରେ ଲାଗୁରେ ଡେଣା' କହି ଟିକିଏ ନାଚଯାଆନ୍ତି ।

ସେତେବେଳେ ସାମାନ୍ୟ ବୋଲି ଜଣାପଡ଼ିଥିବା ଗୋଟିଏ ଘଟଣା ମୋ ପାଇଁ ଶିକ୍ଷା ଉପାଦାନ ଯୋଗାଇ ଦେଲା । ଝରସୁଆଁ ନଦୀ କଡ଼େ କଡ଼େ ଯେଉଁ ବିସ୍ତୃତ ଅଞ୍ଚଳ ରହିଛି ସେଥିରେ ଘାସ ଖୁବ୍ ବଢ଼େ । ଗୋରୁ ପେଟେ ପେଟେ ଚରିଦେଇ ଖୁବ୍ ସୁସ୍ଥ ରହନ୍ତି ଓ ପ୍ରଚୁର କ୍ଷୀର ଦିଅନ୍ତି । ଭଲ ବଳଦ ଉତ୍ତରନ୍ତି ଓ ବିକିଲେ ଭଲ ପଇସା ମିଳେ । ସାଧାରଣତଃ ହରିଜନମାନେ ଗାଈ ରଖି ବଳଦ ଉତାରି ବିକି ଥାଆନ୍ତି । କିନ୍ତୁ ବର୍ତ୍ତ ସେମାନେ କ୍ଷୀରରୁ ପଇସା ପାଆନ୍ତିନାହିଁ । ୧୯୩୪ରେ ଆମେ ଗଲାବେଳେ କୌଣସି ସବର୍ଣ୍ଣ କଣ୍ଡରଙ୍କ ଘରୁ କେହି କ୍ଷୀର ନେଉନଥିଲେ । ସେମାନେ ଛୁଇଁଥିବା କ୍ଷୀର ମଧ୍ୟ ସ୍ପର୍ଶ ଯୋଗ୍ୟ ନୁହେଁ । କେଜେ ଦୁହିଁନାଅ ବୋଲି କହିଲେ ମଧ୍ୟ ଉଚ୍ଚଜାତିର ଲୋକେ ରାଜି ହୁଅନ୍ତିନାହିଁ । ସେମାନେ ଯୁକ୍ତି କରନ୍ତି—ଅସ୍ପୃଶ୍ୟଙ୍କ ଘରର ତୋରାଣି ପାଣି ଯେଉଁ ଗାଈ ଖାଇଛନ୍ତି ସେଗୁଡ଼ିକ ମଧ୍ୟ ଅସ୍ପୃଶ୍ୟ । ଆମେ ପ୍ରଥମେ ସେହି ପ୍ରଥା ବିରୁଦ୍ଧରେ ସ୍ୱର ଉତ୍ତୋଳନ କଲୁ । ସେଭଳି କରିବାରେ ମୁଁ ଖୁବ୍ ଆଗ୍ରହୀ ଥିବାରୁ ହରିଜନଙ୍କ ଭିତରେ ମୁଁ ଲୋକପ୍ରିୟ ହୋଇଗଲି । ଆମେ ପ୍ରଥମେ କ୍ଷୀର କିଣିଲୁ । ଆଜିର ହିସାବରେ ଟଙ୍କାକୁ ଷୋହଳ ଲିଟର ମିଳିଲା । ଏମେ ଅନ୍ୟମାନେ କିଣିଲେ—ହରିଜନମାନେ ବେଶୀ ପଇସା ପାଇଲେ । ଏମିତି ହେଉଥିଲା ବେଳେ ଗୋପବନ୍ଧୁ ଚୌଧୁରୀ ଯାଇଥିଲେ ସେବାଗ୍ରାମ । ସେଠାରେ ଗୋଟିଏ ବିଷୟରେ ଆଲୋଚନା ପଡ଼ିଲା । ଭାଇସବୁ ଲକ୍ଷ୍ୟ କଲେ ଗାନ୍ଧୀଜୀଙ୍କର ଗୋପାଳନ ଓ ଗୃହ ବିଷୟରେ ଖୁବ ଆଗ୍ରହ । ସଠିକ କହିପାରିବ ନାହିଁ—ସେତେବେଳେ କୁହାଯାଉଥିଲା ଯେ ଲକ୍ଷ୍ୟଥିଲେ

ନଜେ ଜଣେ ଗୃଷୀ । ସେ ଗୃହାନ୍ତ ଭାରତରେ ଗୃଷ ଓ ଗୋପାଳନର ଉନ୍ନତି ହେଉ । ବିଦେଶରୁ ଭଲ ଜାତିଆ ଷଣ୍ଢ ଆଣି ଗୃଷୀମାନଙ୍କୁ ଦେଲେ ଭଲ ଜାତିଆ ଗାଈ ଜନ୍ମିବେ । ଅଧିକ କ୍ଷୀର ଦେବେ । ଭଲ ବଳଦ ଗୃଷୀମାନେ ପାଇବେ । ଏହି ବ୍ୟବସ୍ଥାର ପୂର୍ଣ୍ଣ ସୁଯୋଗ ଗାଁ ଗହଳର କର୍ମୀମାନେ ନେବା ଉଚିତ ବୋଲି ସେଠାରେ ମତପ୍ରକାଶ ପାଇଲା । ବର୍ଷିକୁ ଗୋପବାବୁ ଗୋଟିଏ ଷଣ୍ଢ ଅଣାଇଲେ । ତା' ନାକ ଫୋଡ଼ା ହୋଇ କଡ଼ିଆ ଲାଗିଥିବାରୁ ତାକୁ ଚଳାଇବା କଷ୍ଟ ନଥିଲା । କିନ୍ତୁ ତାକୁ ସଫାସୁତୁରା ଗୁହାଳରେ ଯତ୍ନରେ ରଖାହେବ, ଠିକ୍ ସମୟରେ ଘାସ ଦାନା ଖାଇବାକୁ ଦିଆଯିବ । ସେ ଭଲ ପାଣି ପିଇବ । ରୋଗର ଲକ୍ଷଣ ପ୍ରକାଶ ପାଇଲେ ଚିକିତ୍ସା ହେବ । ସପ୍ତାହରେ କେତେକଥର ଗାଈ ସହିତ ଯୋଡ଼ି ଖାଇବାର କଥା ତା'ଠାରୁ ଅଧିକଥର ଯୋଡ଼ି ଖାଇବ ନାହିଁ; ଯେଉଁ ଗାଈ ଯୋଡ଼ି ଖାଇଛି ତା ଛୁଆ କେମିତି ହେଉଛନ୍ତି, ବାଛୁରୀଙ୍କୁ ଯତ୍ନରେ ରଖି ସୁଷମ ଖାଦ୍ୟ ଦିଆଯାଉଛି କି ନାହିଁ, ତା' ଛୁଆ ପୁଣି କେମିତି ହେଉଛି ତାକୁ ଲକ୍ଷ୍ୟ କରିବାକୁ ହେବ ଇତ୍ୟାଦି ଇତ୍ୟାଦି ବିଷୟରେ ଦୃଷ୍ଟି ଦିଆଯାଇ ରେକର୍ଡ ରଖିବାକୁ ହେବ । ଷଣ୍ଢକୁ ପ୍ରତିଦିନ ବୁଲାଇବାକୁ ପଡ଼ିବ ବ୍ୟାୟାମ ପାଇଁ । ଏତେକଥା କରିବାକୁ ଥିବାରୁ ମୋ ଉପରେ ଦାୟିତ୍ୱ ଲଦିଦିଆଗଲା । ତା' ଖାଇବା ଚିନ୍ତା ରହିଲନାହିଁ ମାତ୍ର ଆଠଅଣା ପଇସା ଆଦାୟ କରାଯାଏ ଗୋଟିଏ ଗାଈ ଯୋଡ଼ି ଖାଇବା ପାଇଁ । ସେଇଥିରେ ତା' ଖାଇବା ଖର୍ଚ୍ଚ ଉଠିଯାଏ । କେହି କେହି ଗାଈ ଆଣିଲାବେଳେ ବଡ଼ ବିଡ଼ାଏ ଘାସ ନେଇ ଆସି ଥାଆନ୍ତି ସଙ୍ଗରେ । ଏହି ଯୋଜନା ଖୁବ୍ ଫଳପ୍ରଦ ହେଲା । ଆଜି ଭାରତର ଯେ କୌଣସି ଗୋପୁସ୍ତକ ଦେଖିଲେ ସେଥିରେ 'ବିଞ୍ଝାରପୁର ବ୍ରିଡ୍' ବୋଲି ଗୋଟିଏ ଉନ୍ନତ ଜାତିର ଗୋରୁଙ୍କ ବିଷୟରେ ଉଲ୍ଲେଖ ରହିଛି । ସେହି ବ୍ରିଡ୍ ଜନ୍ମ ନେଇଥିଲା ଖରସ୍ରୋତା କୂଳରେ । ଯେଉଁ କେତେଜଣ ସେହି ବ୍ରିଡ୍‌କୁ ଉତ୍ତାରିବାରେ ସାହାଯ୍ୟ କରିଥିବାର ସୌଭାଗ୍ୟ ଅର୍ଜନ କରିଛନ୍ତି ମୁଁ ସେହିମାନଙ୍କ ଭିତରୁ ଜଣେ ହୋଇପାରିଥିଲି ବୋଲି ଭାବିହେଲା ବେଳେ ଆଜି ମଧ୍ୟ ମୋର ସନ୍ତୋଷ ହୁଏ ।

ଗୋରୁଙ୍କ ବିଷୟରେ ସ୍ୱତନ୍ତ୍ର ଆଗ୍ରହ ଥିବାରୁ ଯେତେବେଳେ ବୈଜ୍ଞାନିକ ଗାନ୍ଧୀବାଦୀ ସତୀଶ ଚନ୍ଦ୍ର ଦାସଗୁପ୍ତଙ୍କ 'ଭାରତରେ ଗାଈ'

(Cow in India) ବହି ବାହାରିଲା ତାକୁ ଭଲ ଭାବରେ ପଢ଼ିଲି । ଦୁଇ ଖଣ୍ଡରେ ସମାପ୍ତ ହୋଇଥିବା ଏହି ବହିର ମୁଖବନ୍ଧ ଲେଖିଥିଲେ ରାଜେନ୍ଦ୍ର ପ୍ରସାଦ । ବହିଟିକୁ ଲେଖିବା ପାଇଁ ମହାତ୍ମା ଗାନ୍ଧୀ ସତୀଶ ଚନ୍ଦ୍ର ଦାସ-ଗୁପ୍ତଙ୍କୁ ବିଶେଷ ଭାବରେ ଅନୁରୋଧ କରିଥିଲେ । ସେଥିରେ କେବଳ ଗୋରୁଙ୍କ ଯତ୍ନ ବା ରୋଗ ବିଷୟରେ ଲେଖାନଥିଲା । ଭାରତର କୃଷି ଅର୍ଥନୀତିରେ ଗୋରୁର ସ୍ଥାନ କେଉଁଠି ଓ ସେ ବିଷୟଟିକୁ ବିଜ୍ଞାନ ସମ୍ମତ ମନ ନେଇ ଆଲୋଚନା ନକଲେ ଭାରତୀୟ କୃଷକର କି କି ପ୍ରତ୍ୟକ୍ଷ ଓ ପରୋକ୍ଷ କ୍ଷତି ହେବ ତାହାର ମଧ୍ୟ ବିସ୍ତୃତ ଆଲୋଚନା ରହିଥିଲା । ଯେଉଁ ଦେଶରେ କୋଟି କୋଟି ଲୋକ କେବଳ ଚାଷ ଉପରେ ନିର୍ଭର କରନ୍ତି ସେ ଦେଶରେ ଯଦି କୃଷି ଯନ୍ତ୍ରପାତିର ବହୁଳ ପ୍ରସାର କରାଯାଏ, ଲୋକେ ତ ବେକାର ହେବେ, ବଳଦର ଆବଶ୍ୟକତା କମିଯିବ । ଶେଷକୁ ଏମିତି ହେବ ଯେ ପ୍ରଚୁର କରାଯିବ ପ୍ରୋଟିନର ଅଭାବ ଯେଉଁ ଦେଶରେ ଉତ୍କଟ ସେ ଦେଶରେ ଗୋରୁଙ୍କୁ କାଟି ଖାଇଲେ କିଛି ଦୋଷ ନାହିଁ । ବଳଦ ତ ଆଉ ଏଣେ ତେଣେ କେବଳ ବୁଲିବେ ନାହିଁ । ଗୋରୁ ପ୍ରତି ଆଦର କମିଗଲେ ଖତର ଅଭାବ ପଡ଼ିବ । କୃତ୍ରିମ ସାର ଉପରେ ହିଁ ନିର୍ଭର କରିବାକୁ ପଡ଼ିବ । ତାହାର ପରିଣତି କେବେ ହେଲେ ଭଲ ନୁହେଁ । ସେହି ବହିରେ ସେ ପ୍ରଥମେ କମ୍ପୋଷ୍ଟ ବିଷୟର ଉଲ୍ଲେଖ କଲେ । ଅଳିଆ ଏବଂ ଗୋବର ସାହାଯ୍ୟରେ ଯଦି ପ୍ରଚୁର ପରିମାଣରେ କମ୍ପୋଷ୍ଟ ତିଆରି କରା-ଯାଇ ପାରିବ ଚାଷୀ ଏଭଳି ଲାଭବାନ ହେବ ଯେ କ୍ଷୀରଟା ଗୋଟାଏ ବାଇ ପ୍ରଡକ୍ଟ ବା ବିନା ପଇସାରେ ମିଳୁଥିବା ଦ୍ରବ୍ୟ ହୋଇଯିବ । କ୍ଷୀର ଓ କ୍ଷୀରଜାତ ଦ୍ରବ୍ୟ ମିଳିଲେ ଲୋକେ ସ୍ୱାସ୍ଥ୍ୟବାନ ହୋଇଯିବେ । କୃଷି ଅର୍ଥନୀତି ଉପରେ ପ୍ରତିଷ୍ଠିତ ସମାଜ ଭାରତର କାମ୍ୟ ବୋଲି ସେ ଖୁବ ଜୋର ଦେଇ କହିଥିଲେ । ପାଶ୍ଚାତ୍ୟ ଜଗତର ଅର୍ଥନୀତି ଶୋଷଣ ଉପରେ ହିଁ ପ୍ରତିଷ୍ଠିତ ବୋଲି ମୋର ଧାରଣା ହେଲା । କୋଟି କୋଟି ଲୋକଙ୍କଠାରୁ ପ୍ରତ୍ୟକ୍ଷ ଓ ପରୋକ୍ଷରେ ଧନ ନେଇ ନିଜ ଦେଶରେ ଜମା କଲା ଫଳରେ ହିଁ ସେମାନେ ସମୃଦ୍ଧ ହୋଇଗଲେ । ସେହି ଶୋଷଣରୁ ଆଂଶିକ ମୁକ୍ତି ଦେବ ଭାରତର କୃଷି ଭିତ୍ତିକ ଅର୍ଥନୀତି ବା ସମାଜ । ଏହି ଧାରଣା ମୋର ସେତେବେଳେ ହୋଇଥିଲା ଓ ଆଜି ମଧ୍ୟ ସେଥିରେ ପରିବର୍ତ୍ତନ ଆଣିବାକୁ ଇଚ୍ଛା କରୁନାହିଁ । ସାମ୍ରାଜ୍ୟବାଦର ମୂଳ କେଉଁଠି ତାହା ଆଂଶିକ ଭାବରେ

ବୁଝିବା ପାଇଁ ସମର୍ଥ ହେଲ । ସେହି ଦୁଇଟିଯାକ ବହିକୁ ପରବର୍ତ୍ତୀକାଳରେ ତିନି ଚାରଥର ପଢ଼ିଛୁ । ଯେତେଥର ପଢ଼ିଛୁ ସେତେଥର ସେଥିରୁ ନୂଆ ନୂଆ କଥା ଶିଖିଛୁ ।

ଗୋଟାଏ ଦୃଷ୍ଟିରୁ ନୂତନ ଶିକ୍ଷା ମିଳିଲି ସଙ୍ଗଠନ କାମର ଗୋଟିଏ କାର୍ଯ୍ୟକ୍ରମକୁ ରୂପ ଦେବାବେଳେ । ତାହା ହେଉଛି ସମାଜରୁ ଅସ୍ପୃଶ୍ୟତା ବର୍ଜନ । ମହାତ୍ମାଗାନ୍ଧୀ ଏତେଦିନ ଓଡ଼ିଶାରେ ପଦଯାତ୍ରା କରି ସମାଜରୁ ଛୁଆଁ ଅଛୁଆଁ ଭାବ ଦୂର କରିବା ପାଇଁ ଯେଉଁ ବିକଳ ନିବେଦନ କରିଥିଲେ ତାହା ଆମେ କେହି ଭୁଲି ନଥିଲୁ । ତେଣୁ ବରି ଅଞ୍ଚଳରେ ବସିବା ଦିନୁ ସେ ଦିଗରେ କାର୍ଯ୍ୟ ଆରମ୍ଭ କରିଦେଲୁ । କିନ୍ତୁ ଦେଖାଗଲା ଯେ ସେଇଟି ଅତି କଠିନ କାମ । ଅସ୍ପୃଶ୍ୟତା ବର୍ଜନ ବିରୋଧରେ ଯେଉଁମାନେ ସ୍ୱର ଉତ୍ତୋଳନ କଲେ ସେମାନେ ଖରାପ ଲୋକ ନୁହନ୍ତି । ଅନେକ ଥିଲେ ଧର୍ମପ୍ରାଣ । ହରିଜନମାନଙ୍କୁ ଶୋଷଣ କରିବାକୁ ସେମାନଙ୍କର କିଛି ସ୍ୱତନ୍ତ୍ର ଆଗ୍ରହ ନଥିଲା । ତଥାପି ସେମାନେ ଇଚ୍ଛା କରୁଥିଲେ ସମାଜରେ ପାହାଚ ପାହାଚ ସବୁ ରହୁ ଓ ସବା ତଳ ପାହାଚରେ ଦଳେ ଲୋକ ରହି ଥାଆନ୍ତୁ । ଭିତରେ ଲୁଚି ରହିଥିବା ଅହଂଭାବ ଏହା ଦ୍ୱାରା କିଛି କିଛି ପୁଷ୍ଟି ପାଉଥିଲା । ଏହି ଉଚ୍ଚ ନୀଚ ଭେଦ ଭାବ ଆମର ଅସ୍ଥି ମଜ୍ଜାଗତ ହୋଇ ଯାଇଛି । ସେଇଠି ଥିଲା ଅସୁବିଧା । ଗାନ୍ଧିଜୀ ଗୋପବାବୁଙ୍କୁ କହିଲେ—ବିନୋଦ ସୁରେନ୍ଦ୍ର ଯାଇ ବରି ସେବାଘର ନିକଟସ୍ଥ ଦୁଇଟି ହରିଜନ ବସ୍ତିରେ ହିଁ ରହନ୍ତୁ । ତାହା ହେଲେ ସେମାନଙ୍କ ଆର୍ଥିକ ସାମାଜିକ ସମସ୍ୟାର ମର୍ମ ବୁଝି ପାରିବେ । ମୁଁ ଥିଲି ଗୋଟିଏ ତଳ ଶ୍ରେଣୀର ହରିଜନ ବସ୍ତିରେ । ଲକ୍ଷ୍ୟ କଲି ସେମାନେ ପ୍ରକୃତ ଅର୍ଥରେ ଥିଲେ ସାହସୀ । ନିଜର ବେଶୀ କିଛି ହରାଇବାକୁ ନଥିବାରୁ ବୋଧହୁଏ ସେମାନେ ଆବଶ୍ୟକବେଳେ ବେପରୁଆ ଭାବ ଦେଖାଇ ପାରୁଥିଲେ । କେତେ ଶହ ହରିଜନ ଯୁବକଙ୍କୁ ପାଠ ପଢ଼ାଇଛୁ । ସେଭଳି କରିଥିବାରୁ ୧୯୪୨ରେ ଯେତେବେଳେ ଭାରତ ଛାଡ଼ ଆନ୍ଦୋଳନ ଆରମ୍ଭହେଲା ସେମାନେ ପ୍ରତ୍ୟକ୍ଷ ଭାବରେ ଯୋଗଦେଲେ ଓ ଦୀର୍ଘକାଳର କାରାଦଣ୍ଡ ଭୋଗକଲେ । ଆଜି ମଧ୍ୟ ସେମାନେ ରାଜନୈତିକ ପେନସନ୍ ପାଉଛନ୍ତି । ଏହି ଯେଉଁ ସମୟର କଥା କହୁଛି ତାହାପରେ ଦୀର୍ଘ ଚଉଷଠି ବର୍ଷ ବିତିଯାଇଛି । ସ୍ୱାଧୀନତା ମଧ୍ୟ ମିଳିଥିଲା ଷାଠିଏ ବର୍ଷ ପୂର୍ବେ । କିନ୍ତୁ ଅସ୍ପୃଶ୍ୟତା ନିବାରଣ ଦିଗରେ

ବିଶେଷ କିଛି ହୋଇପାରିଛି ବୋଲି ମୁଁ ଅନୁଭବ କରୁନାହିଁ । ବହୁ ସଂଖ୍ୟାରେ ହରିଜନମାନେ ପାଠପଢ଼ୁଛନ୍ତି, ଚାକିରି ପାଉଛନ୍ତି । କେତେକଙ୍କର ଆର୍ଥିକ ଉନ୍ନତି ବେଶ୍ ଭଲ ଭାବରେ ହୋଇଛି । କିନ୍ତୁ ଗାଁ ଗହଳରେ ସେମାନେ ଗୋଟିଏ ଗୋଟିଏ ଅଲଗା ଗୋଷ୍ଠୀ ହୋଇ ରହିଛନ୍ତି । ମୋ ଜାଣିବାରେ ଓଡ଼ିଶାରେ ଗୋଟିଏ ହେଲେ ଗ୍ରାମ ନାହିଁ ଯେଉଁଥିରେ କି ହରିଜନମାନେ ସବର୍ଣ୍ଣମାନଙ୍କ ବସ୍ତିରେ ଘରକୁ ଘର ଲାଗି ଘର ତୋଳିଛନ୍ତି ଓ ରହୁଛନ୍ତି । ସେଇଟି ବାଉରି କଣ୍ଡରା ପାଣ ହାଡ଼ି ସାହି ବୋଲି ଆଙ୍ଗୁଠି ଦେଖାଇ କହି ଦିଆଯାଉଛି । ଧର୍ମ ମାଠୁଆ ହରିଜନଙ୍କୁ ଦେଖିବାକୁ ମିଳୁଛି—କିନ୍ତୁ ସମାଜରେ ଅନ୍ୟମାନଙ୍କ ସହିତ ସମାନ ଆସନରେ ବସୁଥିବା ହରିଜନ ମିଳୁ ନାହାନ୍ତି ।

୧୯୮୭ରେ ଯେତେବେଳେ ଗାଁ ଗହଳରେ ମଦ ଗଞ୍ଜେଇ ପ୍ରକାଶ୍ୟରେ ବିକି ହେଉଛି, ଉଚ୍ଚଶିକ୍ଷିତ ଯୁବକମାନେ ମଦ ଖାଇବାରେ ବାହାଦୁରି ଦେଖୁଛନ୍ତି, ସରକାର ଅଧିକରୁ ଅଧିକ ସଂଖ୍ୟକ ମଦଦୋକାନ ଖୋଲିବା ପାଇଁ ବିଶେଷ ଆଗ୍ରହ ଦେଖାଉଛନ୍ତି ସେତେବେଳେ ୧୯୩୪ରୁ ୩୮ ଭିତରେ ନିଶାନିବାରଣ ପାଇଁ ମୁଁ କଅଣ କରିଥିଲି, କି ଅସୁବିଧାରେ ସମ୍ମୁଖୀନ ହୋଇଥିଲି, କି ବିପଦ ନିଜ ଉପରକୁ ବରଣ କରି ଆଣିଥିଲି ଇତ୍ୟାଦିର ବର୍ଣ୍ଣନା ସମ୍ପୂର୍ଣ୍ଣ ଅପ୍ରାସଙ୍ଗିକ ବୋଲି ମନେ ହେଉଛି । ତେବେ ଏତିକି କୁହାଯାଇ ପାରେ ନିଶା ନିବାରଣ ଉଦ୍ୟମରୁ ଆମ କର୍ମକ୍ଷେତ୍ରରେ ଗୋଟିଏ କୁଟୀର ଶିଳ୍ପ ମୁଣ୍ଡଟେକି ପାରିଥିଲା । ଖଜୁରି ତାଡ଼ି ବହୁଲୋକ ପିଉଥିଲେ । ଯେଉଁମାନଙ୍କର ଗଛ ଅଛି ସେମାନେ ତାଡ଼ିକଟାବାଲାଙ୍କୁ ଦେଇ ଦେଉଥିଲେ ଅଳ୍ପପଇସା ନେଇ । ଗୁଡ଼ କଲେ ସେମାନେ ବେଶୀ ପଇସା ପାଇବା ସଙ୍ଗେ ସଙ୍ଗେ ତାଡ଼ି ପିଇବା ବନ୍ଦ ହୋଇଯିବ । ସତୀଶ ଦାଶଗୁପ୍ତଙ୍କୁ କହି ତାଙ୍କଠାରୁ ଦୁଇଜଣ ମୁସଲମାନଙ୍କୁ ଅଣାଗଲା । ସେମାନଙ୍କର ଗଛ କଟାର ଢଙ୍ଗ ଭିନ୍ନେ । ସେଥିପାଇଁ ସ୍ୱତନ୍ତ୍ର କଟୁରି ଥିଲା । ସେମାନେ ଦେଖାଇ ଦେଲେ ଗଛକୁ କେମିତି କାଟିଲେ ତାକୁ ବାଧିବ ନାହିଁ, ବହୁ ବର୍ଷ ପର୍ଯ୍ୟନ୍ତ କଟ ଯାଇ ପାରିବ ଓ ବେଶୀ ରସ ଝରିବ । ତାଳ ଗଛରେ ମଧ୍ୟ କେତୋଟି ଠେକି ବସାଇ ରସ ସଂଗ୍ରହ କରାଗଲା । ତାଳ ମଦର ପ୍ରଚଳନ ଓଡ଼ିଶାରେ ନଥିଲା । ଖଜୁରି ରସ ଓ ତାଳ ରସରୁ ଗୁଡ଼ ତିଆରି କରାଗଲା । ସେମାନେ ଏଭଳି ଭଲ ପାଗ ଉତାରିଲେ ଯେ ସ୍ୱାଦ ଗନ୍ଧ ସମସ୍ତଙ୍କୁ ଆକୃଷ୍ଟ କଲା ।

ଢାକାରୁ ସେ ଦୁଇଜଣ ଆସିଥିବାରୁ ସେମାନଙ୍କ ବଙ୍ଗଳା ଆମେ ସହଜରେ ବୁଝିପାରୁ ନଥାଉ । ଚେଷ୍ଟାକରି ବୁଝିଲି ଓ ସେମାନଙ୍କ ସହିତ ଓ ସମସ୍ତ ଯୋଗସୂତ୍ର ରଖିବାର ଦାୟିତ୍ୱ ମୁଣ୍ଡାଇଲି ।

କେତେ ହଜାର କରଞ୍ଜ ଗଛର ଫଳ ତଳେ ପଡ଼ି ନଷ୍ଟ ହେଉଥିଲା । ସେଗୁଡ଼ିକ ସଂଗ୍ରହ କରି ତେଲ ବାହାର କଲୁ । ସାବୁନ ତିଆରିକୁ କୁଟୀର ଶିଳ୍ପ ରୂପେ ଧରିଲୁ । ଆଦୌ ସୋପଷ୍ଟୋନ ନଦେଇ ଖାଣ୍ଟି ସାବୁନ ତିଆରି କଲୁ । ନଡ଼ିଆ ତେଲ ସାବୁନର ଆଦର ଦେଖାଦେଲା । କଡ଼େଇ କଡ଼େଇ ସାବୁନ ଗ୍ରାମ ଗ୍ରାମରେ ପକାଇ ଗଦା ଗଦା ସାବୁନ ତିଆରିରୁ ବେଶ ସନ୍ତୋଷ ମିଳୁଥାଏ ।

ରୋଗୀ ସେବା ଓ ସ୍ୱାସ୍ଥ୍ୟ ସମ୍ପର୍କରେ ଲୋକଙ୍କୁ ସଚେତନ କରାଇବା ଥାଏ ଆଉ ଗୋଟିଏ କାର୍ଯ୍ୟକ୍ରମ । ବାହାରେ ଖୋଲା ସ୍ଥାନରେ ମଳତ୍ୟାଗ ନକରି ଟ୍ରେଞ୍ଚ ପାଇଖାନା ବ୍ୟବହାର କରିବା ବିଷୟରେ ବହୁତ କିଛି ଶିକ୍ଷା ଦେଇଛୁ । କିନ୍ତୁ ସେଥିରେ କେବଳ ଆଂଶିକ ସଫଳତା ହାସଲ କରିପାରି ଥିଲୁ । ପରେ ଯେତେବେଳେ ବରପାଲି ପାଇଖାନା ବାହାରିଲା ମୁଁ ବରାବର କହିଲି ଯେଉଁ ଉଦ୍ୟମରେ ଆମେ ବିଫଳ ହୋଇଥିଲୁ ବରପାଲି ତିଆରି କରିବା ଲୋକେ ସେହି ଉଦ୍ୟମରେ ସଫଳତା ହାସଲ କଲେ ।

ଯେଉଁ ଗୃହବର୍ଷ ବାହାରେ ରହିଗଲି ସେହି ଗୃହବର୍ଷ ଭିତରେ ଗାନ୍ଧୀ ସାହିତ୍ୟ ପଢ଼ିବାରେ ମନ ଦେଲି । ମୋର ଧାରଣା ଗାନ୍ଧିଜୀ ଯାହା କହିବାକୁ ଇଚ୍ଛା କରୁଥିଲେ ତାଙ୍କୁ ସଙ୍ଗଠନ କାମରେ ଲାଗିଥିବା କର୍ମୀମାନେ ପ୍ରକୃତ ଅର୍ଥରେ ବୁଝୁନଥିଲେ । ସ୍ଥୂଳ ଅର୍ଥରେ ବୁଝିବା ଦ୍ୱାରା ସେମାନଙ୍କର ପ୍ରକୃତ ଅର୍ଥରେ ବୌଦ୍ଧିକ ବିକାଶ ହେଲାନାହିଁ । କେତେ ଲୋକ ସୂତା କାଟିଲେ' କେଉଁଠି ସରୁସୂତା କାଟିଲେ । କେତେ ଲୋକେ ଖଦଡ଼ ପିନ୍ଧିଲେ—ଏସବୁ ହିସାବର ନିଶ୍ଚୟ ଗୁରୁତ୍ୱ ରହିଛି । କିନ୍ତୁ ବହୁ କର୍ମୀ ସେତିକି କରି ସନ୍ତୁଷ୍ଟ ରହିଗଲେ ଖଦୀ ଯେ ମୁକ୍ତିର ପୋଷାକ, ଶ୍ରମର ମର୍ଯ୍ୟାଦାର ପ୍ରତୀକ, ବଡ଼ ସାନ ଭାବ ଦୂର କରିବା ପାଇଁ ପ୍ରେରଣା ଦାୟକ—ଏ ଦିଗପ୍ରତି ଗୁରୁତ୍ୱ ଦେଲେ ନାହିଁ ସେ ସଙ୍ଗଠନ କାର୍ଯ୍ୟକ୍ରମ ବେଳେ ଯେତେଗୁଡ଼ିଏ ବିଷୟ ରଖିଲେ ସେ ସବୁଥିରୁ ପ୍ରତୀତ କରି ପଛରେ ଥିଲା ଗୋଟାଏ ମହତ ଭାବନା ବୈପ୍ଳବିକ ଚିନ୍ତା ସେହିଚିନ୍ତା ବହୁ କର୍ମୀଙ୍କୁ

ସ୍ପର୍ଶ କରି ପାରିଲା ନାହିଁ । ଗ୍ରୋଷ୍ଠ ଖଦି ଲୁଗା ପିନ୍ଧିବା, ମାଛ ନ ଖାଇବା, ତରକାରିରେ ମସଲା ରାଗ ନ ପକାଇବା ଇତ୍ୟାଦି ଉପରେ ଅଯଥା ଗୁରୁତ୍ୱ ଦିଆଗଲା । ଗାନ୍ଧୀଙ୍କର ପ୍ରତ୍ୟେକ କାର୍ଯ୍ୟକ୍ରମର ଗୁରୁତ୍ୱ ଆଜି ଅନୁଭବ କରିଯାଉଛି ।ସେଥିରୁ ଜଣାପଡ଼ୁଛି ହଜାର ହଜାର କଂଗ୍ରେସକର୍ମୀ ସଙ୍ଗଠନ କର୍ମୀ ବୌଦ୍ଧିକ ଦିଗ ଉପରେ ଯେତିକି ଗୁରୁତ୍ୱ ଦେବାର କଥା ସେତିକି ଦେଲେନାହିଁ । ଯଦି ସେଭଳି ଦେଇ ଥାଆନ୍ତେ ତେବେ ଗାନ୍ଧିଜୀଙ୍କ ମୃତ୍ୟୁପରେ ଗାନ୍ଧୀଙ୍କ ଉପଦେଶକୁ ଆବଜ୍ଞା କରିବା ପାଇଁ ଯେଉଁଭଳି ପ୍ରତ୍ୟକ୍ଷ ଉଦ୍ୟମ ହେଲା ତାହା ହୋଇ ନଥାନ୍ତା । ତାଙ୍କର କୌଣସି ଗୋଟିଏ ହେଲେ କାର୍ଯ୍ୟକ୍ରମକୁ ସଫଳ କରିବା ପାଇଁ ଯେପରି ଉଦ୍ୟମ ନହେଲା—ସେପରି ହୋଇ ପାରି ନଥାନ୍ତା । ଏହାର ଅଧିକ ବିଶ୍ଳେଷଣ କରି କାହାରି ମନରେ କଷ୍ଟ ଦେବା ପାଇଁ ଇଚ୍ଛା କରୁନାହିଁ । ଏହି ପୁସ୍ତକର ପୃଷ୍ଠାଗୁଡ଼ିକ ଅନ୍ୟ କଥା ପାଇଁ ଉଦ୍ଦିଷ୍ଟ । ମୋ ଲିଖିତ 'ଜଣେ ସଂଗ୍ରାମୀ—ଯାହା ମନେ ପଡ଼ୁଛି' ପୁସ୍ତକରେ ଏସବୁର ଉଲ୍ଲେଖ ରହିଛି । ବସ୍ତିରେ ଦୀର୍ଘ ଚାରି ବର୍ଷରୁ ଅଧିକ କାଳ ଯେଉଁସବୁ କାମ କଲି ସେଗୁଡ଼ିକ ପଛରେ କି ବୌଦ୍ଧିକ ତତ୍ତ୍ୱ ଥିଲା ତାକୁ ବୁଝିବାକୁ ସେ ବୟସରେ ମଧ୍ୟ ଉଦ୍ୟମ କରିଥିଲି । ସେଭଳି କରିବା ଦ୍ୱାରା ମୋର ଯଥେଷ୍ଟ ଲାଭ ହୋଇଛି । ମୋ କ୍ଷେତ୍ରରେ ପୋଥିବାଇଗଣ ବାଡ଼ ବାଡ଼ିଗଣ—ଏକା ସାଙ୍ଗରେ ଚାଲିଥିଲା ବୋଲି ଅତି ନମ୍ରତାର ସହିତ କହିପାରେ ।

ସେହି ଚାରିବର୍ଷରେ ଆଉ ଗୋଟିଏ ବୌଦ୍ଧିକ ଲାଭ ହେଲା । ପିଲାଦିନୁ ବଙ୍ଗଳା ପଢ଼ିବା ଶିଖିଥିଲି । ଲେଖିପାରୁ ନଥିଲି । ଓଡ଼ିଆ ଏବଂ ବଙ୍ଗଳା ଭାଷା ଭିତରେ ଏଭଳି କିଛି ପାର୍ଥକ୍ୟ ନାହିଁ ଯେ ଜଣେ ଓଡ଼ିଆ ବଙ୍ଗଳା ଭାଷା ବୁଝିପାରିବ ନାହିଁ କି ଜଣେ ବଙ୍ଗାଳୀ ଓଡ଼ିଆ ବୁଝିପାରିବ ନାହିଁ । ଓଡ଼ିଶାରେ ବହୁସଂଖ୍ୟକ ବଙ୍ଗଭାଷୀ ସ୍ଥାୟୀ ଭାବରେ ରହିଯାଇଛନ୍ତି । ସେମାନେ ପ୍ରଥମେ ଚୈତନ୍ୟ ମହାପ୍ରଭୁଙ୍କ ସମୟରେ ଆସିଥିଲେ । ଚୈତନ୍ୟଙ୍କ ବଙ୍ଗଳା କୀର୍ତ୍ତନ ଓଡ଼ିଶାର ଗୋଟାଏ ବଡ଼ ଅଂଶରେ ଗାଁ ଗାଁରେ ବୋଲାଯାଏ । ଆଉ ଥରେ ସେମାନେ ବହୁସଂଖ୍ୟାରେ ଆସିଗଲେ, ଇଂରେଜମାନେ ଓଡ଼ିଶାକୁ ଦଖଲ କରିଗଲା ବେଳେ । ଜମିଦାର, ସରକାରୀ କର୍ମଚାରୀ, ଓକିଲ ଭାବରେ ଆସି ରହିଗଲେ । ବଙ୍ଗ ଦେଶର ସଂସ୍କୃତିର ଓଡ଼ିଆ ସଂସ୍କୃତି ସହିତ ଗୋଟାଏ ଅପୂର୍ବ ମଙ୍ଗଳଦାୟକ ମିଶ୍ରଣ ହେଲା ।

ସୁଭାଷଚନ୍ଦ୍ର ବୋଷଙ୍କ ଜନ୍ମସ୍ଥାନ କଟକ ସହରରେ । ଓଡ଼ିଶାର ଯେଉଁ ଅଳ୍ପ କେତେକ ଶିକ୍ଷିତ ପରିବାର ସ୍ୱାଧୀନତା ଆନ୍ଦୋଳନରେ ଯୋଗଦେଲେ ଗୋପବନ୍ଧୁ ଚୌଧୁରୀଙ୍କ ପରିବାର ସେମାନଙ୍କ ଭିତରୁ ଗୋଟିଏ । ସେ ପରିବାରରେ ମାଳତୀ ଚୌଧୁରୀ ଆସି ୧୯୨୭ରେ ଯୋଗଦେଲେ । ସେ ଶାନ୍ତିନିକେତନରୁ ଆସିଥିଲେ । କବି ରବୀନ୍ଦ୍ରଙ୍କର ସେ ଥିଲ ଶିଷ୍ୟା । ତାଙ୍କ ଆଗମନ ଚୌଧୁରୀ ପରିବାରକୁ ବେଶ ପ୍ରଭାବିତ କଲା । ରମାଦେବୀ ଭଲ ଇଂରାଜୀ ଜାଣିନଥିଲେ—ତେଣୁ ବଙ୍ଗଳା ବହି ସବୁ ପଢ଼ିଲେ । ବଙ୍ଗଳା ଭାଷାରେ ମାନବ ଜ୍ଞାନର ସବୁ ବିଭାଗ ଉପରେ ଉପାଦେୟ ବହି ସବୁ ଲେଖା ହୋଇ ସାରିଥିଲା । ସେ ପରିବାର ସହିତ ଯିଏ ସମ୍ପର୍କରେ ଆସିଛି ସେ ଅନୁଭବ କରିଥିବ ବଙ୍ଗର ସଂସ୍କୃତି, ଭାଷା ଓ ସାହିତ୍ୟ ସେମାନଙ୍କ ଭିତରୁ ପ୍ରତ୍ୟେକଙ୍କୁ କିଭଳି ପ୍ରଭାବିତ କରିଛି । ସବୁ ଦିଗରୁ ଓଡ଼ିଆ ଏବଂ ବଙ୍ଗଳାର ଗୋଟାଏ ଅପୂର୍ବ ମିଶ୍ରଣ ସେହି ପରିବାରରେ ହୋଇ ପାରିଛି । ବାଡ଼ିରେ ବହୁସଂଖ୍ୟକ ବଙ୍ଗଳା ବହି ସହିରେ ମହିରେ ଥାଏ । ସେସବୁ ପଢ଼ିବାର ସୁଯୋଗ ମୋତେ ମିଳିଲା । ବହୁତ କାମ କରିବାକୁ ପଡ଼ୁଥିଲେ ମଧ୍ୟ ପଢ଼ାପଢ଼ି ପାଇଁ କିଛି କିଛି ସମୟ ବାହୁନିଏ । ଯେତେବେଳେ ବାଡ଼ି ଛାଡ଼ି ଆସିଲି ସେତେବେଳକୁ ମୋର ବୟସ ଛବିଶ । ସେତେବେଳକୁ ମୁଁ ଧରିନେଲିଣି ଯେ କିଛି କିଛି ପଢ଼ାପଢ଼ି କରିଛି, ଯଦିଓ ଆହୁରି ଅନେକ ବିଷୟ ଜାଣିବାର ନିତାନ୍ତ ଆବଶ୍ୟକତା ଅଛି । ଓଡ଼ିଆ ଭାଷା ଉପରେ କିଛି କିଛି ଦଖଲ ଆସିଲାଣି—ଇଂରାଜୀ ଭାଷା ଜ୍ଞାନ ସେଭଳି କିଛି ନୁହେଁ । ସେଇଟିକୁ ଶିଖିବାକୁ ହେବ । ବହୁତ କଥା ମୋଟାମୋଟି ବୁଝିପାରୁଥାଏ, କିନ୍ତୁ ଯେତିକି ବୁଝିଲେ ସନ୍ତୋଷ ମିଳନ୍ତା ସେତିକି ବୁଝିବା ହେଉନଥାଏ ।

ନିଜର ଜ୍ଞାନ ବଢ଼ାଇବା ଦିଗରେ ଆଉ ଗୋଟାଏ ସୁଯୋଗ ସେହି ଗୁରୁବର୍ଷ ଭିତରେ ମିଳିଗଲା । ଗାନ୍ଧୀବାଦୀମାନଙ୍କ ଭିତରେ ଗୋଟାଏ ଧାରଣା ସୃଷ୍ଟି ହୋଇଯାଇଥିଲା ଯେ ବାଡ଼ିରେ ଯେଉଁ ସଙ୍ଗଠନ କାମ ଚାଲିଛି ତାହା ସମଗ୍ର ଭାରତ ପାଇଁ ଗୋଟାଏ ଆଦର୍ଶ ହୋଇଯିବ । ତେଣୁ ତାମ ବିଷୟରେ ପ୍ରତ୍ୟକ୍ଷ ଜ୍ଞାନ ହାସଲ କରିବା ପାଇଁ ଓଡ଼ିଶା ବାହାରୁ ଓ ଭିତରୁ ବହୁ ବିଶିଷ୍ଟ ଲୋକ ଆସି କିଛିଦିନ ସେଠାରେ କଟାନ୍ତି ।

କକା କାଲେଲ୍‌କାର, ପ୍ୟାରେଲଲଜୀ, ମଶ୍ରୁଓ୍ୱାଲା, ଧୋତ୍ରେଜୀ ପ୍ରଭୃତି ଆସନ୍ତି । କାଲେଲ୍‌କାରଙ୍କ ଭଳି ପଣ୍ଡିତଙ୍କ ଠାରୁ ବହୁତ କିଛି ଶିଖିବାର ଥାଏ । ସେ ଗାନ୍ଧୀଙ୍କ କଥାକୁ ଅତି ଚମତ୍କାର ଭାଷାରେ ଓ ଭାବରେ ବୁଝାଇ ଦିଅନ୍ତି । ପ୍ୟାରେଲାଲ ସେହି ସମୟରେ ଅନ୍ୟ କୁଆଡ଼େ ଶାନ୍ତି ନପାଇ ସେଠାରେ କିଛିଦିନ କଟାଇବା ପାଇଁ ଚଲେ । କେ: ଜ: ମଶ୍ରୁଓ୍ୱାଲା ତ ଜଣେ ନିଷ୍ଠାପର ଗାନ୍ଧୀବାଦୀ ଓ ପଣ୍ଡିତ । ସେମାନଙ୍କ ସହିତ ସମ୍ପର୍କ ସ୍ଥାପନ କରିବାଟା ଥାଏ ବଡ଼ ଲାଭ ।

୧୯୩୭ରେ ଏଭଳି ଗୋଟାଏ ସୁଯୋଗ ଜୁଟିଗଲା ଯେ ମୋ ଚିନ୍ତା ଭାବନାର ଦିଗବଳୟ କଳ୍ପନାତୀତ ଭାବରେ ବିସ୍ତୃତ ହୋଇଗଲା । ୧୯୩୭ର ନିର୍ବାଚନ ଶେଷ ହୋଇଥାଏ । କେତୋଟି ପ୍ରଦେଶରେ କଂଗ୍ରେସ ସଂଖ୍ୟାଧିକ ଭୋଟରେ ବିଜୟୀ ହୋଇଥାଏ । ନିର୍ବାଚନରେ ଯିନା ବିଜୟ ହେଲା, ମନ୍ତ୍ରୀମଣ୍ଡଳ ଗଢ଼ାଯିବ କି ନାହିଁ ସେହି ବିଷୟରେ 'ଗାନ୍ଧୀବାଦୀ' ମାନଙ୍କ ଭିତରେ ଅତି ଗୁରୁତ୍ୱର ସହିତ ତର୍କବିତର୍କ ଚାଲିଥାଏ । ଗାନ୍ଧୀସେବା ସଙ୍ଘ ବୋଲି ଗୋଟିଏ ଶକ୍ତିଶାଳୀ ଅନୁଷ୍ଠାନ କଂଗ୍ରେସ ଭିତରେ ଥାଏ । ଗାନ୍ଧିଜୀ ଯେଉଁ ଅର୍ଥରେ ଅହିଂସା ତତ୍ତ୍ୱକୁ ବୁଝୁଛନ୍ତି ଯେଉଁ କଂଗ୍ରେସ ଲୋକମାନେ ସେହି ଅର୍ଥରେ ବୁଝୁଥାଆନ୍ତି, ସେମାନଙ୍କୁ ନେଇ ଗାନ୍ଧୀ ସେବା ସଙ୍ଘ ଗଢ଼ାଯାଇଥାଏ । ମହାତ୍ମାଗାନ୍ଧୀ ତାହାର ସଭାପତି ଓ ମଶ୍ରୁଓ୍ୱାଲା ସମ୍ପାଦକ ସର୍ଦ୍ଦାର ପଟେଲ, ରାଜେନ୍ଦ୍ରପ୍ରସାଦ, ଯମୁନାଲାଲ ବଜାଜ, ବି. ଜି. ଖେର, ଖାନ୍ ଅବ୍‌ଦୁଲ ଗଫର ଖାଁ ମହାଦେବ ଦେଶାଇ ପ୍ରଭୃତି ତାହାର ସଭ୍ୟ । ଭାରତର ପ୍ରତି ପ୍ରଦେଶର ବହୁ ବିଶିଷ୍ଟ ନେତା ମଧ୍ୟ । ଓଡ଼ିଶାର ଗୋପବନ୍ଧୁ ଚୌଧୁରୀ, ଆଚାର୍ଯ୍ୟ ହରିହରଙ୍କ ନାମ ଏହି ସଂସ୍ଥାନରେ ଉଲ୍ଲେଖ କରାଯାଇପାରେ । ଜବାହାରଲାଲ ନେହରୁ, ମୌଲାନା ଆଜାଦ, ରାଜଗୋପାଳାଚାରୀ, ହରେକୃଷ୍ଣ ମହତାବ, ନବକୃଷ୍ଣ ଚୌଧୁରୀ ପ୍ରଭୃତି ସେବାସଙ୍ଘର ସଭ୍ୟ ନଥିଲେ । ଯେଉଁମାନେ ମୁଖ୍ୟ ସଭ୍ୟ ସେମାନଙ୍କ ଭିତରେ ଦୁଇଟି ମତ କ୍ରମେ ସ୍ପଷ୍ଟ ହୋଇ ଉଠୁଥାଏ । ମଶ୍ରୁଓ୍ୱାଲା ଜିଦ ଧରିଥାଆନ୍ତି ଯେ କଂଗ୍ରେସ ଯଦି ମନ୍ତ୍ରୀତ୍ୱ ଗ୍ରହଣ କରେ ସଙ୍ଘର ସଭ୍ୟମାନେ ସହଯୋଗ କରିବେ ନାହିଁ । ତାଙ୍କର ଯୁକ୍ତି ହେଲା—ଯେତିକି କ୍ଷମତା ମିଳୁଛି ତାହା ଏତେ ଅଳ୍ପ ଯେ ତାହା ସାହାଯ୍ୟରେ ଲୋକଙ୍କର ସେଭଳି କିଛି ଉପକାର କରି ହେବନାହିଁ । ଦ୍ୱିତୀୟରେ ଥରେ କଂଗ୍ରେସ

ଲୋକେ କ୍ଷମତାର ଗାଦିର ସ୍ୱାଦ ଶୁଖିଲେ ମୋହଗ୍ରସ୍ତ ହୋଇଯିବେ । ସେମାନଙ୍କ ଭିତରୁ ବଲ୍ଲଭର ଭାବ କ୍ରମେ ଉଭେଇଯିବ । ପଟେଲ ଓ ରାଜେନ୍ଦ୍ରବାବୁ ଥାଆନ୍ତି କଂଗ୍ରେସ ପାର୍ଲାମେଣ୍ଟାରୀ ବୋର୍ଡ଼ର ମୁଖ୍ୟ । ସେମାନେ କହିଲେ ସେବାସଙ୍ଘ ଯଦି ଏହି ମର୍ମରେ ପ୍ରସ୍ତାବ ପାଶ୍ କରେ ସେମାନେ ପାର୍ଲାମେଣ୍ଟାରୀ ବୋର୍ଡରୁ ଇସ୍ତଫା ଦେଇଦେବେ । ଯେଉଁମାନେ ନିର୍ବାଚିତ ହୋଇଛନ୍ତି ସେମାନଙ୍କୁ ନିୟନ୍ତ୍ରଣରେ ରଖିବା ଅନ୍ୟ କାହାରି ପକ୍ଷରେ ସମ୍ଭବ ନୁହେଁ । ଏହି ଦୁଇଜଣଙ୍କର ଥାଏ ସ୍ୱତନ୍ତ୍ର ବ୍ୟକ୍ତିତ୍ୱ । ବୋମ୍ବେ (ମିଳିତ ମହାରାଷ୍ଟ୍ର ଓ ଗୁଜୁରାଟ) ନିର୍ବାଚନରେ କଂଗ୍ରେସ କେବଳ ଗୋଟିଏ ଅଧିକା ଆସନ ପାଇ ବିଜୟୀ ହୋଇଥାଏ । ଏଭଳି ଗୋଟିଏ ଆସେମ୍ବ୍ଲି ପାର୍ଟୀକୁ ଶୃଙ୍ଖଳା ଭିତରେ ରଖି ମନ୍ତ୍ରୀମଣ୍ଡଳକୁ ନିରାପଦତା ଦେବା କିଛି ସହଜ କଥା ନଥାଏ । ମହାତ୍ମାଗାନ୍ଧୀଙ୍କ ମତ ହେଲା ସଙ୍ଘର ସଭ୍ୟମାନେ ମନ୍ତ୍ରୀତ୍ୱ ଗ୍ରହଣର ବିରୋଧ ନ କରନ୍ତୁ ଓ ସେହି କାର୍ଯ୍ୟକ୍ରମ ସହିତ ସହଯୋଗ କରନ୍ତୁ । ତା' ନହେଲେ କଂଗ୍ରେସ ଦଳଟି ଦୁଇଭାଗରେ ବିଭକ୍ତ ହୋଇଯିବ । ବ୍ରିଟିଶ ସରକାର ସହିତ ମିଳିତ ସଂଗ୍ରାମ ହେଲା ମୁଖ୍ୟ କାର୍ଯ୍ୟକ୍ରମ ।

ଏହି ବିଷୟରେ ନିଷ୍ପତ୍ତି ଗ୍ରହଣ କରାଯିବ ଗାନ୍ଧି ସେବା ସଙ୍ଘର ଗୋଟିଏ ଗୁରୁତ୍ୱପୂର୍ଣ୍ଣ ବୈଠକରେ । ସେଇଟି ହେବ କର୍ଣ୍ଣାଟକର ହୁଦ୍‌ଲୀଠାରେ (ହୁବ୍‌ଲୀ ନୁହେଁ) । ସେଠାରେ ପ୍ରସିଦ୍ଧ ସ୍ୱାଧୀନତା ସଂଗ୍ରାମୀ ଗାନ୍ଧିବାଦୀ ନେତା ଗଙ୍ଗାଧର ରାଓ ଦେଶପାଣ୍ଡେଙ୍କ ଆଶ୍ରମ ଥାଏ । ସେହି ଆଶ୍ରମର ସମ୍ମାନ ସମଗ୍ର ଦେଶରେ ଥାଏ । ୧୯୩୭ ପର୍ଯ୍ୟନ୍ତ ଗାନ୍ଧୀ ସେବାସଙ୍ଘ ବୈଠକକୁ ଅଳ୍ପ ଲୋକଙ୍କୁ ନିମନ୍ତ୍ରଣ କରାଯାଉଥାଏ । ହୁଦ୍‌ଲୀକୁ ଆଚାର୍ଯ୍ୟ ହରିହର, ଗୋପବନ୍ଧୁ ଚୌଧୁରୀ, ପଣ୍ଡିତ କୃପାସିନ୍ଧୁ ହୋତା, ରମାଦେବୀ ଓ ମୁଁ ଯାଇଥିଲୁ । ମହାତ୍ମାଗାନ୍ଧୀଙ୍କ ସମେତ ପ୍ରାୟ ଦୁଇଶହ ଜଣ ଆମେ ଥିଲୁ । ପ୍ରଥମ ଦୁଇଦିନ ଜୋରସୋର ଆଲୋଚନା ଚାଲିଲା । ସମୟେ ସମୟେ ଟିକିଏ ଉଷ୍ମତା ପ୍ରକାଶ ପାଉଥିଲା ବୋଲି କହିଲେ ଭୁଲ୍ ହେବ ନାହିଁ । ଗାନ୍ଧିଜୀ ମଡରେଟର ଭଳି କାମ କରୁଥାଆନ୍ତି । ମଶ୍ରୁଓ୍ୱାଲା ତାଙ୍କ ମତରେ ଦୃଢ ଥାଆନ୍ତି । ସର୍ଦ୍ଦାର ପଟେଲ ମଧ୍ୟ ତାଙ୍କ ମତରେ ଦୃଢ଼ । ଯଦି ସେବାସଙ୍ଘ ପୂର୍ଣ୍ଣପ୍ରାଣରେ ସେମାନଙ୍କ ମତକୁ ସମର୍ଥନ କରିବ ନାହିଁ

ସେମାନେ ପାର୍ଲ୍ୟମେଣ୍ଟାରୀ ବୋର୍ଡର ଇସ୍ତଫା ଦେଇଦେବେ । ଜଟିଳ ପରିସ୍ଥିତିର ସୃଷ୍ଟି । ପ୍ରଥମ ଦିନ ସନ୍ଧ୍ୟାପରେ ପ୍ରବଳ ବର୍ଷା ଓ ଝଡ଼ । ଯେଉଁସବୁ ଅସ୍ଥାୟୀ ଘର ପ୍ରତିନିଧିମାନଙ୍କ ପାଇଁ ହୋଇଥିଲା ସେଗୁଡ଼ିକ ଭାଙ୍ଗି ତଳେ ପଡ଼ିଗଲା । ଆଶ୍ରମରେ ଯେତିକି ସ୍ଥାୟୀ ଆଶ୍ରୟ ସ୍ଥଳ ଥିଲା ସେଇଥିରେ ସମସ୍ତଙ୍କୁ ରଖାଇବାକୁ ହେବ । ଗୋଟିଏ ଛୋଟ ହଲ୍‌ରେ ରାଜେନ୍ଦ୍ରବାବୁ, ପଟେଲ, ବଜାଜ, ଖେରଙ୍କ ସହିତ ଆମେ ଓଡ଼ିଶା ପ୍ରତିନିଧି ଧାଡ଼ିହୋଇଁ ଶୋଇଲୁ । ଗୋପବାବୁଙ୍କ ପରେ ଗୋଟିଏ ପରଦା ଟାଣି ଦିଆଗଲା । ରମାଦେବୀ ଓ ମୁଁ ଆରପଟେ ଶୋଇଲୁ । ଏତେ ନିକଟରେ ଥିବାରୁ ପରସ୍ପର ସହିତ ଟିକିଏ ଅଧିକ ପରିଚୟ ହୋଇଗଲା ।

ଶେଷରେ ସମ୍ମିଳନୀରେ ଅବଶ୍ୟ ସ୍ଥିର ହେଲା ଯେ ଗାନ୍ଧୀ ସେବାସଂଘ ଆପତ୍ତି କରିବ ନାହିଁ କଂଗ୍ରେସ ମନ୍ତ୍ରୀମଣ୍ଡଳ ଗଢ଼ିବାରେ । ପ୍ରାୟ ତିନିଦିନ ଯେଉଁ ଆଲୋଚନା ହେଲା ତାହା ମୋ ପାଇଁ ଥିଲା ମୂଲ୍ୟବାନ ରାଜନୈତିକ ଶିକ୍ଷା । ଏକଥା ଠିକ୍ ଯେ ମାତ୍ର ଦୁଇଥର ବ୍ୟତୀତ ଅନ୍ୟ କୌଣସି ସମୟରେ ମୁଁ ବ୍ୟକ୍ତିଗତ ଭାବରେ ପ୍ରତ୍ୟକ୍ଷ ଭାଗ ନେଇନଥିଲି । କିନ୍ତୁ ମନଦେଇ ସବୁ କଥା ଶୁଣୁଥିଲି ଓ ଗୋଟିଏ ଖାତାରେ ନୋଟ୍ କରି ପକାଉଥିଲି । ସେହି ନୋଟ୍ ବହିଟି ୧୯୪୨ରେ ମୁଁ ଓ ମୋ ସହଧର୍ମିଣୀ ଜେଲ ଗଲା ପରେ ଆମ ଗ୍ରାମ ଘରେ ରହିଥିଲା । ଉଇଙ୍କ କବଳରୁ ସେଇଟି ରକ୍ଷା ପାଇ ପାରିଲା ନାହିଁ । ବ୍ରିଟିଶ ସରକାର ସହିତ ଲଢ଼ିବାକୁ ହେଲେ କିଭଳି କୌଶଳ ଅବଲମ୍ବନ କରିବାକୁ ହେବ ସେ ବିଷୟରେ ନିଜେ ବାପୁଜୀ ମଝିରେ ମଝିରେ ବହୁ ସମୟ ଧରି ବୁଝାଉ ଥାଆନ୍ତି । ଟିକିନିଖି ଆଲୋଚନା ବେଳେ କେତେଗୁଡ଼ିଏ ଜଟିଳ ପ୍ରଶ୍ନର ସମାଧାନ କରିବାକୁ ପଡ଼ୁଥାଏ । ଉଦାହରଣ ସ୍ୱରୂପ ପ୍ରଶ୍ନ ଉଠିଲା—ଆସେମ୍ବ୍ଲିରେ ଆମେ ବ୍ରିଟିଶ ସମ୍ରାଟଙ୍କ ପ୍ରତି ଆନୁଗତ୍ୟର ଶପଥ ନେବା । ଏହା ହେବ ମିଥ୍ୟାଚାର । ଆମେ ଯେ ସ୍ୱାଧୀନ ହେବାକୁ ଇଚ୍ଛାକରୁ ଏହାର ସମ୍ପୂର୍ଣ୍ଣ ବିରୋଧା-ଚରଣ କଲା ଭଳି କଥା ହେବ । ସର୍ଦ୍ଦାର ପଟେଲଙ୍କର ଉତ୍ତର ହେଲା—ଆମେ ଭଲ ଭାବରେ ଜାଣୁ ସମ୍ରାଟଙ୍କ ପ୍ରତି ଆମର ଆନୁଗତ୍ୟ ନାହିଁ । ସମ୍ରାଟ ମଧ ଜାଣିଛନ୍ତି ଯେ ଆମର ତାଙ୍କ ପ୍ରତି ଆନୁଗତ୍ୟ ନାହିଁ । ଏହା ଜାଣିଲା ପରେ ଯଦି ଆମେ ଶପଥ ନେଉ ତେବେ ତାହା ହେବ

ଗୋଟାଏ ଅତି ମାମୁଲି ଉପଗ୍ରହ । ସେଥିରେ ସେମାନଙ୍କର ଲାଭ ନାହିଁ କି ଆମର କ୍ଷତି ନାହିଁ । ତାଙ୍କ ଉତ୍ତର ଶୁଣି ସମସ୍ତେ ହସିଲେ ।

ଭାରତର ଭାଷା ସମସ୍ୟା ଉପରେ ଗୁରୁତ୍ୱପୂର୍ଣ୍ଣ ଆଲୋଚନା ହୋଇଥିଲା । ସୀମାନ୍ତ ଗାନ୍ଧୀ ଗଫୁର ଖାଁ ଆଲୋଚନା ଶୁଣୁଥିଲେ । କିଛି ସମୟ ପରେ ବାପୁଙ୍କୁ କହିଲେ—'ଏମାନେ ଯେଉଁ ହିନ୍ଦୀ କହୁଛନ୍ତି ମୁଁ ତ ବୁଝିପାରୁ ନାହିଁ । ସେ ପାରସୀ ଆରବୀ ଶବ୍ଦ ମିଶା ହିନ୍ଦୁସ୍ତାନୀ ବୁଝନ୍ତି । ତାଙ୍କ ମାତୃଭାଷା ପୁସ୍ତୁ । ଦିଲ୍ଲୀ, ଉତ୍ତର ପ୍ରଦେଶର ପଶ୍ଚିମ ଅଂଶ ଓ ଆଉ କେତୋଟି ଅଂଚଳରେ ଯେଉଁ ହିନ୍ଦୀ କୁହାଯାଏ ଗାନ୍ଧୀଜୀ ତାକୁ ହିନ୍ଦୁସ୍ତାନୀ ବୋଲି କହନ୍ତି । ସେଥିରେ ବହୁ ସଂଖ୍ୟକ ପାରସୀ ଆରବୀ ଶବ୍ଦ ଥାଏ । ବିହାର, ଉତ୍ତର ପ୍ରଦେଶ ପୂର୍ବଅଂଶ ସମେତ ଭାରତର ଗୋଟାଏ ବିରାଟ ଅଞ୍ଚଳର ହିନ୍ଦୀରେ ସଂସ୍କୃତ ଶବ୍ଦ ଭର୍ତ୍ତିରହିଛି । ଗଫୁର ଖାଁଙ୍କ ପ୍ରଶ୍ନର ଉତ୍ତର ଦେବାଛଳରେ ଗାନ୍ଧିଜୀ ଭାରତର ଭାଷା ସଂପର୍କରେ ଗୋଟିଏ ଅତି ମହତ୍ତ୍ୱପୂର୍ଣ୍ଣ ଭାଷଣ ଦେଲେ । ସମସ୍ତେ ବୁଝିପାରୁ ଥିବା ଭଳି ଗୋଟିଏ ଯୋଗସୂତ୍ର ଭାଷା ନରହିଲେ ଭାରତ ସ୍ୱାଧୀନ ହେଲା ପରେ ମଧ୍ୟ କିଭଳି ଜଟିଳ ପ୍ରଶ୍ନ ମୁଣ୍ଡ ଟେକିବ ସେ ବିଷୟରେ ସେ ସେଦିନ ସତର୍କବାଣୀ ଶୁଣାଇବା ସଙ୍ଗେ ସଙ୍ଗେ ସମାଧାନର ବାଟ ମଧ୍ୟ ଦେଖାଇଥିଲେ । ତାଙ୍କ ଭାଷଣ ଭିତରେ ସେ ଭାଷା ପ୍ରଶ୍ନ ଉପରେ ଆଉ ଗୋଟିଏ ଚମତ୍କାର ଆଲୋକ ପାତ କରିଥିଲେ । ମହାଦେବ ଦେଶାଇଙ୍କ ପୁଅର ବ୍ରତଘର ଓ ବାପୁଜୀଙ୍କ ନାତୁଣୀର ବିବାହ ଉତ୍ସବ ସେଦିନ ହୁଦ୍‌ଲୀ ମଞ୍ଜିଲୀ ଭିତରେ ହେଉଥାଏ । ବରକନ୍ୟା ଓ ବ୍ରତ ହେଉଥିବା ପିଲା ସକାଳୁ ଉଠି ଘରଆଙ୍ଗିନା ଝାଡୁଦେଲେ, ପାଇଖାନା ସଫାକଲେ । ଗାଧୋଇ ସାରି ସୂତା କାଟିଲେ । ତାହାପରେ ଅତି ନିରାଡ଼ମ୍ବର ଉତ୍ସବ ହୋଇଗଲା । ବରକନ୍ୟାଙ୍କୁ ପାଖରେ ବସାଇ ବାପୁଜୀ ଗୁଜୁରାଟି ଭାଷାରେ ସେମାନଙ୍କୁ ଉପଦେଶ ଛଳରେ ଅନେକ କଥା କହୁଥାଆନ୍ତି । ମୁଁ କଥା ପକାଇଲି—ବାପୁଜୀ, ଆପଣ ନିଶ୍ଚୟ ଅତି ମୂଲ୍ୟବାନ ଉପଦେଶ ଦେଉଛନ୍ତି—କିନ୍ତୁ ମୁଁ ତ କିଛି ବୁଝି ପାରୁନାହିଁ । ଆପଣ ହିନ୍ଦୀରେ କହିଲେ ଆମେ ସବୁ ବୁଝନ୍ତୁ । ଗାନ୍ଧିଜୀ ଟିକିଏ ହସିଦେଇ ହିନ୍ଦୀରେ କହିଲେ । ଏହାର ଉଲ୍ଲେଖ ସେ କଲେ ଭାଷା ସମସ୍ୟା ଉପରେ ଯେତେବେଳେ ଆଲୋଚନା କଲେ । ବହୁଭାଷା ଭାଷୀ ଲୋକ ଯୁକ୍ତରାଷ୍ଟ୍ର

ଆମେରିକାରେ ଯାଇ ସ୍ଥାୟୀ ଭାବରେ ବସବାସ କରି ରହିଗଲେ । ସେମାନେ କିନ୍ତୁ ଅନୁଭବ କଲେ ଯେ ଗୋଟିଏ ଭାଷା ସମସ୍ତଙ୍କ ପାଇଁ ଭାବ ବିନିମୟର ସୂତ୍ର ନ ହୋଇ ଗଲେ ଜାତୀୟ ଏକତା ପ୍ରତିଷ୍ଠିତ ହୋଇ ପାରିବ ନାହିଁ । ସେମାନେ ଇଂରାଜୀକୁ ବାଛିନେଲେ । ସେମିତି ସମଗ୍ର ଭାରତରେ ଲୋକେ ସ୍ୱଇଚ୍ଛାରେ ଗୋଟିଏ ଭାଷାକୁ ଆଦରି ନିବା ନିତାନ୍ତ ଦରକାର । ସେହି ଆଲୋଚନା ମୋ ମନ ଉପରେ ଗଭୀର ପ୍ରଭାବ ପକାଇଲା । ଭାରତୀୟ ଭାଷା ଗୁଡ଼ିକର ସାମର୍ଥ୍ୟ ନ ବଢ଼ାଇଲେ କି ଅସୁବିଧା ହେବ ତାହା ସେହି ୧୯୩୭ରେ ସିଏ ଅନୁଭବ କଲି । ପ୍ରତ୍ୟେକ ଭାରତୀୟ ଭାଷା ସମୃଦ୍ଧ ହେବାର ସମାନ ସୁଯୋଗ ନ ପାଇଲେ ସମସ୍ତେ ଗୋଟିଏ ଯୋଗସୂତ୍ର ଭାଷା ବିଷୟରେ ହୁଏତ ଆଗ୍ରହୀ ହେବେ ନାହିଁ । ଆଜି ଦୀର୍ଘ ପଚିଶ ବର୍ଷ ପରେ ଭାବୁଛି ତାଙ୍କର ଦୂର ଦୃଷ୍ଟି କିଭଳି ଥିଲା । ମୋ ବୟସ, ବିଦ୍ୟା ଅଭିଜ୍ଞତା ମାପକାଠିରେ ମାପିଲେ ତାଙ୍କ କଥାର ମର୍ମ ତଥା ଗୁରୁତ୍ୱ ବିଷୟରେ ଯେତିକି ବୁଝିବାର ଦରକାର ସେତିକି ବୁଝିନଥିଲି ସତ, କିନ୍ତୁ ମୋଟା ମୋଟି ଭାବରେ କଥାଟାକୁ ଧରି ନେଇ ଥିଲି ।

## ଗୋଟିଏ ଗ୍ରେଟିଆ ଭାରତ

ହୁଦଲି ବୈଠକ ପରେ ସ୍ଥିର ହେଲା ଯେ ଏଣିକି ଗାନ୍ଧୀ ସେବା ସଂଘ ବୈଠକରେ ବହୁ ସଂଖ୍ୟାରେ ପ୍ରତିନିଧି ଯୋଗ ଦେବେ । ସେମାନଙ୍କ ଯିବା ଆସିବା ଖର୍ଚ୍ଚ ସଂଘ ବହନ କରିବ ନାହିଁ । କେବଳ ଖାଦ୍ୟର ଦାୟିତ୍ୱ ନେବ ଯେଉଁ ପ୍ରଦେଶ ନିମନ୍ତ୍ରଣ କରିବ । କାହାରିକୁ କିଛି ଖର୍ଚ୍ଚ କରିବାକୁ ପଡ଼ିବନାହିଁ ଖିଆ ପିଆ ପାଇଁ । ଓଡ଼ିଶାର ନିମନ୍ତ୍ରଣ ରକ୍ଷା କରାଗଲା । ପ୍ରାୟ ଆଠଶହ ପ୍ରତିନିଧି ଯୋଗଦେବେ । ସେମାନଙ୍କର ଚର୍ଚ୍ଚା ପାଇଁ ଦୁଇଶହରୁ ଅଧିକ ସ୍ୱେଚ୍ଛାସେବକ ଲୋଡ଼ା । ଗୋଟାଏ ବିରାଟ ଅଂଚଳରେ ଅସ୍ଥାୟୀ ପ୍ରତିନିଧି ନିବାସ ରହିବ । ସମଗ୍ର ଅଞ୍ଚଳଟିକୁ ସଫା ସୁତୁରା ରଖିବା ଆବଶ୍ୟକ । ଉଠା ମାଟି ପଇଖାନା ବା କମୋଡ଼ର ବ୍ୟବସ୍ଥା । ବୈଠକ ବସିବ ପୂରା ଆଠଦିନ ପର୍ଯ୍ୟନ୍ତ । ବହୁସଂଖ୍ୟକ ବଡ଼ ବଡ଼ ନେତା ଆସିବେ । ସେମାନଙ୍କ ଭଲ ମନ୍ଦ ବୁଝିବାକୁ ପଡ଼ିବ । ସବୁ ପ୍ରଦେଶରୁ ବଛା ବଛା କର୍ମୀ ଆସୁ ଥିବାରୁ ଗୋଟିଏ ଗ୍ରେଟିଆ ଭାରତ ଦେଖିବାକୁ ମିଳିବ ବୋଲି କୁହାଯାଉ ଥାଏ । ପୁରୀ ଜିଲ୍ଲାର ବେରବୋଇକୁ

ବସୁଗଲା ବୈଠକ ପାଇଁ । ସେଠାରେ ପଣ୍ଡିତ କୃପାସିନ୍ଧୁ ହୋତା ବହୁ କଷ୍ଟ ହେଲା ସଂଗଠନ କାମ କରୁଥିଲେ । ପୁରୀଠାରୁ ଅଳ୍ପ ଦୂରରେ ରେଲଲାଇନ କଡ଼ରେ ଥିବାରୁ ଅଧିକ ସୁବିଧା ଓ ଆକର୍ଷଣ । ଆମେ ସମସ୍ତେ ବଖା ଗୁଡ଼ ସେଇଠିକୁ ଗୁଳ ଆସିଲୁ । ବାପୁଜୀ କହୁଥାଆନ୍ତି ଏଇଟି ଯେମିତି ଗୋଟିଏ ଆଦର୍ଶ ବୈଠକ ହେବ । ସ୍ଥାନୀୟ ବ୍ୟବସ୍ଥା ଦ୍ୱାରା ଯାହା ମିଳିବା ସମ୍ଭବ ସେଇଆଡ଼େ ଖିଆପିଆରେ ଲଗାଯିବ । ଦଶମାଇଲ ଅଂଞ୍ଚଳରୁ ସବୁକିଛି ସଂଗ୍ରହ କରାଯିବ । ଯଦି କୌଣସି ଅତି ଦରକାରୀ ପଦାର୍ଥର ଅଭାବ ହେଲା, ବାହାରୁ କିଣା ଯିବ ।

ବେରବୋଇ ଡେଲାଙ୍ଗ ଅଞ୍ଚଳରେ ହଜାର ହଜାର ନଡ଼ିଆ ଗଛ । ନଡ଼ିଆ ବାଉଙ୍ଗାରେ ରହିବା ଘର ତିଆରି ହୋଇଯିବ । ଗ୍ରୁତକାମ କରିବ ସେହି ବାଉଙ୍ଗା । ନଡ଼ିଆ ଓ ପଇଡ଼ର ବ୍ୟବସ୍ଥା କରିଦେଲେ ପ୍ରତିନିଧି ମାନେ ବେଶ୍ ସନ୍ତୁଷ୍ଟ ରହିବେ । ଠିକ୍ ହେଲା ଗାଁକୁ ଗାଁ ବୁଲି କେତେ ସଂଖ୍ୟକ ନଡ଼ିଆ ଗଛ ଅଛି ଗଣିଦେବାକୁ ହେବ । ଗ୍ରାମବାସୀ ମାନେ ସ୍ୱଇଚ୍ଛାରେ କେତେ ସଂଖ୍ୟକ ବାଉଁଗା ନଡ଼ିଆ ପଇଡ଼ ୧୯୩୮ ମାର୍ଚ୍ଚ ବେଳକୁ ଯୋଗାଇ ଦେଇ ପାରିବେ ତାହାର ତାଲିକା କରିବାକୁ ହେବ । କେତୋଟି ଘର ତିଆରି ହେବ ଓ କେତେ ସଂଖକ ନଡ଼ିଆ ପଇଡ଼ ଲୋଡ଼ା ତାହାର ଗୋଟାଏ ମୋଟା ମୋଟି ହିସାବ କରାଯାଇ ଥାଏ । ବୈଠକ ବସିଲା ବେଳକୁ କ୍ଷୀର, ଦହି, ଘିଅ, ଛେନା ଇତ୍ୟାଦି ଲୋଡ଼ା । କେଉଁ ଗାଁରେ କେତେ ଗାଈ ସେତେବେଳକୁ ଦୁଧିଆଳୀ ଥିବେ ତାହାର ମଧ୍ୟ ମୋଟା ମୋଟି ହିସାବ କରା ଯାଉଥାଏ । କ୍ଷୀର, ଦହି ଛେନା ନଡ଼ିଆ ଗୁଡ଼ର ହିସାବ ସ୍ୱତନ୍ତ୍ର ଭାବରେ କରାଯାଉଥିବାର ଗୋଟାଏ କାରଣ ଅଛି । ଓଡ଼ିଆମାନେ ଯେତେ ପ୍ରକାରର ପିଠାପଣା କରନ୍ତି ଭାରତର ଅନ୍ୟ କୌଣସି ଅଞ୍ଚଳର ଲୋକେ ସେପରି କରନ୍ତି ନାହିଁ ବୋଲି ଓଡ଼ିଶା ବାହାରର ଲୋକଙ୍କଠାରୁ ଶୁଣିଛି । ମିଠାଇ ବା ସୁଇଟ୍‌ସ୍ ବୋଲି ଯାହା ବୁଝାଏ ସେଥିରେ ଅନ୍ୟ ପ୍ରଦେଶ ସବୁ ହୁଏତ ହଟି ଯିବେ ନାହିଁ । କିନ୍ତୁ ଲଡ଼ୁ, ରସଗୋଲା ପ୍ରଭୃତି ହେଲା ମିଠାଇ । କାକରା, ଛୁଞ୍ଚିପତର, ଆରିସା, ମଣ୍ଡା ପ୍ରଭୃତି ପିଠା । ଆମେ ସବୁ ଠିକ୍ କଲୁ ଆଠଦିନ ଯାକ ସକାଳ ଜଳଖିଆ (ବ୍ରେକ୍‌ଫାଷ୍ଟ) ବେଳେ ତିନି ଚାରି ପ୍ରକାର ଓଡ଼ିଶା ପିଠା ପ୍ରତିନିଧି ମାନଙ୍କୁ ଖୁଆଇବୁ ।

ପ୍ରତିନଧି ସ୍ୱେଚ୍ଛାସେବକ ଓ ଓଡ଼ିଶାରୁ ନମନ୍ତ୍ରିତ ଲୋକଙ୍କୁ ନେଇ ପ୍ରତିଦିନ ଜଳଖିଆ ଖାଇବେ ୧୫୦୦ରୁ ୨୦୦୦ ଲୋକେ । ଏଥି ପାଇଁ ଆୟୋଜନ ଲୋଡ଼ା । ପର୍ବୋ ତରକାରୀରେ ପୁଣି ଓଡ଼ିଶା ପ୍ରଥମ ସ୍ଥାନ ଅଧିକାର କରିବା ପାଇଁ ପ୍ରତି ଯୋଗିତା କରିଥାଏ ଭାରତର ଅନ୍ୟ ପ୍ରଦେଶ ଲୋକଙ୍କ ସହିତ । ବ୍ୟଞ୍ଜନ ଦ୍ୱାଦଶୀ ଓ ଶାମ୍ବଦଶମୀ ଓଡିଶାର ଦୁଇଟି ପର୍ବ । ପରିବାରର ପ୍ରତ୍ୟେକଙ୍କ ପାଇଁ ଶାମ୍ବଦଶମୀରେ ଗୋଟିଏ ଗୋଟିଏ ସ୍ୱତନ୍ତ୍ର ପିଠାର ପୂଜା ହୁଏ । ସେମିତି ଦେବ ମନ୍ଦିରରେ ଠାକୁର ବାଢ଼ରେ 'ଚଉଷଠୀ ବ୍ୟଞ୍ଜନ' ଦିନ ଚଉଷଠୀ ପ୍ରକାରର ପରିବା ତରକାରୀ ହୁଏ । କେତେ ଜାତିର ପରିବା କିଏ ବ୍ୟବହାର କରିଛୁ ସେଇଟା ଥାଏ ବାହାଦୁରୀ । ଭାରତର କେତେକ ଅଂଚଳରେ ଗୋଟିଏ ଗୋଟିଏ ପ୍ରକାରର ପରିବାରେ ଗୋଟିଏ ଗୋଟିଏ ପ୍ରକାର ତରକାରୀ ହୁଏ ବୋଲି କହିଲେ ଓଡ଼ିଶାର ଗାଁ ଗହଳିର ଝିଅ ବୋହୂମାନେ ହସନ୍ତି । ଭଜା ସେମିତି କରିହେବ—ତରକାରୀ କେମିତି କରନ୍ତି ଓ ତାହା କ'ଣ ସୁଆଦ ଲାଗେ ବୋଲି ପଚାରନ୍ତି । ପୁଣି ଠିକ୍ ହେଲା ଯେ ଓଡ଼ିଶାରେ ଯେ ବହୁପ୍ରକାରର 'ବଡ଼ି' ତିଆରି ହୁଏ ତାହାର ନମୁନା ଖାଇବା ବେଳେ ଦିଆଯିବ । କେଉଁ ଦିନ ସକାଳ ବା ସନ୍ଧ୍ୟା ଭୋଜନ ବେଳେ କ କ ପ୍ରକାରର ବଡ଼ି ଦିଆଯିବ ତାହାର ଗୋଟାଏ ସୂଚିମତ ତାଲିକା ହେଲା । 'ବଡ଼ି' କ୍ଷେତ୍ରରେ ନଯ୍ୟମ କୋହଳ କରାଯାଉ ବୋଲି ଭୋଷାଇ ଦାୟିତ୍ୱରେ ଥିବା ମହିଳାମାନେ ଦାବୀକଲେ ଓ ସେମାନଙ୍କର ସେହି ଦାବୀ ମଞ୍ଜୁର କରାଗଲା । ଓଡ଼ିଶାର ଭିନ୍ନ ଭିନ୍ନ ଅଞ୍ଚଳକୁ ବହୁପୂର୍ବରୁ ଖବର ଦିଆଗଲା ଭିନ୍ନ ଭିନ୍ନ ପ୍ରକାର ବଡ଼ି ତିଆରି କରି ରଖିବେ ଓ ଯଥା ସମୟରେ ବେଲ୍ଗାଁଓ ବୈଠକ ରନ୍ଧାଶାଳାକୁ ପଠାଇ ଦେବେ । ଦେଖାଗଲା ଯେ ଗାଁ ଗାଁ ଭିତରେ ଏଥିପାଇଁ ପ୍ରତିଯୋଗିତା ଚାଲିଛି । ମୁଁ ଜାଣେ ଓଡ଼ିଶାର ଜଣେ ପ୍ରସିଦ୍ଧ ଅଧ୍ୟାପକଙ୍କ ପତ୍ନୀ ଓ ଜଣେ ଜାଜପୁର ବଡ଼ ଜମିଦାରଙ୍କ ପତ୍ନୀଙ୍କ ଭିତରେ ବାଜି ମରାମରି ହୋଇଥିଲା କିଏ ନିଜ ଗାଁରୁ କେତେ ପ୍ରକାରର ବଡ଼ି ପଠାଇ ପାରିବେ । ଏହି ସବୁ ଆୟୋଜନରେ ଗାଁ ଗାଁ ବୁଲିବାକୁ ପଡ଼ିଲା । ସନ୍ଧ୍ୟାବେଳେ ଗୋଟିଏ ଗୋଟିଏ ଗାଁରେ ସଭାହୁଏ । ସେବାସଂଘ ବୈଠକର ଗୁରୁତ୍ୱ ବିଷୟରେ କୁହାଯାଏ । କଂଗ୍ରେସ କି ପରିସ୍ଥିତିରେ ମନ୍ତ୍ରୀମଣ୍ଡଳ ସବୁ ଗଢ଼ିଛି ସେ ବିଷୟରେ ଠିକନଖି ବୁଝାଇ ଦିଆଯାଏ । ଏହି ବୈଠକରେ ନେତାମାନେ ବସି କଂଗ୍ରେସୀ ମନ୍ତ୍ରୀମାନଙ୍କ

ପାଇଁ କେତେଗୁଡ଼ିଏ ମାତ୍ର ସ୍ଥିର କରି ଦେବେ । ସେହି ସବୁମାନ୍ତ ଉପରେ ନିର୍ଭର କରୁଛି ଲୋକଙ୍କର ମଙ୍ଗଳ ପାଇଁ ମନ୍ତ୍ରୀମଣ୍ଡଳ କଅଣ କରିପାରିବେ । ଏହି ସୁଯୋଗରେ ଲୋକମାନଙ୍କୁ ଏଭଳି ସଂଗଠିତ କରାଯିବ ଯେ ବ୍ରିଟିଶ ସରକାର ବାଧ୍ୟ ହେବ କ୍ରମେ ଅଧିକରୁ ଅଧିକ କ୍ଷମତା ହସ୍ତାନ୍ତର କରିବା ପାଇଁ । ତା' ନ ହେଲେ ପୁଣି ସ୍ୱାଧୀନତା ସଂଗ୍ରାମ ଚଳାଇବାକୁ ହେବ । ଏହିସବୁ ଆଲୋଚନା ସଭାର ବିଶେଷତ୍ୱ ହେଲା ଲୋକେ ଶୁଣିବେ, ପ୍ରଶ୍ନ ପଚାରିବେ, ସେମାନଙ୍କ ପ୍ରଶ୍ନ ଗୁଡ଼ିକର ସନ୍ତୋଷଜନକ ଉତ୍ତର ଦିଆଯିବ । ଲକ୍ଷ୍ୟ କରିବାକୁ ହେବ ସମସ୍ତଙ୍କ ମନ ମାନିଲା କି ନାହିଁ । ଏଇଟି ଗୋଟିଏ ଗଣତନ୍ତ୍ର ଟ୍ରେନିଙ୍ଗ୍ । ଏଇ ସବୁ ପରୀକ୍ଷାରେ ମୁଁ କେତେ ଦୂରକୁ ସଫଳତା ହାସଲ କରୁଥାଏ ତାହା ଲକ୍ଷ୍ୟକରେ ଓ ସେଥିରୁ ବହୁତ କିଛି ଶିଖେ । ଗାଁର ଲୋକେ ବେଶୀ ପାଠ ପଢ଼ିନାହାନ୍ତି ବୋଲି ଅଳ୍ପବୁଦ୍ଧିଆ—ଏଭଳି ଭ୍ରମଧାରଣା ଦୂର ହୋଇଯାଏ ।

ସବୁପ୍ରକାରର ପ୍ରାଥମିକ ଆୟୋଜନ ଶେଷ ହେଲା ପରେ ମୁଁ ଲାଗିଗଲି ବୈଠକ ଏରିଆଟି ସେହି ଦଶଦିନ କିଭଳି ଏକାବେଳକେ ସଫା ରହିବ । ମାଟିଟ୍ରେଂଚ ପାଇଖାନା ଗୁଡ଼ିକ ଭଲ ଭାବରେ ତିଆରି ହେବ । ବହୁ ସଂଖ୍ୟକ ବାଉଁଶ ଫ୍ରେମ୍ ତିଆରି କରି ରଖିବାକୁ ପଡ଼ିବ, ମଝିରେ ମଝିରେ ବାରମ୍ବାର ମାଟିପକାଇ ଟ୍ରେଂଚ ଗୁଡ଼ିକୁ ଦୁର୍ଗନ୍ଧ ଶୂନ୍ୟ କରିବାକୁ ହେବ । ନେତାମାନଙ୍କ ରହିବା ଘର ନିକଟରେ ମାଟିପାଣି କମୋଡ଼ ରଖି ସେଗୁଡ଼ିକୁ ସଫା କରିବାକୁ ହେବ । ଝିଙ୍ଗାପତ୍ର କାଗଜ ପ୍ରଭୃତିକୁ ଦିନ ଭିତରେ ଆଠଦଶଥର ଗୋଟାଇ ଦୂରରେ ଗାତ ଖୋଳି ପୋତି ଦେବାକୁ ହେବ, ଅଇଁଠା ପତ୍ର ଗୁଡ଼ିକୁ ଟୋକେଇରେ ନେଇ ଗାତରେ ପକାଇ ଦିଆଯିବ, କୁକୁର ଯେମିତି ଗାତଭିତରେ ପଶି ପତର ଟାଣି ଅସନା ନ କରିବେ ସେଥିପାଇଁ ପ୍ରତ୍ୟେକ ଥର କଦଳୀ ପତ୍ର ପଡ଼ିଲାପରେ ତା' ଉପରେ ମାଟି ଚଲାଇ ଦେଇ ହେବ—ଏହିସବୁ ଠିକଣା ଯୋଜନା କରାଗଲା । ବଣ୍ଟରେ ଯେଉଁ ହରିଜନ ଯୁବକ ମାନଙ୍କୁ ତାଲିମ କରିଥିଲି ସେମାନଙ୍କୁ ଭିତରୁ କୋଡ଼ିଏ ଜଣ ଆସିଗଲେ । ଅନ୍ୟ ତିରିଶ ଜଣ ଆଗ୍ରହରେ ବାହାରିଲେ । ଆମେ ପଚାଶ ଜଣ ସମ୍ମିଳନୀ ଭିତରେ ସମଗ୍ର ଏରିଆଟିକୁ ଏକାବେଳକେ ପରିଷ୍କାର ରଖିଦେଲୁ । ବାହାରୁ ଯେଉଁମାନେ ଆସିଥିଲେ ସେମାନେ ପ୍ରଶଂସା କଲେ ।

ମହାତ୍ମା ଗାନ୍ଧୀଙ୍କର ଆଉ ଗୋଟିଏ ସୂଚନାକୁ ସଫଳତାର ସହିତ କରିପାରି ଥିବାରୁ ଅଧିକା ଖୁସୀ ହେଲେ । ସମ୍ମିଳନୀ ବେଳେ ଯେଉଁ ପ୍ରଦର୍ଶନୀ ହେବ ତାହା ଯେପରି "ଜୀବନ୍ତ" ହୁଏ—ତାହାହିଁ ଥିଲା ଗାନ୍ଧିଜୀଙ୍କ ନିର୍ଦ୍ଦେଶ । ଜୀବନ୍ତର ଅର୍ଥ ହେଲା ପ୍ରଦର୍ଶନୀ ଭିତରେ ଯେଉଁ ରାସ୍ତା ସବୁ ଥିବ ତାହାର ଦୁଇ ପାଖରେ ଛନଛନିଆ ଶାଗ ହୋଇଥିବ, ବାଇଗଣ ଓ ଭେଣ୍ଡି ପ୍ରଭୃତି ଫଳିଥିବ, ନାନା ଜାତିର ଫୁଲ ଗଛରେ ଫୁଲ ଫୁଟିଥିବ, ଯେଉଁ ଆଡ଼କୁ ଆଖି ପକାଇବ ଜୀବନର ସନ୍ଧାନ ମିଳୁଥିବ । କୁଟୀର ଶିଳ୍ପ ସୂତାକଟା ଲୁଗାବୁଣା ମୂର୍ତ୍ତିଗଠନ ଇତ୍ୟାଦି ଯାହାକିଛି ବସୁଥିବ ସେଗୁଡ଼ିକ ଲୋକେ ତା' ଭିତରେ ବସି କରୁଥିବେ । ବାହାରୁ ଯେଉଁ ସବୁପଦାର୍ଥ ଆସିବ କାରିଗର ନିଜେ ଆସି ସେଗୁଡ଼ିକ ଦେଖାଉଥିବେ । ସେତେବେଳେ ବିଶ୍ୱନାଥ ଦାସ ଥାଆନ୍ତି ମୁଖ୍ୟ ମନ୍ତ୍ରୀ ଓ ନିତ୍ୟାନନ୍ଦ କାନୁନ୍‌ଗୋ ଥାଆନ୍ତି କୃଷିମନ୍ତ୍ରୀ । ସରକାରୀ ସମର୍ଥନ ନ ମିଳିଲେ ଏଭଳି ଗୋଟିଏ ପ୍ରଦର୍ଶନୀ କରିବା କଷ୍ଟ । ସେମାନେ ଅତି ଆଗ୍ରହରେ ସମର୍ଥନ ଜଣାଇଲେ । କିନ୍ତୁ କିଏ ଜଣେ ଏହାର ସଂପୂର୍ଣ୍ଣ ଦାୟିତ୍ୱ ନ ନେଲେ ହେବ ନାହିଁ । କୃଷି ବିଭାଗର ବଡ଼ ବଡ଼ ଅଫିସରଙ୍କ ଭିତରୁ କେହି ଜଣେ ଦାୟିତ୍ୱ ନେବା କଥା ଉଠିଲା । ମୁଁ ନମ୍ରତାର ସହିତ ପ୍ରସ୍ତାବ ଦେଲି—'କଟକ ବିଦ୍ୟାଧରପୁର କୃଷି ଫାର୍ମରେ ଜଣେ କୃଷି ଓଭରସିୟର ଅଛନ୍ତି । ତାଙ୍କର ଯୋଗ୍ୟତା ଅଛି ଓ ଏହି କାମ ପାଇଁ ଶ୍ରଦ୍ଧା ଅଛି । ତାଙ୍କର ଉପରେ ଦାୟିତ୍ୱ ଦିଆଯାଉ ।' କଟକ ଯାଇ ତାଙ୍କୁ ଡ଼କାଇଲି । ଦୁଇ ମନ୍ତ୍ରୀ ଯାକ କହିଲେ ଏହି ଯୋଜନାଟିକୁ ନିଷ୍ଠାପୂର୍ବ କାର୍ଯ୍ୟକାରୀ କରାଇବାକୁହିଁ ପଡ଼ିବ । କୃଷି ଓଭରସିଅର ବିଶ୍ୱନାଥ ସାହୁ ଟିକିଏ ଡରିଗଲେ । କିନ୍ତୁ ସରକାରଙ୍କ ନିର୍ଦ୍ଦେଶ । ବିଶ୍ୱନାଥଙ୍କୁ ମୁଁ ବହୁକାଳରୁ ଜାଣେ । ସେ ରେଭେନ୍‌ସା କଲେଜକୁ ଆସିଲା ଦିନ ତାଙ୍କୁ ଚିହ୍ନିଛି । ସେ ଗୋଟିଏ କଥା କହିଲେ । ପ୍ରଦର୍ଶନୀ ପାଇଁ ଖଣ୍ଡେ ବଡ଼ ଜମି ଲୋଡ଼ା । ସେ ଜମି ଖଣ୍ଡ ଯଥେଷ୍ଟ ଆଗରୁ ଆମ ହାତକୁ ନ ଆସିଲେ ଆମେ ତାକୁ ସଜାଡ଼ିବା କିପରି ? ଫେବୃୟାରୀ ଅରମ୍ଭ ବେଳକୁ ଆମ କାମ ଶେଷ ହୋଇଥିବ ଓ କେବଳ ଫିନିସିଙ୍ଗ୍ ଟଚ୍ ଦିଆ ହେଉଥିବ । ଏହାର ଅର୍ଥ ହେଲା ଜଣେ କେହି ଜମିଖଣ୍ଡିକରେ ଫସଲ ନ କରି ଆମକୁ ଦେଇ ଦେବେ । ଗାଁର ଜଣେ ବିଶିଷ୍ଟ ଲୋକ ଶ୍ରୀ ବିଶ୍ୱାଳ ନିଜ ଆଡ଼ୁ କହିଲେ ସେମିତିକା ଖଣ୍ଡେ ଜମି ଦେଇ ଦେବେ । ତାଙ୍କ ପୁଅ

ମୋଠାରୁ ବର୍ଷେସାନ । ଆମେ ଦ୍ୱ' ଜଣ ବନ୍ଧୁ ହୋଇ ଗଲୁ । ଉଷ୍ରାହର ସହିତ କାମ ଚାଲିଲା । ପ୍ରଦର୍ଶନୀ ଦେଖିବାକୁ ଗାନ୍ଧିଜୀ ଯେତେବେଳେ ଗଲେ ସେ ଅତି ମାତ୍ରାରେ ଖୁସୀ ହୋଇ ଯାଇ ବହୁ ସମୟ ତା' ଭିତରେ କଟାଇଲେ । ସନ୍ଧ୍ୟା ବେଳେ ସାଧାରଣ ସଭାରେ କହିଲେ—"ଏଇଟି ଗୋଟିଏ ଆଦର୍ଶ ସ୍ଥାୟୀ ପ୍ରଦର୍ଶନୀ । ସମ୍ମିଳନୀର ପ୍ରତ୍ୟେକ ପ୍ରତିନିଧି ଏହାକୁ ଏକାଧିକ ବାର ଦେଖନ୍ତୁ । ଅନ୍ୟ ଯେଉଁମାନେ ଆସୁଛନ୍ତି ସେମାନେ ମଧ୍ୟ କିଛି ସମୟ ତା' ଭିତରେ କଟାନ୍ତୁ ।" ବିଶ୍ୱନାଥ ସାହୁ ଯେଉଁ ସଫଳତା ଦେଖାଇଲେ ତାହାର ପୁରସ୍କାର ତାଙ୍କୁ ସରକାରଙ୍କଠାରୁ ମିଳିଲା । ସେ ଆମେରିକା ଗଲେ କେତେଥର । ସେଠାରେ ସ୍ୱତନ୍ତ୍ର ଯୋଗ୍ୟତା ହାସଲ କରି ଡକ୍ଟରେଟ୍ ପାଇଲେ । ଓଡ଼ିଶା କୃଷି ବିଶ୍ୱ ବିଦ୍ୟାଳୟର ଡିନ୍ ଓ ଆହୁରି କେତେ କଅଣ ପଦବୀ ପାଇଛନ୍ତି । ତାଙ୍କ ନାମର ଉଲ୍ଲେଖ ଏ ବହିରେ ବିଶେଷ ଭାବରେ କରିଦେବାର ଉଦ୍ଦେଶ୍ୟ ହେଲା—୧୯୫୪ରେ ଯେତେବେଳେ ସ୍ଥିରକଲି ଏନ୍‌ସାଇକ୍ଲୋପିଡ଼ିଆ ଲେଖିବି କୃଷିର ମୌଳିକ କଥାସବୁ ବୁଝିବା ପାଇଁ ତାଙ୍କ ପାଖକୁ ଗଲି । ସେ ଅତି ଆନନ୍ଦର ସହିତ ସାହାଯ୍ୟ ତ କଲେ, ତାଙ୍କର କେତେ ଗୁଡ଼ିଏ ମୂଲ୍ୟବାନ ରିପୋର୍ଟ ଓ ଆଉ କେତେକ ବହି ଦେଲେ । ସେତେବେଳକୁ ସେ କୃଷି ଉପରେ ବହୁ ସଂଖ୍ୟକ ବହି ଲେଖିସାରିଥାନ୍ତି ଓଡ଼ିଆ ଭାଷାରେ । ସେ ମନେ ରଖିଥିଲେ ଯେ ତାଙ୍କର କେତେଗୁଡ଼ିଏ ବହିର ପାଣ୍ଡୁଲିପି ତାଙ୍କ ପ୍ରକାଶକ ତାଙ୍କ ଅନୁମତି ନେଇ ମୋତେ ଦେଖାଇଥିଲେ ଭାଷାକୁ ଟିକିଏ ସୁଖ ପାଠ୍ୟ ବା ସରଳ କରିଦେବା ପାଇଁ । ୧୯୭୦ ଏପ୍ରିଲ ମାସରେ ସେ ଜ୍ଞାନମଣ୍ଡଳ ଅଫିସକୁ ଆସିଥିଲେ ମୋଠାରୁ ସ୍ୱତନ୍ତ୍ର ନିମନ୍ତ୍ରଣ ପାଇ । ଆଉ କେତେଜଣ ବିଶିଷ୍ଟ ବ୍ୟକ୍ତି ଥିଲେ । ମୋ ସାଧାରଣ ଜୀବନକୁ ୪୦ ବର୍ଷ ପୂରି ଯାଉଥାଏ । ସେହି ଉଦ୍ଦେଶ୍ୟରେ ଏହି ବନ୍ଧୁମିଳନ । ପରିଦର୍ଶକ ବା ଭିଜିଟର ବହିରେ ସେ ଲେଖିଦେଇ ଗଲେ ମୋ ସହିତ ତାଙ୍କର ସଂପର୍କ ବିଷୟରେ । ସେ ଯଦି କେତୋଟି କଥା ସୁପରଲେଟିଭ୍‌ରେ ଲେଖି ଦେଇ ନଥାନ୍ତେ ତାଙ୍କ ପୂରା ମନ୍ତବ୍ୟଟି ଏଠାରେ ଉଦ୍ଧାର କରିଦେଇ ଥାଆନ୍ତି । କୃଷି ସଂପର୍କରେ ଯେଉଁଠି ବୁଝିବାରେ ଟିକିଏ ଅଟକି ଯାଇଛି ସେତେବେଳେ ଡକ୍ଟର ପ୍ରାଣକୃଷ୍ଣ ପରିଜା, ଡକ୍ଟର ବଂଶୀଧର ପରିଜା, ଡକ୍ଟର ବିଦ୍ୟାଧର ପାତ୍ରୀ ଓ

ଓକଟରେ ବିଶ୍ୱନାଥ ସାହୁଙ୍କ ଦ୍ୱାରସ୍ଥ ହୋଇଛନ୍ତି ସେମାନେ ମୋତେ କେବେ ହେବେ ନିସ୍ୱଣ କରି ନାହାନ୍ତି ।

ତେଲଙ୍ଗ-ବେରବୋଇ ସମ୍ମିଳନୀରେ ଭାରତର ସବୁ ପ୍ରଦେଶର ପ୍ରାୟ ସାତ ଆଠଶହ ବଡ଼ ବଡ଼ କର୍ମୀ ନେତା ଯୋଗଦେଇ 'ଭବିଷ୍ୟତ ଭାରତ'ର ରୂପରେଖ ବିଷୟରେ ଆଲୋଚନା କରିଥିଲେ । ଆଚାର୍ଯ୍ୟ କୃପାଳନୀ ସର୍ଦ୍ଦାର ପଟେଲ, ରାଜେନ୍ଦ୍ରପ୍ରସାଦ ଏବଂ ମହାତ୍ମାଗାନ୍ଧୀ ନିଜେ ମୁଖ୍ୟଭାଗ ନେଉଥିଲେ । ମଶ୍ରୁଓ୍ୱାଲା, ଜାଜୁଜୀ, ଧୋତ୍ରେ ପ୍ରଭୃତି ନାନା ମୌଳିକ ପ୍ରଶ୍ନ ଉଠାଇଲେ । କଂଗ୍ରେସୀ ମନ୍ତ୍ରୀମାନେ କିଭଳି ଆଚରଣ ଦେଖାଇଲେ ଲୋକେ ପ୍ରଭାବିତ ହେବେ ସେ ବିଷୟରେ ସେମାନେ ସୂଚନା ଦେଇଥିଲେ । ଗୋଟାଏ ସ୍ତରରେ ବାପୁଜୀଙ୍କ ପ୍ରସ୍ତାବମତେ ମୌଲାନା ଆଜାଦଙ୍କୁ ଡକାହେଲା । ସେ ଗୋଟିଏ ଦିନ ଉକ୍ତ ଆଲୋଚନାରେ ଭାଗନେଲେ । ମୋ ପାଇଁ ସେହିସବୁ ଆଲୋଚନା ଶୁଣିବା ଥିଲା ଗୋଟାଏ ଶାନ୍ତିମତ ଶିକ୍ଷା । କେବଳ ଶୁଣିଥିଲେ ଯାହା ହୋଇଥାଆନ୍ତା ତା'ଠାରୁ ଅଧିକ ଲାଭବାନ ହୋଇଗଲି ଆଉ ଗୋଟିଏ କାରଣରୁ । ଆଲୋଚନାର ସାରାଂଶ 'ସମାଜ' କାଗଜକୁ ପଠାଉଥିଲି । ବୈଠକକୁ ସାମ୍ବାଦିକମାନଙ୍କର ପ୍ରବେଶ ନଥିଲା । ପ୍ରତିଦିନ ସେମାନଙ୍କୁ ଗୋଟିଏ ସଂକ୍ଷିପ୍ତ ନୋଟ ସମ୍ମିଳନୀ ପକ୍ଷରୁ ଯୋଗାଇ ଦିଆଯାଉଥିଲା । ଓଡ଼ିଶାରେ ସେତେବେଳେ ଗୋଟିଏ ମାତ୍ର ଦୈନିକ କାଗଜ ଥାଏ । ସମ୍ବାଦ ସରବରାହ ଭିତରେ ଥାଏ ଏ: ପି: (Associated pressed of india) । ଯେଉଁଦିନ ମୌଲାନା ଆଜାଦ ଆଲୋଚନାରେ ଭାଗନେଲେ ସେଦିନର ବିବରଣୀ ମୁଁ ସମାଜକୁ ପଠାଇ ଦେଇ ଶିରୋନାମା ଦେଇଥିଲି 'ମହାତ୍ମା ମୌଲାନା ଭେଟ' । ଏଭଳି ଗୋଟିଏ ଘଟଣାର ବିବରଣୀ କାହିଁକି ନ ପଠାଇଲ ବୋଲି ଓଡ଼ିଶାର ଏ:ପି: ସମ୍ବାଦଦାତାଙ୍କୁ ସୂଚନା ଆସିଲା ହେଡ୍‌କ୍ୱାଟର୍‌ସ୍‌ରୁ । ସେ ସିଧାସଳଖ ମହାତ୍ମାଜୀଙ୍କ ପାଖକୁ ଯାଇ ଅଭିଯୋଗ କଲେ ସମ୍ବାଦଦାତାମାନଙ୍କୁ ଯେତେବେଳେ ପ୍ରବେଶପତ୍ର ଦିଆଯାଇନାହିଁ 'ସମାଜ'ରେ ଏମିତି ବିସ୍ତୃତ ବିବରଣୀ ପ୍ରକାଶ ପାଉଛି କେମିତି । ସେ ଅନୁସନ୍ଧାନ କଲେ ସମାଜରେ କଅଣ ସବୁ ବାହାରୁଛି ଓ କିଏ ଲେଖୁଛି । ମୁଁ ଯାଇ ଘଣ୍ଟାଏକାଳ ବୁଝେଇଲି କଅଣ ସବୁ ଶିରୋନାମା ଦିଆଯାଉଛି ଓ କଅଣ ସବୁ ଲେଖାଯାଉଛି । ସବୁ ଶୁଣିଲା ପରେ ସେ ଏ: ପି: ସମ୍ବାଦଦାତା ଏନ୍: ଆର୍: ସ୍ୱାମୀଙ୍କୁ

ଡ଼କାଇ କହିଲେ—ସମାଜରେ ଯାହା ବାହାରିଛି ସେଥିରେ କିଛି ଆପତ୍ତି ଜନକ ନାହିଁ । ବିନୋଦ ଜଣେ ପ୍ରତିନିଧି ଥିବାରୁ ସବୁ ଶୁଣିଛି ଓ ଲେଖିଦେଇଛି । ଏଣିକି ସେ ତମକୁ କହିଦବ 'ସମାଜ'କୁ କଅଣ ସବୁ ସେ ଲେଖିଦେଇ ପଠାଉଛି । ଏନ: ଆର୍: ସ୍ୱାମୀ ଓ ମୋ ଭିତରେ ଗୋଟାଏ ମିଳାମିଶା ହୋଇଗଲା । ତାହାପରେ ଆମ ଉଭୟଙ୍କ ଭିତରେ ବନ୍ଧୁତା ବଢ଼ିଲା ।

ଗାନ୍ଧିଜୀ ଗୋପନୀୟତା ଉପରେ ବିଶ୍ୱାସ କରୁନଥିଲେ । ଗୋଟିଏ ଘଟଣାର ଉଲ୍ଲେଖ କରିଦେଲେ ଜାଣି ହୋଇଯିବ ସେ କିପରି ସବୁବେଳେ ଖୋଲାମନ ରଖିଥିଲେ । ୧୯୩୪ରେ ହରିଜନ ପଦଯାତ୍ରାବେଳେ ଦୁଇଜଣ ଗୁପ୍ତ ପୁଲିସ ଅଫିସର ନିଯୁକ୍ତ ହୋଇଥିଲେ କଅଣ ସବୁ ଘଟୁଛି, ଗାନ୍ଧିଜୀ କଅଣ କହୁଛନ୍ତି ଇତ୍ୟାଦି ବିଷୟରେ ସମସ୍ତ ବିବରଣୀ ସରକାରଙ୍କୁ ପଠାଇବା ପାଇଁ । କେନ୍ଦ୍ର ସରକାରଙ୍କର ଯେଉଁ ଗୁଇନ୍ଦା ଅଫିସ କଟକରେ ଥିଲା ତାହାର ଦାୟିତ୍ୱରେ ଥିଲେ ପ୍ରଫୁଲ୍ଲଚନ୍ଦ୍ର ସରକାର ଇନ୍‌ସ୍‌ପେକ୍ଟର ଏବଂ ଓଡ଼ିଶା ସରକାରଙ୍କ ତରଫରୁ ଥିଲେ ଜୟକୃଷ୍ଣ ଦାସ ସେ କାଳର ଜଣେ ଗ୍ରାଜୁଏଟ୍ ସବ୍‌ଇନ୍‌ସ୍‌ପେକ୍ଟର । ପଦଯାତ୍ରାବେଳେ ସେମାନଙ୍କ ପାଇଁ ରହିବାର ସୁବିଧା ସେମାନେ କରି ପାରୁନଥାନ୍ତି । ସେହି ଦୁଇଜଣଙ୍କୁ ମୁଁ ବ୍ୟକ୍ତିଗତ ଭାବରେ ଜାଣିଥିଲି । ଜୟକୃଷ୍ଣ ଦାସ ଦିନେ ଅଳ୍ପ କେତେଦିନ ପାଇଁ ସ୍କୁଲ ପଢ଼ାବେଳେ ମୋର ଅଭିଭାବକ ଥିଲେ । ପ୍ରଫୁଲ୍ଲବାବୁ ବେଶ୍ ପଢ଼ାଶୁଣା ଲୋକ । ସେମାନେ ମୋତେ କିଛି କହୁନଥିଲେ ଏ ବିଷୟରେ । ମୁଁ କାଲୁ ଠକ୍କର ବାପାଙ୍କୁ କହିଲି ସେମାନେ ଆମ ପଦଯାତ୍ରୀଙ୍କ ସହିତ ରହି ଖିଆପିଆ କରିବାରେ ଆପତ୍ତି କଅଣ ? ସେ କହିଲେ—"କିଛି ତ ଆପତ୍ତି ନାହିଁ । ଏଇଟି ତ ହରିଜନ ପଦଯାତ୍ରା । ସେମାନେ ନିଜ ଆଖିରେ ସବୁ ଦେଖନ୍ତୁ । ତେବେ ମୁଁ ପନ୍ଦର ମିନିଟ ପରେ କହୁଛି ।" ବାପୁଜୀଙ୍କ ସହିତ ତୁରନ୍ତ କଥାବାର୍ତ୍ତା କରି ଫେରିଆସି କହିଲେ—'ସେମାନେ ବିନା ଦ୍ୱିଧାରେ ଆମ ଦଳ ସାଙ୍ଗରେ ରହନ୍ତୁ ଓ ଖିଆପିଆ କରନ୍ତୁ ।' ଏହି ଭଦ୍ର ଓ ଖୋଲା ବ୍ୟବହାରର ପ୍ରଭାବ ସେମାନଙ୍କ ଉପରେ ପଡ଼ିଲା । ଗାନ୍ଧିଜୀ ଖୋଲା ମନରେ ପ୍ରକାଶ୍ୟରେ ସବୁକଥା କହୁଛନ୍ତି ଓ କରୁଛନ୍ତି ବୋଲି ସେମାନେ ରିପୋର୍ଟ କଲେ । ପଦଯାତ୍ରା ବିଷୟରେ ବିହାର ଓଡ଼ିଶା ପୁଲିଶ ଯେତେବେଳେ ରିପୋର୍ଟ କଲେ କୌଣସି କଥା ଲେଖିଲେ ନାହିଁ

ଗୋପମାପୁଚା ବିଷୟରେ । ହଜାର ହଜାର ଲୋକ ଯେ ସଭାସମିତିରେ ଯୋଗଦେଲେ ତାହାର କାରଣ ଦର୍ଶାଇବାକୁ ଯାଇ ପୁଲିଶ ବିଭାଗର ଆଇ: ଜ: ଲେଖିଥିଲେ—'ଲୋକେ ଗାନ୍ଧୀଙ୍କୁ ଦେଖିବାକୁ ଆସୁଥିଲେ, ଶୁଣିବାକୁ ନୁହେଁ ।' ('People came to see, not to hear him') । ବାପୁଜୀ ବିରୋଧୀଙ୍କୁ ମଧ୍ୟ କିଭଳି ଭାବରେ ନିରସ୍ତ କରିଦେଉଥିଲେ ତାହାର ଗୃଷ୍ଟୁସ୍ ପ୍ରମାଣଟିଏ ପାଇଲି ।

## ଦଗ୍‌ବଲୟୁଚି ଟିକିଏ ଦୂରେଇଗଲା

୧୯୩୮ ମାର୍ଚ୍ଚରେ ସମ୍ମିଳନୀ ଶେଷ ହୋଇଗଲା ପରେ ପୁରୁଣା ସଙ୍ଗଠନ କେନ୍ଦ୍ର ବଣ୍ଟୀକୁ ଫେରିଗଲି । ମନଟା ଟିକିଏ ଭିନ୍ନ ପଥରେ ଗ୍ଲଲିବାକୁ ଆରମ୍ଭ କଲାଣି । ଯାହା ସବୁ ଜାଣିଲି ଶୁଣିଲି ସେଥିରୁ କ୍ରମେ ଏଇ ସିଦ୍ଧାନ୍ତରେ ପହଞ୍ଚୁଥାଏ ଯେ ଗୋଟିଏ ବନ୍ୟା ପ୍ରପୀଡ଼ିତ ସୀମିତ ଅଞ୍ଚଳରେ କାମ କରି ନିଜର ମାନସିକ ତଥା ବୌଦ୍ଧିକ ବିକାଶ ଦିଗରେ କିଛି କରିବା ସମ୍ଭବ ନୁହେଁ । ସେହି ଅଞ୍ଚଳକୁ ରାସ୍ତାଘାଟ କିଛି ନଥାଏ । ନିକଟସ୍ଥ ରେଳ ଷ୍ଟେସନ ଅଠର ମାଇଲ ଦୂର, କାର୍ ବା ଜିପ୍ ଯିବା ପାଇଁ ରାସ୍ତା ନଥାଏ । ଦୁଇଟି ନଦୀ ଭିତରେ ଥିବା ଏହି ଅଞ୍ଚଳଟି ବାହାର ଜଗତଠାରୁ ବିଚ୍ଛିନ୍ନ ବୋଲି କହିଲେ ଚଳେ । ଯେଉଁସବୁ ଭଲ କାମ ହେଉଥାଏ ବାହାରର ଲୋକେ ଜାଣିପାରୁ ନଥାନ୍ତି—ଏମିତିକି ଓଡ଼ିଶା ଭିତରର ଲୋକେ ମଧ୍ୟ ଭଲ ଭାବରେ ଜାଣୁନଥାନ୍ତି । ଗାନ୍ଧୀଙ୍କ କଳ୍ପନାର ସଙ୍ଗଠନ କାର୍ଯ୍ୟକ୍ରମ କଅଣ କରିପାରେ ତାହା ଅନ୍ୟମାନେ ଜାଣୁନଥିବାରୁ ସେଠା କାମ ପ୍ରତି କ୍ରମେ ବାହାର ଲୋକଙ୍କର ଆଗ୍ରହ କମି ଆସୁଥାଏ । କ୍ରମେ ସବୁ କାମ ଗୋଟାଏ ରୁଟିନ ହୋଇଗଲା । ମଝିରେ ମଝିରେ ବହୁସଂଖ୍ୟକ କର୍ମୀ ଆସନ୍ତି—କିଛିଦିନ ଲେଖା ରହନ୍ତି, ବହୁତ ଟଙ୍କା ନାନା ସୂତ୍ରରୁ ଆସେ, ଖର୍ଚ୍ଚ ହୁଏ—କିନ୍ତୁ ଗୋଟାଏ ଉନ୍ମାଦନାର ବାୟୁମଣ୍ଡଳ ସୃଷ୍ଟି ହୋଇ ପାରୁନଥାଏ । ଟିକିଏ ଅଣନିଶ୍ୱାସୀ ହୋଇଗଲା ଭଳି ଅନୁଭବ କରୁଥାଏ। ଗୋଟିଏ ବୃହତ୍ତର କ୍ଷେତ୍ରକୁ ଗ୍ଲଲି ନଗଲେ ମାନସିକ ବୌଦ୍ଧିକ ବିକାଶ ହେବନାହିଁ ବୋଲି ଅନୁଭବ କଲି । ଯେଉଁ ମହୁଗୃଷ, ବଗିଗ୍ଲ କାମ, ସୂତାକଟା ଇତ୍ୟାଦି କାମ କରୁଥିଲି ସେଥିରୁ ଆଉ ନୂତନ ଆନନ୍ଦ କିଛି ମିଳିଲା ନାହିଁ ।

ଅସ୍ପୃଶ୍ୟତା ନିବାରଣ ପାଇଁ ଜୋରସୋରରେ କାମ କରାଯାଉ ବୋଲି ବାପୁଜୀଙ୍କ ଇଚ୍ଛା । ନିଖିଳ ଭାରତ ହରିଜନ ସେବକ ସଙ୍ଘର ମୁଖ୍ୟ ଥାଆନ୍ତି ଅମୃତଲାଲ ଭିଠଲ ଭାଇ ଠକ୍କର । ତାଙ୍କୁହିଁ ଠକ୍କର ବାପା ବୋଲି ସମସ୍ତେ ଡାକନ୍ତି । ଓଡ଼ିଶା ବିଷୟରେ କିଛି ଜାଣିବା ପୂର୍ବରୁ ମହାତ୍ମାଗାନ୍ଧୀ ତାଙ୍କୁ ଓଡ଼ିଶାକୁ ପଠାଇଥିଲେ ୧୯୧୯ରେ ପୁରୀ ଜିଲ୍ଲାର ଗୋଟିଏ ଦୁର୍ଭିକ୍ଷ ପ୍ରପୀଡ଼ିତ ଅଞ୍ଚଳରେ ରିଲିଫ କାର୍ଯ୍ୟ କରିବା ପାଇଁ । ସେହି ଅବସରରେ ଠକ୍କର ବାପା ଓଡ଼ିଶାର ଜଣାଶୁଣା ସବୁ ନେତା ଓ କର୍ମୀଙ୍କ ସହିତ ପରିଚିତ ହୋଇ ଯାଇଥିଲେ । ଓଡ଼ିଶାରେ ଅସ୍ପୃଶ୍ୟତା ନିବାରଣ କାର୍ଯ୍ୟ ଭଲ ଭାବରେ ଚାଲୁ ବୋଲି ସେ କହିଲେ । ଆଚାର୍ଯ୍ୟ ହରିହର ସଭାପତି ଓ ପଣ୍ଡିତ ଲିଙ୍ଗରାଜ ମିଶ୍ର ସମ୍ପାଦକ ଥାଇ ଉତ୍କଳ ହରିଜନ ସେବକ ସଂଘ ଗଢ଼ାହେଲା । ଦୁଇଜଣ ସ୍ଥାୟୀ କର୍ମୀ ରହିବେ । ଆଚାର୍ଯ୍ୟ ମହାଶୟ ଓଡ଼ିଶାର ଚାରିଆଡ଼େ ତୋଫାନୀ ଗସ୍ତ କରିବେ । କର୍ମୀଙ୍କର ନିମ୍ନତମ ଯୋଗ୍ୟତା ମାଟ୍ରିକ୍ ବୋଲି ସ୍ଥିର ହେଲା । ସେମାନେ ମାସକୁ ତିରିଶ ଟଙ୍କା ଲେଖାଁ ପାରିଶ୍ରମିକ ପାଇବେ । ଜଣେ ଲୋକ ଚଳିବା ପାଇଁ ତିରିଶ ଟଙ୍କା ସେ ଯୁଗରେ ଯଥେଷ୍ଟ । ପଣ୍ଡିତ ଲିଙ୍ଗରାଜ ଲୋକ ସେବକ ମଣ୍ଡଳର ସଭ୍ୟ ହିସାବରେ ମାସକୁ ମାତ୍ର ଷାଠିଏ ଟଙ୍କା ପାଉଥାଆନ୍ତି । ସେହି କାମ କରିବି ବୋଲି ସ୍ଥିର କଲି । ଗୋଟାଏ ଲାଭ ହେବ ଓଡ଼ିଶାର ସାତ ଜିଲ୍ଲାଯାକ ବୁଲି ପାରିବି, ବହୁ ଲୋକଙ୍କ ସମ୍ପର୍କରେ ଆସିବି । ସରକାରଙ୍କ ସମର୍ଥନ ତଥା ସାହାଯ୍ୟ ବଳରେ ହରିଜନମାନଙ୍କ ଉନ୍ନତି ପାଇଁ କିଛି କରିପାରିବି । ତାହା ସଙ୍ଗେ ପଢ଼ାପଢ଼ି କରି ନିଜର ବୌଦ୍ଧିକ ପୁଞ୍ଜି ବଢ଼ାଇ ପାରିବି ଯେଉଁ ସୁବିଧାଟା ବାହାରେ ସଙ୍ଗଠନ କାମ କଲାବେଳେ ହେଉନଥାଏ । ମୋତେ ସଙ୍ଗେ ସଙ୍ଗେ ନିଯୁକ୍ତ କରି ଦିଆଗଲା । ସେହି କାମବେଳେ ଖବର କାଗଜରେ ଭିନ୍ନ ଭିନ୍ନ ସମସ୍ୟା ଉପରେ ଲେଖୁଥାଏ । ସମାଜ ସମ୍ପାଦକ ଗୋଟିଏ ସୁଦ୍ଧା କମା ପରିବର୍ତ୍ତନ ନକରି ଛପାଇ ଦିଅନ୍ତି । ଯେତେବେଳେ କଟକ ସହରରେ ଥାଏ ସମାଜ ସମ୍ପାଦକ ଓ ସହକାରୀ ସମ୍ପାଦକ ରାଧାନାଥ ରଥଙ୍କ ଅନୁରୋଧ କ୍ରମେ ସମାଜ ଅଫିସରେ ବସି କିଛି କିଛି ସମ୍ପାଦକୀୟ କାମ କରିଦିଏ । ସେହି ହରିଜନ କାମ ସମୟରେ ଯେଉଁ ଅମୂଲ୍ୟ ଅଭିଜ୍ଞତା ହେଲା ତାହାର ବର୍ଣ୍ଣନା ଏଠାରେ କରୁନାହିଁ । ପାଠକମାନେ ଅବାନ୍ତର ବୋଲି ଭାବି ପାରନ୍ତି ।

ତେବେ ଏତକ କହିପାରେ ଯେ ବହୁ ଜଟିଳ ସମସ୍ୟାର ସମାଧାନ ପାଇଁ ଯେଉଁ ଉଦ୍ୟମ କରିବାକୁପଡ଼େ ସେଥିରୁ ବହୁତ କିଛି ଶିକ୍ଷା ହୁଏ । ତାକୁ ହୁଏତ ପୁସ୍ତକ-ଗତ ଶିକ୍ଷା ବୋଲି କୁହାଯିବନାହିଁ । ଓଡ଼ିଶାରେ ଥିବା ଇଂରେଜ ଅଫିସରମାନଙ୍କ ସଂସ୍ପର୍ଶରେ ଆସେ । ଦେଶର ପରିସ୍ଥିତି ବିଷୟରେ, କଂଗ୍ରେସୀ ମନ୍ତ୍ରୀମଣ୍ଡଳର କାର୍ଯ୍ୟ ସମ୍ପର୍କରେ ଆଲୋଚନା କରିବାର ସୁଯୋଗ ମିଳେ । ଯେତେ ନରମ ତଥା ଭଦ୍ର ଭାଷାରେ କହୁଥିଲେ ମଧ୍ୟ ସେମାନେ କଂଗ୍ରେସ ମନ୍ତ୍ରୀମଣ୍ଡଳକୁ ସହଜରେ "ହଜମ" କରିପାରୁ ନଥାନ୍ତି । ଯାହାକୁ ଗାନ୍ଧିଙ୍କ ଭାଷାରେ କୁହାଯାଏ ଗିଳୁଥାଆନ୍ତି ସତ— ମଝିରେ ମଝିରେ ତଣ୍ଟିରେ ଲାଗି ଯାଉଥାଏ ।

୧୯୩୯ ମାର୍ଚ୍ଚ ଏପ୍ରିଲ ବେଳକୁ ସରକାରଙ୍କ ଗୋରା ଅଫିସର ଆଇ. ସି. ଏସ. ଓ ଗଭର୍ଣ୍ଣରଙ୍କ ଭିତରେ କେମିତି ଗୋଟାଏ ଅସ୍ଥିରତା ଦେଖାଦେଲାଣି । ଆମେ ସମସ୍ତେ ବାହାରୁ ଅନୁମାନ କଲୁଣି ଯେ ଜର୍ମାନୀ ସହିତ ବ୍ରିଟେନ ଫ୍ରାନ୍‌ସର ଯୁଦ୍ଧ ହୋଇଯାଇପାରେ । ହିଟଲରଙ୍କ ଗତିବିଧି ଓ କାର୍ଯ୍ୟକଳାପ ଏହି ଦୁଇ ଦେଶକୁ କ୍ରମେ ବିଚଳିତ କରିଦେଉଥାଏ । ଇଂରେଜ ଜାତି ସବୁବେଳେ ଯେପରି କି ଆତ୍ମରକ୍ଷା ପାଇଁ ପ୍ରସ୍ତୁତ ହେଉଥାଏ । ଇଉରୋପ ମହାଦେଶରେ ହିଟଲର ଯେଉଁଭଳି କାୟା ବିସ୍ତାର କରୁଥାଆନ୍ତି ସେଥିରେ ବ୍ରିଟେନ ବିବ୍ରତ । କେଉଁ ସୀମା ପର୍ଯ୍ୟନ୍ତ ତାଙ୍କ କାୟାବିସ୍ତାରକୁ ବରଦାସ୍ତ କରାଯିବ ଓ କେଉଁଠାରେ ତାଙ୍କୁ ଅଟକାଇବାକୁ ପଡ଼ିବ ସେ ବିଷୟରେ ବ୍ରିଟେନରେ ଅତି ଗୁରୁତ୍ୱର ସହିତ ଆଲୋଚନା କରାଯାଉଥାଏ । ଯଦି ଯୁଦ୍ଧ ଲାଗିଯାଏ ବ୍ରିଟେନକୁ ଧନଜନ ଯୋଗାଇବ ଭାରତ । ସେହି ସମୟରେ ଯଦି ଭାରତର ଗୋଟାଏ ବଡ ଅଞ୍ଚଳରେ କଂଗ୍ରେସ ମନ୍ତ୍ରୀମଣ୍ଡଳ ଥାଏ 'ଯୁଦ୍ଧଉଦ୍ୟମ' ବାଧାପ୍ରାପ୍ତ ହେବ । କଅଣ ସବୁ ଭିତିରି ଖବର ଆସୁଥାଏ କେଜାଣି ଗୋରା ଅଫିସରମାନଙ୍କ ମତଗତିରେ ଯେ ପରିବର୍ତ୍ତନ ହେଉଛି ଏହା ବିଶେଷ ଭାବରେ ଲକ୍ଷ୍ୟ କରାଯାଉଥାଏ । ମୁଁ ହରିଜନ କାମ କରୁଛି—ତେଣୁ ମୋତେ ବରଦାସ୍ତ କରିବା ସେମାନଙ୍କ ପକ୍ଷରେ ଟିକିଏ ଅଧିକା ସହଜଥାଏ । ତଥାପି ମୁଁ ଜାଣୁଥାଏ ଯେ ସେମାନେ ଗୋଟାଏ ନୂଆ ପରିସ୍ଥିତି ପାଇଁ ପ୍ରସ୍ତୁତ ହେଉଛନ୍ତି । ସେହି ପରିସ୍ଥିତି ଆମ ସମସ୍ତଙ୍କ ପାଇଁ ଅନୁକୂଳ ହେବନାହିଁ ।

୧୯୩୯ ସେପ୍‌ଟେମ୍ବର ତିନି ତାରିଖ ଦିନ ଦ୍ୱିତୀୟ ବିଶ୍ୱଯୁଦ୍ଧ ଲାଗିଗଲା । ରେଡ଼ିଓ ଯୁଗ ନହୋଇଥିବାରୁ ବହୁ ଲୋକଙ୍କ ପାଖରେ ଏହି ଖବରଟି ପହଞ୍ଚି ପାରିନଥାଏ । ଯୋଗକୁ ମୁଁ ସେଦିନ କଟକରେ ସମାଜ ଅଫିସରେ ବସିଥିଲି । ବିଶ୍ୱଯୁଦ୍ଧ ଲାଗିଗଲା ବୋଲି ଟେଲିଗ୍ରାମ ଆସିଲା ସମ୍ବାଦ ସରବରାହରୁ । ଆମେ ସମସ୍ତେ ବିସ୍ମିତ ଚକିତ । ପରିସ୍ଥିତି ବଦଳିଗଲା । ଆମ ପରେ ଯାଇ ଓଡ଼ିଶାର ମୁଖ୍ୟମନ୍ତ୍ରୀ ଜାଣିଲେ । କଂଗ୍ରେସ-ମନ୍ତ୍ରୀମଣ୍ଡଳର ଆୟୁଷ ଶେଷ ହୋଇ ଆସିଲା ବୋଲି ସମସ୍ତେ ଧରିନେଲେ । ପ୍ରକୃତରେ ତାହାହିଁ ହେଲା । ଯୁଦ୍ଧରେ ସହଯୋଗ କରିବା ପ୍ରଶ୍ନ ଉପରେ ଗାନ୍ଧୀ ଓ ବଡ଼ଲାଟଙ୍କ ଭିତରେ କୌଣସି ମିଳାମିଶା ହୋଇପାରିଲା ନାହିଁ । ଭାରତର ସବୁ କଂଗ୍ରେସ ମନ୍ତ୍ରୀମଣ୍ଡଳ ଇସ୍ତଫା ଦେଇଦେଲେ ।

## ଆଉ ଗୋଟିଏ "ଶିକ୍ଷା ନିକେତନ"

ପୃଥିବୀର ଲୋକଙ୍କ ପାଇଁ—ବିଶେଷ କରି ଭାରତ ପାଇଁ ଦ୍ୱିତୀୟ ବିଶ୍ୱଯୁଦ୍ଧଟି ଥିଲା ଗୋଟିଏ 'ବିରାଟ ଅଭିଶାପ' । ସମାଜର ଜଣେ ବ୍ୟକ୍ତି ହୋଇଥିବାରୁ ମୁଁ ସେହି ଅଭିଶାପରୁ ବାଦ୍ ପଡ଼ିନଥିଲି । କିନ୍ତୁ ଆଜି ସତଚାଳିଶ ବର୍ଷ ପରେ ୧୯୮୬ରେ ଯେତେବେଳେ ଧୀର ଚିତ୍ତରେ ବହିଖଣ୍ଡିକ ଲେଖୁଛି ସେତେବେଳେ ବୁଝୁଛି ସେଇଟି ଥିଲା ମୋ ପାଇଁ ଆଶୀର୍ବାଦ । ଦ୍ୱିତୀୟ ବିଶ୍ୱଯୁଦ୍ଧ ନହୋଇ ଥିଲେ ମୋର ପଢ଼ାପଢ଼ି ଲେଖାଲେଖି ଗୋଟାଏ ଚମତ୍କାର ଗୁଳାରେ ପଡ଼ିଯାଇ ନଥାନ୍ତା ।

ଭାରତର ସବୁ ଜାତୀୟବାଦୀ କାଗଜ ଗୋଟିଏ ବିଚିତ୍ର ପରିସ୍ଥିତିର ସମ୍ମୁଖୀନ ହୋଇଗଲେ । ଷ୍ଟେଟ୍‌ସ୍‌ମାନ, ଟାଇମ୍‌ସ୍ ଅଫ୍ ଇଣ୍ଡିଆ ଭଳି କାଗଜ ତ ସରକାରୀ ମତର ଓ ଯୁଦ୍ଧ ଉଦ୍ୟମର ସମର୍ଥକ ଥିଲେ । "ଅମୃତ-ବଜାର" ପତ୍ରିକା ଭଳି କାଗଜ ଥିଲେ ପୁରାପୁରି ଜାତୀୟବାଦୀ । ସେମାନଙ୍କ ଉପରେ କଟକଣା ଜାରି କରାଗଲା ପ୍ରତ୍ୟକ୍ଷ ଓ ପରୋକ୍ଷଭାବରେ । ଯୁଦ୍ଧ ଉଦ୍ୟମର ବିରୋଧ କଲା ଭଳି ଓ ଶତ୍ରୁକୁ ସୁହାଇଲା ଭଳି କିଛି ଲେଖା ପ୍ରକାଶ ପାଇବ ନାହିଁ । ଯୁଦ୍ଧ ଖବରଗୁଡ଼ିକର ଯେଉଁସବୁ ଶିରୋନାମା ରହିବ ସେଥିରେ ଟିକିଏ ହେଲେ ସୂଚନା ନଥିବ ଜର୍ମାନୀ ସପକ୍ଷରେ ଜନମତ ସୃଷ୍ଟି କଲାଭଳି । ଯେଉଁମାନେ ଖବର କାଗଜ ଅଫିସରେ ବସି ଲେଖୁଥିଲେ ସେମାନଙ୍କ ପାଇଁ

ଖଣ୍ଡାଧାରରେ ଗ୍ଲଲିଲା ଭଳି କଥା ହୋଇଗଲା । ଯୁଦ୍ଧ ବିରୋଧରେ ଜନମତ ସୃଷ୍ଟି କରିବାକୁ ହେବ—ତାହା ପୁଣି ସବୁପ୍ରକାରର ପ୍ରତ୍ୟକ୍ଷ ଓ ପରୋକ୍ଷ କଟକଣା ଭିତରେ । ଗାନ୍ଧିଜୀ ଓ କଂଗ୍ରେସର ନେତାମାନେ ଯେଉଁସବୁ ଭାଷଣ ଦେଉଥାଆନ୍ତି ସେଗୁଡ଼ିକ ପ୍ରକାଶ କରିବା ପାଇଁ ମନା ନଥାଏ—କିନ୍ତୁ ସାବଧାନ ହୋଇ ଶିରୋନାମା ସବୁ ଦିଆଯିବ । ଯେତେଦୂର ଜଣାଯାଉଥାଏ ଗାନ୍ଧିଜୀ ଶେଷ ସ୍ୱାଧୀନତା ସଂଗ୍ରାମ ପାଇଁ ଆହ୍ୱାନ ଦେବେ । ସେଥିପାଇଁ ଜନସାଧାରଣଙ୍କ ଭିତରେ ଜାଗରଣ ସୃଷ୍ଟି କରିବାକୁ ପଡ଼ିବ । ଏଭଳି ସବୁ କରିବା ସହଜ କଥା ନୁହେଁ । 'ସମାଜ' କାଗଜ ଥାଏ କଂଗ୍ରେସର ମୁଖପତ୍ର ବୋଲି କହିଲେ ଭୁଲ ହେବନାହିଁ । ପ୍ରତ୍ୟେକ କଂଗ୍ରେସ କର୍ମୀ ଓ ନେତା ସମାଜକୁ ନିଜର କାଗଜ ବୋଲି ବିଚାରୁ ଥାଆନ୍ତି । ସମାଜ କର୍ତ୍ତୃପକ୍ଷ ବୋଲି ଯେଉଁମାନଙ୍କୁ ବୁଝାଏ ସେମାନେ ମଧ୍ୟ ସେହିଭଳି କହୁଥାଆନ୍ତି ଓ କାର୍ଯ୍ୟରେ ସେହିଭଳି ଆଚରଣ ଦେଖାଉ ଥାଆନ୍ତି ।

ଯେଉଁଟିକୁ କଂଗ୍ରେସ ନେତାମାନେ ଜଟିଳ ସମସ୍ୟା ବୋଲି ଭାବୁଥାଆନ୍ତି ତାହାର ସମାଧାନ କପରି ହେବ ସେଇଥାଏ ସେମାନଙ୍କର ଚିନ୍ତା । ପ୍ରତି ସନ୍ଧ୍ୟାରେ ଆଠ ଦଶଜଣ ନେତା 'ସମାଜ' ଅଫିସକୁ ଆସନ୍ତି । ଯୁଦ୍ଧର ଗତି କେଉଁ ଆଡ଼କୁ ଯାଉଛି, କଂଗ୍ରେସ ସହିତ କିଭଳି ସମ୍ପର୍କ ରଖିବାକୁ ସରକାର ଇଚ୍ଛା କରୁଛନ୍ତି, ସରକାରଙ୍କ ଯୁଦ୍ଧ ଉଦ୍ୟମକୁ ବାଧାଦେବା ପାଇଁ ଗାନ୍ଧିଜୀ କଅଣ ବିଚାରୁଛନ୍ତି ସେ ବିଷୟରେ ଆଲୋଚନା ହୁଏ । 'ସମାଜ'କାଗଜରେ ଅଧିକ ଲେଖା ପ୍ରକାଶ ପାଉ ବୋଲି ସ୍ଥିରହେଲା, କିନ୍ତୁ ସମ୍ପାଦକ ମିଶ୍ର ଓ ସହକାରୀ ସମ୍ପାଦକ ରଥ—ଏହି ଦୁଇଜଣ ଥାଆନ୍ତି ସମ୍ପାଦକୀୟ ବିଭାଗରେ । ହିସାବ ରଖୁଥିବା ଓ ପରିଚାଳନାରେ ରଥଙ୍କୁ ଆଂଶିକ ସାହାଯ୍ୟ କରୁଥିବା ଫକୀର ଚରଣ ଦାସ ରିପୋର୍ଟର କାମ ମଧ୍ୟ ଚଳାନ୍ତି । ସୁବିଧାସମିତ ହେଲେ ସେ ଯାଆନ୍ତି ବିବରଣୀ ସଂଗ୍ରହ କରିବା ପାଇଁ । ଦିନେ ସ୍ଥିରହେଲା ଯେ ମୁଁ ସବୁ ସମୟ ଦେଇ 'ସମାଜ' ସମ୍ପାଦନା କାମ କରିବି ମିଶ୍ର ଓ ରଥଙ୍କ ଅଧୀନରେ ଓ ନିର୍ଦ୍ଦେଶରେ । ଏଭଳି ସ୍ଥିର ହେବାର କାରଣ ହେଲା ଯୁଦ୍ଧ ଆରମ୍ଭ ଦିନୁ ମୁଁ ଦୈନିକ ସମାଜରେ ଲେଖାଲେଖି ଆରମ୍ଭ କଲଣି । ମୋତେ ହରିଜନ ସେବକ ସଙ୍ଘର କର୍ମୀ ପଦରୁ ଇସ୍ତଫା ଦେବାକୁ ହେବ । ଠକ୍କର ବାପାଙ୍କୁ ରାଜି

କରାଇବାର ଦାୟିତ୍ୱ ନେଲେ ପଣ୍ଡିତ ଲିଙ୍ଗରାଜ ମିଶ୍ର । ମାସକୁ ପୂରା ତିରିଶ ଟଙ୍କା ପାରିଶ୍ରମିକ ପାଇବ ବୋଲି ସ୍ଥିର ହେଲା ।

ସାମ୍ବାଦିକତା ଜୀବନ ଆରମ୍ଭ । ମନ ପ୍ରାଣଦେଇ କାମ କଲି । ସେହି ସମୟର 'ସମାଜ' ଆଜି ଦେଖିଲେ ମଧ୍ୟ ସମସ୍ତେ ସ୍ୱୀକାର କରିବେ ଲୋକଙ୍କୁ ସବୁକଥା ଜଣାଇବା ପାଇଁ କି ଧରଣର ଉଦ୍ୟମ ହୋଇଥିଲା । ଗୋଟିଏ ଓଡ଼ିଆ ସମ୍ବାଦ ପତ୍ର ଚଳାଇବାକୁ ହେଲେ ଶୀଘ୍ର ଶୀଘ୍ର ନିର୍ଭୁଲ ଅନୁବାଦ କରିବାକୁହିଁ ପଡ଼ିବ । ଏ: ପି: ଯେତିକି ପରିମାଣରେ ଟେଲିଗ୍ରାଫ ସମ୍ବାଦ ଦିଏ ସେତିକି ସମାଜର ଅଳ୍ପ କିଛି ସ୍ଥାନ ପୂରଣ କରେ । ବାକିତକ ପୂରଣ କରାଯାଏ ଯେଉଁସବୁ ଇଂରାଜୀ ଦୈନିକ କାଗଜ ଆସେ ସେହି ସବୁଥିରୁ ଅନୁବାଦ କରି । ଗାନ୍ଧୀ ଏବଂ ଅନ୍ୟକଂଗ୍ରେସ ନେତାମାନଙ୍କ ଭାଷଣର ସଠିକ ଅନୁବାଦ ନହେଲେ ସରକାର ଆପତ୍ତି କରିବେ ଓ କହିବେ ଯେ ଜାଣିଶୁଣି ସେମାନଙ୍କ ଭାଷଣରୁ ଯୁଦ୍ଧ ବିରୋଧୀ କଥା ଗୁଡ଼ିକ ଉପରେ ଗୁରୁତ୍ୱ ଦିଆଯାଉଛି । ଭାରତର ଜନସାଧାରଣଙ୍କ ସହାନୁଭୂତି ଜର୍ମାନୀ ପକ୍ଷରେ । ଆମ ଶତ୍ରୁର ଶତ୍ରୁ ସେ ଦେଶ ହୋଇଥିବାରୁ ଆମର ବନ୍ଧୁ ଭଳି ଜଣା ପଡ଼ୁଥାଏ । ବହୁ ସଂଖ୍ୟକ ରେଡ଼ିଓ ନଥାଏ ସେ କାଳରେ । ଯେଉଁ କେତୋଟି ରେଡ଼ିଓ ସେଟ୍ ଥାଏ ସେଥିରୁ ଯେମିତି କେହି ବର୍ଲିନ ଷ୍ଟେସନ ସମ୍ବାଦ ଶୁଣି ପାରିବେ ନାହିଁ ସେଥି ପାଇଁ କଟକଣା ଜାରି । 'ସମାଜ' ଅଫିସରେ ରେଡ଼ିଓ ସେଟ୍ ନଥାଏ । ଯେଉଁ ଅଳ୍ପ କେତେ ଜଣ ଉଚ୍ଚପଦସ୍ଥ ଓଡ଼ିଆ ଅଫିସରଙ୍କ ଘରେ ରେଡ଼ିଓ ସେଟ୍ ଥାଏ ସେମାନଙ୍କ ଭିତରୁ ଦୁଇ ଜଣ ମୋତେ ଭଲ ପାଆନ୍ତି । ସେମାନଙ୍କ ଘରକୁ ଯାଇ କବାଟ କିଳି ବର୍ଲିନ କଅଣ କହୁଛି ଶୁଣେ । ତାକୁ ତ ଆମେ ସମାଜରେ ଲେଖି ପାରିବୁ ନାହିଁ । କିନ୍ତୁ ଏଭଳି କୌଶଳର ସହିତ ପ୍ରକାଶ କରାଯିବ ଯେପରିକି ଆଇନର ପରିସର ଭିତରେ ହିଁ ରହିବୁ । ମଝିରେ ମଝିରେ ଲେଖିଦେଉ "ଜର୍ମାନୀ ଏହି ଯେଉଁ ଦାବୀ କରୁଛି ତାହା ଠିକ୍ ନୁହେଁ ବୋଲି ସରକାରୀ ସୂତ୍ର ଦୃଢ଼ ଭାବରେ କହୁଛନ୍ତି" । ଏହି ଖବର କେଉଁଠୁ ଆମେ ପାଇଲୁ ବୋଲି ଓଡ଼ିଶା ସରକାରଙ୍କ ଚିଫ୍ ସେକ୍ରେଟାରୀ ମଝିରେ ମଝିରେ ପଚାରି ଦିଅନ୍ତି । ତାହାଦ୍ୱାରା ସୂଚାଇ ଦିଅନ୍ତି ଯେ ଆମେ ବର୍ଲିନ ରେଡ଼ିଓରୁ ଶୁଣି କୌଶଳର ସହିତ ଜନସାଧାରଣଙ୍କୁ ଜଣାଇ ଦେଉଛୁ । ସରକାରୀ କଳ ଜନମତକୁ 'କଟକଣା' କରିବା ପାଇଁ ପ୍ରତି ପଦରେ କିଭଳି ସାବଧାନତା ଅବଲମ୍ବନ କରୁଥାଏ ତାହାର ଗୋଟିଏ

ଛୋଟିଆ ନମୁନା ଦିଆଯାଇ ପାରେ । ଓଡ଼ିଶାରେ କଂଗ୍ରେସ ମନ୍ତ୍ରୀମଣ୍ଡଳ ଥିଲାବେଳେ ଜଣେ ସିଦ୍ଧହସ୍ତ ଲେଖକ ଓ ବକ୍ତାଙ୍କୁ ସରକାରୀ କଳରେ ଭର୍ତ୍ତିକରି ଦିଆଯାଇଥାଏ ପ୍ରଚାର ବିଭାଗରେ । ମନ୍ତ୍ରୀମଣ୍ଡଳରୁ ଇସ୍ତଫା ଦେଲାପରେ ମଧ୍ୟ ସେ ସେହି ପୋଷ୍ଟରେ ଥାଆନ୍ତି । ତାଙ୍କ ଉପରେ ଜଣେ ଅତିମାତ୍ରାରେ ରାଜଭକ୍ତ ଅଫିସର । ଗୋଟିଏ ନିର୍ଦ୍ଦେଶ ଉପରୁ ଆସିଲା ଓଡ଼ିଶା ସରକାରଙ୍କୁ । ବର୍ଲିନ ରେଡ଼ିଓରୁ ଯାହାସବୁ ପ୍ରଚାର କରାଯାଉଛି ସେ ସବୁକୁ ଛପିଦିଆଯାଉ ଓ ସେ ଗୁଡ଼ିକୁ ଖଣ୍ଡନ କରି ପ୍ରକୃତ ସ୍ଥିତି କଅଣ ତାହା ଜନସାଧାରଣଙ୍କୁ ଜଣାଇ ଦିଆଯାଉ । ତୁରନ୍ତ ଏହା କରାଯାଉ ବୋଲି ଚିଫ୍ ସେକ୍ରେଟାରୀ ନିର୍ଦ୍ଦେଶ ଦେଲେ । ଏଭଳି ନ କରାଯାଉ ଓ ଯିଏ ପାରୁଛି ବର୍ଲିନ ରେଡ଼ିଓ ଶୁଣୁ—ଏହି ହେଲା ଅଫିସର ମିଶ୍ରଙ୍କ ଇଚ୍ଛା । ସେ ନୋଟ୍ ଦେଲେ—ଖୁବ୍ ଅଳ୍ପ ଲୋକଙ୍କ ପାଖରେ ରେଡ଼ିଓ ଅଛି । ସେମାନେ ବର୍ଲିନ ଷ୍ଟେସନ ଲଗାଉଛନ୍ତି କି ନାହିଁ ସନ୍ଦେହ । ଅନ୍ୟମାନେ ଜାଣିପାରୁ ନାହାନ୍ତି ସେ ଷ୍ଟେଶନରୁ କଅଣ ଶୁଣା ଯାଉଛି । ସରକାରଙ୍କ ତରଫରୁ ସେ ସବୁ ଜଣାଇ ଦିଆଗଲେ ଲୋକେ ତାକୁହିଁ ବିଶ୍ୱାସ କରିବେ—ଖଣ୍ଡନ କରି ଯାହା ଲେଖା ହେବ ତାକୁ ବିଶ୍ୱାସ କରିବେ ନାହିଁ । ତେଣୁ ସେଭଳି କରିବାଟା ବୁଦ୍ଧିମାନର କାମ ହେବ ନାହିଁ । ଲାଟସାହେବ ଏହିକଥାରେ ରାଜିହେଲେ । ଗୋଟିଏ ପକ୍ଷରେ ସରକାରୀ କଳର ତୀକ୍ଷ୍ଣ ଦୃଷ୍ଟି – ଅନ୍ୟ ପକ୍ଷରେ ଲୋକଙ୍କ ଭିତରେ ଯୁଦ୍ଧ ବିରୋଧରେ ମନୋଭାବ ସୃଷ୍ଟି କରିବାର ଆମ ଯୋଜନା—ଏହି ଦୁଇଟି ଭିତରେ ଛକାପଞ୍ଝା ଖେଳ ଚାଲିଥାଏ ।

ଏତିକି ବେଳେ ଗୋଟିଏ ସୁଯୋଗ ମିଳିଲା । । ଯୁଦ୍ଧର ଗତି କେଉଁ ଆଡ଼କୁ ଯାଉଛି ତାହା ଜାଣିବାକୁ ହେଲେ ଯଥେଷ୍ଟ ଭୂଗୋଳ ଜ୍ଞାନର ଆବଶ୍ୟକତା ରହିଛି । କେଉଁ ପକ୍ଷର କେଉଁ ପଦକ୍ଷେପ ଫଳରେ କି ପରିଣତି ହୋଇପାରେ ତାହା ଜାଣିବାକୁ ହେଲେ ସମଗ୍ର ଇଉରୋପ, ଆଫ୍ରିକା ଏବଂ ଏସିଆର ଭୂଗୋଳ ବିଷୟରେ ସ୍ପଷ୍ଟ ଧାରଣା ହେଲା ବଡ଼କଥା । ଏହା ସାଙ୍ଗକୁ କି କି ଐତିହାସିକ କାରଣରୁ ଯୁଦ୍ଧ ଲାଗିଗଲା ସେ ବିଷୟରେ ନୂତନ ଦୃଷ୍ଟି କୋଣରୁ ବିଚାରିବାକୁ ପଡ଼ିବ । ସୋଭିଏତ ରୁଷ ଯଦି ହିଟଲରଙ୍କ ସହିତ ଶେଷ ମୁହୂର୍ତ୍ତରେ ଗୋଟାଏ ସନ୍ଧି କରିଦେଇ ନ ଥାନ୍ତା ହିଟଲରଙ୍କର ଯୁଦ୍ଧ ପ୍ରସ୍ତୁତି କ୍ଷିପ୍ର ହୋଇ ଯାଇ ନଥାନ୍ତା । ରୁଷ କାହିଁକି ଏଭଳି କଲା ଓ ପୋଲାଣ୍ଡକୁ ରୁଷ ଏବଂ ଜର୍ମାନୀ ଭିତରେ ବାଣ୍ଟିନେବା ପାଇଁ ମସୁଧା ହେଲା

ଉଭୟଙ୍କ ଭିତରେ, ତାହାର ଗୁରୁତ୍ୱ ବୁଝିବା ପାଇଁ ହେଲେ ସମଗ୍ର ଇଉରୋପର ଶହେ ବର୍ଷର ଇତିହାସ ଅଧ୍ୟୟନ କରିବାକୁ ପଡ଼ିବ। ଲାଇବ୍ରେରୀରୁ ବହୁ ସଂଖ୍ୟକ ବହି ଆଣି ପଢିବାକୁ ପଡ଼େ। ଲୋକଙ୍କୁ ସବୁ-କଥା ବୁଝାଇବା ହେଲା କାମ। ସେଥିପାଇଁ ଏଭଳି ପଢ଼ିବାର ଆବଶ୍ୟକତା। ରୁଷର ଯେତେବେଳେ ଜର୍ମାନୀ ସହିତ ବିବାଦ ହୋଇ ଗଲା—ବ୍ରିଟେନ ଫ୍ରାନସ ଆମେରିକା ଗୋଟିଏ ପକ୍ଷରେ ରହିଗଲେ—ଜାପାନ ଯୋଗ ଦେଇ ଦେଲା ଜର୍ମାନୀ ଇଟାଲୀ ସହିତ ଏବଂ ଅକ୍ଷଶକ୍ତି ବା ଆକ୍‌ସିସ୍ ପାଓ୍ୱାର ପ୍ରଶ୍ନ ଆସିଗଲା ସେତେବେଳେ ଭୂଗୋଳ ତଥା ଇତିହାସକୁ ସତେ ଯେପରିକି ନୂତନ ଦୃଷ୍ଟି କୋଣରୁ ପଢ଼ିବାକୁ ପଡ଼ିଲା। ଯୁଦ୍ଧର ଗତି ଯେଉଁଆଡ଼କୁ ଯାଉଛି, ସେଥିରେ ଯଦି ଭାରତ ସଂଗ୍ରାମ ଚଳାଇ ସ୍ୱାଧୀନତା ହାସଲ ନକରେ ତେବେ ତାହାର କି ଦୁର୍ଦ୍ଦଶା ହେବ ସେ ବିଷୟରେ ଲୋକଙ୍କୁ ସଚେତନ କରାଇବାର ଆବଶ୍ୟକତା ଅତିମାତ୍ରାରେ ଦେଖାଦେଲା। ଏହିସବୁ କାରଣରୁ ବହୁତ କିଛି ପଢ଼ିବାକୁ ପଡ଼ିଲା। ସେ ଭଳି ପଢ଼ିବା ଫଳରେ ମୋର ଜ୍ଞାନର ପରିବଳୟ କ୍ରମେ ବିସ୍ତୃତ ହେବାକୁ ଲାଗିଲା। ସେହି ଅଢ଼େଇ ବର୍ଷରେ ଯାହା ପଢ଼ିଥିଲି ତାହା ଏବେ ମଧ୍ୟ କାମ ଦେଉଛି। ଏବେ ପ୍ରତିଦିନ ଦଶ ପନ୍ଦରଟା ଦୈନିକ ଖବର କାଗଜ ସାଙ୍ଗକୁ ବହୁ ପତ୍ର ପତ୍ରିକା ପଢ଼ିବା ବେଳେ, ପୃଥିବୀର ପରିସ୍ଥିତି ବିଷୟରେ ଯେ ଭଲ ଭାବରେ ଜାଣି ହୋଇ ଯାଉଛି ତାହାର ଏହି ହେଲା କାରଣ। ୧୯୮୬ ଶେଷ ହେଲାବେଳକୁ ଗୃନ୍ଥଣ ଖଣ୍ଡ ଜ୍ଞାନମଣ୍ଡଳ ପ୍ରକାଶ ପାଇଲାଣି। ସେଥିରେ ଥିବା ଭୂଗୋଳ ଓ ଇତିହାସ ସଂପର୍କୀୟ ଲେଖାଗୁଡ଼ିକ ପଢ଼ି ପାଠକମାନେ ଉପକୃତ ହେଉଛନ୍ତି ବୋଲି କହିଲା ବେଳେ ବିଗୁରୁଛି ସେହି ଅଢ଼େଇ ବର୍ଷର ଶ୍ରମ ସାର୍ଥକ ହୋଇଛି। ବର୍ଷକ ତଳେ ଜଣେ ଖୁବ୍ ଉଚ୍ଚ ଶିକ୍ଷିତ ଭଦ୍ରବ୍ୟକ୍ତି ଆସି କହିଲେ—'ଇସ୍ରାଏଲ ସମସ୍ୟାଟିକୁ ମୁଁ ଆଦୌ ଭଲ ଭାବରେ ବୁଝିପାରୁ ନାହିଁ।' ତାଙ୍କୁ ଖଣ୍ଡିଏ ଜ୍ଞାନମଣ୍ଡଳ ବଢାଇ ଦେଇ ସେଥିରେ ଥିବା ଇସ୍ରାଏଲ ପ୍ରବନ୍ଧଟି ପଢ଼ିବାକୁ କହିଲି। ଟେଡ୍ପୂନ୍‌ବାଙ୍କ ବିଶ୍ଳେଷଣ ପଢ଼ିଲା ପରେ ସେ କହିଲେ—"ଏବେ ମୋର ଗୋଟାଏ ସ୍ପଷ୍ଟ ଧାରଣା ହୋଇ-ଗଲା ଏହି ସମସ୍ୟା ବିଷୟରେ। ପାଶ୍ଚାତ୍ୟ ଶକ୍ତି ମାନେ ନୂତନ ଇସ୍ରାଏଲ ରାଷ୍ଟ୍ର ଗଠନ ସଂକ୍ରାନ୍ତରେ ଯେଉଁ ଭୁଲ କରି ଦେଇଛନ୍ତି ତାକୁ ସୁଧାରିବା ଆଉ ସମ୍ଭବ ହେଉନାହିଁ କହିଲେ ଚଳେ। ଉଦାର ମନୋଭାବ ନେଇ ଏହି

ସମସ୍ୟାର ସମାଧାନ ନ କରାଗଲେ ସେଠାରେ ତ ଗୋଳମାଳ ଲାଗି ରହିଥିବ । ସମସ୍ୟାଟିକୁ ବୁଝାଇବା ପାଇଁ ଜ୍ଞାନମଣ୍ଡଳ ବନ୍ଦୋବସ୍ତ କରୁଛୁ କରୁଛୁ ।" ମୋର ଏବେ ମଧ୍ୟ ମତ ଓ ସେ ମତ କ୍ରମେ ଦୃଢ଼ରୁ ଦୃଢ଼ତର ହେଉଛି—ଯେତିକି ଭୂଗୋଳ ଓ ଇତିହାସଜ୍ଞାନ ପୃଥିବୀର ସମସ୍ୟା ଗୁଡ଼ିକ ବୁଝିବା ପାଇଁ ନିତାନ୍ତ ଲୋଡ଼ା ସେତିକି ନଥିଲେ ଖବର କାଗଜ ପାଠକ ଖବର ଗୁଡ଼ିକର ଠିକ୍ ଠିକ୍ ମୂଲ୍ୟାୟନ କରି ପାରିବେ ନାହିଁ । ରୁଷ ସୈନ୍ୟ ଏତେ ସଂଖ୍ୟାରେ ଆସି ଆଫଗାନିସ୍ତାନରେ କାହିଁକି ଆସ୍ଥାନ ଜମାଇଲେ ତାହାର କାରଣ ବୁଝିବାକୁ ହେଲେ ପୃଥିବୀର ଏହି ଅଂଶର ଭୂଗୋଳ ବିଷୟରେ ସଠିକ ଜ୍ଞାନ ରହିବା ନିତାନ୍ତ ଆବଶ୍ୟକ । ଭାରତ ମହାସାଗର ସହିତ ପ୍ରତ୍ୟକ୍ଷ ନୌ ସଂପର୍କ ସ୍ଥାପନ କରିବା ପାଇଁ ରୁଷ ବ୍ୟାକୁଳ ନାନା କାରଣରୁ । ରୁଷ ଓ ଭାରତ ମହାସାଗର ଭିତରେ ଆଫଗାନିସ୍ତାନ ଓ ପାକିସ୍ତାନ ରହିଯାଉଛନ୍ତି । ଆଫଗାନିସ୍ତାନରେ ଦୃଢ଼ ଆସ୍ଥାନ ଜମାଇଲା ପରେ ଯଦି ପାକିସ୍ଥାନରେ ରୁଷ ସୈନ୍ୟ ପ୍ରବେଶ କରିଯିବେ ଆରବସାଗର କୂଳର ବନ୍ଦର ଗୁଡ଼ିକ ରୁଷ ହାତରେ ପଡ଼ିଯିବ ଓ ପୃଥିବୀର ଏହି ଅଞ୍ଚଳର ସାମରିକ ଭାରସାମ୍ୟ ଏକାବେଳକେ ବଦଳି ବା ଦୋହଲିଯିବ ସେମିତି ଦକ୍ଷିଣ ଆମେରିକାରେ ନିକାରାଗୁଆ ସଂହାନ୍ତରେ ଯୁକ୍ତରାଷ୍ଟ୍ର ଆମେରିକା ଯେଉଁ ଭଳି ମତିଗତି ଦେଖାଉଛି ତାକୁ ବୁଝିହେବ ନାହିଁ, ସେ ଅଞ୍ଚଳର ଭୌଗୋଳିକ ସ୍ଥିତି ତଥା ସମଗ୍ର ଦୁଇ ଆମେରିକା ମହାଦେଶର ଇତିହାସ ନପଢ଼ିଲେ । ଭାରତ କାହିଁକି ନିକାରାଗୁଆ ବିଷୟରେ ଏତେ ଆଗ୍ରହୀ ତାହା ମଧ୍ୟ ଜାଣି ହୋଇଯିବ । ଦୁଇ ଦୁଇଟା ବିଶ୍ୱଯୁଦ୍ଧ ଇଉରୋପ ଭୂମିରେ ହୋଇ ଗଲାଣି । ତୃତୀୟ ବିଶ୍ୱଯୁଦ୍ଧ ଯଦି ହେବ ତାହା ଇଉରୋପ ଭୂମିରେ ନ ହୋଇ ପୃଥିବୀର ଅନ୍ୟ କେଉଁ ଅଞ୍ଚଳରୁ ଆରମ୍ଭ ହେଉ ବୋଲି ଆମେରିକା ବ୍ରିଟେନ ଓ ସୋଭିଏତ ଇଉନିୟନ ଉଭୟ ଗୋଷ୍ଠୀ ଇଚ୍ଛା କରୁଛନ୍ତି । ଏହି ବିଷୟଟିକୁ ମନେ ରଖିଲେ ଇରାକ ଇରାନଠାରୁ ଆରମ୍ଭ କରି ଭିଏତନାମ କାମ୍ବୋଡ଼ିଆ ଭିତରେ ଯାହା ସବୁ ଘଟି ଯାଉଛି ସେ ଗୁଡ଼ିକର କାରଣ ବିଷୟରେ ଯଥା ସମ୍ଭବ ସଠିକ ଅନୁମାନ କରିହେବ । ଖବର କାଗଜ ପତ୍ର ପତ୍ରିକାଗୁଡ଼ିକରେ ଯେତେ ସଂଖ୍ୟକ ପୃଷ୍ଠଭୂମି ଲେଖା ବା ବ୍ୟାକ୍‌ଗ୍ରାଉଣ୍ଡ ମାଟିରିଆଲ୍‌ସ ପ୍ରକାଶ ପାଇଲେ ମଧ୍ୟ ସେ ଗୁଡ଼ିକର ସୁଯୋଗ ଖବର କାଗଜ ପାଠକ ମାନେ ଗ୍ରହଣ କରି ପାରିବେ ନାହିଁ, ଯଦି ଇତିହାସ

ଓ ଭୂଗୋଳ ବିଷୟରେ ପ୍ରାଥମିକ ଏବଂ ଅତି ଆବଶ୍ୟକୀୟ ଜ୍ଞାନ ନ ଥିବା । ଏହିଳି ଜ୍ଞାନ ମନ ବା ବୁଦ୍ଧିର ବିଳାସ ପାଇଁ ନୁହେଁ—ଆବଶ୍ୟକତା ମେଣ୍ଟାଇବା ପାଇଁ ଲୋଡ଼ା । ପାଠ୍ୟକ୍ରମରେ ଭୂଗୋଳକୁ ଗୌଣସ୍ଥାନ ଦିଆଗଲା କେତେବର୍ଷ ପର୍ଯ୍ୟନ୍ତ । ତାହାର କୁଫଳ ଭୋଗକଲେ ଶିକ୍ଷିତ ଲୋକେ । ମୁଁ ତୀବ୍ରଭାବରେ ଅନୁଭବ କରୁଛି ସବୁ ପ୍ରକାରର ସମ୍ଭାବ୍ୟ ପନ୍ଥା ବାହାର କରି ଛାତ୍ର ତଥା ଜନସାଧାରଣଙ୍କ ଭିତରେ ଭୂଗୋଳ ଜ୍ଞାନର ପ୍ରସାର ଅତି ଜରୁରୀ ।

## ଆବଶ୍ୟକତାରୁ ଲେଖକ

୧୯୪୦ରେ ଦ୍ୱିତୀୟ ବିଶ୍ୱଯୁଦ୍ଧର ଭୟାବହତା ବିଷୟରେ କେତେ କଅଣ ଶୁଣାଯାଉଥାଏ । ଯେଉଁସବୁ ଅସ୍ପଷ୍ଟ ବିଷୟରେ ବିଂଶ ଶତାବ୍ଦୀର ଚତୁର୍ଥ ଦଶନ୍ଧିର ଓଡ଼ିଶା ଲୋକେ କିଛି ହେଲେ ଜାଣିନଥିଲେ ସେହିସବୁର ଉଲ୍ଲେଖ ରହି ଯାଉଥାଏ ସମ୍ବାଦପତ୍ରରେ । ପାଠକମାନେ ବିସ୍ମିତ ହୋଇ ପଢ଼ୁଥାନ୍ତି ମିନା—ଅନେକ କଥା ଅନୁମାନ କରି ପାରୁନଥାନ୍ତି । ଶିକ୍ଷିତ ଲୋକେ ମଧ୍ୟ ଆମକୁ ପଚାରନ୍ତି ଏହିସବୁ ଅସ୍ପଷ୍ଟ ପ୍ରକୃତରେ କଅଣ । ସମ୍ପାଦକ ପଣ୍ଡିତ ଲିଙ୍ଗରାଜ ମିଶ୍ର ଦିନେ ମୋତେ ଡାକି କହିଲେ— "ବିନୋଦ, ଆମକୁ ଗୋଟିଏ କଥା କରିବାକୁ ହେବ । ଏହି ଯେଉଁ ଟ୍ୟାଙ୍କ, ବାଷ୍ପଯୁଦ୍ଧ, ଟର୍‌ପେଡ଼ୋ, ଡେଷ୍ଟ୍ରୟର, କ୍ରୁଇଜର, ମାଇନ୍, ଚୁମ୍ବକମାଇନ, ଆଗ୍ନେୟ ବୋମା, ବୋମବର୍ଷୀ ଉଡ଼ାଜାହାଜ, ଲଢ଼ୁଆ ଉଡ଼ାଜାହାଜ, ବ୍ୟାରେଜ୍ ବେଲୁନର ବ୍ୟବହାର ରଣ କ୍ଷେତ୍ରରେ ହେଉଛି ବୋଲି ଆମେ ଲେଖିଦେଉଛୁ ସେଗୁଡ଼ିକ କଅଣ ଓ କେମିତି କାମ କରୁଛନ୍ତି ସେ ବିଷୟରେ ପାଠକମାନଙ୍କୁ କିଛି କିଛି ଜଣାଇବା ନିତାନ୍ତ ଦରକାର । ଦେଖୁଛ ତ "ପଞ୍ଚମବାହିନୀ" ଶବ୍ଦଟି ଆମେ ବ୍ୟବହାର କରୁଛୁ—ଫିଫ୍‌ଥ୍‌କଲମର (Fifth column) ଅନୁବାଦ କରି । ସେଥିରୁ ମୁଁ ମଧ୍ୟ ପୂରା ଅର୍ଥ ଧରି ପାରୁନାହିଁ । ହିଟଲରଙ୍କ ହାତରେ ପଞ୍ଚମ ବାହିନୀ ଗୋଟାଏ "ଶକ୍ତିଶାଳୀ ଅସ୍ତ୍ର" ବୋଲି ଇଂରାଜୀ ଖବର କାଗଜରୁ ଆମେ ଅନୁବାଦ କରି ଦେଉଛୁ । ତାହାର ପ୍ରକୃତ ଅର୍ଥ କଅଣ ।" ତାଙ୍କ ସହିତ ମୁଁ ଏକମତ ହେଲେ ମଧ୍ୟ କେଉଁ ମୂଳରୁ କେଉଁ ବହିରୁ ଏହିସବୁ ତଥ୍ୟ ସଂଗ୍ରହ କରାଯାଇ ପାରିବ ବୋଲି ପଚାରିଲି । ସେ ଟିକିଏ ହସି ଉତ୍ତର ଦେଲେ—ତୁମ ପକ୍ଷରେ

କେଉଁ କାମଟା ଅସମ୍ଭବ ? ତୁମକୁ ପରା ଆମେ ସବୁ ନାଁ ଦେଇଛୁ 'ନେଉଲକାଗାଇ'। ତୁମେ ସବୁଠାକୁ ଗଳିଯାଇ ପାରିବ। ଆମ ଅଫିସରେ ତ ସେମିତିକା କିଛି ବହି ନାହିଁ—ରେଭେନ୍‌ସା କଲେଜ ଲାଇବ୍ରେରୀରେ ନିଶ୍ଚୟ ଥିବ। ସେହି ଲାଇବ୍ରେରୀର ସମସ୍ତଙ୍କୁ ତ ତୁମେ ଜାଣ। ବିଜ୍ଞାନ ଅଧ୍ୟାପକମାନଙ୍କୁ ବି ଜାଣିଛ। ସେଠାକୁ ଯାଇ ତଥ୍ୟ ସଂଗ୍ରହରେ ମନଦିଅ।' ତାହା ପରଦିନ ଗଲି। ବିସ୍ମିତ ହୋଇ ଦେଖିଲି ଯେ ସବୁମନ୍ତେ ସାହାଯ୍ୟ ମିଳିଯାଉଛି। ସେଠାରେ ଦି' ଦିନ ପଢ଼ିଲି ପରେ ପ୍ରଥମ ଲେଖାଟି ବାହାରି ପଡ଼ିଲା ଟ୍ୟାଙ୍କ ଉପରେ। ସେଇଟି ଭୋଟିଏ 'ଲୌହ ରାକ୍ଷସ' ବୋଲି ବର୍ଣ୍ଣନା କରିଥାଏ। ସେଥିରେ ଥିଲା—"ବହୁ କାଳରୁ ଚେଷ୍ଟା ଚାଲିଥିଲା ଯେ ଏପରି ଗୋଟିଏ କିଛି ଉପାୟ ବାହାରନ୍ତା ଯାହା ଫଳରେ ଶତ୍ରୁ ଉପରେ ଆକ୍ରମଣ ସମ୍ଭବ ହୁଅନ୍ତା, ଅଥଚ ଆକ୍ରମଣକାରୀର କିଛି କ୍ଷତି ହୁଅନ୍ତା ନାହିଁ। ଏ କଳ୍ପନା କଳ୍ପନାରେ ହିଁ ରହିଥିଲା, ବାସ୍ତବତାରେ ପରିଣତ ହେବା ସମ୍ଭବ ହୋଇ ନଥିଲା।

"୧୯୪୦ ମଇମାସ ଚଉଦ ତାରିଖ ଦିନ ଜର୍ମାନ ସୈନ୍ୟମାନେ ଫ୍ରାନସର ଉତ୍ତର ସୀମାରେ ସେହିଠାରେ ଅପେକ୍ଷାକୃତ ଅଳ୍ପ ସୁଦୃଢ଼ ଫ୍ରାନ୍‌ସର ଅଭେଦ୍ୟ ମାଜିନୋଦୁର୍ଗ ଭେଦ କରି ଯେତେବେଳେ ଫ୍ରାନ୍‌ସ ଭିତରକୁ ମାଡ଼ି ଆସିଲେ ଓ ପ୍ରଚଣ୍ଡ ଆକ୍ରମଣ କରି ଅତି ଅଳ୍ପଦିନ ଭିତରେ ସମୁଦ୍ର ଉପକୂଳକୁ ମାଡ଼ିଗଲେ, ସେତେବେଳେ ସମସ୍ତେ ବିସ୍ମିତ ହୋଇଗଲେ। ଏକଥା କିପରି ହେଲା ସେହିକଥା ସମସ୍ତେ ଭାବିଲେ। ସେତିକିବେଳେ ଫ୍ରାନ୍‌ସର ପ୍ରଧାନମନ୍ତ୍ରୀ ମସିଅର ରେନୋ ବୁଝାଇ କହିଲେ—ଜର୍ମାନ ସୈନ୍ୟମାନେ ମାରାତ୍ମକ ଟ୍ୟାଙ୍କ୍ ଅସ୍ତ୍ର ବ୍ୟବହାର କରି ଏ ଅସାଧ୍ୟ ସାଧନ କରିଛନ୍ତି। ସେହି ସମୟରୁ ସମସ୍ତେ ଟ୍ୟାଙ୍କ୍ ଅସ୍ତ୍ର କେତେ ମାରାତ୍ମକ ଜାଣିବାକୁ କୌତୁହଳୀ ହେଲେ।" ଏହାପରେ ସେହି ଦୀର୍ଘ ଲେଖାରେ ଥିଲା ଟ୍ୟାଙ୍କ୍‌ର ଇତିହାସ, ସେହି ଅସ୍ତ୍ର ସାହାଯ୍ୟରେ ଲଢ଼େଇ କିପରି ହୁଏ ଇତ୍ୟାଦିର ବିବରଣୀ। ପଣ୍ଡିତ ମିଶ୍ର ମୋ ପିଠିରେ ହାତମାରି ଦେଇ ସବୁ ବିଷୟରେ ବିବରଣୀ ଦିଆଯାଉ ବୋଲି କହିଲେ। ଗୋଟିକ ପରେ ଗୋଟିଏ କୋଡ଼ିଏଟି ବିଷୟ ଉପରେ ଲେଖା ବାହାରି ପଡ଼ିଲା। ଏଗୁଡ଼ିକ ଖୁବ ଭଲ ହେଉଛି ଓ ଲୋକେ ବହୁ କଥା ଜାଣିପାଉଛନ୍ତି ବୋଲି ଶୁଣି ଦିନେ ପଣ୍ଡିତଜୀ କହିଲେ—ବିନୋଦ,

ଗୋଟିଏ କାମ କର । ଆଉ କେତୋଟି ସଂଗ୍ରହ କରି ବହିଟିଏ ଲେଖିଦିଅ । ବହୁସଂଖ୍ୟକ ବ୍ଲକ ସରକାର ଯୋଗାଇ ଦେଉଛନ୍ତି । ସେଗୁଡ଼ିକ ବ୍ୟବହାର କରିଦେଲେ ବହିଟି ଭଲ ହୋଇଯିବ । "ମୋର ସାହସ ହେଉନାହିଁ ବହିଟିଏ ଲେଖିବାକୁ"—ଏତିକ ଯେମିତି କହିଛି ସେ ଠୋ ଠୋ ହୋଇ ହସି ଉଠି କହିଲେ—'ବହିତ ଲେଖା ସରିଲାଣି । ଆଉ ପାଞ୍ଚ ସାତଟା ଯୋଡ଼ିଦିଅ । ଆସ ମୁଁ ବର୍ତ୍ତମାନ ବହିଟିର ନାମ ଠିକ୍ କରି ଦେଉଛି । ବହିର ନାମ ରହିବ "ସପ୍ରାସ୍ତ" ।" ଆଉ ଟିକିଏ ସରଳିଆ ନାମ ହେଲେ ଭଲ ହୁଅନ୍ତା ବୋଲି କହିଲାରୁ ସେ କହିଉଠିଲେ ସେହି ନାଁରେ ବାହାରୁ,—ଆମ ପୁରିରେ ତ ଏହି ନାମଟି ଅଛି । କହେ ଗୃହପୃଷ୍ଠାର ବହିଟିରେ ଦିଆଗଲା ୫୦ଟି ଅଧାପୃଷ୍ଠା ପୂର୍ଣ୍ଣପୃଷ୍ଠା ଚିତ୍ର । ଦାମ ରଖାଗଲା ପାଞ୍ଚଅଣା—ଆଜିର ପ୍ରାୟ ବତିଶ ପଇସା ।

ବହିଟି ଏତେଶୀଘ୍ର ଏଭଳି ଆଦୃତ ହୋଇଯିବ ବୋଲି ମୋର ଧାରଣା ବି ନଥିଲା । ଗୋଟାକୁ ଗୋଟା ପୁନଃମୁଦ୍ରଣ ବାହାରି ପଡ଼ିଲା । ୧୯୪୨ ଅଗଷ୍ଟରେ ଜେଲ ଗଲାପରେ ସେ ବହି କଥା ମୁଁ ଭୁଲିଯାଇଥିଲି । କାରଣ ସେତେବେଳକୁ ସେହିସବୁ ଅପ୍ରଶସ୍ତ ବିଷୟରେ ଖବର କାଗଜ ଗୁଡ଼ିକରେ ବହୁତ କିଛି ଲେଖା ହେଲାଣି, ବହିରେ ଆଉ କିଛି ନୂତନତ୍ୱ ନଥିବ ବୋଲି ଧରି ନେଇଥିଲି । କିନ୍ତୁ ୧୯୪୪ ଶେଷରେ ଜେଲରୁ ମୁକ୍ତ ହୋଇ ଆସି ଦେଖିଲି ଯେ ସେହି ବହିଟିର ଗୋଟିକ ପରେ ଗୋଟିଏ ପୁନଃ-ମୁଦ୍ରଣ ଚାଲିଛି । ଏହି ଦୁଇ ବର୍ଷ ଭିତରେ ଅସ୍ତ୍ର ଶସ୍ତ୍ର ସବୁର ଏଭଳି ପ୍ରଗତି ବା ଉନ୍ନତି ହୋଇଛି ଯେ 'ସପ୍ରାସ୍ତ'ରେ ଥିବା ବର୍ଣ୍ଣନା ପୁରୁଣା ହୋଇ ଗଲାଣି । ତଥାପି ତାହାର ଆଦର ଜେଲରୁ ଫେରିଲା ପରେ ମୋ ହାତରେ ପଇସା ନ ଥିଲା । ମୋ ସହଧର୍ମିଣୀ ମଧ୍ୟ ଅଳ୍ପ କେତେମାସ ପୂର୍ବରୁ ଜେଲରୁ ଖଲାସ ହୋଇଥିଲେ । 'ସପ୍ରାସ୍ତ'ର ମୂଲ୍ୟ ଥିଲା ପାଞ୍ଚଅଣା ମାତ୍ର ପରେ ତାକୁ ଛ'ଅଣା କରିଦିଆ ଯାଇଥାଏ । ପ୍ରକାଶକ ଥିଲେ ଗୋପବନ୍ଧୁ ସାହିତ୍ୟ ମନ୍ଦିର । ମୋ ରୟେଲ୍‌ଟି ବାବଦକୁ ଜମା ହୋଇଯାଇଥାଏ କେତେଗୁଡ଼ାଏ ଟଙ୍କା । ସେଇଥିରେ କେତେମାସ ଚଳିଗଲୁ ଆମେ ଦି'ଜଣ । ପୁଣି ସେହି ବହି କଥା ଭୁଲିଗଲି । ୧୯୮୦ ଦଶନ୍ଧି ଆରମ୍ଭରେ ଯେତେବେଳେ ଜଣେ ଲେଖକ ଭାବରେ ଓଡ଼ିଶାରେ ପ୍ରାୟ ପରିଚିତ ହୋଇଗଲି ମୋ ପ୍ରଥମ ବହି ବିଷୟରେ ଜାଣିବାକୁ କେହି କେହି ଇଚ୍ଛାକଲେ । ମୋ ପାଖରେ କିନ୍ତୁ ନଥିଲା

'ସମାଜ' ଅଫିସରେ ପାଇଲି ନାହିଁ । ଯାହା ହେଉ ମୋର ଜଣେ ଶୁଭଇଚ୍ଛୁକ ନୀଳକଣ୍ଠମଣ୍ଡଳର ସଭ୍ୟ ଫକୀର ଚରଣ ଦାସ କୌଣସି ମତେ ଖଣ୍ଡିଏ ପାଇଲେ । ସେଇ ଖଣ୍ଡିକ ସାଇତି ରଖିଛୁ । ତାହାର ଉପର ମଲାଟଟି କାଢ଼ି ନେଇ ମୋ ସାମନାରେ ଅଫିସ ଘରେ କାନ୍ଥରେ ମାରି ଦେଇଛୁ ।

୧୯୮୭ ଅକ୍ଟୋବର ୨୫ ତାରିଖ ଦିନ ଜ୍ଞାନମଣ୍ଡଳ ଅଫିସରେ ବସିଥିଲେ ଓଡ଼ିଶା ପୁଲିଶ ବିଭାଗର ଡ଼: କ: ଶ୍ରୀ ବିଜୟ କୁମାର ପାଣିଗ୍ରାହୀ । ସେ ସେହି ବହି ଖଣ୍ଡିକ ଦେଖିଲେ । ତାହାର ଶେଷ ପୃଷ୍ଠାଟି ପଢ଼ି ସେ ଟିକିଏ ହସିଲେ । କାରଣ ପଚରିବାରୁ ସେ କହିଲେ—'ଦ୍ୱିତୀୟ ବିଶ୍ୱଯୁଦ୍ଧ ଆରମ୍ଭରେ ଅସ୍ତ୍ରଶସ୍ତ୍ରର ମୂଲ୍ୟ କେତେ ଥିଲା ସେହି ହିସାବ ଦେଉଥିଲି ।' ଆଜିର ମାପକାଠିରେ ଏତେ ଅଳ୍ପଥିଲେ ମଧ୍ୟ ଯୁଦ୍ଧରେ କେତେ ଟଙ୍କା ଖର୍ଚ୍ଚ ହେଉଥିବ ଅନୁମାନ କରି ପାଠକ ମାନେ ବିସ୍ମିତ ହେଉଥିଲେ । ଯେଉଁମାନେ ଆଜିର ମୂଲ୍ୟ ଜାଣନ୍ତି ସେମାନେ ହୁଏତ ଟିକିଏ ବିସ୍ମିତ ହେବେ ବୋଲି ବିଶ୍ୱର 'ସପ୍ତାସ୍ତ' ବହିରେ ବର୍ତ୍ତମାନ ଯୁଦ୍ଧରେ ବ୍ୟବହୃତ ହେଉଥିବା କେତେକ ଅସ୍ତ୍ରଶସ୍ତ୍ରର ଆନୁମାନିକ ମୂଲ୍ୟ ଶିରୋନାମା ତଳେ ଯେଉଁ ହିସାବ ଲେଖାଯାଇଥିଲା ସେତକ ଉଦ୍ଧାର କରି ଦେଉଛୁ । ଗୋଟିଏ ଟଙ୍କା ଥିଲା ଷୋହଳ ଅଣା—

ବୁଲେଟ ବା ଗୁଳି ଗୋଟାକୁ ଟ°/(ଅଣାଏ)

ବାଲିବସ୍ତା ବୋମା ମାଡ଼ରୁ ଘରର ଛାତ ପ୍ରଭୃତି ରକ୍ଷା କରିବା ପାଇଁ

ପ୍ରତି ବସ୍ତା ଟ°୶ରୁ ଟ°୶୬

ପିସ୍ତଲ ୧ ଗୋଟାକୁ ଟ୫°

ସୈନ୍ୟମାନଙ୍କ ରାଇଫଲ ଗୋଟାକୁ ଟ୧°°

ମେଶିନଗନ ବା କଳ ବନ୍ଧୁକ ଟ୧୮°°

ବାରେଜ୍ ବେଲୁନ (ଯାହାଦ୍ୱାରା ଆକ୍ରମଣକାରୀ ଉଡ଼ାଜାହାଜକୁ ବାଧା ଦିଆଯାଏ) ପ୍ରତ୍ୟେକ ଟ୧°,°°°

ସାଧାରଣ ବିମାନ ବିଧ୍ୱଂସୀ କମାଣ ଟ୪୦,୦୦୦
ଲଢୁଆ ଉଡ଼ାଜାହାଜ ଗୋଟାକୁ ଟ୧,୪୦,୦୦୦
ବୋମାବର୍ଷୀ ଉଡ଼ାଜାହାଜ ଗୋଟାକୁ ଟ୨,୭୦,୦୦୦
ଡେଷ୍ଟ୍ରୟର (ଅତି ଦ୍ରୁତଗାମୀ ଯୁଦ୍ଧ
ଜାହାଜ) ପ୍ରତ୍ୟେକକୁ ଟ୬୦,୦୦୦୦୦ (ଷାଠିଏ ଲକ୍ଷ)
କ୍ରୁଇଜର (ବଡ଼ ଧରଣର
ଡେଷ୍ଟ୍ରୟର ଟ୨,୫୦,୦୦,୦୦୦
ଯୁଦ୍ଧଜାହାଜ ବା ବାଟ୍‌ସିଲ୍‌ପ୍ (ପ୍ରତ୍ୟେକ) ଟ୧୦,୫୦,୦୦,୦୦୦

ଏହି ହିସାବ ସରକାରୀ ସୂତ୍ରରୁ ପ୍ରକାଶ କରାଯାଇଥାଏ । ଯେଉଁ ସରକାରୀ ଅଫିସରମାନେ ଯୁଦ୍ଧ ଚାନ୍ଦା ଆଦାୟ କରୁଥାଆନ୍ତି ସେମାନଙ୍କୁ କୁହାଯାଏ ଏହିସବୁ ଅସ୍ତ୍ରଶସ୍ତ୍ର ଭିତରୁ ଗୋଟିଏ ବା ଏକାଧିକ ପାଇଁ ଯିଏ ଚାନ୍ଦା ସଂଗ୍ରହ କରିପାରିବେ ସରକାର ତାଙ୍କୁ ସାବାସ କରିବେ । ବହୁ ରାଜା ମହାରାଜା ଓ ଧନୀ ଲୋକେ 'ମୁଁ ଅମୁକ ଅସ୍ତ୍ର ପାଇଁ ଟଙ୍କା ଦେଇଛି' ବୋଲି କହି ସରକାରଙ୍କଠାରୁ ପ୍ରଶଂସାପତ୍ର ବା ଉପାଧି ପାଇଛନ୍ତି । 'ଚାନ୍ଦା' ଶବ୍ଦଟି ଏଠାରେ ବ୍ୟବହାର କରାଯାଉଥିବାରୁ ଟିକିଏ କୈଫିୟତ ଲୋଡ଼ା । ସରକାରୀ ଅଫିସରମାନେ ଲୋକଙ୍କଠାରୁ ଜବରଦସ୍ତ ଟଙ୍କା ଆଦାୟ କରନ୍ତି ଓ ବାହାରକୁ ଦେଖାଇବା ପାଇଁ ଏହାକୁ 'ଚାନ୍ଦା' ବୋଲି କହନ୍ତି । ଓଡ଼ିଶାରେ ପ୍ରତିବାଦ ହେଲା ଯେ ସରକାର ଜୋର ଜବରଦସ୍ତ ଚାନ୍ଦା ଆଦାୟ କରୁଛନ୍ତି । ଗଭର୍ଣ୍ଣର ହବାକ ସାହେବ ଗୋଟିଏ ସାଧାରଣ ସଭା କଲେ ଏହି ପ୍ରତିବାଦକୁ ଖଣ୍ଡନ କରିବା ପାଇଁ । ସେ ତାଙ୍କର ସମସ୍ତ ବୁଦ୍ଧି ଖଟାଇ ସଭାରେ କହିଲେ—"ଲୋକେ ସ୍ୱଇଚ୍ଛାରେ ଚାନ୍ଦା ଦେଉଛନ୍ତି, କାରଣ ସେମାନଙ୍କୁ ଯେତେ ପ୍ରକାରେ ଭୁଲାଇଲେ ମଧ୍ୟ ଭାରତବାସୀ ଜାଣିଛନ୍ତି ଯେ ବ୍ରିଟେନ ଜୟଯୁକ୍ତ ହେଲେ ଯାଇ ସେମାନଙ୍କର ମଙ୍ଗଳ । କେତେକ ଲୋକ ମିଥ୍ୟା ପ୍ରଚାର କରୁଛନ୍ତି—ସରକାରୀ ଅଫିସରମାନେ ଜୋର ଜବରଦସ୍ତ ଯୁଦ୍ଧ ଚାନ୍ଦା ଆଦାୟ କରୁଛନ୍ତି ବୋଲି ଏହି ସଭା ମଞ୍ଚରୁ ମୁଁ ଘୋଷଣା କରୁଛି—ଯଦି କେହି ଏଭଳି ଅଭିଯୋଗ ଲିଖିତ ଭାବରେ କରନ୍ତି ତାହାର ତଦନ୍ତ କରାଯିବ । ସତ୍ୟ ବୋଲି ପ୍ରମାଣିତ ହେଲେ ସଂପୃକ୍ତ ଅଫିସରଙ୍କୁ କଠିନ ଦଣ୍ଡ ଦିଆଯିବ । କିନ୍ତୁ ଯଦି ଅଭିଯୋଗ ସତ୍ୟ ନୁହେଁ ବୋଲି ଜଣାପଡ଼ିବ ଅଭିଯୋଗକାରୀ କଠିନ ଶାସ୍ତିଭୋଗ

କରିବେ । ତାଙ୍କ ଭାଷଣ ବେଳେ ମୁଁ ଉପସ୍ଥିତ ଥିଲି । ମୋର ମନେ ହେଲା ସେ ଏହି ସଭା ଡକାଇଥିଲେ ଲୋକମାନଙ୍କୁ ଧମକାଇବା ପାଇଁ । କାରଣ କେହି କେବେ "ପ୍ରମାଣ" କରି ପାରିବେ ନାହିଁ ଯେ ତା'ଠାରୁ ଜବରଦସ୍ତି ପ୍ରୟୋଗ କରି ଚାନ୍ଦା ଆଦାୟ କରାଯାଇଛି । ସମସ୍ତେ ଜାଣନ୍ତି ଦ୍ୱିତୀୟ ବିଶ୍ୱ ଯୁଦ୍ଧ ସମୟରେ ଭାରତର ସବୁ ଅଂଶରୁ କେମିତି କୋଟି କୋଟି ଟଙ୍କା ଜବରଦସ୍ତ ସଂଗ୍ରହ କରାଯାଇଥିଲା ଚାନ୍ଦା ନାମ ଦେଇ ।

## ପଡ଼ାପଡ଼ିରୁ ବିଦାୟ !

ଭାରତରେ ରାଜନୈତିକ କ୍ଷେତ୍ରରେ ଗୋଟିଏ ବିରାଟ ପରିବର୍ତ୍ତନ ହେବାକୁ ଯାଉଥାଏ । ବିରାଟ ଶବ୍ଦଟିକୁ ଏଠାରେ ପ୍ରୟୋଗ ନକରି 'ବୈପ୍ଳବିକ' ଶବ୍ଦଟିକୁ ପ୍ରୟୋଗ କଲେ ଅଧିକ ସଙ୍ଗତ ବା ଠିକ୍ ହେବ । ମହାତ୍ମା ଗାନ୍ଧୀ ବାରବାର ସୂଚନା ଦେଉ ଥାଆନ୍ତି ଯେ ସରକାରଙ୍କ ସହିତ ଶେଷ ସଂଗ୍ରାମ ଚଳାଇବାକୁ ପଡ଼ିବ । ସେ ସଂଗ୍ରାମ ନିଶ୍ଚୟ ହେବ ଭୟାବହ । ବ୍ରିଟିଶ ସରକାର କେବେବେଳେ ବରଦାସ୍ତ କରିବ ନାହିଁ—ଯଦି ଯୁଦ୍ଧ ଉଦ୍ୟମରେ ସଫଳତାର ସହିତ ବାଧା ସୃଷ୍ଟି କରିବା ପାଇଁ ପଦକ୍ଷେପ ନିଆଯିବ । 'ବାଣୀ ସତ୍ୟାଗ୍ରହକୁ' ସରକାର ବରଦାସ୍ତ କରୁନଥାନ୍ତି । ଏହି ସତ୍ୟାଗ୍ରହ ଦ୍ୱାରା ଦେଶରେ ଶେଷ ସ୍ୱାଧୀନତା ସଂଗ୍ରାମ ପାଇଁ ଜନ-ସାଧାରଣଙ୍କ ମନକୁ ପ୍ରସ୍ତୁତ କରିବା ଥାଏ ଗାନ୍ଧୀଙ୍କ ଲକ୍ଷ୍ୟ । ଜଣ ଜଣକୁ ବଛାଯାଏ ଏହି ଅଭିନବ ସତ୍ୟାଗ୍ରହ ପାଇଁ । ସେ ଗୋଟିଏ ସଭାରେ ଭାଷଣ ଦିଅନ୍ତି । । ଆଉ ଯେତେ ଯାହା କହିଲେ ମଧ୍ୟ ପୁଲିଶ ନୀରବ ରହିଥାଆନ୍ତି । ଶେଷରେ ଯେତେବେଳେ କୁହାଯାଏ—ଧନ ଜନ ଦେଇ ଯୁଦ୍ଧକୁ କଦାପି ସାହାଯ୍ୟ କରନାହିଁ—ସେତେବେଳେ ପୁଲିଶ ବକ୍ତାଙ୍କୁ ଗିରଫ କରନ୍ତି ଓ ନାମକୁ ମାତ୍ର ବିଚାର କରି ତାଙ୍କୁ ଜେଲକୁ ପଠାଇ ଦିଆଯାଏ । ମନେ ହେଉଥାଏ ସତେ ଯେପରିକି ଶେଷ ସଂଗ୍ରାମ ଆରମ୍ଭ ହୋଇଯିବ । କଂଗ୍ରେସ କର୍ମୀମାନଙ୍କ ଭିତରେ ପ୍ରବଳ ଉତ୍ସାହ । ଆବଶ୍ୟକ ପଡ଼ିଲା କେତେଜଣ ବଛାବଛା କର୍ମୀ ଗାଁ ଗହଳରେ ବୁଲି ଶହ ଶହ ସଭାରେ ଭାଷଣ ଦେବେ ଓ ସଂଗ୍ରାମ ସପକ୍ଷରେ ବାୟୁମଣ୍ଡଳ ସୃଷ୍ଟି କରିବେ । ମହାତ୍ମାଙ୍କର ଇଚ୍ଛା ଅତି ଶୀଘ୍ର ସବୁ ଠିକ୍ କରାଯାଉ ଏହି ଦିଗରେ । ମୋ ଉପରେ ବନ୍ଧୁମାନଙ୍କର ଚାପ ପଡ଼ିଲା 'ସମାଜ' ଖବର କାଗଜ ଅଫିସ ଛାଡ଼ିଦେଇ ଏହି କାମରେ

ଲଗି ପଡ଼ିବା ପାଇଁ । ସେମାନେ ବାରମ୍ବାର କହୁ ଥାଆନ୍ତି ଯେ ମୁଁ ଏହି କାମଟି ଭଲ ଭାବରେ କରିପାରିବି । ଖବର କାଗଜ ଅଫିସରୁ ବାହାରି ଆସିବି ବୋଲି ମନସ୍ଥିର କରିଦେଲି । ସେପରି କରିଲି ସିନା— ସହଧର୍ମିଣୀଙ୍କ ସହିତ ପରାମର୍ଶ କରିବା ଉଚିତ । ୧୯୪୨ ମାର୍ଚ୍ଚ ଏପ୍ରିଲ ବେଳକୁ ମୋ ପରିବାର ବୋଇଲେ ବୁଝାଉଥାଏ ଆମ ଦୁ'ଜଣଙ୍କୁ । ୧୯୪୦ରେ ବିବାହ ହୋଇଥିଲି—ସନ୍ତାନ ହୋଇ ନ ଥାନ୍ତି । ସ୍ୱାଧୀନତା ସଂଗ୍ରାମ ବିଷୟରେ ଉଭୟେ ସଂପୂର୍ଣ୍ଣ ଏକମତ ହୋଇ ଯାଇଥାଉ । ସେ ଭଲ ଭାବରେ ସୂତାକଟା ଶିଖି ଯାଇ ଥାଆନ୍ତି । ଖବର କାଗଜ ଅଫିସରୁ ମୁଁ ପାଏ ତିରିଶ ଟଙ୍କା । ଛ ଟଙ୍କା ଦେଇ କଟକ ସହରରେ ଘରଟିଏ ନେଇଥାଉ । ବାକି ଚବିଶଟଙ୍କା ଆମ ଦୁ' ଜଣ ଚଳିବା ପାଇଁ ଯଥେଷ୍ଟ । ଗାଁକୁ ଚାଲିଗଲେ ଚଳିବୁ କେମିତି ସେଇଥିଲା ପ୍ରଶ୍ନ । ଆମର ନରସା ଅଣୀ ଡେଢ଼ିମାଲ ଧାନଜମି ଥାଏ । ସେଥିରୁ କିଛି ଧାନ ମିଳେ । ବିଗୃହିଲୁ କିଛି ଅସୁବିଧା ହେବ ନାହିଁ । ପନ୍ଦର କୋଡ଼ିଏଟି ଟଙ୍କା ମଝିରେ ମଝିରେ କଂଗ୍ରେସ ଅନୁଷ୍ଠାନରୁ ମିଳିଯିବ । ସୂତାକାଟି ଲୁଗାବୁଣାଇ ଦେଲେ ବସ୍ତି ହୋଇଯିବ । ଗାଈଟିଏ ଅଛି—କ୍ଷୀର ଦେଉଛି । ବଗିଚ୍ଚାରେ କିଛି କିଛି ପରିବା ଶାଗ ମୁଗ ହେଉଛି ବା ହେବ । ମୁଁ ତ ଅନେକ ସମୟରେ ବାହାରେ ରହିବି । ସେ ହୁଏତ ବଣ୍ଟ ସେବାଘରେ ରମାଦେବୀଙ୍କ ସହିତ ମଝିରେ ମଝିରେ ରହିବେ । ଏହି ବିଗୃହର ଆଲୋଚନା ପରେ ପଣ୍ଡିତ ମିଶ୍ରଙ୍କୁ ମନକଥା କହିଲି । ସେ ଟିକିଏ ଭାବିଲେ ଓ ପରଦିନ କହିବେ ବୋଲି ପ୍ରତିଶ୍ରୁତି ଦେଲେ । ପରଦିନ କହିଲେ—ହଁ, ତୁମ ସ୍ଥାନ ଏବେ ରଣ କ୍ଷେତ୍ରରେ । ଏଠିତ କୌଣସି ମତେ କାମ ଚଳିବ । ଶେଷ ସଂଗ୍ରାମ ଆରମ୍ଭ ହୋଇଗଲେ ସମସ୍ତେ ତ ଜେଲଯିବା ବା ଲାଠି ଖାଇବା ମରିବା । ତୁମକୁ ଏହି ଦାୟିତ୍ୱରୁ ମୁକ୍ତ କରି ଦେଲି । ଏହି ଶହେଟଙ୍କା ନିଅ—ତୁମ ପାରିଶ୍ରମିକ ତ ମାସକର ଅଛି । ତାକୁ ମଧ୍ୟ ନିଅ । ଏଣିକି ତୁମେ ଆମର ହୋଇଗଲ ଭ୍ରମ୍ୟମାଣ ପ୍ରତିନିଧି । ଗ୍ରାମଆଡ଼କୁ ତ ଯିବ । ଖବର ପଠାଅ । ସେ ବାବଦରେ କିଛି ପାଇବ । ମୋ ଆଶୀର୍ବାଦ ରହିଲା ତମ ପାଇଁ ।" ଟିକିଏ ଆଖି ଛଳ ଛଳ କରି ସେ ଏତିକି କହିଦେଲେ । ତାଙ୍କ ପାଦଛୁଇଁ ବିଦାୟ ନେଇ ଆସିଲି । ତାହା ପର ଦିନ ହିଁ କଟକ ଛାଡ଼ି ଗାଁକୁ ଚାଲିଗଲି ।

ବିନେ ଗାଁରେ ରହି କଟକ ଆସି ନବକୃଷ୍ଣ ଚୌଧୁରୀଙ୍କୁ ଦେଖା କଲି । ସେ ଭାରି ଖୁସୀ ଯେ ମୁଁ ଏବେ ସବୁ ସମୟ ଦେଇ କାମ କରିବି । ଜୀବନରେ ଅନେକ ଲୋକଙ୍କ ସଂପର୍କରେ ଆସିଛି । କିନ୍ତୁ ନବବାବୁଙ୍କର ଯେପରି ବିପ୍ଳବୀର ମନ ଅନ୍ୟ କାହାରି ଠାରେ ସେଭଳି ଦେଖିନାହିଁ । ଅବଶ୍ୟ ମହାତ୍ମାଗାନ୍ଧୀଙ୍କୁ ବାଦ୍ ଦେଉଛି ଯେତେବେଳେ 'ଅନ୍ୟ କାହାରି-ଠାରେ' ବୋଲି କହୁଛି । ସେ ଗୋଟିଏ ନୂଆକଥା କହିଲେ । ଯୁଦ୍ଧରେ ଜାପାନ ଯୋଗଦେଲା ପରେ ଭାରତର ପୂର୍ବ ଉପକୂଳର ଗୁରୁତ୍ୱ ଅତି ମାତ୍ରାରେ ବଢ଼ିଗଲାଣି । ଥରେ ବୋମା ମାଡ଼ ହୋଇ ଯାଇଥାଏ ଓଡ଼ିଶା କୂଳରେ । କଟକରୁ ସେକ୍ରେଟେରିଏଟ୍ ଉଠିଯାଇଥାଏ ସମ୍ବଲପୁରକୁ । ଜାପାନୀ ସୈନ୍ୟ ଯଦି ଓଡ଼ିଶାରେ ଓହ୍ଲାଇ ପଡ଼ିବେ ଜନସାଧାରଣ ସେମାନଙ୍କୁ ଆଦରିନେବାର ଆଶଙ୍କା ଥାଏ । ବ୍ରିଟିଶ ବିରୋଧୀ ମନୋଭାବ ହିଁ ଜ ପାନସପକ୍ଷ ମନୋଭାବ ସୃଷ୍ଟି କରିବା ସ୍ୱାଭାବିକ । ଓଡ଼ିଶାର ସମୁଦ୍ର କୂଳରେ ଥିବା ଲୋକଙ୍କୁ ବୁଝାଇବାକୁ ପଡ଼ିବ—ଆମେ ସ୍ୱାଧୀନତା ପାଇଁ ଲଢ଼ୁଛୁ, ଗୋଟିଏ ବିଦେଶୀ ଶାସନକୁ ହଟାଇ ଆଉ ଗୋଟିଏ ବିଦେଶୀ ଶାସନକୁ ଡାକି ଆଣିବାର ପ୍ରଶ୍ନ ନାହିଁ । ଓଡ଼ିଶାରେ ସେତେବେଳକୁ ଦୁଇଟି ବ୍ରିଟିଶ ସୈନ୍ୟ ଛାଉଣୀ ରହି ଗଲାଣି । ଗୋଟିଏ ଚଉଦ୍ୱାରରେ । ଅନ୍ୟଟି କଟକଜିଲ୍ଲାରେ ତିର୍ତ୍ତୋଲ ଥାନାର ନାଲିବର ଠାରେ । ନାଲିବରଠାରେ ଯେଉଁମାନେ ଥାଆନ୍ତି ସେମାନେ ବରାବର ଠାବ କରୁଥାଆନ୍ତି ଆକାଶ ମାର୍ଗରେ ଯାଉଥିବା ଯୁଦ୍ଧ ଉଡ଼ାଜାହାଜ ଗୁଡ଼ିକୁ । ମହାତ୍ମା ଗାନ୍ଧୀ ମୀରା-ବେନଙ୍କୁ ପଠାଇ ଥିଲେ ଚଉଦ୍ୱାରରେ ଯାଇ ବ୍ରିଟିଶ ସୈନ୍ୟଙ୍କୁ ବୁଝାଇବା ପାଇଁ—'ଆମେ କେବେ ହେଲେ ଜାପାନ ସପକ୍ଷବାଦୀ ନୋହୁଁ ।' ମୀରାବେନ୍ ବା ମିସ୍ ସ୍ଲେଡ଼ ବ୍ରିଟିଶ ମହିଳା । ତାଙ୍କ ପିତା ଥିଲେ ଆଡ୍‌ମିରାଲ । ସେହି ଖ୍ୟାତି ନେଇ ସେ ବ୍ରିଟିଶ ସୈନ୍ୟଙ୍କ ସହିତ ମିଶୁଥାଆନ୍ତି । ଆଜି ଯେଉଁ ଚଉଦ୍ୱାର ଦେଖୁଛୁ ସେତେବେଳେ ତାହା ସେପରି ନ ଥିଲା । ମିଲଟାରୀ ରହିବେ ବୋଲି କେତେ ଗୁଡ଼ିଏ ଘର ତିଆରି ହୋଇଥିଲା । ମହାନଦୀ ଉପରେ ସଡ଼କ ପୋଲ ନଥିବାରୁ କଟକ ସହିତ ସେ ସ୍ଥାନର ସେଭଳି କିଛି ସଂପର୍କ ନଥିଲା । ମୀରାବେନଙ୍କଠାରୁ ଚିଠି ବା ଟେଲିଗ୍ରାମ ଆଣି କଟକରୁ ପଠାଇବା ଓ କିଛି ଚିଠି ପତ୍ର ତାଙ୍କ ନାମରେ ଆସୁଥିଲେ ତାଙ୍କୁନେଇ ଦେବାର ଆଂଶିକ ଦାୟିତ୍ୱ ମୋ ଉପରେ ଥିଲା ।

ମୀରାବେନ ଲମ୍ବା ଲମ୍ବା ଚିଠି ଲେଖନ୍ତି ଗାନ୍ଧୀଙ୍କ ପାଖକୁ । ଚୌଧୁରୀ କହିଲେ ଦୁଇଟି କର୍ମୀଦଳ ସମୁଦ୍ର କୂଳ ଗାଁ ମାନଙ୍କରେ ବୁଲି ଲୋକଙ୍କ ଭିତରେ ପ୍ରଚାର କରିବାକୁ ହେବ । ବ୍ରିଟୀଶ ଶାସନ ବିରୁଦ୍ଧରେ ଲଢ଼ିବା ପାଇଁ ସେମାନଙ୍କୁ ପ୍ରସ୍ତୁତ କରିବା ସଙ୍ଗେ ସଙ୍ଗେ ଜାପାନୀ ଆକ୍ରମଣ ବିଷୟରେ ସତର୍କ କରି ଦେବାକୁ ହେବ ।

ପ୍ରଥମ ଦଳରେ ଗଲେ ପଣ୍ଡିତ ଲିଙ୍ଗରାଜ ମିଶ୍ର, ମୋହନ ଦାସ । ମୋତେ ସେମାନେ ସାଙ୍ଗରେ ନେଲେ । ଆମେ ଚିଲିକା ହ୍ରଦ କୂଳରେ ଥିବା ଗାଁ ଗୁଡ଼ିକରେ ବୁଲିଲୁ । ଦିନ ବେଳେ ବହୁ ଲୋକଙ୍କୁ ଭେଟୁ । ଚାରିଟା ବେଳକୁ ସଭା ହୁଏ । ପ୍ରଥମେ କୁହନ୍ତି ପଣ୍ଡିତଜୀ । ତାହାପରେ ମୋହନ ଦାସ । ସେ ଦିଅନ୍ତି ଜ୍ୱାଳାମୟୀ ଭାଷଣ । ଲୋକେ ମନ୍ତ୍ର ମୁଗ୍ଧ ହୋଇ ଶୁଣନ୍ତି । ସଭାରେ ବସି ଥିଲା ବେଳେ ମୁଁ ଗୋଟିଏ କିସାନ ଚର୍ଖାରେ ସୂତା କାଟୁଥାଏ । ଜଣେ ଭଲ କଟାଳୀ ହୋଇଥିବାରୁ ୮୦୦ ଗଜରୁ ଅଧିକ ସୂତା କାଟିଦିଏ । ସେଇତକ ଗୁଡ଼ାଇ ମାଳଟିଏ ହାତରେ ଧରି ମୋ ଭାଷଣ ଦିଏ । ମହାତ୍ମାଗାନ୍ଧୀ ଭାରତ ଭୂଇଁରେ ପ୍ରଥମେ କିଭଳି ଅସହଯୋଗ ଆନ୍ଦୋଳନ ୧୯୨୧ରେ ଆରମ୍ଭ କଲାବେଳେ "ସୂତାଖିଅକରେ ସ୍ୱରାଜ୍ୟ ଝୁଲୁଛି" ବୋଲି କହି ୧୯୨୧ରୁ ୧୯୪୨ ପର୍ଯ୍ୟନ୍ତ ଯାହାସବୁ ଘଟିଯାଇଛି ତାହାର ବର୍ଣ୍ଣନା କରେ । ପ୍ରତ୍ୟେକ ଲୋକ ଯଦି ମାତ୍ର ଦୁଇଘଣ୍ଟା ବା ଏକ ଘଣ୍ଟା ସୂତା ପ୍ରତିଦିନ କାଟିବେ ଦେଶର ସଂପତ୍ତିରେ କେତେ ଯୋଗ ହୋଇଯିବ ଓ ଗାନ୍ଧୀ ସେହି ସ୍ୱପ୍ନ ଦେଖିଥିଲେ ବୋଲି ବୁଝାଏ । ସ୍ୱାଧୀନତା ସଂଗ୍ରାମ ପାଇଁ ସମସ୍ତେ ପ୍ରସ୍ତୁତ ହେବାର ଆବଶ୍ୟକତା ଉପରେ ଜୋର ଦିଆଯାଏ । ସେତେବେଳେ ଲକ୍ଷ୍ୟ କରିଛି ସାଧାରଣ ଲୋକେ ଅନେକ କଥାକୁ କେମିତି ବୁଝି ଯାଆନ୍ତି । ପଣ୍ଡିତ ମିଶ୍ର ଅତି ଉଚ୍ଚ ସ୍ୱରରୁ ଯେଉଁ ସବୁ କଥା କହନ୍ତି ଲୋକ ମନଦେଇ ସେ ସବୁଶୁଣି କେମିତି ବୁଝିଯାଆନ୍ତି ସେମାନଙ୍କ ମୁହଁରୁ ଜଣା ପଡ଼ିଯାଏ । କିଛି ଦିନ ବୁଲିଲାପରେ ଫେରି ଆସିଲୁ । ପୁଣିଥରେ ଗଲୁ । ସେଥର ମଧ୍ୟ ସେହି ଅଭିଜ୍ଞତା ।

ଏହି କେତେ ମାସ କିନ୍ତୁ ପଢ଼ାପଢ଼ିରୁ ବିଦାୟ ନେଇ ଯାଇଥିଲି ବୋଲି କହିଲେ ଚଳେ । ସକାଳୁ ରାତିଅଧ ଯାଏ କାମ । କେବଳ ଖବର

କାଗଜ କିଛି ପଢ଼ୁଥାଏ । ମନେ ହେଉଥାଏ ସତେ ଯେପରି କି ସମର ଭୂଇଁ ଯିବା ପାଇଁ ପୋଷାକ ପିନ୍ଧୁଛି—ସଜବାଜ ହେଉଛୁ ।

## "ବିଶ୍ୱବିଦ୍ୟାଳୟ"ର ପ୍ରବେଶ ଦ୍ୱାର

ତାହାପରେ ଆସିଗଲା ଅଗଷ୍ଟ—୯ ତାରିଖ । ଭାରତ ଛାଡ଼ ଆନ୍ଦୋଳନ ଆରମ୍ଭ । ଅଠାଇଶ ତାରିଖ ଦିନ ଗିରଫ ହେଲି । ଅଟକ ବନ୍ଦୀ ଭାବରେ ବ୍ରହ୍ମପୁର ଜେଲରେ କଟାଇ ଦେଲି ଦୁଇ ବର୍ଷ କାଳ ।

କି ପରିସ୍ଥିତିରେ ଗିରଫ ହେଲି ତାହାର ବିଶେଷ ବିବରଣୀ ଦେଉନାହିଁ । ଦେଲେ ପାଠକମାନଙ୍କ ମନ ଅନ୍ୟ ଦିଗକୁ ଚାଲିଯିବ—ଏହି ଆଶଙ୍କା ଥିବାରୁ ସେଭଳି କରୁନାହିଁ । କିନ୍ତୁ ଟିକିଏ ସୂଚାଇ ନ ଦେଲେ ବର୍ଣ୍ଣନାଟା ଖାପଛଡ଼ା ହୋଇଯିବ ଓ ଜେଲ ଭିତରେ ମୋ ପଢ଼ାପଢ଼ି ବିଷୟରେ ଯେତେବେଳେ ବିସ୍ତୃତ ଭାବରେ ବର୍ଣ୍ଣନା କରିବି ପାଠକ ମାନଙ୍କର ଠିକ୍ ଠିକ୍ ଧାରଣା ରହିବ ନାହିଁ । ସ୍ୱାଧୀନତା ସଂଗ୍ରାମର ସେହି କେତେଦିନ ଭିତରେ ମୁଁ କେମିତି କଅଣ କରିଥିଲି ସେ ବିଷୟରେ ମୋର ଆଉ ଗୋଟିଏ ପୁସ୍ତକରେ ଅନେକ କିଛି ଲେଖିଛି । 'ଜଣେ ସ୍ୱାଧୀନତା ସଂଗ୍ରାମୀର ସ୍ମୃତି'' ନାମକ ସେହି ପୁସ୍ତକଟି ପାଣ୍ଡୁଲିପି ଆକାରରେ ଅଛି । ହୁଏତ ଦିନେ ପ୍ରକାଶିତ ହେବ ।

୧୯୪୨ ଅଗଷ୍ଟ ୯ ତାରିଖ ଦିନ ଗାଁରେ ଥାଏ । କଟକ ସହରଠାରୁ ସତର ମାଇଲ ଦୂରରେ ମହାନଦୀ କୂଳରେ ମୋ ଗ୍ରାମ ମଲପୁର । ରେଡ଼ିଓ ତ ନଥାଏ । ଭଲ ଭାବରେ କିଛି ଜାଣିପାରୁ ନ ଥିବାରୁ ମନଟା ଟିକିଏ ଉଛନ୍ନ ହେଉଥାଏ । ଦୁଇଟି ଗାଈ ବାଛୁରିଙ୍କୁ କୁଣ୍ଡା ତୋରାଣି ଦେଇ ମୋ ଚାଳଘର ପିଣ୍ଡାରେ ବସିଛି । ହଠାତ୍ ଦୁଇଜଣ ଯୁବକ ପହଞ୍ଚିଗଲେ । ସେମାନେ ଚାଲି ଚାଲି ଆସିଛନ୍ତି । ଧଇଁ ସଇଁ ହୋଇ ଯାଉଛନ୍ତି କହିଲେ ଟିକେ । ମୋ ହାତକୁ ଖଣ୍ଡିଏ କାଗଜ ବଢ଼ାଇ ଦେଲେ । ସେ ଖଣ୍ଡିକ ଲେଖିଛନ୍ତି ନବକୃଷ୍ଣ ଚୌଧୁରୀ । ସକାଳେ ସେ ଗିରଫ ହେବା ପୂର୍ବରୁ ଏ ଖଣ୍ଡିକ ଲେଖି ମୋ ପାଖକୁ ଏହି ଦୁଇ ଜଣଙ୍କ ହାତରେ ପଠାଇ ଦେଇଥିଲେ । ସେଥିରେ ଥିଲା—'ଆମେ ସବୁ ତ ଗଲୁ । ତୁ ମଧ ଶୀଘ୍ର ଯିବୁ । ତା' ପୂର୍ବରୁ ଗୋଟିଏ କାମ ଶୀଘ୍ର କରିଦେ ।

ଲୋକେ ଏଣିକି ନିଜର ନେତା ହୋଇ ଶେଷ ସ୍ୱାଧୀନତା ସଂଗ୍ରାମକୁ ସଫଳ କରିବା ପାଇଁ ଯାହା ଇଚ୍ଛା ତାହା କରିଯାଆନ୍ତୁ । ଅତ୍ୟାଚାରୀ ବ୍ରିଟିଶ ଶାସନର ବହୁ ପ୍ରତୀକକୁ ଧ୍ୱଂସ କରି ଦିଆଯାଉ । ଯୁଦ୍ଧ ଉଦ୍ୟମରେ ବାଧା ଦେଲଭଳି ସବୁ କିଛି ପନ୍ଥା ଗ୍ରହଣ କରାଯାଉ । କଣ୍ଡେ ଲିଥୋ ମେଶିନ ଯୋଗାଡ଼ କରି କେତେ ଲକ୍ଷ ଲିଫ୍‌ଲେଟ୍ ଛାପି ଓଡ଼ିଶାର ଗ୍ରାମଆଡ଼େ ବଣ୍ଟାଇଦେ । ଯାହା ସମ୍ଭବ କରିବୁ । ମୋର ଦୁଃଖ ରହିଗଲା ଯେ ହଠାତ୍ ଗିରଫ ହୋଇଗଲି । ନିଜେ କିଛି କରିପାରିଲି ନାହିଁ । ଓଡ଼ିଶାରେ ଆଉ କିଏ କେଉଁଠି ଗିରଫ ହେଲେଣି ମୋତେ ଜଣା ନାହିଁ ।’ ସେହି ଦୁଇଜଣ ସ୍ୱାଧୀନତା ସଂଗ୍ରାମୀ ଯୁବକଙ୍କ ଉଦ୍ୟମ, ମୋ ସହଧର୍ମିଣୀଙ୍କ ସାହସ ଓ ମୋର କିଛି କିଛି ବୁଦ୍ଧି ଯୋଗ ହୋଇଯିବାରୁ ଆମର ଗାଁ ଘରେ ଅତି ଗୋପନରେ ଲିଥୋ ମେଶିନ୍‌ରେ ଲିଫ୍‌ଲେଟ୍ ସବୁ ଛପା ହୋଇଗଲା । କିନ୍ତୁ ସେଗୁଡ଼ିକ ପଠା ହେବ କିପରି ? କଟକରେ ଯାଇ ପଣ୍ଡିତ ଲିଙ୍ଗରାଜ ମିଶ୍ରଙ୍କୁ ଦେଖାକଲି । ସେ ଗୋଟିଏ ଉପାୟ ବାହାର କଲେ । ମୁଁ ହୋଇଯିବି ସମାଜର ଭ୍ରାମ୍ୟମାଣ ପ୍ରତିନିଧି । ମୋତେ ପ୍ରତିନିଧି କାର୍ଡ଼ ଇତ୍ୟାଦି ଦେଇ ଦିଆଯିବ । ସରକାରଙ୍କୁ କହି ଦିଆଯିବ ଯେ ମୁଁ ସଂଗ୍ରାମରେ ନାହିଁ—ଜଣେ ସାମ୍ବାଦିକ ମାତ୍ର । ଗ୍ରାମଆଡ଼େ ଭାରତଛାଡ଼ ଆନ୍ଦୋଳନରେ କେଉଁଠାରେ କଅଣ ସବୁ ଘଟିଯାଉଛି ସେହି ଖବର ସମାଜକୁ ପଠାଇବା ମୋର କାମ । ଏହି ବ୍ୟବସ୍ଥାର ସୁଯୋଗ ନେଇ ଲିଫ୍‌ଲେଟ୍ ଗୁଡ଼ିକ ବଣ୍ଟାଇ ଦେବାର ବ୍ୟବସ୍ଥା କଲି । ସେହି ସନ୍ଧାନରେ ମୋର ପୁରୁଣା କର୍ମକ୍ଷେତ୍ର ବଣକୁ ଯାଇଥିଲି । ସେ ଅଞ୍ଚଳର ଲୋକେ ବହୁ ସଂଖ୍ୟାରେ ପ୍ରସ୍ତୁତ ହୋଇଗଲେ ‘କର ବା ମର’ ( Do or Die ) କାର୍ଯ୍ୟକ୍ରମକୁ ସଫଳ କରିବା ପାଇଁ । ବହୁ ଦକ୍ଷ ପୁରୁଷ ମହିଳା କର୍ମୀ ଓ ହଜାରଜନ ଯୁବକମାନେ ଯେ କୌଣସି ତ୍ୟାଗ କରିବା ପାଇଁ ପ୍ରସ୍ତୁତ ହୋଇ ଯାଇଥାଆନ୍ତି ବା ଯାଉଥାଆନ୍ତି । ସେଠାରୁ ଗାଁ କୁ ଫେରିଲି ଦେଖିବା ପାଇଁ ଆଉ ସବୁ କୁଆଡ଼େ କୁଆଡ଼େ ଲିଫ୍‌ଲେଟ ପଠାଗଲା । ଆମ ଅଞ୍ଚଳର ପୁଲିସ ଇନ୍‌ସ୍‌ପେକ୍ଟର ଓ ସବ୍‌ଇନ୍‌ସ୍‌ପେକ୍ଟର ଆମ ଘରକୁ ମଝିରେ ମଝିରେ ଆସନ୍ତି ମୋ ସହିତ ଦେଖାକରିବା ପାଇଁ । ଆମ ଅଞ୍ଚଳରେ କିଛି ନ ହେଉଥିବାରୁ ସେମାନେ ଟିକିଏ ନିଶ୍ଚିନ୍ତ ଥାଆନ୍ତି । ଅଗଷ୍ଟ ୨୮ ତାରିଖ ସକାଳେ ମୋତେ ଗିରଫ କରିବା ପାଇଁ ପୁଲିସ ପହଞ୍ଚିଗଲେ । ଶୁଣିଲି—

ମୁଁ ବାଗ୍ଯୁ ଆସିବା ପରେ ସେଠାରେ ଆନ୍ଦୋଳନ ଚେଳିଲା । ପୁଲିସ ତରଫରୁ ଗୁଳି ହୋଇ ଗୃହଜଣ ମରିଗଲେ—ବହୁଲୋକ ଆହତ ହେଲେ । ତାକୁ ହିଁ ପରେ କାଳିମାଟିଆ ଗୁଳିକାଣ୍ଡ ବୋଲି କୁହାଗଲା । ତାହାର ବିସ୍ତୃତ ବିବରଣୀ ଜ୍ଞାନମଣ୍ଡଳର ଗୋଟିଏ ଖଣ୍ଡରେ ଦିଆଯାଇଛି । ମୁଁ ଶୀଘ୍ର ସେଠାକୁ ଯିବା ଦରକାର ବୋଲି ଖଣ୍ଡେ ଚିଠିଦେଇ ଦୁ' ଜଣ କର୍ମୀ ଗ୍ଲୁଲି ଗ୍ଲୁଲି ଆସୁଥିଲେ ଆମ ଗାଁକୁ । ବାଟରେ ଗୋଟିଏ ଥାନା ପାଖରେ ଗିରଫ ହୋଇଗଲେ । ଥାନା ହାଜତ ଭିତରୁ ସରଳ ବିଶ୍ୱାସରେ ସେମାନେ ଜଣେ ସିପାହୀଙ୍କୁ ଏଇ ବନ୍ଦ ଚିଠିଟିକୁ ଦେଲେ ଡାକରେ ମୋ ଠିକଣାରେ ପଠାଇ ଦେବା ପାଇଁ । କିନ୍ତୁ ଥାନା ଅଫିସର ସେଇଟିକୁ ପଢ଼ି କଟକ ଏସ୍. ପି.ଙ୍କ ପାଖକୁ ପଠାଇ ଦେଲେ । ଏସ୍. ପି.ଙ୍କ ନିର୍ଦ୍ଦେଶରେ ମୁଁ ଗିରଫ । ଘରୁ ବିଦାୟ ନେଲାବେଳେ ମୋ ପତ୍ନୀ ଶଶୀବାଳା ପଗ୍ଚରିଲେ— "ମୁଁ କଅଣ କରିବି ? ମୋର ଇଚ୍ଛା ମୁଁ ମଧ୍ୟ ନିଆଁକୁ ଡେଇଁବି ।" ସେମିତି କରିପାରିଲେ ଖୁବ ଭଲ ହେବ ବୋଲି କହି ପୁଲିସଙ୍କ ସଙ୍ଗରେ ଗଲି । ମୋ ବିରୁଦ୍ଧରେ କୌଣସି ପ୍ରତ୍ୟକ୍ଷ ପ୍ରମାଣ ନ ଥିବାରୁ ଅଟକବନ୍ଦୀ ବା ସିକ୍ୟୁରିଟୀ ପ୍ରିଜନ୍‌ର ହିସାବରେ ବ୍ରହ୍ମପୁର ଜେଲ୍‌ରେ ରହିଲି । କିଛି ଦିନ ପରେ ଖବର ପାଇଲି ଯେ ମୋ ପତ୍ନୀ ଶଶୀବାଳା କାନୁନ୍‌ଗୋ ମଧ୍ୟ ଗିରଫ ହୋଇ କଟକ ଜେଲରେ ମହିଳା ବନ୍ଦୀମାନଙ୍କ ଗହଣରେ ରହିଲେଣି । ଏତିକି ସଂକ୍ଷେପରେ ଉଲ୍ଲେଖ କରିବାର ଉଦ୍ଦେଶ୍ୟ ହେଲା ବନ୍ଦୀ ଜୀବନରେ ମୋ ମନ ଭିତରେ କୌଣସି ଉଦ୍‌ବେଗ ନଥିଲା । ଆମର ସନ୍ତାନ ନଥିଲେ । ଜେଲରେ ଯେତେ ବର୍ଷ ରହିଲେ ମଧ୍ୟ ଘର ଚିନ୍ତା ନାହିଁ—ଉଦ୍‌ବେଗ ନାହିଁ ।

ସେପ୍‌ଟେମ୍ବର ମାସଟା ଗ୍ଲୁଲିଗଲା ଉତ୍ତେଜନାପୂର୍ଣ୍ଣ ବାୟୁମଣ୍ଡଳ ଭିତରେ । ଭାରତଗ୍ଲୁଡ଼ ଆନ୍ଦୋଳନ‌ରେ ଯୋଗଦେଇ କିଭଳି ହଜାର ହଜାର ଲୋକ ଜେଲ ଯାଉଛନ୍ତି, କେତି ଗୁଳିର ଶୀକାର ହୋଇ ମରୁଛନ୍ତି । ସରକାରଙ୍କ ତରଫରୁ କି ପ୍ରକାର ଦମନଲୀଳା ଗ୍ଲୁଲିଛି, ଓଡ଼ିଶାରେ କେଉଁଠି କେଉଁଠି ପୁଲିସ ଗୁଳି ଚଳାଇ ଲୋକଙ୍କୁ ମାରୁଛନ୍ତି, ଲୋକେ କିପରି ସରକାରୀ ଡାକ ବଙ୍ଗଳା ଡାକ ଘର ଇତ୍ୟାଦି ପୋଡ଼ି ଦେଉଛନ୍ତି, ଏଭଳିକି ଗୋଟାଏ ସ୍ଥାନରେ ଥାନା ପୋଡ଼ି ଦେଇଛନ୍ତି—ଇତ୍ୟାଦି

କାହାଣୀ ବରାବର ଶୁଣିବାକୁ ମିଳୁଥାଏ । କ୍ରମେ ଏହିସବୁ ଖବର ଦେହସୁହା ହୋଇଗଲା ।

ବ୍ରହ୍ମପୁର ଜେଲରେ ଆମେ ପ୍ରାୟ ୪୦୦ ଜଣ ଅଟକବନ୍ଦୀ ଥାଉ । ଅନ୍ୟସବୁ ଜେଲରେ ମକଦ୍ଦମାରେ ଦଣ୍ଡିତ ହୋଇଥିବା ରାଜବନ୍ଦୀମାନେ ଥାଆନ୍ତି । ବ୍ରହ୍ମପୁର ଜେଲର ଗୋଟିଏ ଅଂଶରେ ଶହେ ଦୁଇଶହରୁ ଅଧିକ ସଂଖ୍ୟକ ଦଣ୍ଡିତ ରାଜବନ୍ଦୀ ଥାଆନ୍ତି—ସେମାନଙ୍କ ସହିତ ବରାବର ସମ୍ପର୍କ ରକ୍ଷା ହେଉନଥାଏ । ଓଡ଼ିଶାର ସବୁ ବଡ଼ ବଡ଼ ନେତା ଓ ଜଣାଶୁଣା କର୍ମୀ ଗୋଟିଏ ଜେଲରେ ଅଟକବନ୍ଦୀ । କେବଳ ହରେକୃଷ୍ଣ ମହତାବ ନଥିଲେ । ସେ ଅଗଷ୍ଟ ୯ ତାରିଖ ସକାଳେ ବୋମ୍ବେଠାରେ ବନ୍ଦୀ ହୋଇ ଯାଇଥିଲେ—ଯେଉଁଦିନ ମହାତ୍ମାଗାନ୍ଧୀ ଓ କଂଗ୍ରେସ କାର୍ଯ୍ୟକାରୀ କମିଟିର ଅନ୍ୟମାନେ ଗିରଫ ହୋଇଥିଲେ । ସେତେବେଳକୁ ଆମେ ସବୁ ଧରି ନେଲୁଣି—ଅନ୍ତତଃ ପାଞ୍ଚ ଦଶ ବର୍ଷ ଜେଲ ଭିତରେ ରହିଯିବୁ । ଏଭଳି ବିଶ୍ବାସର କାରଣ ହେଲା ବ୍ରିଟିଶ-ଗୋଷ୍ଠୀ ଯୁଦ୍ଧରେ ଜିଣିବାକୁ ଆରମ୍ଭ କଲେଣି । ହିଟଲର ରୁଷ ଉପରେ ଆକ୍ରମଣ ଚଳାଇଲା ଫଳରେ ଦୁର୍ବଳ ହୋଇଗଲେଣି । ପଶ୍ଚିମ ଏବଂ ପୂର୍ବ ପଟେ ଶତ୍ରୁ ପରିବେଷ୍ଟିତ ହୋଇ ଜର୍ମାନୀ ଦବି ଯାଉଥାଏ । ବ୍ରିଟେନ ବିଜୟୀ ହେଲା ପରେ ଆମକୁ କେବେହେଲେ କ୍ଷମା ଦେବ ନାହିଁ । ହୁଏତ ଅଧିକ କଷ୍ଟ ଦେବ ।

ମୁଁ ଭାବିଲି—ତାହାହେଲେ କ'ଣ ହତାଶା ଭିତରେ ବୁଡ଼ି ରହିବା ହିଁ ଆମ ଭାଗ୍ୟରେ ଲେଖା ଅଛି ? ନାଁ, ତା' କେବେ ହୋଇ ପାରିବ ନାହିଁ । ଯେଉଁଦିନ ହେଲେ ତ ଜେଲ ମୁକ୍ତ ହେବ । ବାହାରକୁ ଗଲେ ବହିଲେଖିବି । ମୋ ଓଡ଼ିଆ ତ ଭଲ ବୋଲି କୁହାଯାଉଛି—ଲୋକେ ପଢ଼ିବେ । କିନ୍ତୁ ମୋର ଯେତିକି ଜ୍ଞାନ ଅଛି ସେଥିରେ କି ବହି ବା ଲେଖିବି ? ଶାସ୍ତ୍ର ପୁରାଣରୁ ଗପ ବା ରାଜନୀତି ଅର୍ଥନୀତି ଉପରେ କେତେ ଖଣ୍ଡ ବହି ଲେଖିଦେଲେ ତ ଚଳିବ ନାହିଁ । ନୂତନ ନୂତନ ଜ୍ଞାନର ଆବଶ୍ୟକତା ରହିଛି । ଜେଲ ଭିତରେ ପଢ଼ାପଢ଼ି କରିବି । ହାତରେ ସମୟ ରହିଛି । ତାକୁ କାମରେ ଲଗାଇବି । ପାଟନା ଜେଲ, ସମାଜ ଅଫିସ, ବାରି କର୍ମକ୍ଷେତ୍ରରେ ଥିଲାବେଳେ ଅନେକ ବହି ପଢ଼ିଛି ରାଜନୀତି ଅର୍ଥନୀତି

ବିଭିନ୍ନ ଦେଶର ମୁକ୍ତି ସଂଗ୍ରାମ, ଓଡ଼ିଆ ଇଂରାଜୀ ଭାଷାର କାବ୍ୟ କବିତା ଉପନ୍ୟାସ ଇତିହାସ ପ୍ରଭୃତି ଉପରେ । ପୁଣି ସେହି ସବୁକୁ ପଢ଼ି ଲାଭ କ'ଣ ? ପଢ଼ି ନାହିଁ ବିଜ୍ଞାନ ବିଷୟରେ । ସେଥି ଦିଗରେ ମନ ଦେବି । ଆମ ସ୍କୁଲ ପାଠ୍ୟକ୍ରମରେ ତ ବିଜ୍ଞାନ ବିଷୟରେ ସେମିତି କିଛି ନଥିଲା । ଗାଁ ଗହଳରେ କାମରୁ କିଛି କିଛି ଜ୍ଞାନ ହାସଲ ହୋଇଥିଲି । କିନ୍ତୁ ସେଗୁଡ଼ିକୁ ବିଖଣ୍ଡିତ ବୋଲି କୁହାଯାଇପାରେ ।

ଏମିତି ବସ୍ଥିରୁ ଥିଲାବେଳେ ଦେହ ଟିକିଏ ଖରାପ ହେଲା । ସାମାନ୍ୟ ଜ୍ୱର । ଜେଲ ର ସୁପରିଣ୍ଟେଣ୍ଡେଣ୍ଟ ଥାଆନ୍ତି ଗଞ୍ଜାମର ସିଭିଲ ସର୍ଜନ କାପ୍‌ଟେନ ଅନ୍ନଦା ପ୍ରସାଦ ସିହ୍ନା । ସେ ଜେଲ ପରିଦର୍ଶନରେ ଆସିଥିଲା ବେଳେ ମୋତେ ଦେଖିଲେ ଓ କହିଲେ—'ନିଜ ଦେହର ଟିକିଏ ଯତ୍ନ ନିଅ । ଆମେ ଯେତେ ଯାହା କଲେ ମଧ୍ୟ ତୁମେ ଯଦି ନିଜ ଦେହର ଯତ୍ନ ନ ନେବ ମଝିରେ ମଝିରେ ଏମିତି ବେମାର ପଡ଼ିବ ।' ମୋ ପାଟିରୁ ବାହାରି ପଡ଼ିଲା—'ଦେହ ବିଷୟରେ ମୁଁ କ'ଣ ଜାଣେ ଯେ ଯତ୍ନ ନେବି ?' ସେ ତୁରନ୍ତ ଉତ୍ତର ଦେଲେ—'ଦେହ ବିଷୟରେ ଜାଣିବାକୁ ଇଚ୍ଛା କରୁଛ ତ ମୁଁ ଡାକ୍ତରୀ ବହି ପଠାଇ ଦେଉଛି ପଢ଼ । ଅବଶ୍ୟ ବୁଝିବା ସହଜ ନୁହେଁ । କିନ୍ତୁ ତୁମର ସୁରଟଣ ସହବନ୍ଦୀ ତ ଡାକ୍ତର ବା ଡାକ୍ତରୀ ଛାତ୍ର । ସେମାନଙ୍କ ସାହାଯ୍ୟରେ ବୁଝିଯିବ ।' ମୁଁ ଭାବିଥିଲି ସେ ସେମିତି କହିଦେଲେ । କିନ୍ତୁ ଉପରବେଳା ଜେଲର ଆଣି ମୋତେ ଦି' ଖଣ୍ଡି ବହି ଦେଲେ । ଗୋଟିଏ ହେଉଛି ହାଲିବର୍ଟନଙ୍କ ଫିଜିଓଲଜୀ—ଅନ୍ୟଟି ଗ୍ରେଙ୍କ ଆନାଟମୀ । ଶରୀରର ଗଠନ ଓ କାର୍ଯ୍ୟ ବିଷୟରେ ସେହି ଦୁଇଟିଯାକ ବହି ବେଶ୍ ଉପାଦେୟ ।

ପ୍ରଥମେ ହାଲିବର୍ଟନ ଫିଜିଓଲଜୀଟିକୁ ପଢ଼ା ଆରମ୍ଭକରି ଦେଖିଲି ଯେ 'ଗ୍ରେ ଆନାଟମୀ' ଟିକୁ ପୃଷ୍ଠା ସବୁ ଓଲଟାଇ ନଗଲେ 'ଶରୀର ଭିତରେ କାର୍ଯ୍ୟ ବିଦ୍ୟା' ବା ଫିଜିଓଲଜୀ ବୁଝିବା କଷ୍ଟ ହେଉଛି । ଡାକ୍ତର ଘନଶ୍ୟାମ ମହାନ୍ତି ସେହିକଥା କହିଲେ । ତେଣୁ ଚିତ୍ର ସବୁ ଦେଖିଗଲି ସେ ବହିରୁ । ଶରୀରର ପ୍ରତ୍ୟେକ ଅଙ୍ଗକୁ ଗୋଟାଏ ନିର୍ଦ୍ଦିଷ୍ଟ ଉଦ୍ଦେଶ୍ୟ ସାଧନ ପାଇଁ ତିଆରି କରାଯାଇଛି । ଖାମ୍‌ଖିଆଲି ଭାବରେ ପ୍ରକୃତି ସେଗୁଡ଼ିକୁ ଗଢ଼ିଯାଇ ନାହିଁ— ଏହିଥିଲା ଘନବାବୁଙ୍କ ଜୋର୍ ଦେଇ କହିବା

କଥା । ସେ ଗୋଟିଏ ଛୋଟିଆ ଉଦାହରଣ ଦେଇ ବୁଝାଇ ଦେଲେ—'ଆଖିର ଗୁରୁତ୍ୱ ଶରୀର ପାଇଁ କଅଣ ସମସ୍ତେ ଜାଣନ୍ତି । ସେଥି ଆଖିକୁ ଦୁଇଟି ହାଡ଼ କୋଠର ଭିତରେ ରଖାଯାଇଛି । ଉପର ହାଡ଼ ଉପରେ ରହିଛି ଭ୍ରୂଲତା—କପାଳରୁ ଝାଳ ଆସିଲେ ଆଖିଭିତରକୁ ଯାଇପାରିବ ନାହିଁ—କାରଣ ଭ୍ରୂଲତା ତାକୁ ଅଟକାଇ ଦେବ । ନାକଦଣ୍ଡା, ଆଖିର ତଳ ଓ ଉପରେ ଥିବା ମଜବୁତ ହାଡ଼ ଏଭଳି ଭାବରେ ଖଞ୍ଜା ହୋଇ ରହିଛନ୍ତି ଯେ ଜଣେ ମୁହଁକୁ ମୁଥ ମାରିଦେଲେ ମଧ୍ୟ ଆଖି ଦେହରେ ଆଘାତ ଲାଗୁନାହିଁ । ଆଖି କେମିତି କାମ କରୁଛି ବିଷୟଟି ଅଧ୍ୟୟନ କଲା ପୂର୍ବରୁ ଏହାର ଗଠନ ବିଷୟରେ ଜାଣିବାକୁ ପଡ଼ିବ । ଆନାଟମୀ ବହିର ଗୁରୁତ୍ୱ ଏହି ଦୃଷ୍ଟିରୁ ରହିଛି । ଅବଶ୍ୟ ଏକଥା ଠିକ୍ ଯେ ଆନାଟମୀ ଓ ଫିଜିଓଲଜୀକୁ ଏକସଙ୍ଗରେ ପଢ଼ିବାକୁ ପଡ଼ିବ ।'

ମନ ଲାଗିଗଲା ପଢ଼ିବାରେ । ଡକ୍ଟର ବ୍ରଜନାଥ ମିଶ୍ର ଜଣେ ଏଲୋପାଥିକ ଡାକ୍ତର ହେବା ସଙ୍ଗେ ସଙ୍ଗେ ଜଣେ ଡିଗ୍ରିପ୍ରାପ୍ତ କବିରାଜ । ଆୟୁର୍ବେଦ ହରିହର କହିଲେ ତାଙ୍କର ପାଖରେ ମଧ୍ୟ କିଛି ସମୟ ପଢ଼ । କିନ୍ତୁ ପନ୍ଦରଟା ଦିନ ଭିତରେ ଗୋଟିଏ ଜଟିଳ ସମସ୍ୟାର ସମ୍ମୁଖୀନ ହୋଇଗଲି । ପଦାର୍ଥବିଦ୍ୟା (ଫିଜିକ୍ସ୍) ଓ କେମିଷ୍ଟ୍ରୀ ବିଷୟରେ ମୋଟାମୋଟି ଧାରଣା ନ ଥିବାରୁ 'ଅସ୍‌ମୋସିସ୍' ଭଳି ଶବ୍ଦ ଯେତେବେଳେ ଆସିଗଲା ଅଡୁଆରେ ପଡ଼ିଗଲି । ମେଟାବଲିଜମ୍ କଅଣ ବୁଝିବାକୁ ହେଲେ କେମିଷ୍ଟ୍ରି ଜ୍ଞାନ ଦରକାର । ଭାତ ରୁଟି ସହିତ ପାଟିରେ ଲାଳ ମିଶିବା ଠାରୁ ଆରମ୍ଭ କରି ପାକସ୍ଥଳୀ କ୍ଷୁଦ୍ର ଅନ୍ତରେ ଭିନ୍ନ ଭିନ୍ନ ପ୍ରକାରର ହଜମ ରସ ମିଶିବା ପର୍ଯ୍ୟନ୍ତ ଯେତେଯେତେ କଥା ଘଟିଯାଉଛି ତାକୁ ବୁଝିବା ସହଜ ହେଉ ନଥାଏ । ତେଣୁ ଠିକ୍ ହେଲା ଯେ ଫିଜିକ୍ସ୍ କେମିଷ୍ଟ୍ରୀର ମୌଳିକ ଜ୍ଞାନ ହାସଲ କରିବାକୁ ହେବ । ବାହାରୁ ବହି ମଗା ହେଲା । ମେଡିକାଲ ଛାତ୍ର ରବିଘୋଷ ଓ ମୋତିଲାଲ ବିଦ୍ୟାର୍ଥୀ ପଢ଼ାଇ ଦେଲେ କିଛି କିଛି । ଚାରିମାସ ଭିତରେ ଲାବୋରେଟରୀ ନଥିଲେ ସୁଦ୍ଧା ଯେତିକି କେମିଷ୍ଟ୍ରୀ ଜ୍ଞାନ ହାସଲ ସମ୍ଭବ ସେତିକ ହାସଲ କରିଗଲି । ଅତି ଜଟିଳ ବିଷୟ ଗୁଡ଼ିକ ବୁଝିବାକୁ ସେତେବେଳେ ଚେଷ୍ଟା କଲି ନାହିଁ । ଗଣିତ ଫର୍ମୁଲା ପ୍ରଭୃତିର ପ୍ରଶ୍ନ ଯେଉଁଠି ମୋପାଇଁ ଅବୋଧ୍ୟ ସେଠି ରହିଯାଏ—ଆଗକୁ ଯିବାକୁ ଚେଷ୍ଟା କରେ ନାହିଁ ।

ଆଉ ଗୋଟିଏ ସମସ୍ୟା ଆସି ଆଗରେ ଠିଆ ହୋଇଗଲା । ଏ ବହିର ପାଠକ ସେ ସମସ୍ୟା ସମ୍ପର୍କରେ ସହଜରେ ଧାରଣା କରିପାରିବେ ନାହିଁ—ଏହି ଆଶଙ୍କା ମୋର କାହିଁକି କେଜାଣି ହେଉଛି । ସେହି ସମସ୍ୟାର ସମାଧାନ କେମିତି କଲି ନଜାଣିଲେ ଜେଲ ଭିତରେ ମୋ ପଢ଼ା ପଢ଼ି ସମ୍ପର୍କରେ ଗୋଟାଏ ମୋଟା ମୋଟି ଛବି ପାଠକମାନେ ମନ ଭିତରେ ଆଙ୍କି ପାରିବେ ନାହିଁ । ପଢ଼ିଲାବେଳେ ବହୁ ବିଷୟରେ ନୋଟ୍ କରିବାକୁ ଦରକାର ପଡ଼ିଲା । କିନ୍ତୁ କାଗଜ କାହିଁ ! ଦ୍ୱିତୀୟ ବିଶ୍ୱଯୁଦ୍ଧ ବେଳେ ସରକାର ସ୍ଥିର କଲେ ଜନସାଧାରଣଙ୍କ ହାତରେ ଲେଖାକାଗଜ ଯେମିତି ନପଡ଼ିବ । ସେମିତି ପଡ଼ିଲେ ସେମାନେ ପ୍ରକାଶ୍ୟରେ ବା ଲୁଚିକି ସରକାରଙ୍କ ବିରୋଧୀ ଯୁଦ୍ଧ ବିରୋଧୀ ଲେଖା ସବୁ ପ୍ରକାଶ କରିବାର ଆଶଙ୍କା ନିଶ୍ଚୟ ରହିଛି । ତେଣୁ କାଗଜ ଉପରେ କଟକଣା । ପ୍ରକାଶକ ମାନଙ୍କ ନାମ ରେଜିଷ୍ଟ୍ରି କରାଗଲା । ସେମାନଙ୍କର ଗ୍ରହିଦା ଠାରୁ ଅଳ୍ପ ପରିମାଣର କାଗଜ ଦେଲେ ସେମାନେ ଅନ୍ୟକୁ ଦେବେ ନାହିଁ । ଜଣେ ବନ୍ଧୁଙ୍କ ପାଖକୁ ଖବର ଦେଲି । ସେ ବହୁ କଷ୍ଟରେ ଗୋଟିଏ ମାତ୍ର ଏକ୍‌ସର-ସାଇଜ୍ ଖାତା ପଠାଇଲେ । ସେଥିରେ ଥାଏ ବତିଶଟି ପୃଷ୍ଠା । ଜେଲ ନିୟମ ଅନୁସାରେ ତା'ଉପରେ ଲେଖାଗଲା 'ଏଥିରେ ବତିଶଟି ପୃଷ୍ଠା ଅଛି ।' ଜେଲରଙ୍କ ଦସ୍ତଖତ ଥାଏ । କାଳେ କୌଣସି ବନ୍ଦୀ ସେହି ଖାତା ଭିତରୁ କାଗଜ ଚିରି ବାହାରକୁ ଚିଠି ପଠାଇ ଦେବେ, ସେହି ଆଶଙ୍କାରେ ଏଭଳି ଲେଖାଥାଏ । ଜେଲ କର୍ତ୍ତୃପକ୍ଷଙ୍କର ସନ୍ଦେହ ହେଲେ ଆସି ଦେଖିବେ ପୃଷ୍ଠା ଗୁଡ଼ିକ ଠିକ ଅଛି କି ନାହିଁ । କିନ୍ତୁ ମୋର ତ ବହୁତ କିଛି ଟିପିବାର ବା ନୋଟ୍ କରିବାର ଥାଏ—କଅଣ କରିଯିବ ? ଡାକ୍ତରୀ ପାଠ ପଢ଼ିବା ସଙ୍ଗକୁ ଆଉ କେତେପ୍ରକାରର ପଢ଼ାପଢ଼ି ହେଉଥାଏ—ସବୁପାଇଁ କାଗଜ ଲୋଡ଼ା । ମନଟା ଭାରି ଖରାପ ହୁଏ ।

ଭଗବାନଙ୍କ ଅପାର କରୁଣା ମୋ ମନର ଦୁଃଖକୁ ଦୂର କରିଦେଲା । ଭାରତ ଏବଂ ଓଡ଼ିଶାର ଲୋକେ ଓଡ଼ିଶାରେ ଘଟି ଯାଇଥିବା ଯେଉଁ କାର୍ଯ୍ୟଟି ପାଇଁ ଦୁଃଖିତ ହେଉ ଥାଆନ୍ତି, ସେଇଟି ମୋ ପାଇଁ ଗୋଟାଏ ସୁଯୋଗ ହୋଇଗଲା । ଓଡ଼ିଶାରେ ଗୋଟିଏ ମିଳିତ ମନ୍ତ୍ରୀ ମଣ୍ଡଳ ଗଢ଼ା ହୋଇଗଲା । ସାତଜଣ ଆସେମ୍ବ୍ଲି ସଭ୍ୟ କଂଗ୍ରେସ ଟିକଟରେ ନିର୍ବାଚିତ

ହୋଇଥିଲେ ମଧ୍ୟ କଂଗ୍ରେସ ଦଳ ଛାଡ଼ିଦେଇ ପାରଳାଖେମୁଣ୍ଡି ମହାରାଜାଙ୍କ ନେତୃତ୍ୱରେ ମନ୍ତ୍ରୀ ମଣ୍ଡଳ ଗଢ଼ିଲେ । ତିରିଶ ଜଣରୁ ଊର୍ଦ୍ଧ୍ୱ ଆସେମ୍ବ୍ଲି ସଭ୍ୟ ବ୍ରହ୍ମପୁର ଜେଲରେ ଥାଆନ୍ତି ଅଟକ ବନ୍ଦୀ । ସେମାନଙ୍କ ପାଖକୁ ବଜେଟ ବହି ଓ ଆସେମ୍ବ୍ଲିର ଅନ୍ୟ କାଗଜ ସବୁ ଆସିଲା । କେତେଜଣ ସେଗୁଡ଼ିକୁ ସାଇତି ରଖିଲେ ସିନା, ଅଧିକାଂଶ ସେସବୁକୁ ରଦ୍ଦି କାଗଜ ବୋଲି ବରୁଣ ଫୋପାଡ଼ି ଦେଲେ । ମୁଁ ସେଗୁଡ଼ିକୁ ସଂଗ୍ରହ କରି ଯତ୍ନରେ ସାଇତି ରଖିଲି । ଦୁଇଧାଡ଼ି ଛପା ଲେଖା ଭିତରେ ଯେଉଁ ଫାଙ୍କ ସ୍ଥାନ ଥାଏ ତାହାରି ଭିତରେ ଲେଖିଗଲି—ନୋଟ୍ କରିଗଲି । ଅନ୍ୟମାନେ ପ୍ରଥମେ ପ୍ରଥମେ ହସିଲେ ମଧ୍ୟ ମୋ ବୁଦ୍ଧିକୁ ପ୍ରଶଂସା କଲେ । ଦୁଇ ବର୍ଷ ଭିତରେ ହଜାର ହଜାର ପୃଷ୍ଠା ଲେଖିଥିଲି । ଜେଲରୁ ମୁକ୍ତ ହେଲାବେଳେ କର୍ତ୍ତୃପକ୍ଷ ସେଗୁଡ଼ିକ ଆଣିବାକୁ ମୋତେ ଅନୁମତି ଦେଇଦେଲେ । ଇଚ୍ଛା କରିଥିଲେ ଅଟକାଇ ଦେଇ ପାରି ଥାଆନ୍ତେ । ସେହିସବୁ ଲେଖା ଏବେମଧ୍ୟ ଜ୍ଞାନମଣ୍ଡଳ ଅଫିସରେ ଭିନ୍ନ ଭିନ୍ନ ଫାଇଲରେ ସଜ୍ଜିତ ହୋଇ ଯତ୍ନରେ ରହିଛି । ବହୁବିଶିଷ୍ଟ ଲୋକ ସେଗୁଡ଼ିକୁ ଦେଖିଛନ୍ତି । ସେମାନେ ଆଉ ଗୋଟିଏ କଥା ଲକ୍ଷ୍ୟ କରୁଛନ୍ତି । ପ୍ରଥମ ଅବସ୍ଥାରେ ବଡ଼ ଅକ୍ଷରରେ ଲେଖିଥିଲି । ପରେ ଆଶଙ୍କା ହେଲା ଯେ କାଗଜ ନିଅଣ୍ଟ ପଡ଼ିଯାଇ ପାରେ । ତେଣୁ ଛୋଟ ଛୋଟ ଅକ୍ଷରରେ ଲେଖିଲି—ଯଦିଓ ଟିକେ ଅଧିକ ସମୟ ଲାଗିଲା । ଗୋଟିଏ ପୃଷ୍ଠାରେ କେମିତି ୯୭ ଧାଡ଼ି ଲେଖା ଯାଇଛି ସେମାନେ ଦେଖି ଟିକିଏ ବିସ୍ମିତ ହେଉଛନ୍ତି । ଏହିଭଳି ଗୋଟିଏ ପୃଷ୍ଠାକୁ ଫିଲମ୍ ଡିଭିଜନ 'ବିନୋଦ କାନୁନ୍‌ଗୋ' ଶୀର୍ଷକ ଡକୁମେଣ୍ଟାରୀରେ ଦେଖାଇଛନ୍ତି । ସେହି ଡକୁମେଣ୍ଟାରୀଟି ଇଂରାଜୀ ଓ ଅନ୍ୟ ଚଉଦଟି ଭାରତୀୟ ଭାଷାରେ dubbed ହୋଇଁ ଥିବାରୁ କୋଟି କୋଟି ଲୋକ ଦେଖି ପାରୁଛନ୍ତି ।

ଶିକ୍ଷାର ବିଦ୍ୟା ଶିକ୍ଷାଟି ମୋ ଭିତରେ ଆଉ ସୀମିତ ହୋଇ ରହିଲା ନାହିଁ । ପ୍ରାୟ ପନ୍ଦର ଜଣ ଯୁବକ ବନ୍ଦୀ ଇଚ୍ଛାକଲେ ଶିଖିବା ପାଇଁ । ମିଳିତ କ୍ଲାସ ହେଲା । ସୁଧୀର ଚନ୍ଦ୍ର ଘୋଷ ୧୯୨୧ରେ କଲେଜରୁ ପଢ଼ା ଛାଡ଼ି ଅସହଯୋଗ ଆନ୍ଦୋଳନରେ ଯୋଗ ଦେଇଥିଲେ । ଗାଁ ଗହଳରେ କାମ କଲାପରେ ସେ ରୋଗଚିକିତ୍ସା କାମ ଆରମ୍ଭ କରିଦେଇଥିଲେ । ବହୁ ରୋଗୀଙ୍କୁ ଭଲ କଲେ । ଜଣେ ଶିକ୍ଷିତ ଲୋକ ହୋଇଥିବାରୁ ଡାକ୍ତରୀ

ବହି ସବୁ ପଢ଼ି ନିଜର ଜ୍ଞାନ ବଢ଼ାଇଲେ । ସେ ଆମ କ୍ଲାସର ପରିଚାଳନା ଦାୟିତ୍ୱ ନେଲେ । ପୂର୍ବରୁ ଯେଉଁମାନଙ୍କ ନାମ ଉଲ୍ଲେଖ କରିଛି ସେମାନେ ଶାନ୍ତିମତ କ୍ଲାସ ନିଅନ୍ତି । ଯେତେବେଳେ ଶରୀର ଭିତରେ ଥିବା ବିଭିନ୍ନ ଅଙ୍ଗ ପ୍ରତ୍ୟଙ୍ଗ ବିଷୟରେ ପଢ଼ାଯାଏ । ସେଗୁଡ଼ିକର ପ୍ରକୃତ ଆକାର କିପରି, ଶରୀରର କେଉଁ ଅଂଶରେ କେମିତି ଭାବରେ ଖଂଜା ଯାଇଛନ୍ତି ସେ ସବୁ ଚିତ୍ରରେ ଦେଖୁ ଥିଲା—ପ୍ରତ୍ୟକ୍ଷ ଭାବରେ ଦେଖି ପାରୁ ନାହିଁ । ଦେଖିପାରିଲେ ଭଲ ହୁଅନ୍ତା ଓ ଆମ ଶିକ୍ଷାଟା ଅଧିକ ଫଳପ୍ରଦ ହୁଅନ୍ତା ବୋଲି ଅନୁଭବ କଲୁ । ସୁଧୀର ବାବୁ ଗୋଟିଏ ବୁଦ୍ଧି ବତାଇଲେ । ଆମ ସମସ୍ତଙ୍କ ମାଇଁ ପ୍ରତିଦିନ କ୍ଷୀର ବା ମାଂସ ଆସେ । ଜେଲ କର୍ତ୍ତୃପକ୍ଷ ଯଦି ଆମକୁ ଗୋଟିଏ ଖାସୀ ଦେଇ ଦିଅନ୍ତେ ଆମେ ତାକୁ ମାରି ଚର୍ମ, ମାଂସ, ହାଡ଼, ଚର୍ମବନ୍ଧା ହାଡ଼ବନ୍ଧା ରଜ୍ଜୁ, ଧମନୀ, ଶିରା ବିଷୟରେ ପ୍ରତ୍ୟକ୍ଷଜ୍ଞାନ ହାସଲ କରିବା ସଙ୍ଗେ ସଙ୍ଗେ ହୃତ୍‌ପିଣ୍ଡ, ଲିଭର, ଫୁସ୍ ଫୁସ୍, ପାକସ୍ଥଳୀ, ବୃକ୍କ, ଅଗ୍ନ୍ୟାଶୟ, ଅନ୍ତ୍ର ସବୁ କିଭଳି ଖଂଜା ଯାଇଛନ୍ତି ଦେଖି ପାରନ୍ତୁ । ମନୁଷ୍ୟ ଶରୀର ସହିତ ସେଗୁଡ଼ିକର ତୁଳନା କରି ଆମକୁ ବୁଝାଇ ଦିଆଯାଆନ୍ତା । ଖପୁରି, ଖପୁରି ଭିତରେ ଥିବା ମସ୍ତିଷ୍କକୁ ଦେଖନ୍ତୁ । ସେ ହସି ହସି କହିଲେ—'ବିନୋଦର ତ ସୁପରିଣ୍ଟେଣ୍ଡେଣ୍ଟ ଓ ଜେଲରଙ୍କ ସହିତ ଏତେ ଚିହ୍ନା—ସେ କହିଲେ ସେମାନେ ରାଜି ହୋଇଯିବେ ।' ସତକୁ ସତ ସେମାନେ ରାଜି ହୋଇଥିଲେ—କିନ୍ତୁ ଗୋଟିଏ ସର୍ତ୍ତରେ । ଛେଳିଟିକୁ ଜେଲ ଭିତରେ ମରାଯାଇ ପାରିବ ନାହିଁ । ବାହାରେ ମାରି ଦେଇଦେବେ ।

ତାହାହିଁ ହେଲା । ଆମେ ସମସ୍ତେ ଗୋଟାଏ ସୁଯୋଗ ପାଇଗଲୁ ଛେଳି ଭିତରେ ଥିବା ବିଭିନ୍ନ ଅଙ୍ଗ ପ୍ରତ୍ୟଙ୍ଗକୁ ଦେଖିବା ପାଇଁ । ବହିଚିତ୍ର ସହିତ ମିଳାଇ ଦେଖି । ହୃତ୍‌ପିଣ୍ଡ ଭିତରେ ଥିବା ବିଭିନ୍ନ କୋଠରୀ, ଶ୍ୱାସନଳୀ ଫୁସ ଫୁସ୍‌ର ଭିତରେ ଅଂଶ ଇତ୍ୟାଦି ଦେଖିଲେ ସେସବୁ ଭିତରେ କେମିତି କାମ ହେଉଥିବ ସେ ବିଷୟରେ ଠିକଏ ଅଧିକ ଧାରଣା କରିହୁଏ । ଏହିଭଳି ଆଠଦଶଥର କରି ଦିଆଗଲା—ଗୋଟାଏ କାମ ତୁଟିଗଲା ।

ଡାକ୍ତରୀ ଶାସ୍ତ୍ର ଏତେ ଚମତ୍କାର ବୋଲି ମୋର ଆଗରୁ ଧାରଣା ନଥିଲା । ଥରେ ସେହି ଶାସ୍ତ୍ରର ଭାଷା ବୁଝିଗଲେ ମନେ ହେବ ଯେତେ

ଯେପରିକ ଉପନ୍ୟାସ ପଢ଼ୁଛି । (Write's Physiology) (ରାଇଟ୍‌ଙ୍କ ଲେଖା ଶରୀର ତତ୍ତ୍ୱ) ପଢ଼ୁଥାଏ—ମନେ ହେଉଥାଏ ପ୍ରକୃତିରେ ଗୋଟାଏ ନୂତନ ରାଜ୍ୟରେ ବୁଲୁଛି । ହୃତ୍‌ପିଣ୍ଡ କେମିତି କାମ କରୁଛି, କେଉଁ ପରିସ୍ଥିତିରେ ଅଧିକ ପରିଶ୍ରମ କରି ଶରୀରର ଭିନ୍ନ ଭିନ୍ନ ଅଂଶକୁ ଅଧିକ ରକ୍ତ ଯୋଗାଉଛି, ହଠାତ୍ ତା'ଉପରେ ଚାପ ପଡ଼ିଗଲେ ଅଙ୍ଗଟି କିଭଳି ଅସୁବିଧାରେ ପଡ଼ଯାଉଛି ଓ ସମୟେ ସମୟେ ବିପଦଗ୍ରସ୍ତ ହୋଇ ଯାଉଛି ସେ ବିଷୟ ଜାଣିଲେ ପ୍ରକୃତିର ବାହାଦୁରୀଟା ଯେ କୌଣସି ଲୋକକୁ ବିସ୍ମିତ କରିଦେବ । ଖଣ୍ଡିଏ ଫିଜିଓଲଜି ଖଣ୍ଡେ ଅପ୍ଲାଏଡ଼ ଫିଜିଓଲଜି, ଖଣ୍ଡେ ଆନାଟମୀ ଓ ଖଣ୍ଡେ ପାଥୋଲଜୀ ବହି ବର୍ଷକ ଭିତରେ ପଢ଼ିଦେଲାରୁ ଡାକ୍ତରୀ ପାଠ ପଢ଼ି ବୁଝିପାରିବି ବୋଲି ମୋର ସାହସ ହୋଇଗଲା 'ହୋମ୍ ଆଣ୍ଡ କଲେଜ ଡ଼କ୍ଟର ବହିରୁ ।'' ସେଇଟିକୁ ଲେଖିଛନ୍ତି ସତୀଶ ଚନ୍ଦ୍ର ଦାସଗୁପ୍ତ । ଏହି ବହିର ଗୋଟାଏ ଇତିହାସ ରହିଛି । ଗାନ୍ଧିଜୀ ଯେତେବେଳେ ବିଲତରେ ଥିଲେ ମେ ମୁର୍‌ସ୍ ଫାମିଲି ମେଡ଼ିସିନ ବହିଟି ପଢ଼ିଥିଲେ । ସେହିଟି ଅତି ସରଳ ଭାଷାରେ ଲେଖାଯାଇ ଥିବାରୁ ସମସ୍ତେ ବୁଝିପାରୁଥିଲେ । ସେ ଖଣ୍ଡିକ ଯିଏ ପଢ଼ୁଥିଲେ ସେ ନିଜ ଦେହ ବିଷୟରେ ଅନେକ କଥା ଜାଣିପାଉଥିବାରୁ ଦେହର ଯତ୍ନ ନେବା ସଙ୍ଗେ ସଙ୍ଗେ ଡ଼ାକ୍ତରଙ୍କ ସହିତ ଠିକଭାବରେ ସହଯୋଗ କରିପାରୁଥିଲେ ଯେତେବେଳେ ବେମାର ପଡ଼ୁଥିଲେ । ବହୁଦିନୁ ତାଙ୍କର ଇଚ୍ଛାଥିଲା ସେମିତିକା ଖଣ୍ଡେ ବହି ଭାରତରେ ଲେଖାଯାଆନ୍ତା କି ! ଭାରତର ଚାଲି-ଚଳଣି ଖାଦ୍ୟ ଓ ଆବୃର ବିଗୁରକୁ ଆଖିରେ ରଖି ଅନେକ ଉଦାହରଣ ଦିଆଯାଇପାରେ । ତା'ସହିତ ଯଦି ଶସ୍ତାରେ ମିଳୁଥିବା ଅନେକ ଫଳମୂଳ ଚେରକୁ କିଭଳି ଔଷଧ ରୂପେ ବ୍ୟବହାର କରାଯାଇପାରେ ତାହାର ସୂଚନା ମଧ୍ୟ ଦିଆଯାଇ ପାରନ୍ତା ଭଲ ହୁଅନ୍ତା । ସେ କେତେଜଣ ପ୍ରସିଦ୍ଧ ଡାକ୍ତରଙ୍କୁ ଅନୁରୋଧ କଲେ । ଇଂରାଜୀରେ ବହିଟି ଲେଖାଯାଉବୋଲି ମଧ୍ୟ ସେ କହିଲେ । କିନ୍ତୁ ଡାକ୍ତରୀ ପାଠକୁ ସାଧାରଣ ଲୋକଙ୍କ ଭାଷାରେ ବୁଝାଇବାର କୌଶଳ ସେମାନଙ୍କୁ ଜଣା ନ ଥିଲା । ତା'ସାଙ୍ଗକୁ ସେମାନେ ବିଗ୍ଭରିଲେ—ଏହି ପାଠକୁ ସାଧାରଣ ଶିକ୍ଷିତ ଲୋକ ମଧ୍ୟ ବୁଝିପାରିବେ ନାହିଁ । ଶେଷରେ ସେ ସତୀଶ ବାବୁଙ୍କୁ ନିଜ ମନକଥା କହିଲେ । ଦାସଗୁପ୍ତ ଜଣେ କେମିଷ୍ଟ୍ରୀ ଶାସ୍ତ୍ରବିତ୍ । ସେ ଡାକ୍ତରୀ ବିଦ୍ୟା ଜାଣନ୍ତି ନାହିଁ । ପି: ସି:

ରାୟଙ୍କ 'ବେଙ୍ଗଲ କେମିକାଲ୍' ସଂସ୍ଥାର ଦାସଗୁପ୍ତ ଜଣେ ସ୍ରଷ୍ଟା ବୋଲି ସମସ୍ତେ ଜାଣିଥାଆନ୍ତି । କିନ୍ତୁ ଗାନ୍ଧୀ କହିଲେ ଯେ ସେ ଯଦି ନ ଲେଖିବେ ଆଉ କେହି ଲେଖିପାରିବେ ନାହିଁ । ସତୀଶ ବାବୁ ରାଜି ହେଲେ । ସେ ଡାକ୍ତରୀ ବହିଯାକ ପଢ଼ିଦେଲେ । ଡାକ୍ତରଖାନାକୁ ଯାଇ କେତେ ହଜାର ରୋଗୀଙ୍କ ରୋଗ କାଡ଼ ଦେଖିଲେ । ହଜାର ହଜାର ପ୍ରେସ୍କ୍ରିପ୍ସନ ଦେଖି ଧାରଣା କଲେ କେଉଁ ରୋଗ ପାଇଁ କି ଅବସ୍ଥାରେ କି କି ଔଷଧ ସବୁ ଦିଆଯାଉଛି । ସବୁ ପ୍ରକାରର ପ୍ରାଥମିକ ଆୟୋଜନ ଶେଷ କରି ବହିଟିକୁ ଲେଖିଦେଲେ । ପାଣ୍ଡୁଲିପିଟିକୁ ନେଇ ଗାନ୍ଧିଜୀଙ୍କ ହାତରେ ଦେଇ କହିଲେ—ଆପଣ ଏଇଟିକୁ ପଢ଼ି ନ ଦେଲେ ଛପାଯିବ ନାହିଁ । ଅତି ଆଗ୍ରହରେ ବାପୁଜୀ କହିଲେ ଯଥାଶୀଘ୍ର ସମ୍ଭବ ପଢ଼ିଦେବେ—ଏଇଥିଲା ତାଙ୍କ ଉତ୍ତର । ପୂରା ବର୍ଷେ ଗୃଲିଗଲା । ସବୁକାମ ଭିତରେ ଏଇଟିକୁ ପଢ଼ିବାକୁ ସେ ସମୟ ପାଉଛନ୍ତି ବା କେଉଁଠୁ ? ଶେଷରେ ଗୋଟିଏ ମୁଖବନ୍ଧରେ ଲେଖିଦେଲେ—"ଏଇଟିକୁ ପଢ଼ିବାକୁ ସମୟ ପାଇଲି ନାହିଁ । ପାଇଥିଲେ ଏହାକୁ ଠିକଏ ଶ୍ରେଷ୍ଠ କରିଦେଇ ଥାଆନ୍ତି । ବହିଟି ବଡ଼ ହୋଇଗଲା । ଯାହା ହେଉ ପଛକେ ଏତେ ଯତ୍ନରେ ଏତେ ପରିଶ୍ରମ କରି ଶ୍ରଦ୍ଧାର ସହିତ ସେ ଯେଉଁଟିକୁ ଲେଖିଛନ୍ତି ତାହା ପାଠକମାନଙ୍କ ପାଖରେ ପହଞ୍ଚିବା ନିତାନ୍ତ ଦରକାର, (Love's labour must not be lost) ଇଂରେଜୀ ଜାଣିଥିବା ପ୍ରତ୍ୟେକ କର୍ମୀ ଏହି ବହିଟିକୁ ନିଶ୍ଚୟ ପଢ଼ିବା ଉଚିତ ।" ଶେଷ ବାକ୍ୟଟିକୁ ଏଇଥିପାଇଁ ଲେଖିଲେ ଯେ କର୍ମୀମାନେ ଯେତେବେଳେ ଗାଁ ଗହଳରେ କାମ କରିବେ, ଲୋକଙ୍କ ପାଖରେ ରୋଗ ବଇରାଗ ବେଳେ ଠିଆ ହୋଇଗଲେ ସେମାନଙ୍କ ଆଶୀର୍ବାଦ ଲାଭ କରି ପାରିବେ । ସତୀଶ ବାବୁ ଜାଣିଥିଲେ ଏଇଟିକୁ ଯେଉଁମାନେ ପଢ଼ିବେ ସେମାନେ ଦେହ ବିଷୟରେ କିଛି ଜାଣିନାହାନ୍ତି । ସେ ଗୋଟିଏ ଭଲ ଉପାୟ ପାଞ୍ଚିଲେ । ଗୋଟିଏ ଅଙ୍ଗର ଗଠନ (anatomy) ବିଷୟରେ ପ୍ରଥମେ ଲେଖାଗଲା । ତାହାପରେ ବୁଝାଇ ଦିଆଗଲା ସେଇଟିର କାମ କିଅଣ ଓ ତାକୁ ଯେଉଁ ଉଦ୍ଦେଶ୍ୟରେ ଗଢ଼ାଯାଇଛି ସେହି ଉଦ୍ଦେଶ୍ୟ ସାଧନ ପାଇଁ ସେଇଟି କିଭଳି କାମ କରୁଛି । ତାହାର ଯତ୍ନ କିଭଳି ନିଆଯିବ, ଯତ୍ନର ଅଭାବରୁ ବା ଅନ୍ୟ କୌଣସି କାରଣରୁ ସେହି ଅଙ୍ଗଟି ରୋଗଗ୍ରସ୍ତ ବା ଦୁର୍ବଳ ହୋଇଗଲେ କିଭଳି ପ୍ରତିକାର କରାଯିବ—ତାହାର ସୂଚନା ମଧ୍ୟ

ରହିଲା । ରୋଗଗୁଡ଼ିକର ବର୍ଣ୍ଣନା ଖୁବ୍ ସରଳ ଭାଷାରେ ଲେଖାଯାଇଥାଏ । ସେ ରୋଗ ପାଇଁ କଅଣ କରାଯିବ ତାହାର ସୂଚନା ଥାଏ । ଡାକ୍ତରୀ ଔଷଧ ସାଙ୍ଗକୁ ଆୟୁର୍ବେଦୀୟ ବା ଦେଶୀ ଔଷଧ କଥା ଥାଏ । ଗୋଟିଏ ଅଧ୍ୟାୟରେ ବର୍ଣ୍ଣନା ଥାଏ ଶସ୍ତାରେ କେମିତି କେତେକ ଦ୍ରବ୍ୟ ମିଳିବ, ସେଗୁଡ଼ିକୁ କେମିତି ବ୍ୟବହାର କରିବ । ସେହି ଅଧ୍ୟାୟର ନାମ ଥାଏ ଶସ୍ତା ପ୍ରତିକାର (Cheap Remedies) । ଡାକ୍ତରୀ ଔଷଧ ଯେଉଁମାନେ ତିଆରି କରୁଛନ୍ତି ସେମାନେ କିଭଳି ଅତ୍ୟଧିକ ମୂଲ୍ୟ ଧାର୍ଯ୍ୟ କରି ଦେଉଛନ୍ତି ତାହାର ବର୍ଣ୍ଣନା ସେ ଭଲ ଭାବରେ ସେ ବହିରେ କରିଛନ୍ତି । ଅଧ ଟଙ୍କାର କଞ୍ଚାମାଲ ବ୍ୟବହାର କରି ଯେଉଁ ବଟିକାକୁ କେବଳ ମେସିନ ସାହାଯ୍ୟରେ ତିଆରି କରି ଦେଉଛନ୍ତି ତାକୁ କେମିତି ଅଶୀ ଟଙ୍କାରେ ବିକୁଛନ୍ତି ତାହାର କେତୋଟି ଉଦାହରଣ ସେ ଦେଇଛନ୍ତି । ଶସ୍ତା ଔଷଧ ବଟିକା ସେ ତିଆରି କଲେ ବା କରାଇଲେ । ଜୁଆଣୀ, ଅଁଳା, ହରିଡ଼ା, ସୋଡ଼ାବାଇକାର୍ବ ଆଦିର ଗ୍ରେଷ୍ଠ ଗ୍ରେଷ୍ଠ ବଟିକାରୁ କେଉଁ ରୋଗରେ କେତୋଟି ବ୍ୟବହାର କରିବ ତାହାର ନିର୍ଦ୍ଦେଶ ସେଥିରେ ଥିଲା । ବହିଟିକୁ ମୁଁ ବହୁବାର ପଢ଼ିଲି । ଖୁବ ଉପକୃତ ହେଲି ।

ଡାକ୍ତରୀ ବହିସବୁ ପଢ଼ିଲା ବେଳେ ଠାକୁର ବ୍ରଜନାଥ ମିଶ୍ର ଗୋଟିଏ କଥା ଉପଦେଶ ଛଳରେ କହିଲେ । ଆୟୁର୍ବେଦ ଚିକିତ୍ସା ପ୍ରଣାଳୀ ଭାରତରେ କେତେ ହଜାର ବର୍ଷ ଧରି ପ୍ରଚଳିତ । ଚରକ, ସୁଶ୍ରୁତ, ବାଗଭଟ୍ଟଙ୍କ ପୁସ୍ତକମାନ ଅତି ଉଚ୍ଚକୋଟୀର । ସେ ସବୁଥିରେ ବିଜ୍ଞାନ ସମ୍ମତ ଚିକିତ୍ସାର ବର୍ଣ୍ଣନା ରହିଛି । ଆୟୁର୍ବେଦ ଔଷଧ ବହୁ ଅସାଧ୍ୟ ରୋଗ ଭଲ କରୁଛି । ସେହିସବୁ ଔଷଧକୁ ଭିତ୍ତି କରି, ସେଥିରେ ଥିବା ଦ୍ରବ୍ୟଗୁଡ଼ିକୁ ଅଧ୍ୟୟନ କରି ବହୁ ସଂଖ୍ୟକ ଡାକ୍ତରୀ ଔଷଧ ତିଆରି ହେଉଛି । ଗାଁ ଗହଳରେ ଯେଉଁ ଚେରମୂଳି ସବୁ ଅଛି ସେଗୁଡ଼ିକ ଅନେକ ରୋଗରେ ଅତିଫଳପ୍ରଦ ଔଷଧ ଭାବରେ ବ୍ୟବହୃତ ହେଉଛି । ଯେଉଁମାନେ ଗାଁ ଗହଳରେ ଲୋକଙ୍କ ଭିତରେ କାମ କରିବେ ସେମାନେ ସବୁ ରୋଗର ଚିକିତ୍ସା ପାଇଁ ଡାକ୍ତରୀ ଔଷଧ ପାଇବେ ନାହିଁ । ଚେରମୂଳି, ପତ୍ର, ଘର ତିଆରି ବା କବିରାଜଙ୍କ ତିଆରି ଔଷଧ ସମ୍ପର୍କରେ ପ୍ରତ୍ୟେକ

କର୍ମୀଙ୍କର କିଛି କିଛି ଧାରଣା ରହିବା ନିତାନ୍ତ ଆବଶ୍ୟକ । 'ଡାକ୍ତରୀ ବହି ପଢ଼ିବା ସଙ୍ଗେ ସଙ୍ଗେ ଆୟୁର୍ବେଦ ଶାସ୍ତ୍ର ପଢ଼'—ଏଇଥିଲା ତାଙ୍କର ଉପଦେଶ । ଚରକ ଶାସ୍ତ୍ର, ସୁଶ୍ରୁତ ସଂହିତା ଓ ବାଗ୍‌ଭଟ୍ଟ ଅଣାଗଲା । ଠାକୁର ମିଶ୍ର କିଛି ଦିନ ପଢ଼ାଇଲା ପରେ କହିଲେ—ପଣ୍ଡିତ ଘନଶ୍ୟାମ ପାଣିଗ୍ରାହୀ ଭଲ ଭାବରେ ପଢ଼ାଇଦେବେ । ଏହି ପଣ୍ଡିତ ଘନଶ୍ୟାମ ପାଣିଗ୍ରାହୀଙ୍କ ଘର ସମ୍ବଲପୁର ଜିଲ୍ଲାରେ । ସେ ଜଣେ ଅତି ନିଷ୍ଠାପର ସାହସୀ ସ୍ୱାଧୀନତା ସଂଗ୍ରାମୀ ଓ ତା' ସଙ୍ଗେ ସଙ୍ଗେ ବିଖ୍ୟାତ ସମାଜ ସଂସ୍କାରକ । ଭଲ ଭାବରେ ଓ ଅତି ଶ୍ରଦ୍ଧାର ସହିତ ତାଙ୍କ ପାଖରେ ପଢ଼ିଲି । ସେ ବରାବର କୁହନ୍ତି—ଯେଉଁ ଚିକିତ୍ସକ ଚରକ ଭଲ ଭାବରେ ପଢ଼ିନାହିଁ, ସୁଶ୍ରୁତ ବିଷୟରେ ସଠିକ ଧାରଣା କରିନାହିଁ ଓ ବାଗ୍‌ଭଟ୍ଟକୁ ମୁଖସ୍ଥ କରିନାହିଁ ସେ ଜାଣି ସାକ୍ଷାତ ଯମ । ଭଲ ଭାବରେ ତିନିଗୋଟି ଯାକକୁ ପଢ଼ବୋଲି ବାରମ୍ବାର ଚେତାଇ ଦେବା ଅବସରରେ ନିଜର ଅଭିଜ୍ଞତାରୁ ବହୁତ କିଛି କୁହନ୍ତି ।

୧୯୪୨ ସେପ୍‌ଟେମ୍ବରରୁ ୧୯୪୪ ଅଗଷ୍ଟ ପର୍ଯ୍ୟନ୍ତ ପ୍ରତିଦିନ କେତେଘଣ୍ଟା ଲେଖାଁ ଡାକ୍ତରୀ ଓ କବିରାଜୀ ବହି ପଢ଼ିଛି । ବେଶୀ ସମୟ ଅବଶ୍ୟ ଯାଏ ଡାକ୍ତରୀ ବହି ପଢ଼ିବାରେ । ଯେତେବେଳେ ଜେଲରୁ ଖଲାସ ହୋଇ ଆସିଲି ସେତେବେଳେ ଗୋଟାଏ ଆତ୍ମପ୍ରତ୍ୟୟ ହୋଇଯାଇଥାଏ ଯେ ବାହାରକୁ ଗଲେ ଡାକ୍ତରୀ ବହି ସବୁ ପଢ଼ିବି—ବୁଝିପାରିବି । ଯେଉଁଟା ବୁଝି ନ ପାରିବି ଡାକ୍ତରଙ୍କ ସାହାଯ୍ୟ ନେବି । ନେଲାପରେ ଯଦି ବୁଝି ନ ପାରିବି ଆଉ ଅଧିକ କସରତ କରିବି ନାହିଁ । ଗୋଟିଏ କଥା ମନେ ପଡ଼ିଗଲେ ଆଜି ମଧ୍ୟ ହସମାଡ଼େ । ଜେଲମୁକ୍ତ ହେବାକୁ ପନ୍ଦର ଦିନ ଥାଏ । ଦିନେ କଅଣ କଲିନା—ଅତି ଯତ୍ନରେ ଲେଖିଥିବା ପ୍ରାୟ ତିନିଶହ ବଡ଼ ବଡ଼ ବାଉଣ୍ଡ ପୃଷ୍ଠାରେ ଲେଖା କାଗଜକୁ ଧରି ନିଆଁ ଲଗାଇ ଦେବାକୁ ଗଲି । ଏମିତି କାହିଁକି କରୁଛି ବୋଲି ପଚାରିବାରୁ ଉତ୍ତର ଦେଲି—ଡାକ୍ତରୀ କବିରାଜୀ ବହିସବୁ ପଢ଼ିଲାବେଳେ ରୋଗର ଚିକିତ୍ସା ବିଷୟରେ କଥା ପଡ଼େ । କେଉଁ ରୋଗର କେଉଁ ବ୍ୟବସ୍ଥା ବେଳେ ଡାକ୍ତରମାନେ କିଭଳି ପ୍ରେସ୍‌କ୍ରିପ୍‌ସନ ଲେଖନ୍ତି ପଚାରେ ଓ ସେଗୁଡ଼ିକ ଟିପି ପକାଏ । ଭାବିଥାଏ ବାହାରକୁ ଯାଇ ଗାଁ ଗହଳରେ କାମ କଲାବେଳେ ଏହି ଗୁଡ଼ିକ ମୋତେ ବହୁତ କିଛି ସାହାଯ୍ୟ କରିବ

ଲୋକଙ୍କ ରୋଗ ଭଲ କରିବା ଦିଗରେ । ଯେତେବେଳେ ବହୁତ କିଛି ପଢ଼ିଗଲି ସେତେବେଳେ ଏହି ସ୍ଥିର ସିଦ୍ଧାନ୍ତରେ ପହଞ୍ଚିଲି ମନୁଷ୍ୟ ଶରୀର ଭିତରଟି ଅତି ଜଟିଳ ଓ ସୂକ୍ଷ୍ମ । ତାହା ବିଷୟରେ ଧାରଣା କରିବା ଶକ୍ତିର ବାହାରର କଥା । କେଉଁ ଅଙ୍ଗରେ ସାମାନ୍ୟ ପରିବର୍ତ୍ତନ ହୋଇଗଲେ କିଭଳି ଅବସ୍ଥା ହୋଇଯାଏ ତାହା ଡାକ୍ତର ମାନେ ମଧ୍ୟ ସଠିକ ଭାବରେ ଜାଣିପାରୁ ନାହାନ୍ତି । ଔଷଧ ଯେତିକି ଲାଭ କରେ ସେତିକି କ୍ଷତି ମଧ୍ୟ କରିପାରେ । କାହା ଦେହରେ କେଉଁ ଔଷଧ ଯାଏ ବା ନଯାଏ ଜାଣିବା କଷ୍ଟ । ଏ ଦିଗରେ ନିଷ୍ପତ୍ତି ନେବା ନିର୍ଭର କରୁଛି ଅତି ସୂକ୍ଷ୍ମ ବସ୍ତୁର ଉପରେ । ତେଣୁ କାହାକୁ ଔଷଧ ଦେବନାହିଁ ବା ଖାଅ ବୋଲି ପରାମର୍ଶ ଦେଇ ପାରିବି ନାହିଁ । ସେଭଳି କରିବା ଉଚିତ ନୁହେଁ । ଯଦି ଏହି ସିଦ୍ଧାନ୍ତରେ ପହଞ୍ଚିଲି ତେବେ ଏହିସବୁ ପ୍ରେସ୍କ୍ରିପ୍‌ସନର ଆବଶ୍ୟକତା ଆଉ କଅଣ ଅଛି ? ତେଣୁ ସେଗୁଡ଼ିକର ଅଗ୍ନି ସଂଯୋଗ କରି ଦେଉଛି । ଜେଲରୁ ଖଲାସ ହେଲି ବୟାଳିଶ ବର୍ଷ ପୂର୍ବେ । ଏଥିଭିତରେ ବହୁ ସଂଖ୍ୟକ ଡାକ୍ତରୀ ବହି ପଢ଼ିଲିଣି, ବହୁ ପ୍ରସିଦ୍ଧ ଚିକିତ୍ସକଙ୍କ ସମ୍ପର୍କରେ ଆସି ଆଲୋଚନା କଲିଣି—କିନ୍ତୁ ଦିନେ ହେଲେ କାହାରିକୁ କହି ନାହିଁ ଏହି ଔଷଧଟି ଖାଅ । ମୁଁ ବେମାର ହେଲେ ଡାକ୍ତରଙ୍କ ପରାମର୍ଶ ନିଆଯାଏ । ମୋର ସାଙ୍ଗରେ ଯେଉଁମାନେ ଜେଲରେ 'ଡାକ୍ତରୀ ଶିକ୍ଷା' ଲାଭ କରୁଥିଲେ ଓ ଯେଉଁମାନଙ୍କୁ ମୁଁ ମଧ୍ୟ ପଢ଼ାଇ ଦେଉଥିଲି ବୋଲି କହିଲେ ଚଳେ ସେମାନେ ବାହାରକୁ ଆସି ରାଜନୀତି କରିବା ଓ ସାଧାରଣ କାମ କରିବା ସଙ୍ଗେ ସଙ୍ଗେ ରୋଗ ଚିକିତ୍ସାକୁ ବୃତ୍ତି ବୋଲି ଧରିଲେ ଓ ବହୁତ ପଇସା ରୋଜଗାର କଲେ ଓ ଏବେ ମଧ୍ୟ କରୁଛନ୍ତି । ମୁଁ କିନ୍ତୁ ସେଥିରୁ ବହୁ ଦୂରରେ ନିଜକୁ ରଖିଲି । ତେବେ ଏତିକି କରିଛି ଶରୀର ବିଷୟରେ ରୋଗ ବିଷୟରେ ବହୁ ପ୍ରବନ୍ଧ ଲେଖିଛି । ସେଗୁଡ଼ିକ ପ୍ରକାଶିତ ହୋଇ ସାରିଛି ଭିନ୍ନ ଭିନ୍ନ ପତ୍ର ପତ୍ରିକା ଓ ସମ୍ବାଦ ପତ୍ରରେ । ଜ୍ଞାନମଣ୍ଡଳର ପ୍ରତ୍ୟେକ ଖଣ୍ଡରେ ବର୍ଣ୍ଣମାଳା କ୍ରମେ ଯେତେବେଳେ କୌଣସି ଅଙ୍ଗ ପ୍ରତ୍ୟଙ୍ଗ ବା ରୋଗ ବିଷୟ ଆସିଯାଇଛି ସେଗୁଡ଼ିକୁ ଅତି ଯତ୍ନର ସହିତ ଲେଖାଯାଇଛି । ଡାକ୍ତରମାନେ ସେଗୁଡ଼ିକୁ ପଢ଼ି କହିଛନ୍ତି —ଗୋଟିଏ ହେଲେ ତଥ୍ୟଗତ ପ୍ରମାଦ ନାହିଁ । ସମୟେ ସମୟେ ପ୍ରବନ୍ଧ ଗୁଡ଼ିକ ଅତି ଦୀର୍ଘ ହେଲେ ମଧ୍ୟ ପାଠକମାନେ ପଢ଼ିଛନ୍ତି ଓ ବୁଝିଛନ୍ତି । ହୃତ୍‌ପିଣ୍ଡ ଓ ତାହାର କାର୍ଯ୍ୟକଳାପ ଉପରେ ୨୦ ହଜାର ଶବ୍ଦର ଯେଉଁ

ପ୍ରବନ୍ଧଟି ଜ୍ଞାନମଣ୍ଡଳରେ ରହିଛି ତାକୁ ପଢ଼ି ଅନେକ ଲୋକ କହିଛନ୍ତି—ଏହାକୁ ଗୋଟିଏ ସ୍ୱତନ୍ତ୍ର ବହି କରି ଦିଆଯାଉ । ଦିନେ ମନହେଲା ମନୁଷ୍ୟ ଦେହ ବିଷୟରେ ଷୋହଳଟି ବହି ଗଳ୍ପ ଛଳରେ ପିଲାଙ୍କ ପାଇଁ ଲେଖିଦେବି ! ଦଶଟି ପ୍ରକାଶ ପାଇଗଲାଣି । ମୋର ସନ୍ତୋଷ ଯେ ରକ୍ତ ସଞ୍ଚଳନା, ଜୀବକୋଷ, ହଜମ କ୍ରିୟା, ଯକୃତ, ମାଂସପେଶୀ, ଅସ୍ଥି ବିଭାଗ, ମସ୍ତିଷ୍କ ଉପରେ ଲେଖା ଯାଇଥିବା ଗଳ୍ପ ଗୁଡ଼ିକରେ ସବୁ ତଥ୍ୟ ରହିବା ସଙ୍ଗେ ସବୁ ଗୁଡ଼ିକ ମୁଖପାଠ୍ୟ ହୋଇପାରିଛି । ସେଥିରୁ କେତୋଟିକୁ କଟକ ଟେଲିଭିଜନ କେନ୍ଦ୍ର ଭିଡ଼ିଓ କରି ଦେଇଛନ୍ତି ଓ ଦିଲ୍ଲୀ ଦୂରଦର୍ଶନ କେନ୍ଦ୍ରର ଓଡ଼ିଆ କାର୍ଯ୍ୟକ୍ରମରେ ଦେଖାଇଛନ୍ତି । ଓଡ଼ିଶାର ଲକ୍ଷ ଲକ୍ଷ ପିଲା ଓ ବୟସ୍କ ଲୋକେ ସେଗୁଡ଼ିକୁ ଦେଖି ଉପକୃତ ହୋଇଛନ୍ତି ବୋଲି ମୋତେ କେତେଜଣ ଜଣାଇଛନ୍ତି ।

ଆମେ ସବୁ ସ୍ୱାଧୀନତା ସଂଗ୍ରାମ ଭିତରୁ ଜନ୍ମଲାଭ କରିଛୁ । ତେଣୁ ରାଜନୀତି ଜ୍ଞାନ ଉପରେ ସବୁବେଳେ ଗୁରୁତ୍ୱ ଦେଉ । ପ୍ରତି ସପ୍ତାହରେ ଦୁଇ ତିନିଥର ସଭା ହୁଏ । ପ୍ରାୟ ସମସ୍ତେ ଯୋଗ ଦେଉ । ଗୋଟାଏ ଗୋଟାଏ ବିଷୟରେ ଦୁଇ ତିନିଘଣ୍ଟା ଆଲୋଚନା ଚାଲେ—ଭାଷଣ ଦିଆହୁଏ । ବେଳେ ବେଳେ ଖୁବ ଗରମା ଗରମ ଯୁକ୍ତିତର୍କ ହୁଏ । ବାହାରେ ଯେଉଁ ସଂଗ୍ରାମୀମାନେ ହିଂସା ଆଚରଣ କରୁଛନ୍ତି ବା ହିଂସାକୁ ପ୍ରଶ୍ରୟ ଦେଉଛନ୍ତି ସେମାନେ ଗାନ୍ଧୀଙ୍କ ନିର୍ଦ୍ଦେଶର ବିରୋଧ କରୁଛନ୍ତି ବୋଲି ଯେତେବେଳେ କୁହାଯାଏ ତାହାର ତୀବ୍ର ବିରୋଧ ହୁଏ । ପରାଧୀନତାରୁ ମୁକ୍ତିଲାଭ ପାଇଁ ଯେଉଁମାନେ ସଂଗ୍ରାମ କରୁଛନ୍ତି ସେମାନେ ଯଦି ହିଂସା ଆଚରଣ କଲେ ସେଥିରେ ବିଚଳିତ ହେବାର କିଛି ନାହିଁ । ସେମାନେ ନିଷ୍ଠାପୂ ବୀର ଓ ଦେଶପ୍ରେମୀ । ଇଂରେଜ ସରକାର ଯେଉଁ ଉତ୍କଟ ତଥା ବର୍ବର ଲୀଳା ଚଳାଇଛି ,ସେଥିରେ କିଏ କେଉଁଠି ଟିକିଏ ହିଂସା ଆଚରଣ କରିଦେଲା ବୋଲି ତାକୁ ନିନ୍ଦା କରିବା ଅନ୍ୟାୟ ଏଣ୍ହି ହେଲା ଗୋଟିଏ ଯୁକ୍ତି । ଯୁଦ୍ଧର ଗତି ଯେଉଁ ଆଡ଼କୁ ଯାଉଛି ତାହାର ପରିଣତି କ'ଣ ହେବ ସେ ବିଷୟରେ ଦୀର୍ଘ ସମୟର ଆଲୋଚନାରେ ଅନେକ ବକ୍ତା ନିଜ ନିଜର ଦୃଷ୍ଟିକୋଣରୁ କୁହନ୍ତି । ଭାରତର କମ୍ୟୁନିଷ୍ଟ ମାନେ ବ୍ରିଟିଶ ସରକାରକୁ କିଭଳି ଯୁଦ୍ଧ ଉଦ୍ୟମରେ ସାହାଯ୍ୟ କରୁଛନ୍ତି —ସେ ପ୍ରଶ୍ନ ଉଠିଲାବେଳେ ଅନେକ ଲୋକଙ୍କର ରକ୍ତ ଗରମ

ହୋଇଉଠେ । ଯେଉଁମାନେ କମ୍ୟୁନିଷ୍ଟ, ବ୍ରିଟିଶ ସରକାରଙ୍କୁ ସାହାଯ୍ୟ କରୁଛନ୍ତି ସେମାନଙ୍କୁ କି ଉଦ୍ଦେଶ୍ୟରେ ଜେଲ ଭିତରେ ଆଣି ଆମ ମାନଙ୍କ ସହିତ ରଖାଯାଇଛି ସେ ସମ୍ପର୍କରେ ମଧ୍ୟ ଆଲୋଚନା ହୋଇଥାଏ । ଘରଭିତରେ ବା ଯୁଦ୍ଧ ସଂକ୍ରାନ୍ତରେ ଗୋଟାଏ ନୂଆ କିଛି ଘଟିଗଲେ ସେ ବିଷୟରେ ଆଲୋଚନା ପାଇଁ ସଭା ଡକାଯାଏ । ଏହିସବୁ ସଭାରେ କହିବାର ସୁଯୋଗ ମତେ ଅନେକ ସମୟରେ ମିଳିଛି । ଅର୍ଥନୀତି ରାଜନୀତି ଉପରେ ବହୁ ସଂଖ୍ୟକ ବହି ବନ୍ଦୀମାନଙ୍କ ପାଖରେ ଥାଏ । ଇଚ୍ଛା କଲେ ପଢ଼ିବାର ଅସୁବିଧା ନଥାଏ ।

ଆକସ୍ମିକ ଭାବରେ ଆଉ ଗୋଟିଏ ସୁଯୋଗ ମିଳିଗଲା । ବିନୋବା ମରହଟ୍ଟୀ ଭାଷାରେ ଗୋଟିଏ ଗୀତା ଲେଖିଥାଆନ୍ତି । ତାକୁ ନାମ ଦିଆ ଯାଇଥାଏ "ସମଶ୍ଳୋକୀ ଗୀତା" । ସଂସ୍କୃତ ଭାଷାରେ ଗୀତା ଯେଉଁ ଛନ୍ଦରେ ଲେଖାଯାଇଛି ତାହା ଅତି ଚମତ୍କାର । ସେହି ଛନ୍ଦରେ ତାକୁ ପଢ଼ିଲେ ମନ ଉପରେ ଗୋଟାଏ ସ୍ୱତନ୍ତ୍ର ପ୍ରକାରର ପ୍ରଭାବ ପଡ଼େ । କିନ୍ତୁ ଭଗବତ ଗୀତା ସଂସ୍କୃତରେ ଲେଖା ହୋଇଥିବାରୁ ସମସ୍ତଙ୍କ ପକ୍ଷରେ ବୁଝିବା ସହଜ ନୁହେଁ । ସଂସ୍କୃତ ପଢ଼ି ଗଲାଭଳି ଲାଗୁଥିବ—ଅଥଚ ମରହଟ୍ଟୀ ଭାଷା ହୋଇଥିବ, ଏହି ଥିଲା ସମଶ୍ଳୋକୀ ଗୀତାର ବିଶେଷତ୍ୱ । ଠିକ୍ ହେଲା ଓଡ଼ିଆ ଭାଷାରେ ସେମିତିକା ବହିଟିଏ ଲେଖା ହେବ । ଆଚାର୍ଯ୍ୟ ହରିହର, ବୈଷ୍ଣବଧର୍ମୀ ଭଗିରଥୀ ମହାପାତ୍ର, ବୈଷ୍ଣବ ଧର୍ମର ଜଣେ ଶ୍ରେଷ୍ଠ ଉପାସକ ଜଗନ୍ନାଥ ଦାସ ଶାସ୍ତ୍ର ପୁରାଣ ଭଲ ଭାବରେ ପଢ଼ିଥିବା ଲୋକନାଥ ମିଶ୍ର ଓ ଗୋପବନ୍ଧୁ ଚୌଧୁରୀ ମିଳିତ ଭାବରେ ଏହି ବହି ଲେଖିବେ ବୋଲି ସ୍ଥିର ହେଲା । ମୂଳନୀତି ସ୍ଥିର ହେଲା ଗୀତାର ଯେଉଁ ଗୁଡ଼ିକ 'ନିଜସ୍ୱ ଶବ୍ଦ', ସେଗୁଡ଼ିକ ସ୍ଥାନରେ ଆଉ ଗୋଟିଏ ଶବ୍ଦକୁ ବସାଇ ହେବ ନାହିଁ, ସେଗୁଡ଼ିକୁ ସେମିତି ରଖାଯିବ, ଯଥା 'ସ୍ଥିତ ପ୍ରଜ୍ଞ' । ଆହୁରି ଠିକ ହେଲା ଯେ ଉପନିଷଦ ଉପରେ ଗଭୀର ଆଲୋଚନା କରାଯିବ । ଉପନିଷଦ ଗୁଡ଼ିକ ଗାଈ ଓ ଶ୍ରୀକୃଷ୍ଣ ଗୋପାଳ ନନ୍ଦନ—ସେ ସବୁ ଉପନିଷଦର ସାର ସାର ତତ୍ତ୍ୱକୁ ଆଣି ଗୀତା ଭିତରେ ରଖି ଦେଇଛନ୍ତି ବୋଲି ସ୍ୱୀକୃତ ହୋଇଥିବାରୁ ଉପନିଷଦ ଉପରେ ଆଲୋଚନା ଅପରିହାର୍ଯ୍ୟ ହୋଇଉଠିଥାଏ । ପ୍ରତିଦିନ ଏହି ପାଞ୍ଚଜଣ ଘଣ୍ଟାଏ ଦି' ଘଣ୍ଟା ଏକାଠି ବସିବେ—ଦିନକୁ ଦୁଇଟି ଶ୍ଳୋକକୁ ଓଡ଼ିଆରେ ସମଶ୍ଳୋକୀ କରି

ଦିଆଯିବ । ଭଗିରଥୀ ମହାପାତ୍ର ଦୁଇଟି ଶ୍ଳୋକକୁ କିଭଳି ସମସ୍ୱରୀ କରାଯିବ ତାହାର ଗୋଟିଏ ନମୁନା ଆଣିଥିବେ । ତାହାର ଉପରେ ଆଲୋଚନା ହେବ । ଉପରେ ଯେଉଁ ମାନଙ୍କ କଥା କୁହାଗଲା ସେମାନେ ସମସ୍ତେ ଅତି ଉଚ୍ଚଶିକ୍ଷିତ—ସମସ୍ତେ ଏମ୍. ଏ. ପାଶ୍ କଲାବାଲା । କେବଳ ଆଗ୍ରୁଆଁ ହରିହର ନୁହନ୍ତି । କିନ୍ତୁ ଭାଗବତ ଗୀତା ଉପନିଷଦ ବେଦଶାସ୍ତ୍ର ପୁରାଣ ଉପରେ ତାଙ୍କର ଅଗାଧ ଜ୍ଞାନ । ସେ ଗୀତାର ଓଡ଼ିଆଟିକା କରିଛନ୍ତି-- ଉପନିଷଦର ଓଡ଼ିଆ ମଧ୍ୟ କରିଛନ୍ତି । ସେମାନେ ଆଲୋଚନା କଲାବେଳେ ମୁଁ ସେଠି ପ୍ରତିଦିନ ଯାଇ ବସେ । ଯେଉଁ କଥାଟା ଭଲ ଲାଗେ ଟିପି ନିଏ, ଶେଷରେ ଗୀତାର ଯେଉଁ ଅନୁବାଦ ସମସ୍ତଙ୍କ ଦ୍ୱାରା ଗୃହୀତ ହୁଏ ସେଇଟିକୁ ଟିପି ଆଣେ । ଆଜି ଭାବିଦେଲେ ମଧ୍ୟ ବିସ୍ମିତ ହେଉଛି କି ପ୍ରକାରର ଉଚ୍ଚକୋଟୀର ଆଲୋଚନା ହେଉଥିଲା । ପାଣ୍ଡିତ୍ୟ ଭରି ରହିଥିଲା ତା' ଭିତରେ । ସେ ସୁଯୋଗ ନ ମିଳିଥିଲେ ଜୀବନରେ ଗୋଟାଏ ଅଭାବ ରହି ଯାଇଥାଆନ୍ତା । ଦର୍ଶନ ବୁଝିବାକୁ ବି ସୁଯୋଗ ମିଳୁଥିଲା । ଦିନେ ଜଗନ୍ନାଥ ଦାସଙ୍କୁ ଆମେ କେତେଜଣ ଅନୁରୋଧ କଲୁ କେବଳ ଉପନିଷଦ ଉପରେ ଗୋଟିଏ କ୍ଲାସ ପ୍ରତିଦିନ କରିବା ପାଇଁ । ସେ ରାଜିହେଲେ ଓ କଲେ ମଧ୍ୟ ।

ଜେଲରୁ ବାହାରିଲେ ସମସ୍ୱରୀ ଗୀତାଟିକୁ ଛପାଇ ଦିଆଯିବ ବୋଲି ଠିକ୍ ହେଲା । ଭଗୁବାବୁଙ୍କ ପାଖରେ ଓ ମୋ ପାଖରେ ଦୁଇଟି ନକଲ ପୂର୍ଣ୍ଣ ଅବସ୍ଥାରେ ଥିଲା । ଭଗିରଥୀ ମହାପାତ୍ର କହିଲେ — ଗୋପବାବୁ ଓ ଆଗ୍ରୁଆଁଙ୍କ ସଙ୍ଗରେ ମୁଁ ବସି ପୁଣିଥରେ ମୂଳରୁ ଶେଷ ପର୍ଯ୍ୟନ୍ତ ଦେଖି ନଗଲେ ଛପା ହୋଇ ପାରିବ ନାହିଁ । ଗୋପବାବୁ କହିଲେ—-ଆମେ ପାଞ୍ଚଜଣଯାକ ନ ବସିଲେ ହେବ ନାହିଁ । ସମସ୍ତେ କାର୍ଯ୍ୟ ବ୍ୟସ୍ତ. କେହି ସେଥିରେ ମନ ଦେଲେ ନାହିଁ । ଏମିତି ଏମିତି ୧୯୫୫ ପର୍ଯ୍ୟନ୍ତ ଗଳିଗଲା । ସେହିବର୍ଷ ବନ୍ୟାରେ ମୋ ମାଟି କାନ୍ଥ ଥିବା ଗୃହଘର ଭାଙ୍ଗିଗଲା । କେତେ ଗୁଡ଼ିଏ କାଗଜ ପତ୍ର ଓଦା ହୋଇଗଲା । ଗୀତା ପାଣ୍ଡୁଲିପି ମଧ୍ୟ ଓଦା । ଭାରି ମନକଷ୍ଟ ହେଲା । ବହୁ କଷ୍ଟରେ ତାକୁ ସାଫି କଲି । ଛାପି ଦେବି ବୋଲି ସ୍ଥିର କରିନେଲି । କିଏ ଲେଖକ ବୋଲି ଛପା ହେବ । "ଲେଖକ ଓଡ଼ିଶାର ପାଞ୍ଚଜଣ ପଣ୍ଡିତ" ଏତିକି ଲେଖି ଛାପିଦେଲି । ଓଡ଼ିଆରେ ଲେଖା ଯାଇଥିବାରୁ ସମସ୍ତେ ପଢ଼ିଲେ । ଗୀତା ସହିତ ସମସ୍ୱର ଛନ୍ଦ ଥିବାରୁ ସେମାନଙ୍କୁ ଆହୁରି ଭଲ ଲାଗିଲା । ମୁଁ

ତାଙ୍କୁ ତ ମୁଖସ୍ଥ କରି ଦେଇଥିଲି । ସଂସ୍କୃତରେ ପଢ଼ି ଯେତିକି ବୁଝୁନଥିଲି ଓଡ଼ିଆରେ ଲେଖା ଥିବାରୁ ତା'ଠାରୁ ଅଧିକ ବୁଝିଲି । ଜେଲ ଭିତରେ ଦୁଇବର୍ଷର ଗୀତା ଉପନିଷଦ ପଢ଼ା ପରବର୍ତ୍ତୀ କାଳରେ – ବିଶେଷତଃ ଜ୍ଞାନମଣ୍ଡଳ ଲେଖିଲାବେଳେ ବହୁତ କିଛି ସାହାଯ୍ୟ କଲା । ସବୁ କଥାରେ ସେଥିରୁ ଟିକିଏ ଛୁଙ୍କ ଦେବା ପାଇଁ ମନ ହୁଏ । ଉପନିଷଦ ରବିନ୍ଦ୍ରନାଥଙ୍କ ଉପରେ କିଭଳି ପ୍ରଭାବ ପକାଇଛି ତାହା ଜଣା ପଡ଼ିଯାଏ ରବିନ୍ଦ୍ରଙ୍କ କବିତା ଗୁଡ଼ିକ ପଢ଼ିଲାବେଳେ । ତାଙ୍କ ପିତା ପିତାମହ ଉପନିଷଦକୁ ବଙ୍ଗଳାରେ ଲେଖି ଦେଇଥିଲେ ଓ ପିଲା ଦିନରୁ ତାଙ୍କୁ ପଢ଼ିବାର ସୁଯୋଗ ସେ ପାଇଥିଲେ—ତାହାଥିଲା ତାଙ୍କ ପାଇଁ ଗୋଟାଏ ଅମୂଲ୍ୟ ବୌଦ୍ଧିକ ବା ଜ୍ଞାନ ମୂଳଧନ ।

ବ୍ରହ୍ମପୁର ଜେଲରେ ତିନିଶ୍ରେଣୀ ବା ସ୍ତରର ବନ୍ଦୀ ଥିଲେ । ୧୯୨୧ର ଅସହଯୋଗ ଆନ୍ଦୋଳନ ବେଳେ ନିଆଁକୁ ଡେଇଁଥିବା ବନ୍ଦୀଙ୍କ ସଂଖ୍ୟା ପ୍ରାୟ ପଚିଶ । ୧୯୩୦ର ଲବଣ ସତ୍ୟାଗ୍ରହ ବେଳର ବନ୍ଦୀଙ୍କ ସଂଖ୍ୟା ପ୍ରାୟ ଦେଢ଼ଶହ ରୁ—ବାକିତକ ହେଲେ ଭାରତ ଛାଡ଼ ଆନ୍ଦୋଳନ ବେଳର । ଯେତେବେଳେ ଏତେ ସଂଖ୍ୟକ ବନ୍ଦୀ ଅଛନ୍ତି ସେତେବେଳେ ଗୋଟିଏ ସୁଯୋଗ ମିଳିଲା ଓଡ଼ିଶାରେ ସ୍ୱାଧୀନତା ସଂଗ୍ରାମ କିପରି ଆରମ୍ଭ ହୋଇଥିଲା ଓ ଚାଲିଥିଲା ତାହାର ପ୍ରତ୍ୟକ୍ଷ ଇତିହାସ ସଂଗ୍ରହ ପାଇଁ । ଏ ସୁଯୋଗ ବାହାରେ ଆଉ ମିଳିବ ନାହିଁ । ଦୀର୍ଘସୂତ୍ରରେ ସେମାନେ ନିଜ ଅନୁଭୂତି କହୁ କହୁ ନିଜର ଜୀବନୀ କହିଯିବେ । ହାତରେ ତ ଆସେମ୍ବ୍ଲି ପେପର ଥିଲା । ଜଣ ଜଣ କରି ଆରମ୍ଭ କଲି । ଘଣ୍ଟାଏ ଦି' ଘଣ୍ଟା ଜଣଙ୍କ ପାଖରେ ବସିଲେ ଅନେକ କଥା ଜାଣି ହୋଇଯାଏ । ଯେଉଁ କଥା ଅନ୍ୟମାନେ ଜାଣି ନଥିଲେ ସେମାନେ ସେ ସବୁ କହିଯାଆନ୍ତି । ଗୁଡ଼ିଏ ଶହଙ୍କ ଭିତରୁ ପ୍ରାୟ ତିନିଶହ ଜଣଙ୍କଠାରୁ ଏହିଭଳି ସଂଗ୍ରହ କରିଥିଲି । ସେଥିରୁ ଜଣାପଡ଼ିବ ଓଡ଼ିଶାର ସ୍ୱାଧୀନତା ସଂଗ୍ରାମ କିଭଳି ଆରମ୍ଭ ହେଲା ଓ ତାହା ପୂର୍ବରୁ କିଭଳି କ୍ଷେତ୍ର ପ୍ରସ୍ତୁତ ହୋଇଥିଲା । ସେଇତକ ସଂଗ୍ରହ କରିଥିଲି ବୋଲି ୧୯୭୨ରେ ଯେତେବେଳେ ଠିକ କଲି ଓଡ଼ିଶାର ସ୍ୱାଧୀନତା ସଂଗ୍ରାମର ଇତିହାସ ଲେଖିବା ପାଇଁ ସେତେବେଳେ Source Material ବା ମୂଳ ତଥ୍ୟର ଅଭାବ ପଡ଼ିଲା ନାହିଁ । ଭାରତର ସ୍ୱାଧୀନତା ପାଇଁ ସାଧାରଣ ଲୋକେ କିଭଳି ଅସୀମ ତ୍ୟାଗ କରିଛନ୍ତି ତାହା ସେତିକବେଳେ ଆହୁରି

ଭଲ ଭାବରେ ଜାଣିଲି । ସେହି ତଥ୍ୟ ସଂଗ୍ରହ ମୋତେ ଅନେକ କ୍ଷେତ୍ରରେ ସାହାଯ୍ୟ କଲା । ତାହାର ଗୋଟିଏ ଉଦାହରଣ ଦିଏ । ଓଡ଼ିଶାର ଜାଗପୁ କବି ବୀର କିଶୋରଙ୍କ ଜୀବନୀ ଲେଖିବି ବୋଲି ଠିକ୍ କଲି । ତାଙ୍କର ଉଦ୍ଦୀପନାମୟ ଗୀତ ଶୁଣି ଆମେ ସବୁ ସ୍କୁଲ ଛାଡ଼ି ମୁକ୍ତି ଆନ୍ଦୋଳନରେ ଯୋଗ ଦେଇଥିଲୁ । ଜେଲ ଭିତରେ ସେ ମୋତେ କହିଥିଲେ ପିଲାଦିନେ କେମିତି ଗୀତ ଲେଖିଲେ, କାହାଠାରୁ ପ୍ରେରଣା ପାଇଥିଲେ, ଅସହଯୋଗ ଆନ୍ଦୋଳନ ବେଳେ ସରକାରୀ ଚାକିରୀରେ ଥାଇ ମଧ୍ୟ ଛଦ୍ମ ନାମରେ କିଭଳି ଜାଗପୁ ସଙ୍ଗୀତ ସମର ସଙ୍ଗୀତ ଲେଖିଥିଲେ ଇତ୍ୟାଦି । ସେ ସବୁକୁ ଲେଖି ପକାଇଥିଲି । ସେହି ଲେଖାରୁ ବହୁ ନୂତନ ତଥ୍ୟ ଦେଇ ଯେତେବେଳେ ବହି ଖଣ୍ଡିକ ଲେଖିଦେଲି ତାହା ଖୁବ ଆଦୃତ ହେଲା । ଏହିଭଳି କେତେ ଗୁଡ଼ିଏ ଉଦାହରଣ ଦିଆଯାଇ ପାରେ ।

କେବଳ ତିନିଗୋଟି ଘଟଣା ମୋ ପଢ଼ାପଢ଼ିରେ ଅସ୍ଥାୟୀ ଭାବରେ ବାଧା ସୃଷ୍ଟି କରିଥିଲା । ଗୋଟିଏ ହେଲା ଲକ୍ଷ୍ମଣ ନାୟକଙ୍କ ଫାସୀ । ଏହି ସାହସୀ ଆଦିବାସୀ ଭାରତଛାଡ଼ ଆନ୍ଦୋଳନ ବେଳେ ଓଡ଼ିଶାର କୋରାପୁଟ ଜିଲାରେ ଚହଳ ପକାଇ ଦେଇଥିଲେ । ହଜାର ହଜାର ସଂଖ୍ୟାରେ ସେମାନେ ସଂଗ୍ରାମରେ ଯୋଗ ଦେଲେ । ପୁଲିସ ଗୁଳିରେ ବହୁଲୋକ ମଲେ—ଶହ ଶହ ଲୋକ ଆହତ ହେଲେ । ଅରଣ୍ୟ ପାହାଡ଼ ପରିବେଷ୍ଟିତ ଏହି ଜିଲାରେ ଆନ୍ଦୋଳନକୁ ଦବାଇ ଦେବାକୁ ହେଲେ ସେମାନଙ୍କ ଭିତରୁ ଲକ୍ଷ୍ମଣ ନାୟକଙ୍କୁ ନେଇଯିବାକୁ ହେବ । ଜଣେ ଫରେଷ୍ଟ ଗାର୍ଡ଼ଙ୍କୁ ଲୋକେ ମାରି ଦେଇଛନ୍ତି ଓ ସେମାନଙ୍କୁ ସେ ଏ କାର୍ଯ୍ୟରେ ନେତୃତ୍ୱ ଦେଇଛନ୍ତି ବୋଲି ପୁଲିସ ଅଭିଯୋଗ କଲେ । ଜଣେ ଆଇସିଏସ୍ ଅଫିସରଙ୍କୁ ସ୍ୱତନ୍ତ୍ର ବିଚାରକ ଭାବରେ ନିଯୁକ୍ତ କରି ଲକ୍ଷ୍ମଣ ନାୟକଙ୍କୁ ଫାଶୀ ଦଣ୍ଡ ଦିଆଇଲେ । ତାଙ୍କୁ ବ୍ରହ୍ମପୁର ଜେଲରେ ହିଁ ଫାଶୀ ଦିଆଗଲା । ଆମକୁ ସବୁ ଜେଲ କୋଠରୀ ଭିତରେ କଡ଼ା ପୁଲିସ ପହରାରେ ରଖି ରାତି ତିନିଟା ବେଳେ ତାଙ୍କୁ ଫାଶୀ ଖୁଣ୍ଟ ନିକଟକୁ ନେଲାବେଳେ ସେ ମହାତ୍ମା ଗାନ୍ଧୀକି ଜୟ—ସ୍ୱାଧୀନ ଭାରତକୀ ଜୟ ଧ୍ୱନି କରି କରି ଆନନ୍ଦରେ ଯାଉଥାଆନ୍ତି ଫାଶୀ ପାଇବା ପାଇଁ । ଆମେସବୁ କୋଠରୀ ଭିତରେ ଲକ୍ଷ୍ମଣ ନାୟକ ଜୟ ବୋଲି ଉଚ୍ଚ ସ୍ୱରରେ ଚିତ୍କାର କରୁଥାଉ । ଯେତେବେଳେ ତାଙ୍କ ସ୍ୱର ବନ୍ଦ ହୋଇଗଲା ଆମେ ସବୁ ଜାଣିନେଲୁ

ସେ ସେ ଫାସୀ ପାଇଗଲେ । ସମସ୍ତଙ୍କ ଆଖିରେ ଲୁହ । କେତେଜଣ ଭେ ଭେ କାନ୍ଦୁଥାଆନ୍ତି । ଆଉ କେତେଜଣଙ୍କ ମନରେ ଅସମ୍ଭବ ପ୍ରକାରର କ୍ରୋଧ । ସେ ଘଟଣା ପରେ ପ୍ରାୟ ଆଠଦିନ ପର୍ଯ୍ୟନ୍ତ କିଛିହେଲେ ପଢ଼ିପାରି ନାହିଁ ବା ଲେଖି ପାରିନାହିଁ । ପ୍ରତିଦିନ ବନ୍ଦୀମାନେ ଏକତ୍ରିତ ହୁଅନ୍ତି—ଗରମା ଗରମ ଭାଷଣ ହୁଏ । ୧୯୪୨ରେ ବହୁଲୋକ ପୁଲିସ ଗୁଳିରେ ମରିଛନ୍ତି ସତ—କିନ୍ତୁ କେବଳ ଦୁଇଜଣଙ୍କୁ ଫାଶୀ ଦିଆଯାଇଛି । ଜଣେ ହେଲେ ସିନ୍ଧୁ ପ୍ରଦେଶର ଯୁବକ ଗୁରୁ ହେମୁ କଲାଣୀ । ତାଙ୍କ ବିରୁଦ୍ଧରେ ଅଭିଯୋଗ ଯେ ସେ ରେଳ ଲାଇନ ଉଠାଇ ଦେଉଥିଲେ । ଦ୍ୱିତୀୟ ଜଣକ ଲକ୍ଷ୍ମଣ ନାୟକ । ଦ୍ୱିତୀୟ ଘଟଣା ହେଲା ଯେଉଁଦିନ ଜେଲରେ ଏକାବେଳକେ ନିକଟରେ କେତୋଟି ବୋମା ପଡ଼ିଲା । ରାତିରେ ଶୋଇଥିଲା ବେଳେ ପ୍ରଚଣ୍ଡ ଶବ୍ଦ—ସତେ ଯେପରିକି ଖଟ ଉପରକୁ ଉଠିଯାଉଛି ଛାତ ପର୍ଯ୍ୟନ୍ତ । ସବୁ ବନ୍ଦୀ ଘର ଭିତରୁ ପଦାକୁ ବାହାରି ଆସିଲେ । ଗୋଟାଏ ପାଖ ପାଚେରୀ ଭାଙ୍ଗିଯାଇଛି—ଗୋଟାଏ ଅଂଶ । ବାହାରେ ଦେଖିଲା ବେଳକୁ ବଡ଼ ଗାତ । ସେଥିରୁ ଗୋଟିଏ ବେଶ୍ ଗଭୀର । ସମସ୍ତଙ୍କର ସନ୍ଦେହ ସରକାର ବୋମା ପକାଇ ଆମ ସମସ୍ତଙ୍କୁ ମାରିଦେବାକୁ ଚେଷ୍ଟା କରୁଥିଲା । ଆମ ମନର ଉଦ୍‌ବେଗ ବିଷୟ ବେଶ୍ ଅନୁମାନ କରାଯାଇ ପାରେ । ଜେଲ କର୍ତ୍ତୃପକ୍ଷ ମଧ୍ୟ ଜାଣିପାରୁ ନ ଥାନ୍ତି କିଏ କାହିଁକି ଏପରି କଲା । ବୋମାପକା ଉଡ଼ାଜାହାଜ ସିନା ଲକ୍ଷ୍ୟ ଭ୍ରଷ୍ଟ ହୋଇଗଲା—ନ ହେଲେ ଆମ ଭିତରୁ ସମସ୍ତେ ବା ଅଧିକାଂଶ ତ ମରି ଥାଆନ୍ତୁ । ଏହି ଖବର କଟକ ଜେଲରେ ପହଞ୍ଚିଲା । ସେଠାରେ ଥିବା ମହିଳା ଅଟକବନ୍ଦୀମାନେ ଅତି ମାତ୍ରାରେ ଉଦ୍‌ବିଗ୍ନ—ବିଚଳିତ । ସେମାନଙ୍କ ଭିତରୁ କେତେଜଣଙ୍କ ସ୍ୱାମୀ, ଭାଇ, ଦାଦା ପ୍ରଭୃତି ବ୍ରହ୍ମପୁର ଜେଲରେ । ସଠିକ ଖବର ନ ପାଇ ସେମାନେ ଜେଲ ଭିତରେ ଗୋଳମାଳ ଆରମ୍ଭ କରିଦେଲେଣି । ପରେ ଖବର ମିଳିଲା ଯେ ଗୋଟିଏ ଜାପାନୀ ବୋମାବର୍ଷୀ ଉଡ଼ାଜାହାଜ ସମୁଦ୍ରରୁ ଦକ୍ଷିଣ ଭାରତରେ କୂଳ ଟପି ଭିତରକୁ ଚାଲି ଆସିଥିଲା । ତାକୁ ବ୍ରିଟିଶ ଲଢ଼ୁଆ ଉଡ଼ାଜାହାଜ ଗୋଡ଼ାଇଲା । ଯେତେବେଳେ ଜାପାନୀ ବୋମାବର୍ଷୀ ଦେଖିଲା ଯେ ବୋମାତକ ଫୋପାଡ଼ି ନ ଦେଲେ ଦ୍ରୁତ ଗତିରେ ପଳାଇ ଯାଇ ପାରିବ ନାହିଁ, ସେତେବେଳେ କେଉଁଠି ବୋମାତକ ପକାଇଦେଇ କିଛିହେଲେ କ୍ଷତି କରିଦେବ, ସେଇଆ ବିଚାରି ବିଚାରି ଆମ ଜେଲଘର ଗୁଡ଼ିକୁ ଉପରୁ ଦେଖିଲା । ଦଶଟା ଲମ୍ବ ଲମ୍ବ ଛାତଘର ଦେଖି ପାଇଲା ଟ

ବଗୃରେଲ୍ ଏଇଟି ସୈନ୍ୟ ଗୁଉଣୀ । ସାମାନ୍ୟ ଲକ୍ଷ୍ୟ ଭ୍ରଷ୍ଟ ନ ହୋଇଥିଲେ ଆମର ଉପରେ ହିଁ ବୋମା ପଡ଼ିଥାଆନ୍ତା । ତୃଷ୍ଣପୂର୍ତ୍ତି ହେଉଛି ଜେଲ ଭିତରେ ନିର୍ମମ ଲାଠି ପ୍ରହାର ଓ ପ୍ରାୟ ତିନିଶହରୁ ଅଧିକ ବନ୍ଦୀ ଆହତ । ବହୁ ବନ୍ଦୀଙ୍କର ମୁଣ୍ଡ ଓ ପିଠି ଫାଟି ରକ୍ତ ବହି ଯାଉଥାଏ । ମୋ ପିଠିରେ ଦୁଇ ତିନି ଲାଠି ପାହାର ଜୋରରେ ବସିଛି । ଏହି ଲାଠି ମାଡ଼କୁ ଆମେ ସବୁ ନିମନ୍ତ୍ରଣ କରିଥିଲୁ ବୋଲି କହିଲେ ଚଳେ । ୧୯୪୪ ଜାନୁଆରୀ ଛବିଶ ତାରିଖ ଦିନ. ଜେଲ ଭିତରେ ଜାତୀୟ ପତାକା ଉଡ଼ାଇ ସ୍ୱାଧୀନତା ଦିବସ ପାଳନ କରିବୁ ବୋଲି ସ୍ଥିର କଲୁ । ଯେମିତି ସକାଳେ ଝଣ୍ଡା ଅଭିବାଦନ ହେଲା ଜେଲ କର୍ତ୍ତୃପକ୍ଷ ଜିଲ୍ଲା ପୁଲିଶ ସା'ହେବଙ୍କୁ ଖବର ଦେଲେ । ସେ ଜିଲ୍ଲା ମାଜିଷ୍ଟ୍ରେଟଙ୍କୁ ଜଣାଇଲେ । ଜେଲ ଭିତରେ ଯଦି ଜାତୀୟ ପତାକା ଉଡ଼ିବ ସରକାରଙ୍କୁ ଏହା ଗୋଟାଏ ଚ୍ୟାଲେଞ୍ଜ ବା ଯୁଦ୍ଧ ଡାକରା । ସେହି ପତାକାକୁ କାଢ଼ି ନେବାକୁ ହେବ—ବଳ ପ୍ରୟୋଗ କରି । ବହୁ ସଂଖ୍ୟକ ଲାଠିଧାରୀ ଓ ବନ୍ଧୁକଧାରୀ ପୁଲିଶଙ୍କୁ ନେଇ ଜିଲ୍ଲା ମାଜିଷ୍ଟ୍ରେଟ ଓ ଏସ୍. ପି. ଜେଲରେ ଆମେସବୁ ଯେଉଁ ଅଂଶରେ ଥିଲୁ ସେଠାରେ ପ୍ରବେଶ କଲେ । ମାତ୍ର ପାଞ୍ଚମିନିଟ ସମୟ ଦେଲେ ପତାକାଟିକୁ ଓହ୍ଲାଇ ଦେଇ ସେମାନଙ୍କ ହାତରେ ଦେଇ ଦେବା ପାଇଁ । ନହେଲେ ପରିଣାମ ଭୟଙ୍କର ହେବ ବୋଲି କଡ଼ା ସତର୍କବାଣୀ । ଆମେ ଦେଖିଲୁ ଯେ ସେମାନେ ନିଶ୍ଚୟ ପତାକାଟିକୁ ନେଇଯିବେ । କିନ୍ତୁ ମରିବୁ ପଛକେ ଜାତୀୟ ପତାକାକୁ ଶତ୍ରୁ ହାତକୁ ଯିବାକୁ ଦେବୁନାହିଁ । ଶୀଘ୍ର ପତାକାକୁ ଓହ୍ଲାଇ ଆଣି ଜଣକ ହାତରେ ଦେଲୁ । ସେ ପତାକା ସ୍ତମ୍ଭ ପାଖରେ ରହି ପତାକାକୁ ହଲଉ ଥାଆନ୍ତି—ଆମେ ସବୁ 'ଝଣ୍ଡା ଉଞ୍ଚା ରହେ ହମାରା' ଧ୍ୱନି କରୁଥାଉ ଓ ତାଙ୍କୁ ଘେରି ଠିଆ ହୋଇଥାଉ । ବିପଦକୁ ଡାକୁଛ—ତୁମ ଉପରକୁ ଆସିଯିବ ବୋଲି କହି ସିପାହୀଙ୍କ ହାତରୁ ବାଡ଼ିଖଣ୍ଡେ ଛଡ଼ାଇ ନେଇ ନିଜେ ପିଟିବା ଆରମ୍ଭ କରିଦେଲେ । ସିପାହୀମାନେ ମାଡ଼ ଚଢ଼ାଇଲେ । ହଠାତ୍ ବୁଦ୍ଧି ପ୍ରୟୋଗ କରି ଆମେସବୁ ବସିଗଲୁ । ପତାକାକୁ ଜଣେ ପେଟ ତଳେ ରଖି ଶୋଇ ପଡ଼ିଲେ । ଆମେ ସବୁ ତାଙ୍କ ଚାରିପଟେ ଗଦା ମାରିଲା ଭଳି ଶୋଇ ପଡ଼ି ଗୋଟାଏ ବ୍ୟୂହ ରଚନା କରିଦେଲୁ । ହେଲା ଉପରୁ ଲାଠି ପାହାର—ଯେ କୌଣସିମତେ ସେମାନେ ପତାକାଟିକୁ ନେଇଯିବେ । ବହୁଲୋକଙ୍କ ମୁଣ୍ଡ ଫାଟି ରକ୍ତ

ବାହାରିଲା । ପିଠି ହାତ ଫାଟି ଯାଉଛି । ସିପାହୀମାନେ ବନ୍ଦୀମାନଙ୍କୁ ସେହି ବ୍ୟୂହ ଭିତରୁ ଉଦାକୁ ନେଇଯାଉଛନ୍ତି ଟାଣି ଟାଣି--ସେମାନେ ପୁଣି ଆସି ଶୋଇ ପଡ଼ୁଛନ୍ତି । ଯେଉଁମାନେ ବେଶୀ ଆହତ ସେମାନଙ୍କୁ ଷ୍ଟ୍ରେଚରରେ ଜେଲ ଡାକ୍ତର ଖାନାକୁ ବହି ନେଉଥାଆନ୍ତି । 'ଶେଷ ରକ୍ତ ବିନ୍ଦୁ ଦେଇ ଆମେ ପତାକାକୁ ରକ୍ଷା କରିବୁ' ଏଇଥାଏ ଆମର ଓଡ଼ିଆ ଓ ଇଂରାଜୀରେ ଧ୍ୱନି । ପ୍ରାୟ ଅଧଘଣ୍ଟା ଯାଏ ଏହି ସଂଗ୍ରାମ ଚାଲିଲା ପରେ ଜଲ୍ ମାଜିଷ୍ଟ୍ରେଟ ଙ୍କ କର୍ତ୍ତବ୍ୟ ବିମୂଢ଼ ହୋଇପଡ଼ିଲେ ଓ ସିପାହୀମାନଙ୍କୁ ସଙ୍ଗରେ ନେଇ ଫେରିଗଲେ । ଆମେ ସବୁ ବିଜୟ ଧ୍ୱନିରେ ଆକାଶ କମ୍ପାଇ ଦେଲୁ । ସମ୍ପୂର୍ଣ୍ଣ ଅହିଂସ ରହି ଶହ ଶହ ଲୋକ କିଭଳି ନିଜ ଉପରକୁ ଦୁଃଖ କଷ୍ଟ ବରଣ କରି ଦୃଢ଼ହୋଇ ରହି ସଂଗ୍ରାମ ଚଳାଇ ପାରନ୍ତି, ତାହାର ଗୋଟିଏ ନମୁନା ଆଖି ଆଗରେ ଦେଖିଲି । ସେତିକିବେଳେ 'ସବଳର ଅହିଂସା' କଥା ମନେ ପଡ଼ିଗଲା । ପ୍ରାୟ ସପ୍ତାହେ ପର୍ଯ୍ୟନ୍ତ ମନସ୍ଥିର କରି ଲେଖାପଢ଼ା କରି ହେଲା ନାହିଁ । ପୋଥି ପାଠ ତୁଳନାରେ ଏହି ଅଭିଜ୍ଞତା ପାଠ ମୋତେ ବହୁତ କିଛି ଶିକ୍ଷା ଦେଲା । ଦିଲ୍ଲୀ ଦୂରଦର୍ଶନ କେନ୍ଦ୍ରରୁ "ଏକ ମୁଲାକାତ" କାର୍ଯ୍ୟକ୍ରମରେ ମୋତେ ଯେତେବେଳେ ସ୍ୱାଧୀନତା ସଂଗ୍ରାମ ବେଳର ସ୍ମୃତିକଥା ପଚାରିଗଲା ମୁଁ ଏହି ଘଟଣାଟିର ବର୍ଣ୍ଣନା କଲି । ତାହା ରେକର୍ଡ଼ ହୋଇ ରହିଛି ।

ଅଠର ମାସରୁ ଅଧିକ କାଳ 'ଦିନ ରାତି' ପଢ଼ାଲେଖା କଲାପରେ ମନ ଭିତରେ ସ୍ପଷ୍ଟ ଚିତ୍ର ଆଙ୍କି ହୋଇଗଲା ଯେବେ ବା ଜେଲମୁକ୍ତ ହେବି ତା'ପରେ କ'ଣ କରିବି । "ଦିନ ରାତି" ବୋଲି ଏଇଥି ପାଇଁ କହୁଛି ଯେ ରାତିରେ କେବଳ ଚାରିଘଣ୍ଟା ଶୋଉଥିଲି । ଅନ୍ୟସବୁ ନିତ୍ୟକର୍ମ ଇତ୍ୟାଦିରେ କିଛି ସମୟ ଯାଉଥିଲା । ଘଣ୍ଟାଟିଏ ବ୍ରିଜ୍ ଖେଳୁଥିଲି । ବାକି ସବୁତକ ସମୟ ଲଗାଇ ଦେଇଥିଲି ପଢ଼ା ଲେଖାରେ । ଆଦୌ କ୍ଳାନ୍ତି ଲାଗେ ନାହିଁ । ପ୍ରତି ରାତିରେ ଶୋଇଲାବେଳେ ମନ ଭିତରେ ହିସାବ କରିନିଏ ଆଜି କଅଣ ନୂଆ ଶିଖିଲି । ନିଶ୍ଚୟ କିଛି ନୂଆ ଥାଏ । ତେଣୁ ଯେଉଁ ସନ୍ତୋଷ ହୁଏ ତାହା କ୍ଲାନ୍ତିକୁ ଦୂର କରିଦିଏ । ସ୍ଥିର କଲି ଜେଲ୍ ବାହାରେ ପାଞ୍ଚଶହ ପୃଷ୍ଠାର ବଡ଼ ବହି ଲେଖି ଦେବି । ତାହାର ମାଧ୍ୟମରେ ପ୍ରକୃତ ଲୋକଶିକ୍ଷା କାର୍ଯ୍ୟକ୍ରମଟିକୁ ସଫଳ ରୂପ ଦେଇହେବ । ମନର

କଥା ସାରଙ୍ଗଧର ଦାସଙ୍କୁ କହିଲି । ମୋର ବିଶ୍ୱାସ ଯେ ସେ ମୁଁ ଉଚିତ ପରାମର୍ଶ ଦେବେ । ସେ ଆମେରିକାରେ ବହୁବର୍ଷ କଟାଇଛନ୍ତି । ସେଠାରେ ଗ୍ରୁପମାନଙ୍କୁ ଜନସାଧାରଣଙ୍କୁ କେମିତି ଶିକ୍ଷା ଦିଆଯାଏ ସେ ବିଷୟରେ ତାଙ୍କର ପ୍ରତ୍ୟକ୍ଷ ଧାରଣା ରହିଛି । ତାଙ୍କର ବି ସେତେବେଳକୁ ବିଶ୍ୱାସ ହୋଇଗଲାଣି ଯେ ମୁଁ ବହି ଲେଖିପାରିବ । ମୋ କଥା ଶୁଣି ସେ ହସି ହସି କହିଲେ--ବିନୋଦ, ତୁମେ ଡାଏରୀ ବହି ଲେଖିବା କଥା କହିଲାରୁ ମୋର ବିଶ୍ୱାସ ହେଉଛି । ତୁମର ହୁଏ ତ ମନେ ନ ଥିବ—କିନ୍ତୁ ଦିନକର ଘଟଣା ମୋର ମନେ ପଡ଼ୁଯାଉଛି । ସେଦିନ ସନ୍ଧ୍ୟାରେ ସମାଜ ଅଫିସରେ ବସିଥାଏ । ଯୁଦ୍ଧର ଶେଷ ଖବର ଜାଣିବା ପାଇଁ ଇଚ୍ଛା । ଗୋଟାଏ ଦୀର୍ଘ ଟେଲିଗ୍ରାମ ଆସିଲା । (ସେ ଯୁଗରେ ଖବର କାଗଜ ଅଫିସରେ ଟେଲିପ୍ରିଣ୍ଟର ନଥିଲା) । କଅଣ ଆସିଛି ଜାଣିବାକୁ ମୁଁ ବ୍ୟଗ୍ର । ତୁମେ କହିଲ—ଟିକିଏ ରହନ୍ତୁ । ଏଇଟିକୁ ଅନୁବାଦ କରି ଦେଇଦିଏ । କମ୍ପୋଜ ହେବ । ନ ହେଲେ ଆଜି ସନ୍ଧ୍ୟାର କାଗଜରେ ଯାଇ ପାରିବ ନାହିଁ । ମୁଁ ଭାବୁଥାଏ ଡେରି ହେବ । କିନ୍ତୁ ତୁମେ ଦଶ ମିନିଟରେ ଯେମିତି ଅନୁବାଦ କରିଦେଇ ମୋ ହାତକୁ ଟେଲିଗ୍ରାମ କାଗଜଟିକୁ ବଢ଼ାଇ ଦେଲ ମୁଁ ଆଶ୍ଚର୍ଯ୍ୟ ହୋଇଗଲି । ଭାବିନେଲି ଅତି ତରତରରେ ଅନୁବାଦ ହୋଇଥିବାରୁ କିଛିଟା ଭୁଲ୍ ରହି ଯାଇଥିବ । କିନ୍ତୁ ସମସ୍ତ ପରେ ଖବର କାଗଜଟି ଛପା ହୋଇ ବାହାରି ପଡ଼ିଲା । ସବୁଦିନ ପରି ସେଦିନ ମଧ୍ୟ ଅପେକ୍ଷା କରିଥିଲି । ପ୍ରଥମେ ଖୋଜି ପକାଇଲି ସେହି ଅନୁବାଦଟି କେଉଁଠି ଅଛି । ଇଂରାଜୀ ତ ଦେଖିଥିଲି--ଯେତେବେଳେ ନିର୍ଭୁଲ ଅନୁବାଦ ଦେଖିଦେଲି ମନେ ମନେ ତୁମର ଭାରି ପ୍ରଶଂସା କଲି । ଭାବିଲି ମୁଁ ତ ଏଇତକ ଅନୁବାଦ କରିବା ପାଇଁ ଘଣ୍ଟାଗୁଣ ସମୟ ନେଇ ଥାଆନ୍ତି ତାହାହେଲେ ଗୋଟାଏ ଲମ୍ବା ତାଲିକା କରି ଦିଆଯାଉ କି କି ବହି ଲେଖିବ । ସେହି ଅନୁସାରେ ଏବଠାରୁ ପ୍ରସ୍ତୁତ ହୁଅ । ଏହାକହି ସେ ପ୍ରାୟ ଶହେ ବହିର ତାଲିକା କରିଦେଲେ । ଗୋଟିଏ ଗୋଟିଏ ବହି ପାଇଁ ପୃଷ୍ଠାଏ ଲେଖା କାଗଜ ରଖି ଦିଅ । ଯାହା ଯେତେବେଳେ ମନେ ପଡ଼ିବ ବା ମିଳିଯିବ ତାହାର ଉଲ୍ଲେଖ ସେହି ପୃଷ୍ଠାଟିରେ ରହୁ ।'' ତାଙ୍କର ସେକଥା ମନେ ଥାଏ ବୋଲି ଯେତେବେଳେ ମୋତେ ଦେଖି ଦିଅନ୍ତି ଗୋଟାଏ ଦି'ଟା କଥା କହି ଦିଅନ୍ତି—ପରେ ମୁଁ ସେଗୁଡ଼ିକ ଟିପି ପକାଏ ।

ପଶ୍ଚିମ ରଣ କ୍ଷେତ୍ରରେ ଯୁଦ୍ଧର ତୀବ୍ରତା କମି ଆସୁଥାଏ । ଜର୍ମାନୀର ନିଶ୍ଚିତ ପରାଜୟ ବିଷୟରେ କାହାର ମନରେ କିଛି ହେଲେ ସନ୍ଦେହ ନ ଥାଏ । ବ୍ରିଟିଶ ଜାତିର ଦୂର ଦୃଷ୍ଟି ଅଛି । ସେମାନେ ଭାବୁଥାଆନ୍ତି ଭାରତକୁ ସବୁଦିନ ପାଇଁ ଅସନ୍ତୁଷ୍ଟ କରି ରଖିଲେ ଲାଭ ନାହିଁ । ରୁଷ ଶକ୍ତିଶାଳୀ ରାଷ୍ଟ୍ର ରୂପେ ମୁଣ୍ଡ ଟେକୁଛି । ଭାରତ ତା'ର ପଡ଼ୋଶୀ ଦେଶ । ଭାରତୀୟମାନଙ୍କ ବ୍ରିଟିଶ ବିରୋଧୀ ମନୋଭାବକୁ ରୁଷ ନିଶ୍ଚେ ଦିନେ ନା ଦିନେ ଉସ୍‌କାଇବ । ତେଣୁ ଧୀରେ ଧୀରେ ଭାରତ ପ୍ରତି କୋହଳ ମନୋଭାବ ପ୍ରକାଶ କରାଯାଉ । କ୍ରମେ କ୍ରମେ ଅଟକବନ୍ଦୀମାନଙ୍କୁ ଖଲାସ କରି ଦିଆଗଲା । ଦିନେ ଜେଲ ଫାଟକରୁ ଖବର ଆସିଥାଏ ମୋ ସହିତ ଜଣେ ଶଶୀବାଳା ଦେବୀ ଦେଖା କରିବାକୁ ଆସିଛନ୍ତି । ସେତେବେଳକୁ ମୁଁ ଜାଣିନଥିଲି ଯେ ମୋ ପତ୍ନୀ ଜେଲମୁକ୍ତ ହୋଇ ଗଲେଣି । ସେ ଜେଲରୁ ଆସି କେମିତି ଚଳୁଛନ୍ତି ବୋଲି ପଚାରି ବୁଝିଲି । ତାଙ୍କର କିଛି ଅସୁବିଧା ହେଉନାହିଁ ବୋଲି କହିବା ସଙ୍ଗେ ସଙ୍ଗେ ସୂଚନା ଦେଲେ, ଅଟକବନ୍ଦୀମାନଙ୍କୁ କ୍ରମେ କ୍ରମେ ମୁକ୍ତି ଦିଆଯିବ । ଆମ ପାଳି କେବେ ପଡ଼ୁଛି କେଜାଣି ।

ବିଶେଷ ପ୍ରାସଙ୍ଗିକ ନୁହେଁ—ତଥାପି ଗୋଟିଏ କଥା ଲେଖିଦିଏ । ଜେଲ ଫାଟକ ପାଖରେ ଦୂରରୁ ଦେଖି ଶଶୀବାଳା କାନୁନ୍‌ଗୋ ମୋତେ ହଠାତ୍ ଚିହ୍ନି ଦେଇପାରିଲେ ନାହିଁ । କାରଣ ସେତେବେଳକୁ ମୋର ବେଶ୍ ଲମ୍ବା ଦାଢ଼ୀ । ମୁହଁଟା ଦାଢ଼ୀରେ ପୂରି ଯାଇଥାଏ । ଏହି ଦାଢ଼ୀ ରଖିବାର ଗୋଟାଏ ମଜା ଇତିହାସ ଅଛି । ଜେଲ ନିୟମ ଅନୁସାରେ ପ୍ରତ୍ୟେକ ଅଟକବନ୍ଦୀକୁ ପ୍ରତି ଗୁରୁବାରେ ଗୋଟାଏ ଲେଖାଁ ଭଲ ବ୍ଲେଡ଼ ମିଳିବ । ସେଭେନ୍-ଓ' କ୍ଲକ ବ୍ଲେଡ଼ ବଜାରରେ ମିଳୁନଥାଏ । ଏହି ବିଦେଶୀ ବ୍ଲେଡ଼ରେ ଭଲ ଖିଅର ହୁଏ । ଯେଉଁ ଦେଶୀ ଗୁଡ଼ିକ ସେ ସମୟରେ ମିଳୁଥାଏ ସେ ଗୁଡ଼ାକରେ ଖିଅର ହୋଇ ହେବ ନାହିଁ । ମୋର କିଛି କିଛି ପଇସା ଦରକାର ହେଉଥାଏ ବହି କିଣିବା ପାଇଁ । ବ୍ଲେଡ୍‌ଟିକ ବାହାରେ ଓ୍ୟାର୍ଡ଼ରଙ୍କ ଜରିଆରେ ବିକି କରିଦେଲେ ସେଇ ପଇସାରେ କିଛି କିଛି ବହି କିଣି ହେବ । ତେଣୁ ଦାଢ଼ୀ ରଖିଲି । ମୋର ଜଣେ ବନ୍ଧୁ ବିପିନ ଦାଢ଼ୀ ଛାଡ଼ି ତା' ବ୍ଲେଡ଼ ମୋତେ ଦେଇଦେଲା । ଗୋପବନ୍ଧୁ ଚୌଧୁରୀ, ଆଚାର୍ଯ୍ୟ ହରିହର ଆଗରୁ ଦାଢ଼ୀ ଛାଡ଼ିଦେଇ ଥିଲେ । ସେମାନେ

ନିଜଆଡ଼ୁ ପ୍ରସ୍ତାବ ଦେଇ ବ୍ଲେଡ଼ ଦେଲେ । ବିପିନ ଥାଆନ୍ତି ବନ୍ଦୀ ଓ ଜେଲ କର୍ତ୍ତୃପକ୍ଷଙ୍କ ଭିତରେ ଯୋଗସୂତ୍ର । ତାଙ୍କର ବ୍ୟବସାୟୀ ବୁଦ୍ଧି ବାହାରିଲା । ପ୍ରତି ସ୍ୱଇପରଙ୍କ ପାଇଁ ମୁଠାଏ ଭଲ ତାସ ଦେଇ ଦିଆଯାଏ । କେତେଜଣଙ୍କୁ ରାଜି କରାଇ ସେ ତାସକୁ ବାହାରେ ବିକ୍ରି କରାଇ ମୋଟେ ପଇସା ଦେଇଦେଲେ । ଦାମିକା ଦେହଲଗା ସାବୁନ ଯେତେଖଣ୍ଡ ମିଳେ ସେତେଖଣ୍ଡ ଆମର ଦରକାର ନ ଥାଏ । ତାକୁ ବିକିଦେଉ ବାହାରେ । ଜେଲ ଓ୍ୱାର୍ଡ଼ର—କଣ୍ଟ୍ରାକ୍ଟର ଏତିକ କରାଇ ଦିଅନ୍ତି ବେଶ୍ ଆଗ୍ରହରେ ସହିତ । ଏହିସବୁ ପଇସାରେ କେତେଖଣ୍ଡ ବହିକଣା ହୋଇଗଲା, କଲମ କିଣିବା ସହଜ ହେଲା ।

ଦିନେ ଖବର ଆସିଗଲା ଆମେ କେତେଜଣ ମୁକ୍ତ ହେଲୁ । ୧୯୪୪ ଜୁଲାଇରେ ଜେଲ ଭିତରୁ ବାହାରକୁ ଆସିଲୁ । ସବୁକିଛି ନୂଆ ନୂଆ ଲାଗୁଥାଏ । ଗାନ୍ଧିଜୀ ଓ ବହୁ ଅଖିଳ ଭାରତୀୟ ନେତା ବାହାରେ । ବ୍ରିଟିଶ ସରକାରଙ୍କଠାରୁ କ୍ଷୀଣ ସଚନା ମିଳୁଥାଏ ଭାରତ ସହିତ ଗୋଟାଏ ମିଳାମିଶା କରିନେବା ପାଇଁ—ଯଦିଓ ସ୍ପଷ୍ଟ ସୂଚନା କିଛି ନ ଥାଏ । ମୋ ନିଷ୍ପତ୍ତିରେ ପରିବର୍ତ୍ତନ ହେବାର ପ୍ରଶ୍ନ ନଥାଏ । 'ସପ୍ତାହ' ବହି ବାବଦ ଯେଉଁ ପଇସା ମିଳଥାଏ ସେଥିରେ ଚଳି ଯାଉଥାଉ ଆମେ ଦି' ଜଣ । ଭଲ ଗାଈଟିଏ ରଖିଲି । ମହାନଦୀ ପଠାରେ ଦୁବ ଭର୍ତ୍ତି । ପ୍ରତିଦିନ ଖୁରୁପୀଟିଏ ନେଇ ବେତାଏ ଦୁବ ନେଇ ଆସେ । ଦୁହାଁଳିଆ ଗାଈଟି ବେଶୀ ଦୁଧ ହେଲା । ଆମର ଆବଶ୍ୟକତା କମ୍ । ଦି'ଜଣ ଯାକ ଯଥେଷ୍ଟ ସୂତା କାଟି ଦେଉ—ଲୁଗା ବୁଣାଇ ଆଣି କିଛି କିଛି ବିକୁ । ଜେଲରୁ ଖଲାସ ହୋଇଥିବାରୁ ଟିକିଏ ସାଙ୍ଗ ସୁଖ ବନ୍ଧୁବାନ୍ଧବଙ୍କ ଘରକୁ ଗଲି । ବେଶ୍ ଫୁର୍ତ୍ତି ଲାଗୁଥାଏ । ଜାପାନ ହାରିଯିବା ଉପରେ । କିଛିଦିନ ପରେ ହିରୋସୀମା—ନାଗାସାକି ଉପରେ ପରମାଣୁ ବୋମା । ଯୁଦ୍ଧ ଶେଷ ହୋଇଗଲା ।

ଗାନ୍ଧିଜୀ ଓ୍ୱାର୍ଦ୍ଧାରେ ଥାଆନ୍ତି । ସମଗ୍ର ଭାରତରୁ ଶତାଧିକ କର୍ମୀଙ୍କୁ ଡକାଇଲେ । ଗୋପବନ୍ଧୁ ଚୌଧୁରୀଙ୍କ ସହିତ ମୁଁ ଯାଇଥାଏ । ସେ ପ୍ରାଣର ଆବେଗରେ କିଛି ସମୟ ଧରି କହିଲେ । ଅନ୍ୟମାନଙ୍କର ବିଶ୍ୱାସ ଯେତେବେଳେ ଇଂରେଜମାନେ ଯୁଦ୍ଧରେ ବିଜୟ ହାସଲ କଲେଣି ଆଉ ସ୍ୱାଧୀନତା ମିଳିବାର ପ୍ରଶ୍ନ ନାହିଁ । ବାପୁଜୀଙ୍କ ଚିନ୍ତା କିନ୍ତୁ ଏହାର ବିପରୀତ ।

ତାଙ୍କର କହିବାର କଥା—ସେ ବ୍ରିଟିଶ ଜାତିକୁ ଭଲ ଭାବରେ ଜାଣନ୍ତି । ଦିନେ ସେମାନେ ଭାରତରୁ ନିଶ୍ଚୟ ଯିବେ । ଏଠାରେ ରହିବାକୁ ହେଲେ ଯେଉଁ ଅର୍ଥର ଆବଶ୍ୟକତା ସେତକ ଅର୍ଥ ସେମାନଙ୍କ ହାତରେ ନାହିଁ । ବ୍ରିଟେନରୁ ବହୁ ସୈନ୍ୟ ଆଣିବାକୁ ପଡ଼ିବ । ସେମାନେ କ୍ଳାନ୍ତ—ଏତେ ବଡ଼ ଦାୟିତ୍ୱ ତୁଲାଇ ପାରିବେ ନାହିଁ । ଯଦି ନିଶ୍ଚୟ ଯିବେ ତେବେ ଶତ୍ରୁତାର ବାୟୁମଣ୍ଡଳ ଭିତରୁ ଯିବେ କାହିଁକି ? ଭାରତୀୟଙ୍କ ସହିତ ବନ୍ଧୁତା ଥିଲେ ଏଠାରେ ବେପାର ବଣିଜ ଚଳାଇବେ । ଦ୍ୱିତୀୟରେ ରୁଷ ଦେଶ ମଧ୍ୟ ଶକ୍ତିଶାଳୀ ହୋଇ ଉଠିଲାଣି । ବ୍ରିଟିଶ ଜାତି ଓ କମ୍ୟୁନିଷ୍ଟ ରୁଷ ଜାତି ସବୁ କାଳେ ବନ୍ଧୁ ହୋଇ ରହିପାରିବେ ନାହିଁ । ଯେତେବେଳେ ସେମାନଙ୍କ ଭିତରେ ବିବାଦ ଲାଗିଯିବ ଭାରତ ସେମାନଙ୍କ ପକ୍ଷରେ ନଥିବ । ଏହିସବୁ କାରଣରୁ ସେମାନେ ଭାରତରୁ ଚାଲିଯିବେ । କେତେ ଶୀଘ୍ର ଚାଲିଯିବେ କହି ହେବ ନାହିଁ କିନ୍ତୁ ଯିବେ ନିଶ୍ଚୟ । ଭାରତ ସ୍ୱାଧୀନତା ପାଇବ—ଏଥିରେ ତାଙ୍କର ତିଳେମାତ୍ର ସନ୍ଦେହ ନାହିଁ । ସ୍ୱାଧୀନ ଭାରତକୁ କେମିତିକା ଗ୍ରାଞ୍ଚରେ ପକାଇବାକୁ ହେବ ତାହା ହିଁ ଆମର ଚିନ୍ତାର ବିଷୟ ହେବା ଦରକାର ।

ସେ କହିଲେ—ମୁଁ ଜେଲରେ ଥିଲାବେଳେ "ସମଗ୍ର ଗ୍ରାମ ସେବା"ର ସ୍ୱପ୍ନ ଦେଖୁଥିଲି । ଏ ପର୍ଯ୍ୟନ୍ତ ଜଣେ ଜଣେ କର୍ମୀ ସଙ୍ଗଠନ କାର୍ଯ୍ୟକ୍ରମର ଗୋଟିଏ ଗୋଟିଏ ବିଷୟରେ ଆଗ୍ରହୀ ହେଉଥିଲେ । କିଏ ସୂତାକଟା ଲୁଗା ବୁଣାରେ ମନ ଦେଉଥିଲେ ତ ଆଉ ଜଣେ କୁଟୀର ଶିଳ୍ପର ପ୍ରସାର ବିଷୟରେ ଚିନ୍ତା କରୁଥିଲେ । କିଏ ମନ ଦେଇଥିଲା ମୌଳିକ ଶିକ୍ଷାର ପ୍ରସାର ଦିଗରେ ତ, କିଏ ଗୋ ସେବାରେ ମନ ଦେଇଥିଲା । ମୁଁ କିନ୍ତୁ ବିଚାରୁଛି ଆଉ ସେପରି ଚଳିବ ନାହିଁ । ଜଣେ କର୍ମୀ ଗୋଟିଏ ଗୋଟିଏ ଅଞ୍ଚଳର ଦାୟିତ୍ୱ ନେବେ । ସେ ଅଞ୍ଚଳରେ ସେ ଉପରୋକ୍ତ ସବୁ କାମ କରିବେ । ଏହା ସାଙ୍ଗକୁ ଲୋକଙ୍କ ଉପରେ ଯଦି ପୁଲିଶ ବା ଜମିଦାର ଅତ୍ୟାଚାର କରନ୍ତି ତାହାର ପ୍ରତିରୋଧ ଅହିଂସ ଉପାୟରେ କିଭଳି କରାଯାଇପାରେ ତାହାର ବାଟ ବତାଇବ ଓ ନିଜେ ନେତୃତ୍ୱ ନେଇ ସେମାନଙ୍କୁ ସାହସ ଦେବ । ଏହାକୁ ହିଁ ମୁଁ କହୁଛି ସମଗ୍ର ଗ୍ରାମ ସେବା । ସମଗ୍ର ଭାରତରେ ଏହିଭଳି କାମ କରିବା ପାଇଁ ଶହେ ଜଣ

ବାହାର ପଡ଼ନ୍ତୁ । ସେମାନେ ଗୋଟିଏ ଗୋଟିଏ ନିର୍ଦ୍ଦିଷ୍ଟ ଅଞ୍ଚଳରେ ଅନ୍ତତଃ ଦଶ ବର୍ଷ ପର୍ଯ୍ୟନ୍ତ ଆସ୍ଥାନ ଜମାଇବେ । ଭାରତ ସ୍ୱାଧୀନ ହେଲେ ମଧ୍ୟ ସେମାନେ କ୍ଷମତାର ଅଧିକାରୀ ହେବା ପାଇଁ ଇଚ୍ଛା କଳାଇବେ ନାହିଁ । ସେହି କର୍ମୀମାନେ ଚଳିବେ ବୋଲି ମୁଁ ସେମାନଙ୍କୁ ଆର୍ଥିକ ସାହାଯ୍ୟ ଦେବି । ସେ ଦାୟିତ୍ୱ ମୁଁ ନେଉଛି । ଏହି ଆର୍ଥିକ ସାହାଯ୍ୟର ପୁଣି ଗୋଟାଏ ନୂତନ ଢଗ ଅଛି । 'ସମଗ୍ର ଗ୍ରାମ ସେବକ' ପ୍ରଥମ ବର୍ଷରେ ମାସିକ ଶହେ ଟଙ୍କା ପାଇବେ । ଦ୍ୱିତୀୟ ବର୍ଷରେ (ଠିକ ଏ ରହିଯାଇ· ·) ପାଇବେ ଅଶୀ ଲେଖାଁ । ପ୍ରତିବର୍ଷ ଏହିଭଳି ଭାବରେ କମି କମି ପାଞ୍ଚ ବର୍ଷ ପରେ ଆଉ କିଛି ପାଇବେ ନାହିଁ । ସେତେବେଳକୁ ସେ ଏଭଳି କାମ କରୁଥିବେ ଯେ ଲୋକେ ତାଙ୍କର ଉପସ୍ଥିତି ବା ସେବାକୁ ଅପରିହାର୍ଯ୍ୟ ବୋଲି ମନେ କରୁଥିବେ । ତେଣୁ ତାଙ୍କୁ ଗୃହା ଦେଇ ରଖାଇବା ପାଇଁ ମନ କଳାଇ ଥିବେ । କିମ୍ବା ଏମିତି ହୋଇପାରେ ଯେ କର୍ମୀ ଏଭଳି କିଛି ଧନ୍ଦା ଧରିଥିବେ ଯେଉଁଥିରୁ କି ଚଳି ଯାଉଥିବେ—ଗୃହା ଉପରେ ନିର୍ଭର କରୁନଥିବେ । ମୋର ବିଶ୍ୱାସ ଏହି ପରୀକ୍ଷା ବେଶ୍ ସଫଳ ହେବ । ମୋ ସ୍ୱପ୍ନର ଭାରତକୁ ଦେଖିବାର ସୁଯୋଗ ମୋତେ ମିଳିବ ।" ଓଡ଼ିଶାରୁ ଗୃହ ଜଣ ବଛାଯିବେ । ବାପୁଜୀଙ୍କର ମୋ କଥା ମନେଥିଲା ୧୯୩୯ରେ ପଦଯାତ୍ରା ଓ ଡେଲାଙ୍ଗ ସମ୍ମିଳନୀ ବେଳୁ । ତେଣୁ ତାଙ୍କ ଦ୍ୱାରା ମୁଁ ବଛାଗଲି ।

ଓ୍ୟାର୍ଦ୍ଧାରୁ ଫେରି ନିଜ ଗାଁଟିକୁ କର୍ମକ୍ଷେତ୍ର ବୋଲି ବାଛିଲି । କଟକଠାରୁ ମହାନଦୀ କୂଳେ କୂଳେ ୧୭ ମାଇଲ ଗଲେ ମଲିପୁର ଗ୍ରାମ । ଉତ୍ସାହର ସହିତ କାମରେ ଲାଗିଲି । ଲୋକଙ୍କ ସହଯୋଗ ମିଳିଲା । ୧୯୪୭ ଅଗଷ୍ଟ ପନ୍ଦରରେ ଦେଶ ହେଲା ସ୍ୱାଧୀନ । ଆହୁରି ଉତ୍ସାହ । ବହୁତ କିଛି କରିହେବ । ଗାନ୍ଧୀ ଆମର ନେତା—ସେ ସବୁବେଳେ ବାଟ ଦେଖାଇବେ ।

୧୯୪୮ ଫେବୃୟାରୀ ଦୁଇ ତାରିଖ ଦିନ ସେବାଗ୍ରାମଠାରେ ସମଗ୍ର ଗ୍ରାମ ସେବକ ମାନଙ୍କର ସମ୍ମିଳନୀ ଡକା ଯାଇଥାଏ । ମୋର ପ୍ରୋଗ୍ରାମ ଥିଲା ଜାନୁୟାରୀ ଏକତିରିଶ ତାରିଖ ଦିନ କଟକ ଯିବି ଗାଁରୁ । ସେଠାରୁ ୩୧ ତାରିଖ ଦିନ ସେବାଗ୍ରାମ ଅଭିମୁଖେ ବାହାରିବି । ୨୯ ତାରିଖ ଦିନଟି ଥାଏ ଜଣେ ବନ୍ଧୁଙ୍କ ବିବାହ ଉତ୍ସବ । ମଲିପୁର ଗାଁରୁ ମହାନଦୀ ପାରି

ହୋଇ ସେ ସ୍ଥାନକୁ ଯିବାକୁ ହେଲେ ଚନ୍ଦ୍ରୋପୃକା ନଦୀ ମଧ୍ୟ ପଡ଼େ । ତିରିଶ ତାରିଖ ଉପରବେଳା ଆମେ ପାଞ୍ଚଜଣ—ତିନିଜଣ ମହିଳା ଓ ଦୁଇଜଣ ପୁରୁଷ—ଫେରୁଥାଉ । ମହାନଦୀ ବାଲିକୁ ଗଡ଼ିବା ମାତ୍ରେ ଦେଖିଲି ଗୋଡ଼ ଆଉ ଚାଲୁନାହିଁ । କଅଣ ହେଲା କଅଣ ହେଲା ବୋଲି ସମସ୍ତେ ବ୍ୟସ୍ତ ହୋଇପଡ଼ିଲେ । ବାଲିରେ ବସି ପଡ଼ିଲି । ପ୍ରାୟ ପଇଁତିରିଶ ମିନିଟ ପରେ ପୁଣି ଚାଲି ହେଲା । ଘରେ ପହୁଞ୍ଚି ପରଦିନ ସକାଳେ କଟକ ଯିବି ବୋଲି ଜିନିଷପତ୍ର ସବୁ ସଜାଡ଼ି ଦେଲି । ସାଇକେଲରେ ତ ଯିବି । ସକାଳ ସାତଟାବେଳେ ବାହାରି ପଡ଼ିଲି । ମାଇଲିଏ ଯାଇନାହିଁ—ଆମ ଗାଁ ଅବଧାନ ଧଇଁସଇଁ ହୋଇ ମୋ ପାଖକୁ ଧାଉଁଛନ୍ତି । 'ଏମିତି ଗୋଟାଏ କଅଣ ଶୁଣିଲି...' ଏତିକି କହି ସେ ବସିପଡ଼ିଲେ ଓ ଭେ ଭେ କାନ୍ଦ ପକାଇଲେ । କିଛି ସମୟ ପରେ କହିଲେ—"ମହାତ୍ମାଙ୍କୁ କିଏ ପାପିଷ୍ଠ ଗୁଳିକରି ମାରିଦେଇଛି..." । ତଟସ୍ଥ ହୋଇଗଲି । କିଶୋର ନଗର ପର୍ଯ୍ୟନ୍ତ ଗଲା ପରେ କଥାଟା ସତ ବୋଲି ଜାଣିଲି । କଟକରୁ ବହୁଲୋକ ଫେରୁଛନ୍ତି । ଓଡ଼ିଆ କାଗଜରେ ବାହାରିଛି ଦାରୁଣ ସମ୍ବାଦ । ଯାହାକୁ ପୁଚ୍ଛନ୍ତି ଆଉ ଗୋଡ଼ ଚାଲିଲା ନାହିଁ । ପାଞ୍ଚ ଘଣ୍ଟା ବସିଲା ପରେ ସାଇକେଲରେ ବସି ଧୀରେ ଧୀରେ କଟକ ଅଭିମୁଖେ ଚାଲିଲି । ଶୁଣିଲି କାଠଯୋଡ଼ି ବାଲିରେ ଶୋକସଭା ହେଉଛି । ସେଠିକି ଗଲି । ଜନ ସମୁଦ୍ର । ପରଦିନ କଟକରେ ରହି ଘରକୁ ଫେରିଲି ।

ସତେ ଯେପରି କି ମୁଣ୍ଡରେ ଗୋଟାଏ ବଜ୍ରପାତ । ଠିକ ଭାବରେ ଚିନ୍ତା କରି ହେଉନଥାଏ । ଗାନ୍ଧୀଙ୍କ ଶାରୀରିକ ଅନୁପସ୍ଥିତି ସମୟରେ କଂଗ୍ରେସ ନେତାମାନେ କ'ଣ ତାଙ୍କ ପ୍ରଦର୍ଶିତ ମାର୍ଗରେ ଦେଶକୁ ଚଳାଇବେ ? ସ୍ୱାଧୀନତା ପ୍ରାପ୍ତି ପରେ ସେ ବଞ୍ଚିଛନ୍ତି ମାତ୍ର ପାଞ୍ଚମାସ ପନ୍ଦର ଦିନ । ସେହି କେତେଦିନ ଭିତରେ ଶେଷବେଳକୁ ସେ ମଧ୍ୟ ଅନୁଭବ କରିଛନ୍ତି ଯେ ଶାସନ ଗାଦିରେ ଥିବା ଭୁଙ୍ଗ ନେତାମାନେ ଅସଲ ଅମଲ ସମସ୍ୟା ଉପରେ ତାଙ୍କ ପରାମର୍ଶ ନେଉନାହାନ୍ତି । ମୃତ୍ୟୁପରେ ଅବସ୍ଥା କଅଣ ହେବ ଏଇଥିଲା ମୋ ପାଇଁ ଚିନ୍ତାର ବିଷୟ । ଯାହା ହେଉ ସେ ଯେଉଁ ସମଗ୍ର ଗ୍ରାମ ସେବା ବାଣୀ ଶୁଣାଇ ଯାଇଛନ୍ତି ତାକୁ ମନେ ରଖିବାକୁ ପଡ଼ିବ । ତାଙ୍କ ପାଦ ତଳେ ବସି ଯେଉଁ ପ୍ରତିଶ୍ରୁତି ତାଙ୍କୁ ଦିଆହୋଇଛି ସେଥିରୁ ହଟି ଆସିବାର ନୁହେଁ । ବର୍ଷେ ଖଣ୍ଡେ ପରେ

ଦେଖିଲି ମୋ ଆଶଙ୍କା ଠିକ୍ । ଗାନ୍ଧୀ ଯେଉଁ ବିକେନ୍ଦ୍ରୀକରଣ ଶାସନ ବ୍ୟବସ୍ଥା, ଅର୍ଥନୀତି କଥା କହୁଥିଲେ ତାହା ଦ୍ୱାରା ଦେଶ ଏହି ବୈଜ୍ଞାନିକ ଯୁଗରେ ଆଗେଇବ ନାହିଁ ବୋଲି ଶାସନରେ ଥିବା କଂଗ୍ରେସ ନେତା ମାନେ ବିଶ୍ୱାସିଲେ । ସେମାନଙ୍କର ଉଦ୍ଦେଶ୍ୟ ଖରାପ ବା ସେମାନେ ଗାନ୍ଧୀଙ୍କ କଥାର ବିରୁଦ୍ଧାଚରଣ ଜାଣିଶୁଣି କରୁଥାଆନ୍ତି ବୋଲି ମୁଁ ଆଦୌ କହୁନାହିଁ । ସେମାନେ ବିଶ୍ୱାସ କରୁଥିଲେ—ପାଶ୍ଚାତ୍ୟ ଦେଶ ମାନେ ଯାହା କରୁଛନ୍ତି ତାହା କଲେ ଯାଇ ଦେଶ ସମୃଦ୍ଧ ହେବ । "ଚରଖା ଓ ବଳଦ ଗାଡ଼ିର ଯୁଗ" ଶେଷ ହୋଇଗଲାଣି । ସରକାରୀ ମନୋବୃତ୍ତି ଏହିଭଳି ହୋଇଥିବାରୁ ଆମେସବୁ ଯେଉଁ ଖଦୀ ଗ୍ରାମୋଦ୍ୟୋଗ ଇତ୍ୟାଦି କାମ କରୁଛୁ ସେଥିପ୍ରତି ସରକାର ଗୁରୁତ୍ୱ ଦେବେ କାହିଁକି ? ସେଭଳି ନ ଦେଲେ ସରକାରୀ କର୍ମଚାରୀମାନେ ଆମ କାର୍ଯ୍ୟ ତଥା କଥା ପ୍ରତି କାହିଁକି ବା ଗୁରୁତ୍ୱ ଦେବେ ? ପୁଣି ସେହି ପ୍ରଶ୍ନ—କାମ କରିଯିବାକୁ ହିଁ ହେବ । ୧୯୪୯-୫୦ ବେଳକୁ ପଢ଼ାପଢ଼ିରେ ଟିକିଏ ଅଧିକ ସମୟ ଦେଲିଣି । କାମ ଭିତରୁ ସମୟ ବାହାର କରିବାକୁ ପଡ଼ୁଥାଏ । ଆମ ଘରେ ଗାଈ, ବାଛୁରୀ, ବଳଦଙ୍କ ସଂଖ୍ୟା ହୋଇଗଲାଣି ପ୍ରାୟ ଦଶଟି । ଏବେ ଅବଶ୍ୟ ସେଇ ପରିବେଶ—ନାହିଁ—ସେତେବେଳେ ଗାଁ ଭିତରେ ଓ ନିକଟରେ ତିରିଶ ଚାଳିଶ ଏକରର ବୁଦା ଜଙ୍ଗଲ, ବିସ୍ତୃତ ଗୋଚର ଜମି, ମହାନଦୀ ଭିତରେ ଗୋଟିଏ ବଡ଼ ପଠାଥିଲା । ଗୋରୁଙ୍କୁ ଚାରିପାଞ୍ଚ ଘଣ୍ଟା ଚରାଇ ଆଣିଲେ ପେଟେ ପେଟେ ଘାସ ଖାଇ ଦିଅନ୍ତି । ପ୍ରତିଦିନ ବାରଟାବେଳେ ମୁଁ ସେ ଗାଈଙ୍କୁ ନେଇଯାଏ ଚରାଇବା ପାଇଁ । ସେତିକି ବେଳେ ଦି' ଖଣ୍ଡ ହାଫ୍‌ପ୍ୟାଣ୍ଟ କରି ଦେଇଥିଲି । ସାଙ୍ଗରେ ନେଇଯାଏ ଖଣ୍ଡେ ବହି । ବୃନ୍ଦାବନ ବା ନଈ ପଠାରେ ଗୋରୁଙ୍କୁ ଛାଡ଼ିଦେଇ ବସି ଯାଏ ପଢ଼ିବା ପାଇଁ । କ୍ରମେ ଗାଁର ଦି' ଚାରିଜଣ ଗାଈଆଳପିଲା ମୋ ସଙ୍ଗରେ ଗାଈ ପିଟାଇଲେ । ମିଳିତ ଭାବରେ ଗୋରୁ ଚରାଉ । ସେମାନଙ୍କୁ ମଜା ମଜା ଗପ ଶୁଣାଏ । ଗୋରୁଙ୍କୁ ଆଦର କଲେ ସେମାନେ କେମିତି କଥାମାନନ୍ତି ସେତିକିବେଳେ ଜାଣିଲି । ଦିନେ ଦିନେ ଛ' ସାତଟି ଧାନ କିଆରୀ ପାରି କରାଇ କଣରେ ଗୋଟାଏ ଅଂଶକୁ ଗୋରୁ ନେଇଯିବାକୁ ପଡ଼େ । ମୋ ଗୋରୁ ଏମିତି କଥା ମାନନ୍ତି ଯେ ହିଡ଼ ଉପରେ ଚାଲିଯିବେ ଦି' କଡ଼ର ଧାନରେ ମୁହଁ ମାରିବେ ନାହିଁ । ଯଦି କିଏ ଟିକିଏ ଢେଲା

ହୋଇ ମୁହଁ ମାରିଲା ମୁଁ ପଛରୁ ପାଟିଟାଏ କରିଦେଲେ ସେ ମୁହଁ ଫେରାଇ ନେବ । ଜଣେ ଦକ୍ଷ ଗାଈଆଳ ବୋଲି ପରିଚିତ ହୋଇଗଲି । ଏହି କେତେ ବର୍ଷ ଭିତରେ ଜଣେ ସଫଳ ବଗିଚୁବାଲା ହେବାକୁ ଚେଷ୍ଟା କରିଛି । ବହୁ ପରିମାଣରେ କମ୍ପୋଷ୍ଟ ତିଆରି କରେ । କମ୍ପୋଷ୍ଟ ଗାତ ବେଶୀ ଗଭୀର ହୋଇଗଲେ କାହିଁକି କମ୍ପୋଷ୍ଟ ହୋଇପାରେ ନାହିଁ ତାହା କୃଷୀଙ୍କୁ ବୁଝାଏ । ମାଟି ଭିତରେ ଦୁଇଡିନଫୁଟ ପର୍ଯ୍ୟନ୍ତ ଜୀବାଣୁ ଅଛନ୍ତି ଅଳିଆ ଓ ଗୋବରକୁ କମ୍ପୋଷ୍ଟରେ ପରିଣତ କରାଇବା ପାଇଁ—ତା' ତଳକୁ ନାହାନ୍ତି । ତେଣୁ ଅଳିଆ ସେମିତି ରହିଥିବ—ଗୋବର ମଧ୍ୟ ଖତ ହେବ ନାହିଁ- କଞ୍ଚା କଞ୍ଚା ରହିବ । ପାଖକୁ ପାଖ ଦୁଇଟି ଗାତ କରିଦେଲେ ସେମାନେ ଆଖିରେ ଦେଖନ୍ତି ମୁଁ ଯାହା କରୁଛି ତାହା ଠିକ କି ନାହିଁ । ପଙ୍କ, ଖତ, କମ୍ପୋଷ୍ଟ, ପିଡ଼ଆ ବ୍ୟବହାର କରି ଯେଉଁ ପରିବା ହୁଏ ତାହା କେତିକି ଅଧିକ ସୁଆଦ ତାହା ନିଜେ କରି ବୁଝାଇ ଦିଏ । ୧୯୮୫-୮୭ରେ ମୋ ବଗିଚୁରେ କାଗିଜି ଲେମ୍ବୁ କେମିତି ବଡ଼ ବଡ଼ ହୋଇଛି ତାହା ଦେଖିବା ପାଇଁ ଦୂରରୁ ଲୋକେ ଆସୁଛନ୍ତି । ଟେଲିଭିଜନରେ ବଗିଚୁ ଓ ଲେମ୍ବୁକୁ ଦେଖି ଜାଣୁଛନ୍ତି । ଆଜିର ଅନେକ ଶିକ୍ଷିତ ଲୋକ ଜାଣନ୍ତି ନାହିଁ ଯେ ଗାନ୍ଧିଜୀ ତାଙ୍କ 'ୟଙ୍ଗ୍ ଇଣ୍ଡିଆ' ଓ 'ହରିଜନ'ରେ କୃଷି ବିଷୟରେ ବହୁତ କିଛି ଲେଖୁଥିଲେ । ସେଦିନ ଭାରତର ଜଣେ ପ୍ରସିଦ୍ଧ ଅର୍ଥନୀତିଜ୍ଞ ଡକ୍ଟର ସଦାଶିବ ମିଶ୍ର କହୁଥିଲେ ଆମେରିକାର ନିଉୟର୍କ ଲାଇବ୍ରେରୀ ବା ଅନ୍ୟ କୌଣସି ଗୋଟିଏ ପ୍ରସିଦ୍ଧ ଲାଇବ୍ରେରୀରେ ଦେଖିଲେ ଯେ 'ହରିଜନ' କାଗଜଗୁଡ଼ିକୁ ବନ୍ଧା ଭାବରେ ଛପାଇ ଦିଆଯାଇଛି । ଏହା'ର କାରଣ ପଚାରିବାରୁ ସେମାନେ କହିଲେ— ଗାନ୍ଧୀଜି ଆଉ ବ୍ୟକ୍ତି ହୋଇ ରହିଲେ ନାହିଁ, ସେ ଗୋଟାଏ ଆଇଡ଼ିଆ ବା ଭାବନା ହୋଇଗଲେ । ଦେଖୁନାହାନ୍ତି ହରିଜନର ଏହି ପୃଷ୍ଠାରେ ଅଛି ସେ ବ୍ରିଟିଶ ଜାତିକୁ କିଅଣ କହିବାକୁ ଯାଉଛନ୍ତି ଓ ତା' ପାଖ ପୃଷ୍ଠାରେ ସମ୍ଭାବନା ଗୃହ କଥା । ସେହି ସଂଖ୍ୟାରେ ହୁଏତ ଜନ୍ମ ନିୟନ୍ତ୍ରଣ କେମିତି ସଂଯମ ଆଚରଣ ଦ୍ଵାରା କରିପାରିବ ତାହାର ଆଲୋଚନା ରହିଛି ଜଣଙ୍କୁ କାହାକୁ ଉତ୍ତର ଦେଉଥିବେ । ସେଇଥିପାଇଁ ସେ ମହାତ୍ମା । 'ହରିଜନ' କାଗଜ ଗାନ୍ଧୀଙ୍କ ପ୍ରକୃତ ପରିଚୟ ଦେଉଛି ।

ଏହି କେତେବର୍ଷ ଭିତରେ ଦୁଇଟି କାମ କରିବାକୁ ପଡ଼ିଥିଲା । ଗୋଟିଏ ହେଲା ଅସ୍ପୃଶ୍ୟତା ନିବାରଣ—ଅନ୍ୟଟି କୃଷକମାନଙ୍କ ଉପରେ ହେଉଥିବା ଅତ୍ୟାଚାରର ପ୍ରତିରୋଧ । ସବୁକାମ ପାଇଁ କିଛି କିଛି ପାଠ ଦରକାର । ଆଇନ ବହି ଶାସ୍ତ୍ର ପୁରାଣ ନ ପଢ଼ିଲେ ଏହି ଧରଣର କାମ କରିହେବ ନାହିଁ । ଚାଷୀଙ୍କ ସପକ୍ଷରେ କାମ କଲାରୁ ମୁଁ ଅନ୍ତତଃ ତିରିଶଟି ମକଦ୍ଦମାରେ ମୁଦାଲା ହୋଇଥିଲି । ଗୋଟିକରେ ମଧ୍ୟ ଦଣ୍ଡ ପାଇନାହିଁ—ସବୁଥିରେ ଖଲାସ ହୋଇଯାଇଛି ।

୧୯୫୩ ଆରମ୍ଭ ବେଳକୁ ଦେଶର ପରିସ୍ଥିତି ଏଭଳି ହେଲାଣି ଯେ ଗାନ୍ଧୀକାମ କରିବା ପାଇଁ ଆଉ ସୁଯୋଗ ନାହିଁ । ଶାସନରେ ଥିବା ମନ୍ତ୍ରୀମାନେ ନିର୍ଭର କରୁଛନ୍ତି ସରକାରୀ କର୍ମଚାରୀମାନଙ୍କ ଉପରେ । କୌଣସି ଗୋଟିଏ ସ୍ଥାନୀୟ ସମସ୍ୟା ବିଷୟରେ ସେମାନଙ୍କୁ ଯାଇ କହିଲେ ଉତ୍ତର ମିଳୁଛି—ଥାନାରୁ ଯେଉଁ ରିପୋର୍ଟ ଆସିବ ଆମେ ତାକୁ ହିଁ ବିଶ୍ୱାସ କରିବୁ—ତମ କଥାକୁ ନୁହେଁ । ଗାନ୍ଧୀ ଙ୍କ ସ୍ୱପ୍ନ ଦେଖୁଥିଲେ ବୋଲି କହିଲେ ଉତ୍ତର ହେଲା—'ସିଏ ତ ଗଲେଣି' । ଠିକିଏ ଶୂନ୍ୟ ଶୂନ୍ୟ ଲାଗୁଥାଏ । ମନକୁ ବୁଝାଇ ନେବାକୁ ହେଉଥାଏ । ବହୁ ସମୟ ଧରି ସୂତା କାଟିବା, ବଗିଚା କାମ କରିବା, ପଢ଼ାପଢ଼ି କରିବାରେ ସମୟ କଟି ଯାଉଥାଏ ବୋଲି ନୈରାଶ୍ୟ ଘୋଟିଯାଉ ନଥାଏ ।

ଗୋଟାଏ କଥା ମୋ ମନ ଭିତରେ ବରାବର ଖେଳିବାକୁ ଆରମ୍ଭ କଲା । ଜୀବନର ଅବଶିଷ୍ଟ ଅଂଶକୁ ଏମିତି ଅଧା ଚନ୍ଦ୍ରିଆ କାମରେ ଆଉ ଲଗାଇବା ଠିକ ହେବ ନାହିଁ । ଗୋଟାଏ କିଛି ନିର୍ଦ୍ଦିଷ୍ଟ କାମ ଧରିନେବାକୁ ହେବ । ଏମିତିକା କାମଟିଏ ବାଛିବାକୁ ହେବ ଯାହାକୁ କଲେ ନିଜର ସନ୍ତୋଷ ହେବ—ତା' ସାଙ୍ଗକୁ ଗାନ୍ଧୀଙ୍କ ସ୍ୱପ୍ନର କୌଣସି ଗୋଟାଏ ଦିଗ ସଫଳତା ଆଡ଼କୁ ଆଗେଇଯିବ । କେତେ ମାସ ଭାବିଲା ପରେ ଗୋଟିଏ କଥା ସ୍ଥିର କରିନେଲି । ଖଦୀ କୁଟୀର ଶିଳ୍ପ ଅସ୍ପୃଶ୍ୟତା ନିବାରଣ ଆଦି କାମର ସେଭଳି କିଛି ଭବିଷ୍ୟତ ନାହିଁ, ଯଦିଓ ଏହି ଗୁଡ଼ିକ ଥିଲା ଗାନ୍ଧିଜୀଙ୍କର ଅତିପ୍ରିୟ କାର୍ଯ୍ୟକ୍ରମ । ବାପୁଜୀଙ୍କର ଗୋଟିଏ କାର୍ଯ୍ୟକ୍ରମ ହାତକୁ ନେବି ଓ ଯଥାସମ୍ଭବ ତାକୁ ସଫଳ କରିବି । ସେଇଟି ହେଉଛି ବ୍ୟାପକ ଅର୍ଥରେ 'ଲୋକଶିକ୍ଷା' । ୧୯୩୪ର ହରିଜନ ପଦଯାତ୍ରା, ୧୯୩୭

ଓ ୩୮ରେ ଗାନ୍ଧୀ ସେବାସଂଘ ସମ୍ମିଳନୀ, ସମଗ୍ର ଗ୍ରାମ ସେବା ପାଇଁ ଉଦ୍‌ବୋଧନ, ହରିଜନରେ ପ୍ରକାଶିତ ବହୁ ଲେଖା—ସବୁ ଯେପରିକି ମୋତେ ଦେଖାଇ ଦେଉଥାଆନ୍ତି—"ବାପୁଜୀଙ୍କର ଏହି କାର୍ଯ୍ୟକ୍ରମଟିକୁ ହାତକୁ ନେ ।" ତାହାହେଲେ ତାଙ୍କର ପ୍ରକୃତ ପୂଜା ହେବ । ସେ ଜୋର ଦେଇ କହୁଥିଲେ—ମନୁଷ୍ୟର ଶିକ୍ଷା ଆରମ୍ଭ ହୁଏ ମାତୃଗର୍ଭରେ ଓ ଶେଷ ହୁଏ ଶ୍ମଶାନରେ । ଅନବରତ ଶିକ୍ଷା ବା ଲଗାତାର ଶିକ୍ଷା—ମନୁଷ୍ୟର ଧ୍ୟେୟ ହେବା ଉଚିତ । ପ୍ରତ୍ୟେକ ଲୋକର ଜନ୍ମଗତ ଅଧିକାର ହେଲା 'ଶିକ୍ଷା ଲାଭ' । ସମାଜ, ସରକାର, ଜାଗ୍ରତ ବ୍ୟକ୍ତି ବିଶେଷ—ସମସ୍ତଙ୍କର ମିଳିତ ଉଦ୍ୟମରେ ଏଭଳି ବ୍ୟବସ୍ଥା ହେବା ଉଚିତ ଯାହା ଫଳରେ ପ୍ରତ୍ୟେକ ନାଗରିକ କିଛି ନା କିଛି ଜ୍ଞାନ ଅର୍ଜନ କରିବ । ସେ ଦରିଦ୍ର, ତାହାର ପଢ଼ିବାର ସୁଯୋଗ ନାହିଁ, ଶିକ୍ଷାଲାଭ ପାଇଁ ଯେତିକି ପଇସା ନିତାନ୍ତ ଲୋଡ଼ା, ସେତିକି ପଇସା ତା' ପାଖରେ ନାହିଁ—ଏହିସବୁ ଯୁକ୍ତିର କିଛିହେଲେ ମୂଲ୍ୟ ଗାନ୍ଧୀଙ୍କ ପାଖରେ ନଥିଲା । ଭାରତରେ ତାଙ୍କ ସାଧାରଣ ଜୀବନ ପ୍ରଥମେ ସେ ଯେତେବେଳେ ବିହାରର ଚମ୍ପାରଣଠାରେ ଆରମ୍ଭ କଲେ ସେତେବେଳେ ସେ ଲକ୍ଷ୍ୟ କଲେ ଯେ ଜନସାଧାରଣଙ୍କ ଭିତରେ ଅଜ୍ଞତା ଭରି ରହିଛି । ଶହକେ ନବେ ଜଣରୁ ଅଧିକ ଲୋକେ ଲେଖିପଢ଼ି ଜାଣିନାହାନ୍ତି । ସେତେବେଳେ ବାହାରୁ ସ୍ୱେଚ୍ଛାସେବକ ଡକାଇଲେ ଲୋକଙ୍କୁ ଶିକ୍ଷା ଦେବାପାଇଁ । ଗୁଜୁରାଟ ଓ ମହାରାଷ୍ଟ୍ରରୁ ଯେଉଁମାନେ ଆସିଲେ ସେମାନଙ୍କ ଭିତରେ ଉଚ୍ଚଶିକ୍ଷିତ ଲୋକ କେତେଜଣ ଥିଲେ । କିନ୍ତୁ ଅନ୍ୟ ଯେଉଁ ତିନିଜଣ ମହିଳା ଆସିଥିଲେ ସେମାନଙ୍କ ଭିତରୁ ଦୁଇଜଣ ଗୁଜୁରାଟୀ ହିଁ ଲେଖିପଢ଼ି ଜାଣିଥିଲେ । ତାଙ୍କ ସହଧର୍ମିଣୀ କସ୍ତୁରବା ସେତିକ ମଧ୍ୟ ଜାଣି ନଥିଲେ । ହିନ୍ଦୀ ଭାଷାଭାଷୀ ଲୋକଙ୍କୁ ସେମାନେ କଅଣ ପଢ଼ାଇବେ ବୋଲି ପଚରିଲାରୁ ବାପୁଜୀ କହିଲେ— ବ୍ୟାକରଣ ନ ଶିଖାଅ, ପିଲାମାନଙ୍କୁ ଶିଷ୍ଟତା ଶିଖାଅ । ବଡ଼ଙ୍କୁ ସ୍ୱାସ୍ଥ୍ୟ ବିଷୟରେ କୁହ । ତାକୁ ହିଁ ଶିକ୍ଷା ବୋଲି କୁହାଯିବ । ଭାରତରେ ଆଡଲ୍‌ଟ ଏଡ଼ୁକେଶନ ବା ଲୋକ ଶିକ୍ଷା ବିଷୟରେ କେହି ଆଲୋଚନା କଲା ପୂର୍ବରୁ ଜଣେ ମୋହନଦାସ କରମଚାନ୍ଦ ଗାନ୍ଧୀ ସେ ଦିଗରେ କାମ ଆରମ୍ଭ କରି ଦେଇଥିଲେ—ପରୀକ୍ଷା ଚଳାଇଥିଲେ । ଜୀବନର ଅବଶିଷ୍ଟ ଅଂଶ ଏହି ଗୋଟିଏ ମାତ୍ର କାମରେ ଲଗାଇବି ବୋଲି ସ୍ଥିର କରିନେଲି । ତାହା

କରିପାରିବ ବହୁ ସଂଖ୍ୟକ ଶ୍ରେଷ୍ଠ ଶ୍ରେଷ୍ଠ ସୁଖପାଠ୍ୟ ବହି ଲେଖି ପ୍ରକାଶ କରିବା ଦ୍ୱାରା । ସେତେବେଳକୁ ଗାନ୍ଧୀକଥା, ପବନ, ମାଛ ଗୃଷ, ଶ୍ରେଷ୍ଠ କଥାଟା କଅଣ ଇତ୍ୟାଦି କେତେଖଣ୍ଡ ଶ୍ରେଷ୍ଠ ଶ୍ରେଷ୍ଠ ବହି ଲେଖି ସାରିଲଣି । ବାପୁଜୀଙ୍କ ସହିତ ହରିଜନ ପଦଯାତ୍ରାରେ ଥିଲାବେଳେ ଯାହାସବୁ ନୋଟ୍ କରିଥିଲି ତାକୁ ବ୍ୟବହାର କରି ୧୯୫୯ ଜାନୁୟାରୀରେ 'ବାପୁଜୀଙ୍କ ଓଡ଼ିଶାରେ ପଦଯାତ୍ରା' ବୋଲି ଖଣ୍ଡିଏ ବହି ଲେଖି ଦେଇଥିଲି । ସେହି ପଦଯାତ୍ରା ଉପରେ ସେ ଖଣ୍ଡିକ ହେଉଛି ଏକମାତ୍ର ପ୍ରାମାଣିକ ବହି । ଏତକ କରି ଥିବାରୁ ମୋର ସାହସ ହୋଇଗଲାଣି—'ଲେଖିଲେ ଲୋକେ ପଢ଼ିବେ' ଏଭଳି ବିଶ୍ୱାସ କରିବା ପାଇଁ । ସେତେବେଳେ ମୋ ବୟସ ଏକଷ୍ଟିଶ । ଝିଅ ଓ ପୁଅ—ଏଭଳି ଦୁଇଟି ସନ୍ତାନ । ସେମାନଙ୍କୁ ପଢ଼ାଇବାଟା ସେମିତି କିଛି ସମସ୍ୟା ହୋଇଯାଇ ନଥାଏ । ଅଳ୍ପ ଖର୍ଚ୍ଚରେ ଚଳିଯିବା ସମ୍ଭବ ହେଉ ଥାଏ । ତେଣୁ ଗାଁ ଛାଡ଼ି କଟକ ଗୃଲିଯିବି । ସବୁ ସମୟ ଦେଇ ଲେଖାପଢ଼ା କରିବି । ବହି ଲେଖିବାରେ ମନ ଦେବି ।

## ଏନ୍‌ସାଇକ୍ଲୋପିଡ଼ିଆର କଳ୍ପନା

ହଠାତ୍ ମନ ଭିତରେ ଗୋଟାଏ ପ୍ରଶ୍ନ ମୁଣ୍ଡ ଟେକିଲା । ଶ୍ରେଷ୍ଠ ବହିଟିଏ ଲେଖିବି । ସେ ଖଣ୍ଡିକ ଭଲ ହୋଇଛି ବୋଲି ପ୍ରଗ୍ୱର କରିବି । ଲୋକେ ତାକୁ ଆଦରିବେ—ତା' ହେଲେ ଯାଇ ସେ ଖଣ୍ଡିକ ବିକ୍ରି ହେବ । ଆଉ ଖଣ୍ଡିଏ ପ୍ରକାଶ ପାଇଲା ପରେ ଠିକ ସେହିଭଳି କରିବାକୁ ହେବ । ସେଭଳି ନ କରି ଯଦି ଗୋଟିଏ ସେଟ୍ ଏନ୍‌ସାଇକ୍ଲୋପିଡ଼ିଆ କରି ହୁଅନ୍ତା ତେବେ ଏସବୁ ସମସ୍ୟାର ସମାଧାନ କରିବାକୁ ପଡ଼ନ୍ତା ନାହିଁ । ପୂର୍ବରୁ ମୋର ଏନ୍‌ସାଇକ୍ଲୋପିଡିଆ ବ୍ରିଟାନିକା ସମ୍ପର୍କରେ କିଛି କିଛି ଧାରଣା ଥିଲା । କଟକ ଯାଇ ପାଞ୍ଚଦିନ ରହି ରେଭେନ୍‌ସା କଲେଜ ଲାଇବ୍ରେରୀରେ ଆଉ ଥରେ ସେ ବହି ସେଟ୍‌ଟିକୁ ଦେଖିଲି । ମୋଟ ମୋଟ ଚବିଶ ଖଣ୍ଡ ବହି । ଲାଇବ୍ରେରିୟାନ କହିଲେ—'ଆଉ ଯେଉଁ କେତୋଟି ଏନ୍‌ସାଇକ୍ଲୋପିଡିଆ ସେଟ୍ ରହିଛି ସେଗୁଡ଼ିକ ଉପରେ ଆଖି ପକାଇ ଦିଅନ୍ତୁ ।' ରିଲିଜନ ଆଣ୍ଡ ଏଥିକସ୍, ସୋସାଲ ସାଇନ୍‌ସ୍ ଏନ୍‌ସାଇକ୍ଲୋ-ପିଡିଆ ସାଙ୍ଗକୁ ଏନ୍‌ସାଇକ୍ଲୋପିଡିଆ ଆମେରିକାନା ମଧ୍ୟ ଦେଖିଲି । ବ୍ରିଟାନିକାରେ ଥିବା ପ୍ରବନ୍ଧଗୁଡ଼ିକୁ କେତେ ହଜାର ଲୋକ ଲେଖିଛନ୍ତି ଓ

ସେମାନେ କିଭଳି ବିଦ୍ୱାନ ଜ୍ଞାନୀ ବିଶେଷଜ୍ଞ ତାହା ମଧ୍ୟ ଲକ୍ଷ୍ୟ କଲି । ଗ୍ରନ୍ଥକାର ମୁଖବନ୍ଧଟିକୁ ଭଲ ଭାବରେ ପଢ଼ିଲି । ନଗେନ୍ ବସୁଙ୍କ ବଙ୍ଗଳା ବିଶ୍ୱକୋଷ (ଚବିଶ ଖଣ୍ଡ)ର ପୃଷ୍ଠାଗୁଡ଼ିକ ଓଲଟାଇ ଗଲି ।

ଘରକୁ ଫେରିଲା ବେଳକୁ ମୋ ମୁଣ୍ଡ ଖରାପ ହୋଇଗଲାଣି—ଗୋଟାଏ ସମ୍ପୂର୍ଣ୍ଣ ଗୋଳମାଳିଆ ପରିସ୍ଥିତିରେ ପଡ଼ିଗଲି ଭଳି ଅନୁଭବ କରୁଥାଏ । ମୁଁ ଯେ ଗୋଟାଏ ଏନ୍‌ସାଇକ୍ଲୋପିଡିଆ ସେଟ୍ ଲେଖିଦେବି ଏଇଟା ଦିବା ସ୍ୱପ୍ନ । ଜ୍ଞାନର ଏତେଗୁଡ଼ିଏ ବିଭାଗ, ପ୍ରତ୍ୟେକ ବିଭାଗରେ କେତେ ହଜାର ଲେଖା ରେଫରେନ୍‌ସ, ସୂଚନା ବା ବଡ଼ ବଡ଼ ପ୍ରବନ୍ଧ ରହିଛି । ସେଗୁଡ଼ିକୁ ଲେଖିଛନ୍ତି ପଣ୍ଡିତମାନେ । ଏତେ ସଂଖ୍ୟକ ଲୋକ ଯେଉଁ କାମ କରିଛନ୍ତି ଏକା ମୁଁ ତାହା କରିଦେବି ଏକଥା ଯିଏ ଶୁଣିବ ହସିବ । ହୁଏ ତ ଚେଷ୍ଟା କରିବି ଓଡ଼ିଶାର ବିଦ୍ୱାନ ମାନଙ୍କଠାରୁ ଲେଖା ଆଣି ଗୋଟିଏ ସଙ୍କଳନ ସେଟ୍ ବାହାର କରିବା ପାଇଁ । ସେମାନେ ପଇସା ନ ନେଇ ଲେଖାଦେବେ ବା କାହିଁକି—ମୁଁ ମାଗିବି ବା କାହିଁକି ? ମୋ ପାଖରେ ତ ପଇସା ନାହିଁ । ଲେଖା ଗୁଡ଼ିକ ଯେ ଯଥା ସମୟରେ ମିଳିବ ଏ ବିଷୟରେ କୌଣସି ନିଶ୍ଚିତତା ନାହିଁ । ଓଡ଼ିଆ ଭାଷାର ଶବ୍ଦ ଅଭିଧାନଟିଏ ପ୍ରକାଶ କରିବାକୁ ଯାଇ ଗୋପାଳଚନ୍ଦ୍ର ପ୍ରହରାଜ କିଭଳି ଅସୁବିଧାର ସମ୍ମୁଖୀନ ହୋଇଛନ୍ତି ସେ ବିଷୟରେ ମୋର କିଛି କିଛି ଅଭିଜ୍ଞତା ଥାଏ । ତାଙ୍କର ମୁହଁରୁ ବହୁ କଥା ଶୁଣିଛି । ସେ ବହୁ ଲୋକଙ୍କ, ସରକାରଙ୍କ, ରାଜା ମହାରାଜା ଧନୀ ଜମିଦାରଙ୍କ ଦ୍ୱାରସ୍ଥ ହୋଇଛନ୍ତି । ଅର୍ଥ ପାଇବେ ବୋଲି ଏଭଳି କେତେକ କାର୍ଯ୍ୟ କରିଛନ୍ତି ଯାହା ସେ କେବେହେଲେ କରି ନ ଥାନ୍ତେ—ଯଦି ଭାଷାକୋଷ ପ୍ରଣୟନ କରିନଥାନ୍ତେ । ଶେଷରେ ବହି ସେଟ୍‌ଟିକୁ ନାମ ଦେଲେ 'ପୂର୍ଣ୍ଣଚନ୍ଦ୍ର ଭାଷାକୋଷ'—ମହାରାଜା ପୂର୍ଣ୍ଣଚନ୍ଦ୍ର ସବୁଠାରୁ ଅଧିକ ଟଙ୍କା ଦେଇଥିଲେ ବୋଲି । ସେଭଳି ଗୋଟିଏ ଅମୂଲ୍ୟ ପୁସ୍ତକକୁ ବିକିବା ପାଇଁ ସେ କିପରି ଅସୁବିଧାର ସମ୍ମୁଖୀନ ହୋଇଛନ୍ତି ତାହା ମଧ୍ୟ ମୁଁ ଜାଣିଥାଏ । ତେଣୁ ମନ ଭିତରୁ ଓଡ଼ିଆ ଭାଷାରେ ଗୋଟିଏ ସେଟ୍ ଏନ୍‌ସାଇକ୍ଲୋପିଡିଆ ଲେଖିବା ବା ସଙ୍କଳନ କରିବା ଭାବନାକୁ ପୋଛି ଦେବାକୁ ହେବ । ତାହା ସାଙ୍ଗକୁ ପୁଣି ବିଶ୍ୱରିଲି ପ୍ରହରାଜେ ତ ଗୋଟିଏ

"ଶବ୍ଦ ଅଭିଧାନ" ସଙ୍କଳନ କରୁଥିଲେ । ମୁଁ କରିବାକୁ ବସିଛି ଗୋଟିଏ "ଜ୍ଞାନ ଅଭିଧାନ ।" ଏଥିରେ କେତେ କଥା ଲେଖା ହେବ ! ସେଥିପାଇଁ କେଉଁ ଧରଣରେ ସମ୍ପାଦକୀୟ ପ୍ରସ୍ତୁତି ପ୍ରତିଷ୍ଠାନକୁ ବାନ୍ଧି କରନ୍ତି ଓ କରୁଛନ୍ତି ତାହା ଜାଣି ହୋଇଯିବ ପ୍ରତିଷ୍ଠାନଙ୍କର ପୃଷ୍ଠା ଗୁଡ଼ିକ ଓଲଟାଇ ଗଲେ । ଯେତେ ଯୁଆଡ଼ୁ ବିଚାରିଲେ ମଧ୍ୟ ଏଭଳି ଦୁଃସାହସ କରିବା ଠିକ ହେବ ନାହିଁ—ଏଇଆ ବିଚାରିଲି ।

ତାହାହେଲେ କଅଣ ଏତେବଡ଼ ଭାବନାଟା ମନ ଭିତରେ ଗଜା ମାରି ସେହି ମନ ଭିତରେ ଶୁଖିଯିବ ! କିଛି କ'ଣ ଉପାୟ ନାହିଁ ? ଆଚ୍ଛା, ମୁଁ ନ କଲେ ବି ଅନ୍ୟ କେହି ଜଣେ ବା କୌଣସି ଅନୁଷ୍ଠାନ ତ ଓଡ଼ିଆ ଭାଷାରେ ଗୋଟିଏ ଏନ୍‌ସାଇକ୍ଲୋପିଡିଆ ସେଟ୍ ପ୍ରକାଶ କରିବା ଉଚିତ । ଓଡ଼ିଆ ଗୋଟିଏ ସମୃଦ୍ଧ ଭାଷା । ପ୍ରତ୍ୟେକ ସମୃଦ୍ଧ ଭାଷାରେ ଅନ୍ୟ ଯେତେ ପୁସ୍ତକ ପ୍ରକାଶ ପାଇଥାଉ ନା କାହିଁକି ଗଲା ଶହେ ଅଶୀବର୍ଷ ଭିତରେ ଲୋକେ ପଚାରି ହୁଅନ୍ତି—ସେ ଭାଷାରେ ଗୋଟିଏ ଭଲ ଶବ୍ଦ ଅଭିଧାନ (ଡିକ୍‌ସନାରୀ) ଓ ଗୋଟିଏ ଜ୍ଞାନ-ଅଭିଧାନ (ଏନ୍‌ସାଇକ୍ଲୋପିଡିଆ) ଅଛି ତ ? ସେଭଳି ନଥିଲେ ସେଇଟିକୁ ପ୍ରକୃତ ଅର୍ଥରେ ସମୃଦ୍ଧ ଭାଷା ବୋଲି କାହିଁକି କୁହାଯିବ ? ବଙ୍ଗଳାରେ ନଗେନ୍ ବସୁ ୨୪ ଖଣ୍ଡରେ 'ବିଶ୍ୱକୋଷ' ଲେଖିଦେଲେ । ମରହଟ୍ଟୀ ଭାଷା ରେ ଗୋଟିଏ ଶ୍ରେଷ୍ଠ ଏନ୍‌ସାଇକ୍ଲୋପିଡିଆ ଅଛି । ଓଡ଼ିଆରେ କେବେହେଲେ ଗୋଟିଏ ସେଟ୍ ଏହି ଧରଣର ବହି ବାହାରି ପାରିବ ନାହିଁ ବୋଲି କହି ଉତ୍କଳମଣି ଗୋପବନ୍ଧୁ ଦୁଃଖଭରା ହୃଦୟର ପରିଚୟ ଦେଇଥିଲେ । କିଛି ତ ଗୋଟାଏ ନିଷ୍ପତ୍ତି କରିବାକୁ ହେବ ।

କେଜାଣି କେମିତି ଦିନେ ସତେ ଯେପରିକି ଗୋଟାଏ ବାଟ ପାଇଗଲି । ବିଚାରିଲି—ଗୋଟିଏ ସେଟ୍ ପପୁଲାର ବିଶ୍ୱକୋଷ ଲେଖି ହିଆଯାଇପାରେ । ପପୁଲାର ଶବ୍ଦଟିକୁ ଲୋକପ୍ରିୟ ବା ଜନପ୍ରିୟ ଅର୍ଥରେ ବ୍ୟବହାର ନ କରି 'ସୁଖପାଠ୍ୟ' ଅର୍ଥରେ ମନେ ମନେ ବ୍ୟବହାର କରୁଥାଏ । ବିଜ୍ଞାନର କେତେକ ବିଭାଗରେ ଏଭଳି ବିଷୟ ସବୁ ଅଛି ଯେ ଗଣିତ ଉପରେ ଦଖଲ ନଥିଲେ ବା ଗଣିତର ଭାଷାକୁ ଭଲ ଭାବରେ ବୁଝିପାରୁ ନଥିଲେ ସେ ବିଷୟ ଗୁଡ଼ିକ ବୁଝିହେବ ନାହିଁ । କିନ୍ତୁ ସାଧାରଣ

ପାଠକ ମୋଟାମୋଟି ଭାବରେ ବହୁତ କଥା ଜାଣି ନପିବ ବା କାହିଁକି ? ପଦାର୍ଥ ବିଦ୍ୟା ବା ରସାୟନ ଶାସ୍ତ୍ରର ବହିକୁ ଓଡ଼ିଆରେ ବାଜମାତ ବିଜ୍ଞାନରେ ଏମ୍. ଏ. ପାଶ୍ କରିଥିବା ଜଣେ ପାଠକ ହୁଏତ ବୁଝିପାରୁ ନାହାନ୍ତି । କାରଣ ସେ ବହିରେ ନାନା ପ୍ରକାରର ଫର୍ମୁଲା, ସଙ୍କେତ, ଗଣିତ ରହିଛି । କିନ୍ତୁ ସେ ବହିର ଅଧାଅଧି ବିଷୟ ବସ୍ତୁତ ବୁଝିହୋଇ ଯାଉଛି । ଠିକଏ ଚେଷ୍ଟା କଲେ ରସାୟନ ଶାସ୍ତ୍ର ଭିତରେ ଯେଉଁ ଚମକପ୍ରଦ କାହାଣୀ ଅଛି ତାକୁ ବୁଝି ହୋଇଯାଉଛି । ପଦାର୍ଥ ବିଦ୍ୟା ବିଷୟରେ ମଧ୍ୟ ସେହି କଥା କୁହାଯାଇ ପାରେ । ଧର୍ମ, ସମାଜଶାସ୍ତ୍ର, ରାଷ୍ଟ୍ରନୀତି, ଅର୍ଥନୀତି, ଭାଷାତତ୍ତ୍ୱ, ମନସ୍ତତ୍ତ୍ୱ ଇତ୍ୟାଦିର ବିଷୟ ବସ୍ତୁକୁ ସହଜରେ ବୁଝାଇ ଦେଇ ହେବ । ଅବଶ୍ୟ ମୋର ଯେତିକ ଜ୍ଞାନ ଏବେ ୧୯୫୩ରେ ଅଛି ସେଥିରେ ତାହା ସହଜ ହେବ ନାହିଁ—କିନ୍ତୁ ପାଞ୍ଚବର୍ଷ ବହୁତ ସମୟ ଦେଇ ପଢ଼ି ଦେଲେ ଓ ବିଜ୍ଞାନକୁ କେତେଜଣଙ୍କ ସାହାଯ୍ୟରେ ପଢ଼ିଦେଲେ ହୁଏ ତ କାମ ଚଳିଯିବ । ଧରି ନିଆଯାଉ ଯେ ପାଞ୍ଚବର୍ଷ ପଢ଼ିଲା ପରେ ଅନୁଭବ କଲି ଯେ ମୁଁ ଏକା ଏକା ଏଭଳି ଗୋଟିଏ ପୁସ୍ତକ ସେଟ୍ ଲେଖିପାରିବି ନାହିଁ । କିନ୍ତୁ ଯାହା ପଢ଼ିଥିବି, ଯେଉଁସବୁ ନୋଟ୍ କରିଥିବି ତାହାର ସାହାଯ୍ୟରେ ବହୁ ସଂଖ୍ୟକ ଶ୍ରେଷ୍ଠ ବଡ଼ ବହି ଲେଖିଦେବି । ପୃଥିବୀରେ ଅନ୍ତତଃ ଦୁଇଶହ କି ତିନିଶହ ଲୋକ ଜନ୍ମ ହୋଇଛନ୍ତି, ଯେଉଁମାନଙ୍କ ଜୀବନୀ ପଢ଼ିଲେ ସମସ୍ତେ ଉପକୃତ ହେବେ—ପିଲାଙ୍କଠାରୁ ବଡ଼ଙ୍କ ପର୍ଯ୍ୟନ୍ତ । ସେମାନଙ୍କ ଜୀବନୀ ଲେଖିଦେବି । ସେମିତି ସବୁଦେଶର ସ୍ୱାଧୀନତା ସଂଗ୍ରାମର କାହାଣୀ ଲିପିବଦ୍ଧ କରିଯିବି । ରାମାୟଣ ମହାଭାରତରୁ ବହୁ କାହାଣୀକୁ ମୌଳିକ ରଙ୍ଗ ଦେଇ ନୂତନ ଢଙ୍ଗରେ ପାଠକଙ୍କ ନିକଟରେ ରଖି ଯାଇ ପାରେ । ଭାରତ ପରାଧୀନ ହେଲାଠାରୁ ସ୍ୱାଧୀନ ହେଲା ପର୍ଯ୍ୟନ୍ତ ଯେତେ ଯେତେ ଘଟଣା ଘଟିଯାଇଛି ତାହାର ବର୍ଣ୍ଣନା ବହୁ ସଂଖ୍ୟକ ଶ୍ରେଷ୍ଠ ବହିରେ କରିଯାଇ ପାରେ । ମଣିଷର କଳ୍ପନାର କେଉଁଠି ସୀମାରେଖା ଟଣା ଯାଇନାହିଁ । ବହୁତ କିଛି କରିଯାଇପାରେ । ତେଣୁ ଏନ୍‌ସାଇକ୍ଲୋ-ପିଡିଆ ପାଇଁ ଯେଉଁ ପ୍ରସ୍ତୁତି ଚାଲିବ ତାହା ବୃଥା ଯିବ ନାହିଁ ।

ଏତିକି ଭାବିଦେଲା ପରେ ମୁଣ୍ଡଟା ହାଲୁକା ହୋଇଗଲା—ମନ ଖୁସୀ ହୋଇଗଲା । ଆଉ ଡେରି ନକରି ଘର ଛାଡ଼ି କଟକ ଚାଲିଯିବି ।

ବୟସ ହୋଇଗଲଣି ଏକଚାଳିଶ—ଦେହ ବଳ ମନ ବଳ ଅତୁଟ ରହିଛି । ଦୁଇଟି ମାତ୍ର ପିଲା । ଗୋଟିକୁ ଆଠବର୍ଷ—ଅନ୍ୟଟିକୁ ଛ' ବର୍ଷ । ସେମାନେ ଗାଁ ସ୍କୁଲରେ ପଢ଼ିବେ । କଟକରେ କେଉଁଠି ରହିବ ଓ କେମିତି ଚଳିବ —ସେଇଥିଲା ସମସ୍ୟା । ଆମ ଗାଁର ଜଣେ କଟକରେ ଚାକିରି କରନ୍ତି —ପିଅନ । ସେ କହିଲେ ଆମ ବନ୍ଧୁ ବାନ୍ଧବ ହେବେ ଗୋପାଳ ବାବୁ । ସେ ଗୋଟିଏ ହୋଟେଲ ଖୋଲିଛନ୍ତି । ତା' ଭିତରେ ରହିବାର ବ୍ୟବସ୍ଥା ଅଛି । ତମ ପାଇଁ ସେ ଗୋଟିଏ ବଖରା ଛାଡ଼ିଦେବେ—ମାସକୁ ମାତ୍ର କୋଡ଼ିଏ ଟଙ୍କା ଭଡ଼ା । ଖାଇବା ବାବଦ ଟଙ୍କା ପ୍ରତିମାସ ଶେଷରେ ନେବେ । ଚଳିବା ପାଇଁ ଗୋଟିଏ ଅନିଶ୍ଚିତ ପନ୍ଥା ଥାଏ । ସେତେବେଳକୁ କେତେ କୋଡ଼ିଏ ଶ୍ରେଷ୍ଠ ବହି ଲେଖିଦେଲିଣି । ଗାନ୍ଧୀ, ପଟେଲ, ନେହରୁଙ୍କ ଶ୍ରେଷ୍ଠ ଜୀବନୀ ପ୍ରାଇମେରୀ ସ୍କୁଲରେ ଅତିରିକ୍ତ ପାଠ୍ୟ ପୁସ୍ତକ । ପ୍ରକାଶକ କଟକ ଟ୍ରେଡ଼ିଂ କମ୍ପାନୀ । ସେ ସୂତ୍ରରୁ କିଛି କିଛି ପଇସା ମିଳିବ ।

## ମାତ୍ର ଗୋଟିଏ ଟଙ୍କା.........

ଏହି ସନ୍ଧାନ୍ତରେ ମୋ ଭାବନାର ଶେଷ ଦିନ ହେଲା ୧୯୫୩ ଡିସେମ୍ବର ଏକତିରିଶ ତାରିଖ । ସେହିଦିନ ସନ୍ଧ୍ୟା ପୂର୍ବରୁ ମହାନଦୀ ବାଲିରେ ଯାଇ ବସିଲି । ଆମ ଗାଁ ପାଖରେ ନଦୀର ସ୍ରୋତ ଓସାରିଆ ନୁହେଁ । ଓସାରିଆ ନଈରେ ବାଲି ଭର୍ତ୍ତି । ପଶ୍ଚିମ ଦିଗରେ ସୂର୍ଯ୍ୟ ଅସ୍ତ ହେଲାବେଳେ ଚମତ୍କାର ଦୃଶ୍ୟ । ସେଦିନ ସତେ ଯେପରିକି ସୂର୍ଯ୍ୟଙ୍କ ସନ୍ଧ୍ୟା କିରଣ ଅଧିକ ଲାଲ ହୋଇ ଯାଇଥାଏ । ଭାବୁଥାଏ କେଉଁଦିନ କଟକ ଯିବି । ସନ୍ଧ୍ୟା ହୋଇ ଆସିଲା । ନଦୀ ପଠା ଭିତରୁ ଗୋଟାଏ ହେଣ୍ଟା ଧାଇଁ ଧାଇଁ କୂଳକୁ ଯାଇ ଉପରକୁ ଉଠିଗଲା । କିଛି ସମୟ ପରେ ମଇଁଷି ଗୋଠ ବାଲିକୁ ଓଡ଼ିଲେ । ସଞ୍ଜ ହୋଇ ଗଲାଣି—ମୁଁ ଏକୁଟିଆ ବସିଛି ଦେଖି ମଇଁଷିଆଳ ଟିକିଏ କାବା ହୋଇଗଲା । ଏଇବାଟେ ହେଣ୍ଟାଟା ଗଲା ବୋଲି ସେ ସତର୍କ କରିଦେଲା । ମୋ ମନ ଭିତରଟା ଏଭଳି ଅବସ୍ଥାରେ ଥାଏ ଯେ ହେଣ୍ଟା ମୋ ପାଖକୁ ଲାଗି ଆସିଥିଲେ ମଧ୍ୟ ମୁଁ ଜାଣି ପାରିନଥାନ୍ତି । ସୂର୍ଯ୍ୟ ଅସ୍ତ, ଅନ୍ଧାର ଧୀରେ ଧୀରେ ଆସିବା, ହେଣ୍ଟା ମଇଁଷି ଦୃଶ୍ୟ—ମନ ଉପରେ ବେଶ୍ ଗୋଟାଏ ଆନନ୍ଦଦାୟକ ପ୍ରଭାବ ପକାଉଥାଏ । ରାତି ଘଡ଼ିଏ ସୁଦ୍ଧା ଘରକୁ ଫେରିଲି ।

ତାହା ପରଦିନ କଅଣ ଗୋଟାଏ ପର୍ବ ଥାଏ । ପିଠା ହେବ ବୋଲି ଶଶୀବାଳାଙ୍କ ପ୍ରସ୍ତୁତି । ଦି' ପିଲାଙ୍କ ବରାଦ କେମିତି ଭଲ ପିଠାସବୁ

ହେବ । ଶୋଇଗଲି ବେଳକୁ ମନର କଥା କହିଲି । ବିଶ୍ୱକୋଷ ପାଇଁ କଟକ ଯାଉଛୁ ବୋଲି ନକହି ଗୁଡ଼ାଏ ବହି ଲେଖିବା ମୋର ଉଦ୍ଦେଶ୍ୟ ବୋଲି ବୁଝାଇଲି । ଆମର ତ ଆଉ କ୍ଷମତା ରାଜମାନ୍ତରେ କିଛି ଭବିଷ୍ୟତ ନାହିଁ—ସେଥିରେ ପଶିବା ପାଇଁ—ପ୍ରବୃତ୍ତି ମଧ୍ୟ ନାହିଁ । ଯେଉଁ ଗାନ୍ଧୀ ଅନୁଷ୍ଠାନ ଓଡ଼ିଶାରେ କିଛି କିଛି ଗାନ୍ଧୀ କାମ କରୁଛନ୍ତି ସେମାନଙ୍କ ମନରେ କୌଣସି ପ୍ରକାରର ନବଗଠନର କଳ୍ପନା ନାହିଁ । ଅଳ୍ପରେ ସନ୍ତୁଷ୍ଟ ରହିବା ହେଲଣି ସେମାନଙ୍କର ମତ । ନୂଆ ନୂଆ ଉତ୍ସାହୀ ଯୁବକ ଗାନ୍ଧୀ କାମ ପାଇଁ ଆସୁନାହାନ୍ତି । ସେମାନଙ୍କୁ ପ୍ରେରଣା ଦେବାଭଳି ସାମର୍ଥ୍ୟ କାହାରି ନାହିଁ । ଆମ ଶିଙ୍ଗରେ ଆମେ ମାଟି ଖୋଳିବା । ଆମ ପିଲା ଦୋଟିଙ୍କର ତ ପୁଣି ଭବିଷ୍ୟତ ଅଛି । ସବୁ ଶୁଣିଲା ପରେ ସେ ରାଜି ହୋଇଗଲେ । ଜୀବନର ଗୋଟାଏ ନୂତନ ଅଧ୍ୟାୟ ଖୋଲିବାକୁ ହେବ । ସେ ପଚାରିଲେ —ପାଖରେ ତ ପଇସା ନାହିଁ—ଖାଲି ହାତରେ କଅଣ ଯିବ ? କେତେ ଅଛି ବୋଲି ପଚାରିବାରୁ ଉତ୍ତର ମିଳିଲା—ମାତ୍ର ତିନୋଟି ଟଙ୍କା ଅଛି । ମୁଁ କହିଲି ମୋର ଏତେ ଦରକାର ନାହିଁ—ମାତ୍ର ଗୋଟିଏ ଟଙ୍କା ନେଇ ଯିବି । ସେ ବିସ୍ମୟ ପ୍ରକାଶ କଲାରୁ ବୁଝାଇଲି—ଠିକ କଣ ନୁହେଁ ମୁଁ କହିପାରିବି ନାହିଁ, କିନ୍ତୁ ଶୁଣିଛି ରାମାନନ୍ଦ ଚଟର୍ଜୀ ମାତ୍ର ଗୋଟିଏ ଟଙ୍କା ଟେବୁଲ ଉପରେ ରଖି କହିଲେ ମୁଁ 'ମଡର୍ଣ୍ଣରିଭ୍ୟୁ' ଓ 'ପ୍ରବାସୀ' ପତ୍ରିକା ବାହାର କରିବି । ସେ ସେଭଳି କଲେ ଓ ଚରମ ସଫଳତା ଲାଭ କଲେ । ସେ ଥିଲେ ଜଣେ ନିର୍ଭିକ ପୁରୁଷ । ଏତେ କରି ନ ପାରିଲେ ମଧ୍ୟ ଟଙ୍କାଟିଏ ପାଖରେ ରଖି ଖଣ୍ଡେ ଦି'ଖଣ୍ଡ ଶ୍ରେଷ୍ଠ ବହି ଲେଖିଦେବି । ତୁମେ ସେ ବିଷୟରେ ଆଦୌ ଚିନ୍ତା କରନାହିଁ । ଯେଉଁଦିନ କଟକରେ ଅସୁବିଧା ହେବ ଗାଁକୁ ଚାଲି ଆସିବି—ପୁଣି ଯିବି । ସେ ହଁ ହଁ କହୁଥାଆନ୍ତି ସତ—ମନଟା କିନ୍ତୁ ମାନୁ ନଥାଏ । ଶୂନ୍ୟ ହସ୍ତରେ ଅନିଶ୍ଚିତତା ଭିତରେ ପ୍ରବେଶ କରିବାଟା ନିଶ୍ଚୟ ଦୁଃସାହସିକ କାର୍ଯ୍ୟ ବୋଲି ସେ ବିଚାରିବା ସ୍ୱାଭାବିକ । କିନ୍ତୁ ମୁଁ ତ ମନ ସ୍ଥିର କରି ସାରିଲିଣି । ଆଗକୁ ଯିବି—ପଛକୁ ଫେରିବାର ପ୍ରଶ୍ନ ହିଁ ନାହିଁ । ଏମିତି ଆଲୋଚନା ହେଉ ହେଉ ରାତ୍ରି ପ୍ରାୟ ତିନିଟା ବାଜିଗଲା । ସେ ଚାଲିଲେ ଚୋଷେଇ ଘରକୁ—ପିଠା ତିଆରି କରିବା ପାଇଁ । ସେତେବେଳେ ମୋର ଘଣ୍ଟା ନ ଥିବାରୁ କେତେ ସମୟ ହୋଇଥିଲା କହିପାରୁ ନାହିଁ । (୧୯୩୮ ବେଳେ

ମୋର ଗୋଟିଏ ହାତବନ୍ଧା ଘଡ଼ି ଥିଲା । ଡେଲଙ୍ଗ ଗାନ୍ଧୀ ସେବା ସଂଘ ଅଧିବେଶନ ବେଳେ ମୁଁ ତ ବାପୁଜୀଙ୍କ ତମ୍ବୁ ପାଖରେ ରହୁଥିଲି । ରାତିରେ ଧନେ ଉଠୁ ଉଠୁ ଡେରି ହୋଇଗଲା । ନିକଟରେ ଗୋଟିଏ ବଡ଼ ପୁଷ୍କରିଣୀ । ତରତର ହୋଇ ଗାଧୋଇବାକୁ ଚାଲିଗଲା ବେଳେ ହାତରେ ଯେ ଘଡ଼ି ଅଛି ମନେ ନଥିଲା । ଠିକଏ ହୁଗୁଳା ହୋଇ ବନ୍ଧା ହୋଇଥାଏ । ପାଣି ଭିତରେ ଖସି ପଡ଼ିଲା । ଖୋଜିଲେ ମିଳିଲା ନାହିଁ । ତାହାପରେ ଆଉ କିଣି ପାରିଲି ନାହିଁ । ୧୯୬୭ରେ ଶହେଟଙ୍କା ଦେଇ ଗୋଟିଏ ଏଚ. ଏମ ଟି ଘଡ଼ି କିଣିଥିଲି ।

ସେଦିନ ଉତ୍ସବ । ଉପରବେଳାଯାଏ ରହିବା ପାଇଁ କହିଲେ । ଦିନ ତିନିଟାବେଳେ ଟଙ୍କାଟିଏ ପକେଟରେ ପୂରାଇ ଖଣ୍ଡିଏ ଖଦଡ଼ ସତରଞ୍ଜି, ଖଦଡ଼ ମଶାରି, ଲୁଗା ଚଦର କେତେ ଖଣ୍ଡ, କିଛି ବହି ଖାତାଧରି କଟକ ଚାଲିଲି ଓଡ଼ିଆ ଭାଷାର ଏନସାଇକ୍ଲୋପିଡିଆ ଲେଖିବା ପାଇଁ । ସେତେବେଳେ ଟଙ୍କାକ ଥିଲା ଷୋହଳ ଅଣା । ଶହେ ପଇସାର ହିସାବ ନଥିଲା । ବାଟରେ ଅଣାଟିଏ ଦେଇ କପେ ଚାହା ପିଇଲି । କଟକରେ ପହଞ୍ଚିଲି ରାଜକିଶୋର ଜେନଙ୍କ ବସାରେ । ଘର ଓଳାଇବା ପାଇଁ ଅଣାଏ ମୂଲ୍ୟର ଗୋଟିଏ ଖଜୁରି ପତ୍ର ଝାଡ଼ୁଣି ଓ ପାଞ୍ଚଅଣା ପଇସାରେ ଗୋଟିଏ ତାଲା କିଣାହେଲା । ସେ ଅତି ଶ୍ରଦ୍ଧାର ସହିତ ଘରଟିକୁ ଓଳାଇ ଦେଲେ । ଦୁଇଟି ଖଟ ପଡ଼ିଥିଲା । ଦୁ'ଜଣ ଯାକ ମୁହାଁ ମୁହିଁ ହୋଇ ବସିଲୁ । ସେଦିନ ରାତିରେ ମୁଁ ତାଙ୍କ ଘରେ ଖାଏ ବୋଲି ସେ ନିମନ୍ତ୍ରଣ କଲେ । ମୋ ପାଖରେ କେତେଗୁଡ଼ିଏ ପିଠାଥିଲା । ସେ ଆସିବେ ଆମେ ଦୁ'ଜଣ ଖାଇବା ବୋଲି କହିଲାରୁ ସେ ହସିଲେ । ଏହିଭଳି ଭାବରେ ୧୯୫୪ ଜାନୁୟାରୀ ପହିଲାଦିନ ମୋର ସାହିତ୍ୟକ ଜୀବନ ପ୍ରକୃତ ଅର୍ଥରେ ଆରମ୍ଭ ହୋଇଗଲା । ଏବେ ମଧ୍ୟ ଜ୍ଞାନମଣ୍ଡଳ ଅଫିସର ପ୍ରତ୍ୟେକ ର୍‍ୟାକରେ "୧୯୫୪" ବୋଲି ଲେଖାଅଛି । ଜ୍ଞାନମଣ୍ଡଳର ସିମ୍ବଲ ବା ପ୍ରତୀକ ହେଉଛି ଗୋଟିଏ ଚକ୍ର । ତା ତଳେ ଦେଖିବେ ୧୯୫୪—ଏହାର ଅର୍ଥ ହେଲା ୧୯୫୪ରେ ଜ୍ଞାନମଣ୍ଡଳ ପାଇଁ ପ୍ରସ୍ତୁତ ଆରମ୍ଭ ହେଲା । ଆଜି ୧୯୮୭ ଡ଼ିସେମ୍ବର ଦୁଇ ତାରିଖ ଦିନ ଏହି ବାକ୍ୟଟି ଲେଖିଲାବେଳେ ତେତିଶ ବର୍ଷ ପଛକୁ ଚାହୁଁଛି । ଗୋଟାଏ ସପନ ଦେଖୁଛି ବୋଲି ମନେ ହେଉଛି—କିଛି କିଛି ସନ୍ତୋଷ ମିଳୁଛି—ତେତିଶ ବର୍ଷ ବୃଥା ଯାଇନାହିଁ ବୋଲି ବିଚାରୁଛି ।

## ଲୋକେ ହସିବେ ସିନା

ସେହି ପନ୍ଦର ଦିନ ରାତରେ ଶୋଇ ଶୋଇ ବିଚାରିଲି କାହାକୁ ପରାମର୍ଶରେ ସୁଦ୍ଧା କହିବି ନାହିଁ ଯେ ଛୋଟିଏ ସେଟ ଓଡ଼ିଆ ବିଶ୍ୱକୋଷ ଏକା ଏକା ଲେଖିଦେବି ବୋଲି କାର୍ଯ୍ୟ ଆରମ୍ଭ କରିଛି । ଏହାଦ୍ୱାରା ଅନ୍ୟ ମାନଙ୍କ ବିଦ୍ରୂପକୁ ବରଣ କରି ଆଣିବି ସିନା, ଅନ୍ୟ କିଛି ଲାଭ ନାହିଁ । ପ୍ରଥମରୁ ତ ସମସ୍ତଙ୍କର ବିଶ୍ୱାସ ଯେ ଓଡ଼ିଆ ଭାଷାରେ ଜ୍ଞାନ ବିଜ୍ଞାନର ସବୁ ବିଭାଗର କଥା ଲେଖିହେବ ନାହିଁ । ହେଲେବି ଏତେ ଲୋକଙ୍କୁ ଏକାଠି କରି ଲେଖାଇବ କିଏ ? ଲେଖା ସଂଗ୍ରହ ହେଲେ ମଧ୍ୟ ଏତେ ଲକ୍ଷ ଟଙ୍କା ଖର୍ଚ୍ଚ କରି ପ୍ରକାଶ କରିବ କିଏ ? ଓଡ଼ିଶାରେ ଲୋକଙ୍କର ବହି କିଣିବା ପାଇଁ ଯେଉଁଭଳି ମନ ସେଥିରେ ଗୋଟିଏ ସେଟ୍ ଦାମିକା ବହି କେତେଖଣ୍ଡ ବା ବିକ୍ରି ହେବ ? ପରିସ୍ଥିତି ଏହିଭଳି ଥିଲାବେଳେ ଜଣେ ଲୋକ ବିଶ୍ୱ କୋଷର ସବୁତକ ପ୍ରବନ୍ଧ ଲେଖିଦେବ—ଏହା ନିଶ୍ଚୟ ଗୋଟାଏ ଅସମ୍ଭବ କଥା । ଅତି ମାତ୍ରାରେ ଅହଂଭାବ ନଥିଲେ କେହି ଏମିତିକା କଥାଟାଏ କହିବାତ ଦୂରର କଥା, ବିଚାରିବ ନାହିଁ ମଧ୍ୟ । ଦ୍ୱିତୀୟ କଥ , ମୋର ତ କୌଣସି ଶିକ୍ଷାଗତ ଯୋଗ୍ୟତା ନାହିଁ—ତାହାର ଅର୍ଥ କଲେଜ ଦୁଆର ମାଡ଼ି ନାହିଁ । ଏପରିକି ମାଟ୍ରିକ ପାଠ ମଧ୍ୟ ପଢ଼ି ନାହିଁ । କେତେଖଣ୍ଡ ଗ୍ରୀଷ୍ଟ ଗ୍ରୀଷ୍ଟ ବହି ଲେଖିଦେଲି ବୋଲି ଯେ ଗୋଟାଏ ସେଟ ବିଶ୍ୱକୋଷ ଲେଖି ଦେବି ଏହା କଣ ସମ୍ଭବ ! ଏହିଭଳି ବିଚାରି କାହାକୁ କିଛି କହୁ ନଥାଏ । ବେଶୀତ ବୁଲାବୁଲି କରିବାକୁ ବେଳ ନଥାଏ । ଅନେକ ବନ୍ଧୁ ବିଚାରନ୍ତି ମୁଁ ଆଜି ସେମିତି କିଛି କରୁନାହିଁ ।

୧୯୫୪ ପରଠାରୁ ଦୁଇ ତିନୋଟି କାମ ଯୋଗୁ ଓଡ଼ିଶାର ପ୍ରକାଶକ ଲେଖକ ଓ ଶିକ୍ଷା ବିଭାଗର କର୍ମକର୍ତ୍ତାମାନଙ୍କ ଭିତରେ ମୋର ଟିକିଏ ନାଁ ହୋଇ ଯାଇଥାଏ । ମୌଲାନା ଆଜାଦ ଶିକ୍ଷାମନ୍ତ୍ରୀ ଥାଆନ୍ତି । ହୁମାୟୁନ କବିର ତାଙ୍କର ଡାହାଣ ହାତ । ସେହି ସମୟରେ ଭାରତ ସରକାର ଗୁରୁତ୍ୱର ସହିତ ବିଚାର କଲେ ଦେଶରେ ପ୍ରୌଢ଼ଶିକ୍ଷାର ପ୍ରସାର ପାଇଁ । ତାହାର ଇଂରାଜୀ ପ୍ରତିଶବ୍ଦ ହେଉଛି ଆଡ଼ଲ୍ଟ ଏଡ୍‌ଯୁକେସନ ( Adult-Education ଲୋକଙ୍କୁ ପ୍ରଥମେ ସାକ୍ଷର କରିବାକୁ ହେବ । ଯେଉଁମାନେ ସାକ୍ଷର ହେଲେ ସେମାନଙ୍କୁ ନାନା ବିଷୟରେ ଶିକ୍ଷା ଦେବାର ବ୍ୟବସ୍ଥା

କରାଯିବ । ତାହା ସାଙ୍ଗକୁ ଯେଉଁମାନେ ଅଳ୍ପ ଅଳ୍ପ ପାଠ ପଢ଼ି ଅଧିକ ଶିକ୍ଷାର ସୁଯୋଗରୁ ବଞ୍ଚିତ ହୋଇଛନ୍ତି ଓ ଆଉ ଶିକ୍ଷା ଲାଭ କରିବେ, ଜ୍ଞାନ ବୃଦ୍ଧି କରିବେ ବୋଲି ଭରସା ରଖି ନାହାନ୍ତି । ସେମାନଙ୍କ ଶିକ୍ଷା ପାଇଁ ମଧ୍ୟ ବ୍ୟବସ୍ଥା କରାଯିବ । ପଣ୍ଡିତ ନେହେରୁ ଏ ବିଷୟରେ ବ୍ୟକ୍ତିଗତ ଭାବରେ ଆଗ୍ରହୀ ଥିବାରୁ ଶିକ୍ଷା ବିଭାଗର ଏହି କାର୍ଯ୍ୟକ୍ରମ ପାଇଁ ଟଙ୍କାର ଅଭାବ ନଥିଲା । ଅଭାବ ଥିଲା ଲୋକବଳ ଓ ଟଙ୍କା ଖର୍ଚ୍ଚ କରିବାର ଯୋଜନା । ଦେଶର ଚାରିଆଡ଼େ ବହୁ ସଂଖ୍ୟକ କର୍ମୀ ଏହି ଉଦ୍ଦେଶ୍ୟରେ ନିଯୁକ୍ତ ହେଲେ । ସେମାନଙ୍କ ଭିତରୁ ଅନେକ ହେଉଛନ୍ତି ଶିକ୍ଷକ । ବୟସ୍କ ଲୋକେତ ଦିନ ତମାମ ବ୍ୟସ୍ତ ଥିବେ, ରାତି ହେଲେ ଅକ୍ଷର ଶିଖିବାକୁ ବା ପଢ଼ିବାକୁ ସମୟ ପାଇବେ । ତେଣୁ ପ୍ରତ୍ୟେକ ପ୍ରୌଢ଼ଶିକ୍ଷା କର୍ମୀଙ୍କୁ ଲଣ୍ଠନ, କିରାସିନ, ବ୍ଲାକବୋର୍ଡ଼, ଚକ ଓ ବର୍ଣ୍ଣ ପରିଚୟ ପୁସ୍ତକ ଯୋଗାଇ ଦିଆଯାଇଥାଏ । ଏହି ଯୋଜନାର ଚୋଠାହେଲା ବେଳେ ସ୍ଥିର ହେଲା ଯେ ପ୍ରତ୍ୟେକ ପ୍ରୌଢ଼ଶିକ୍ଷା କର୍ମୀ ବା ଶିକ୍ଷକଙ୍କୁ ଖଣ୍ଡେ ଲେଖା ହ୍ୟାଣ୍ଡବୁକ ବା ସହାୟକ ପୁସ୍ତକ ଦିଆଯିବ । ସେଥିରେ କୃଷି, ସ୍ୱାସ୍ଥ୍ୟ, ସାଧାରଣ ଜ୍ଞାନ, ମତ୍ସ୍ୟ-ଚାଷ, ମାଛଚାଷ, ଗୋପାଳନ ସମବାୟ ପ୍ରଭୃତି ବିଷୟରେ ଟିକିଏ ଟିକିଏ ଉଲ୍ଲେଖ ଥିବ । ତାହାର ସାହାଯ୍ୟରେ ଶିକ୍ଷକ ଲୋକଙ୍କୁ ଶିକ୍ଷାଦେବେ । ଲୋକେ ଆଗ୍ରହରେ ଆସିବେ । କଅଣ କଅଣ ଦିଆଯିବ ତାହାର ଗୋଟିଏ ଦୀର୍ଘ ତାଲିକା ଭାରତ ସରକାର ତିଆରି କରିଦେଲେ । ରାଜ୍ୟ ସରକାର ମାନଙ୍କୁ ନିର୍ଦ୍ଦେଶ ଆସିଲା ତୁରନ୍ତ ଏହିଭଳି ଗୋଟିଏ ପୁସ୍ତକ ଲେଖାଇ ପ୍ରକାଶ କରିବା ପାଇଁ ।

ଓଡ଼ିଶାରେ ଶିକ୍ଷାମନ୍ତ୍ରୀ ଥାଆନ୍ତି ପଣ୍ଡିତ ଲିଙ୍ଗରାଜ ମିଶ୍ର । ଡି.ପି.ଆଇ. ଥାଆନ୍ତି ମହେଶ ଚନ୍ଦ୍ର ପ୍ରଧାନ । ଶିକ୍ଷାମନ୍ତ୍ରୀ କହିଲେ ଶୀଘ୍ର ବିଭିନ୍ନ ବିଭାଗରୁ ଲେଖା ମଗାଇ ବହିଟିକୁ ପ୍ରକାଶ କରିଦିଆଯିବ । ଡି. ପି. ଆଇ. ଦିନେ ସୁଦ୍ଧା ବିଳମ୍ବ ନକରି ସରକାରଙ୍କର ପ୍ରତ୍ୟେକ ବିଭାଗକୁ ଚିଠି ଲେଖିଦେଲେ ତଥ୍ୟ ସମ୍ବଳିତ ଲେଖାସବୁ ପଠାଇବା ପାଇଁ । ଖୁବ୍ ଡେରି ହେଲେ ଦୁଇମାସ ଭିତରେ ଲେଖା ଆସିଯିବା ଦରକାର ବୋଲି ଜଣାଇ ଦେଲେ । ସରକାର ଏହା ଉପରେ ଅତ୍ୟନ୍ତ ଗୁରୁତ୍ୱ ଆରୋପ କରୁଛନ୍ତି— ତେଣୁ କେହି ଯେପରି ହେଳା ନକରନ୍ତି ଏକଥା ସ୍ପଷ୍ଟ ଭାଷାରେ ଲେଖିଦିଅ

ବୋଲି ଶିକ୍ଷାମନ୍ତ୍ରୀ ଡ଼. ପି. ଆଇ.ଙ୍କୁ କହିଲେ । ତିନି ଚାରିମାସ ଭିତରେ—ଟେମାଇଣ୍ଡରପରେ ରିମାଇଣ୍ଡର ଯାଇ—ଲେଖାଗୁଡ଼ିକ ସଂଗୃହୀତ ହୋଇଗଲା । ସବୁତକ ଲେଖାଧରି ଡ଼. ପି. ଆଇ. ଗଲେ ଶିକ୍ଷାମନ୍ତ୍ରୀଙ୍କ ପାଖକୁ । ପଣ୍ଡିତ ମିଶ୍ର ସେହି ଥାକକୁ ଗୁହାଁ ଦେଇ କହିଲେ—“ମିଷ୍ଟର ପ୍ରଧାନ, ଏଗୁଡ଼ିକ ନେଇ ଆମେ କଅଣ କରିବା ? ଛପାଇବା ହେବ ନାହିଁ । ଯେମିତି ଆସିଛି ସେମିତି ଛପାଇ ଦେଲେ ହଜାରେ କି ପନ୍ଦର ଶହ ପୃଷ୍ଠା ହୋଇଯିବ । ତାକୁ ସବୁ ପଢ଼ିବ ବା କିଏ ? ଶୁଣିବ କିଏ ? କାହାର ଧୈର୍ଯ୍ୟ ଅଛି ? ହେଇ ସବା ଉପରେ ଥୁଆ ହୋଇଥିବା ଲେଖାଟି ଦେଖାଉଛି । କୋଅପରେଟିଭ ଆନ୍ଦୋଳନ କଅଣ ଓ ସମବାୟ ସମିତି ସବୁ ଗଢ଼ିଲେ ଲୋକଙ୍କର କଅଣ ଉପକାର ହେବ ସେଥି ବିଷୟରେ ସଂକ୍ଷେପରେ ଚାରୋଟି ପୃଷ୍ଠା ଯିନା ଲେଖା ହେବ । ଏତିକ ଗୁଣି ଦେଲେ ତ ଶହେ ପୃଷ୍ଠା ହେବ । ଏହି ଆନ୍ଦୋଳନ କେମିତି ଆରମ୍ଭ ହେଲା—ପୃଥିବୀର କେଉଁ କେଉଁ ଦେଶକୁ କେମିତି ବ୍ୟାପିଲା ଏହି ଦୀର୍ଘ ଇତିହାସ ପଢ଼ିବା ପାଇଁ ଆପଣଙ୍କର ଓ ମୋର ତ ଧୈର୍ଯ୍ୟ ନାହିଁ । ଗାଁର ନିରକ୍ଷର ବା ସଦ୍ୟସାକ୍ଷର ହୋଇଥିବା ଲୋକେ ଏସବୁ ପଢ଼ିବେ ବା କାହିଁକି ?” ଡ଼. ପି. ଆଇ କହିଲେ—‘ତାହାହେଲେ ଏଗୁଡ଼ିକୁ ସଂପୃକ୍ତ ବିଭାଗକୁ ପଠାଇ ଦେବା । ସେମାନେ ସଂକ୍ଷେପରେ ଲେଖି ଆମକୁ ଦେବେ ।’ ମିଶ୍ରେ କହିଉଠିଲେ—ସେତ ଆଉ ଚାରି ମାସରେ କଥା । ଏହାକୁ କିଏ ଲେଖିଛି, ସେ ସେହି ପୋଷ୍ଟରେ ଅଛି କି ନାହିଁ । ଯଦି ନଥିବେ ନୂଆ ଲୋକ ତାକୁ ସହଜରେ ସଂକ୍ଷିପ୍ତ କରିବ ବା କପରି । ଏହି ଲେଖାର ଓଡ଼ିଆ ତ ଦେଖୁଛ—ସେହି ନୂଆ ଲୋକର ଓଡ଼ିଆ ଜ୍ଞାନ କେତେ - ଇତ୍ୟାଦି ପ୍ରଶ୍ନର ସମାଧାନ ହୋଇ ଆମ ପାଖକୁ କଅଣ ସଂକ୍ଷିପ୍ତ ଲେଖା ଆସିବ ? ସବୁତ ଅଡ଼୍‌ଆ ହୋଇଗଲା । କାଲି ପୁଣି ଗୋଟିଏ ରିମାଇଣ୍ଡର କେନ୍ଦ୍ର ଶିକ୍ଷା ବିଭାଗରୁ ଆସିଛି ବୋଧହୁଏ । କିଛି ସମୟ ଚୁପ୍ ରହିଲା ପରେ କହିଲେ ‘ମିଷ୍ଟର ପ୍ରଧାନ, ଆପଣ ବିନୋଦ କାନୁନ୍‌ଗୋଙ୍କୁ ଜାଣନ୍ତି ।’ ଉତ୍ତର ମିଳିଲା—‘ଖୁବ୍ ଭଲ ଭାବରେ ଜାଣେ’ । କେବେଠାରୁ ଜାଣିଛ ... ଉତ୍ତର ହେଲା—‘ମୁଁ ବିଲାତରୁ ଫେରିଲା ପରେ କଲେଜିଏଟ୍ ସ୍କୁଲର ଶିକ୍ଷକ ଭାବରେ ନିଯୁକ୍ତି ପାଇଲି । ସେତେବେଳେ କାନୁନ୍‌ଗୋ ଜଣେ ଛାତ୍ର । ତାଙ୍କୁ ଅଙ୍କ ପଢ଼ାଇଛି । ସେ ପୁଣି ଆମ ସାର୍ ଆର୍ତ୍ତବଲ୍ଲଭ

ମହାନ୍ତିଙ୍କ ଭଣଜା । ତାଙ୍କ ସହିତ ମୋର ପାରିବାରିକ ସଂପର୍କ ରହିଛି ବୋଲି ମୁଁ କହିପାରେ ।' ଶିକ୍ଷାମନ୍ତ୍ରୀ—'ତା ହେଲେ ଆଜି ତାଙ୍କୁ ଚିଠି ଲେଖ । ସେ ମୋ ସାଙ୍ଗରେ ଦେଖା କରନ୍ତୁ । ତାଙ୍କ ଗାଁ ଠିକଣା—ଗ୍ରାମ ମଲିପୁର ପୋ: କଂଶାରି ନଗର, ଜି: କଟକ ।' ଘରେ ଥିଲାବେଳେ ଚିଠି ଖଣ୍ଡିଏ ପାଇଲି । ତା'ଆ ପରଦିନ ଯାଇ ଡ଼ି. ପି. ଆଇ.ଙ୍କୁ ଦେଖା କଲାରୁ ସେ ପୂର୍ବରୁ ଆଲୋଚିତ ହୋଇଥିବା କଥା କହିଲେ । ଦି' ଜଣ ଯାକ ମନ୍ତ୍ରୀଙ୍କ ଅଫିସକୁ ଗଲୁ । ଶିକ୍ଷାମନ୍ତ୍ରୀ ହସିଦେଇ କହିଲେ—'ଆମକୁ ଗୋଟାଏ ବିପଦରୁ ରକ୍ଷାକର ।' ଡ଼. ପି. ଆଇ. ମୋତେ ସବୁକଥା କହିଲେଣି କାମଟା ହୋଇଯିବ । ଆପଣ ଆଦେଶ ଦେଲେ ମୁଁ ନାହିଁ କରିବି ଏମିତି କାହିଁକି ବିଚାରିଲେ ? ଏତିକି ବେଳେ ଜଣେ ପିଅନ ଏହି ସଂକ୍ରାନ୍ତୀୟ ଗୁଡ଼ିଏ ଫାଇଲ ଆଣି ପହଞ୍ଚିଲେ । 'ଏତିକି ନେଇଯାଅ' ବୋଲି ମନ୍ତ୍ରୀ କହିଲାରୁ ମୁଁ ବୁଝାଇଲି—'ଏ ସବୁ ମୋର ଦରକାର ନାହିଁ । ମୋତେ ସିଲାବସ ଖଣ୍ଡିକ ଦିଅନ୍ତୁ ଓ ଏଇଠି ଅଧ ଘଣ୍ଟାଏ ବସି ଆମେ ତିନିଜଣ ଠିକ୍ କରିଦେବା କେଉଁ ବିଷୟ କେତେ ସ୍ଥାନରେ ରହିବ । ସେତିକି ହେଲେ ହେଲା ।' ବସିଯାଇ ସେତିକି କାମ ସାରିଦେଲୁ । ଡ଼.ପି.ଆଇ. —'ମିଷ୍ଟର କାନୁନ୍‌ଗୋ, ମୋର ଅନୁରୋଧ ଦଶ ସପ୍ତାହ ଭିତରେ ବହିଟିକୁ ଲେଖିଦିଅନ୍ତୁ । ମିନିଷ୍ଟର ତ କହୁଛନ୍ତି ଦୁଇଶହ ଛପା ପୃଷ୍ଠାର ବହିଟିଏ ହେବ । ମୁଁ ହସିହସି କହିଲି—"ଏଭଳି ଗଣ୍ଡେ ବହି ଲେଖିଦେବା ପାଇଁ ଦଶ ଦିନରୁ ଅଧିକ କାହିଁକି ଲାଗିବ ? ଲିଙ୍ଗରାଜବାବୁ ଖୁସି ହୋଇଯାଇ କହିପକାଇଲେ —'ତୁମ ଦକ୍ଷତା ମୋତେ ଜଣା । ପନ୍ଦର ଦିନ ଭିତରେ ଦେଇଦେଲେ ତମକୁ ଶତ ଧନ୍ୟବାଦ ଦେବି—ଆଶୀର୍ବାଦ କରିବି ।

ଆଠ ଦିନରେ ବହିଟି ଲେଖିଦେଇ ଡ଼.ପି.ଆଇ.ଙ୍କୁ ଦେଇଦେଲି । ସେ ସଙ୍ଗେ ସଙ୍ଗେ ମିନିଷ୍ଟରଙ୍କ ପାଖକୁ ଯାଇ ତାଙ୍କ ଟେବୁଲ ଉପରେ ପାଣ୍ଡୁଲିପିଟି ଥୋଇଦେଲେ । ମୁଁ ଯେତେବେଳେ କହିଲି ଆପଣ ଟିକଏ ଆଖି ବୁଲାଇ ଦେବେ ସେ କହିଉଠିଲେ— ତମ ଲେଖା ମୁଁ ଜାଣେ— ଆଖି ବୁଲାଇବି କଅଣ ? ମିଷ୍ଟର ପ୍ରଧାନ, ବହି କେମିତି ଶୀଘ୍ର ଛପା ହେବ । କେଉଁଠି ଚିତ୍ର ଦିଆଯିବ ସେଠି ଲେଖି ଦେଇଛନ୍ତି । ଡିଜାଇନ୍ କରି ବ୍ଲକ ତିଆରି କରାଇ ନିଅ । ଶୀଘ୍ର ଛପା କାର୍ଯ୍ୟ ଆରମ୍ଭ ହେଉ । ବିନୋଦ ବାବୁ ଯେତେବେଳେ ପାଣ୍ଡୁଲିପି ଦେଇ ସାରିଲେଣି ଓ ଆମେ

ଆପ୍ରୁଭ୍ କଲୁଣି ତାଙ୍କୁ ଆମେ ଯେତକ ପାରଶ୍ରମିକ ଦେବାର କଥା ତାହାର ଅଧା ଦେଇଦେବା । ବାକି ଅଧିକ ଦେବା ବହି ଛପା ହୋଇଗଲା ପରେ—ପୃଷ୍ଠା ହିସାବ କରି । ଡ଼. ପି. ଆଇ. ଉତ୍ତରରେ ସହମତ କହିଲେ—ଆଜି ଗଭର୍ଣ୍ଣମେଣ୍ଟ ପ୍ରେସକୁ ଲେଖିବି । ସେମାନେ ଏଷ୍ଟିମେଟ୍ ଦେଲେ ଆମେ ଅର୍ଡ଼ର ଦେବା । ସେମାନେ ଡ଼ିଜାଇନ୍ ଓ ବ୍ଲକ କରିଦେବେ । ଶିକ୍ଷାମନ୍ତ୍ରୀ ଟିକିଏ ଗମ୍ଭୀର ହୋଇଗଲେ । 'ମିଷ୍ଟର ପ୍ରଧାନ, ଇଏତ ଅନ୍ତକମ୍‌ରେ ଛ' ମାସ ବା ବର୍ଷକରୁ କମ୍‌ରେ ହୋଇ ପାରିବ ନାହିଁ । ସରକାରୀ ପ୍ରେସ ହାତରେ ବହୁତ କାମ । ସେମାନେ ଏହି ବହିଟିକୁ କେବେହେଲେ ଶୀଘ୍ର ଛପାଇ ପାରିବେନାହିଁ । ମୋର ମତହେଲା କାନୁନ୍‌ଗୋଙ୍କୁ କୁହାଯାଉ ଦୁଇଶହ ପୃଷ୍ଠାର ବହି ଖଣ୍ଡିକ ଛପାଇ ଦିଅନ୍ତୁ । ଆମେ ୨୦୦୦ କପି ନେବା । ବହି ଦେବା ସଙ୍ଗେ ସଙ୍ଗେ ପଇସା ପାଇଯିବେ । ଆଚ୍ଛା ବିନୋଦ, ବହିଟିର ଦାମ୍ କେତେ ହେବ ? ଯେତେବେଳେ ଶୁଣିଲେ ମାତ୍ର ଦୁଇଟଙ୍କା ତତ୍‌କ୍ଷଣାତ୍ କହିଲେ—'ସେଇଆ ହେଉ' । ମୁଁ କିନ୍ତୁ ବିନମ୍ରଭାବରେ ସହମତ ଗୋଟିଏ କଥା କହିଲି । ଦେଖନ୍ତୁ ବହିଟିର ନାମ ପ୍ରୌଢ଼ଶିକ୍ଷା ହେଉ ବୋଲି କହୁଛନ୍ତି । ମୋତେ ଏହି ନାମଟି ଭଲ ଲାଗୁନାହିଁ । କାନକୁ ମଧୁର ଶୁଭୁନାହିଁ । ଅତି ମାତ୍ରାରେ ପେଡ଼ାଣ୍ଟିକ୍ ହୋଇ ଯାଉଛି । ଏହାର ନାମ ରଖାଯାଉ 'ଲୋକଶିକ୍ଷା' । ପ୍ରସ୍ତାବଟିକୁ ସେ ତୁରନ୍ତ ଗ୍ରହଣ କରିଗଲେ । ସେହିଦିନୁ ଓଡ଼ିଶାରେ ବହୁ ଲୋକ ଆଡ଼ଲ୍‌ଟ୍ ଏଡ଼ୁକେଶନକୁ 'ଲୋକଶିକ୍ଷା' ବୋଲି କହୁଛନ୍ତି । ପରେ ଯେତେବେଳେ ମୁଁ ଗ୍ରେଟ ଗ୍ରେଟ ବହିଲେଖିଲି ତା' ଭିତରୁ ଗୋଟିଏ ଥିଲା 'ଲୋକଶିକ୍ଷା' ଏହାର ପ୍ରକୃତ ଅର୍ଥ ଓ ପରିସର କଅଣ ବୁଝାଇ ଦେଇଛି ସେହି ବହିରେ । ବହିଟି ଠିକ ସମୟରେ ଛପା ହୋଇଗଲା । ଟଙ୍କା ମିଳି ନଥାଏ—ମୁଁ ସାଂଘାତିକ ବେମାରିରେ ପଡ଼ି ଡାକ୍ତରଖାନାରେ ଭର୍ତ୍ତି ହେଲି । ମୋର ମୃତ୍ୟୁ ହୋଇଯିବ ବୋଲି ଆଶଙ୍କା ହେଉଥିଲା । ବହୁ ବିଶିଷ୍ଟ ଲୋକେ 'ଶେଷଦର୍ଶନ' ପାଇଁ ଆସିଥିଲେ । କିନ୍ତୁ ଦୁଇମାସ ଭିତରେ ଆରୋଗ୍ୟ ଲାଭକଲି । ମୋ ରୋଗ ଶଯ୍ୟାରେ ଡ଼.ପି.ଆଇ ନିଜେ ନେଇ ଚାରିହଜାର ଟଙ୍କା ଦେଇ ଆସିଥିଲେ । ସେ ଟଙ୍କା ମୋ ଜୀବନ ବଞ୍ଚାଇବାରେ ବହୁତ କିଛି ସାହାଯ୍ୟ କଲା ।

ସେହି ରୋଗ ଶଯ୍ୟାରେ ଥିଲାବେଳେ ଆଦିବାସୀ ମଙ୍ଗଳ ବିଭାଗର ସେକ୍ରେଟାରୀ ଚନ୍ଦ୍ରାମଣି ମିଶ୍ର ମୋତେ ଦେଖିବାକୁ ଯାଇଥିଲେ । ତାଙ୍କ

ସହିତ ଥିଲେ ଡକ୍ଟର ବଳଭଦ୍ର ପ୍ରସାଦ । ଏହି ବର୍ତ୍ତମାନ ପ୍ରଫେସର ସେଠେଭେନ୍‌ଜଙ୍କୁ ଥାଆନ୍ତି ରେଭେନ୍‌ସା କଲେଜର ପ୍ରିନ୍‌ସିପାଲ । ଶ୍ରୀ ମିଶ୍ର ଥିଲେ ଏକାଧାରରେ ଜଣେ ସ୍ୱାଧୀନତା ସଂଗ୍ରାମୀ, ସାହିତ୍ୟିକ ଏବଂ ଉଚ୍ଚପଦସ୍ଥ ସରକାରୀ କର୍ମଚାରୀ । ଆଦିବାସୀ ସ୍କୁଲ୍ ସବୁ ବସାଇ, ସେହି ସବୁ ସ୍କୁଲ୍ ମାଧ୍ୟମରେ କୃଷି ଓ କୁଟୀର ଶିଳ୍ପର ଉନ୍ନତି କରି ସେ ତାଙ୍କ ଦକ୍ଷତାର ପରିଚୟ ଦେଇ ସାରିଛନ୍ତି । ରୋଗ ଶଯ୍ୟାରେ ପଡ଼ିଥିବା ଏହି ବହି ଖଣ୍ଡିକ ଦେଖି କହିଲେ—'ବିନୋଦ, ତୁମେ ତ ମୋତେ ଏହି ବହି କଥା କହିନାହଁ । ମୋତେ ଶୀଘ୍ର ଦୁଇହଜାର ଦିଅ ।' ତାଙ୍କୁ କୁହାଯାଉ ଥାଏ 'ଅମଡ଼ା ଅଫିସର' । ଯାହା ଇଚ୍ଛା କରିବେ ଖର୍ଚ୍ଚ କରିପିବେ— ପରେ ସବୁକିଛି ରେଗୁଲାରାଇଜ୍ କରିଦେବେ । ଦିନକ ପରେ ସେ ଆସି ଦି' ହଜାର ବହିର ଦାମ୍ ଦେଇଗଲେ ।

ଡକ୍ଟର ମାୟାଧର ମାନସିଂହ ଥାଆନ୍ତି ଓଡ଼ିଶା ଶିକ୍ଷା ବିଭାଗର ଆଡ଼ିସନାଲ ଏଡ଼ୁକେଶନ ଅଫିସର । ଦିନେ ସେ ମୋତେ ଡକାଇଲେ । ଦେଓ୍ୱାନ ଚମନଲାଲଙ୍କର ଦୁଇଖଣ୍ଡି ବହି ଦେଖାଇଲେ । ଖଣ୍ଡିକର ନାମ 'ଆଗ୍ରିକଲ୍‌ଚର ଆଣ୍ଡ୍ କଟେଜ ଇଣ୍ଡଷ୍ଟ୍ରିଜ୍ ଇନ୍ ଜାପାନ' (Agriculture and Cottage Industries in Japan) ଓ ଅନ୍ୟଟିର ନାମ 'ସୁଇଜରଲଣ୍ଡ୍ ସୋଜ୍ ଦି ଓ୍ୱେ' (Switzerland shows the way) । ବହି ଦୁଇଟିର ଉଚ୍ଚ ପ୍ରଶଂସା କରି କହିଲେ ଆପଣ ଏଇଠି ଟିକିଏ ବହି ଦୁଇଟି ଉପରେ ଆଖି ବୁଲାଇ ଯାଆନ୍ତୁ । ଘଣ୍ଟାକ ଭିତରେ ଦୁଇଟିଯାକ ବହି ପଢ଼ିଦେଲି । ଖୁବ ଚମତ୍କାର ହୋଇଛି । ଭାଷା, ତଥ୍ୟ— ଉଭୟ ଦୃଷ୍ଟିରୁ ଅତି ଉପାଦେୟ । ମୁଁ ତ ଅନେକ କଥା ଜାଣି ନଥିଲି ବୋଲି ମତ ପ୍ରକାଶ କଲି । ସେ ଆରମ୍ଭ କଲେ—'ମୋର ଗୋଟିଏ ପ୍ରସ୍ତାବ ଅଛି । ବହି ଦୁଇଟିକୁ ଶିକ୍ଷା ବିଭାଗ ଓଡ଼ିଆରେ ଛପାଇବେ । ଏହାର ଆକ୍ଷରିକ ଅନୁବାଦର ଆବଶ୍ୟକତା ନାହିଁ । ବିଷୟ ତଥ୍ୟ ସବୁତକ ରହିବ—କିନ୍ତୁ ଏମିତି ଭାବରେ ରହିବ ଯେ ଅନୁବାଦ ବୋଲି ମନେ ହେବ । ଏହି ବିଷୟବସ୍ତୁ ଉପରେ ଆପଣ ଯଦି ଖଣ୍ଡିଏ ବହି ଲେଖି ଦିଅନ୍ତେ ଯେମିତି ହୁଅନ୍ତା ଠିକ ସେମିତି ହେବ । ଆପଣ ଏହାକୁ ଏହି ନୂତନ ରୂପ ଦେଇଛନ୍ତି ବୋଲି କୃତଜ୍ଞତାର ସହିତ ଉଲ୍ଲେଖ କରାଯିବ । କିନ୍ତୁ ଏହି ବହି ଖଣ୍ଡିକ ବିକ୍ରି ହେବନାହିଁ—ହଜାର ହଜାର

ସଂଖ୍ୟାରେ ଛପା ହୋଇ ବଣ୍ଟାହେବ । ଆପଣଙ୍କୁ ତେଣୁ ରୟାଲ୍‌ଟୀ ଦେଇ ହେବନାହିଁ । ସାମାନ୍ୟ ପାରିଶ୍ରମିକ ଦେବୁ । ଏଇଟି ଛପା ହେଉ ବୋଲି ମୋର ଇଚ୍ଛା । ତେଣୁ ଆପଣଙ୍କ ସାହାଯ୍ୟ ଭିକ୍ଷା କରୁଛୁ । ଗୋଟିଏ ବହିକୁ ଆଠଶହ ଟଙ୍କା ଲେଖାରେ ଦୁଇଟିକୁ ଦେବୁ ଷୋହଳ ଶହ ଟଙ୍କା । ଆପଣ ମୋ ଅନୁରୋଧ ରକ୍ଷା କରନ୍ତୁ ।' ମୁଁ ବୁଝାଇଲି—'ଆପଣ ଟଙ୍କା ପାଇଁ ଆଦୌ ବ୍ୟସ୍ତ ହୁଅନ୍ତୁ ନାହିଁ । ମୋତେ ଆଉ ଟିକିଏ ବୁଝାଇ କୁହନ୍ତୁ ଆପଣ ପ୍ରକୃତରେ ଏହି ବହି ଦୁଇଟିର ରୂପକୁ କିଭଳି ଭାବରେ ଦେଖିବାକୁ ଚାହାନ୍ତି ।' ଉଭୟେ ଦୁଇଘଣ୍ଟା ବସି ଆଲୋଚନା କଲୁ । ପାଖରେ ବସିଥାଆନ୍ତି କବି ରାଧାମୋହନ ଗଡ଼ନାୟକ । କିଛିକାଳ ପାଇଁ ସେ ଥିଲେ ସେହି ବିଭାଗର ଜଣେ ଅଫିସର । ଠିକ ହୋଇଗଲା କେମିତି ଭାବରେ ଲେଖାଯିବ । ସବୁ ଆଲୋଚନା ଶେଷ ହେଲାପରେ ମାନସିଂହ ତାଙ୍କ ସ୍ୱତନ୍ତ୍ର ଶୈଳୀରେ କହିଲେ— 'ଶ୍ରୀଯୁକ୍ତ କାନୁନ୍‌ଗୋ, ମୁଁ ଆପଣଙ୍କୁ ଅଶେଷ ଧନ୍ୟବାଦ ଦେବି ଯଦି ତିନିମାସ ଭିତରେ ଆପଣ ଏହି ବହି ଦୁଇଟି ଲେଖିଦେବେ ।' ଟିକିଏ ରହିଯାଇ କହିଲି—'ମୋର ତ ମନେ ହେଉଛି ପାଞ୍ଚଦିନ ଲେଖାଁ ଦଶ ଦିନରେ ପାଣ୍ଡୁଲିପି ପ୍ରସ୍ତୁତ ହୋଇଯିବ ।' ସେ ମୋ ମୁହଁକୁ ଅବିଶ୍ୱାସ ଭରା ଚକ୍ଷୁରେ ଚାହିଁ କହିଲେ—'ଏହା କ'ଣ ସମ୍ଭବ' ? ତାଙ୍କୁ ନିର୍ଭର ପ୍ରତିଶ୍ରୁତି ଦେଲି ଯେ ଏହା ନିଶ୍ଚୟ ସମ୍ଭବ । ତାହାପରେ ସେ କହିଲେ—ଏ ବହିଟିର ନାମ ରହୁ 'ଜାପାନରେ କୃଷି ଓ କୁଟୀର ଶିଳ୍ପ' । କିନ୍ତୁ ଏଇଟିର ନାମ ରଖାଯାଉ 'ଗଣତନ୍ତ୍ରର ଆଦର୍ଶ ସୁଇଜରଲାଣ୍ଡ' । ଏତେ କ୍ଷୁଦ୍ର ଦେଶଟିଏ । ତା' ଭିତରେ ରହିଛନ୍ତି ଚାରିଗୋଟି ଭାଷାଭାଷୀ ଲୋକ । ଶାସନ ଠିକ ଚାଲିଛି । ପ୍ରଥମେ ଲୋକଙ୍କ ମତ ବାଧ୍ୟବାଧ ଭାବରେ ଗ୍ରହଣ କଲାପରେ ଯାଇ ଯେ କୌଣସି ଆଇନ ପାଇଁ ବିଲ୍ ଅଣା ଯାଉଛି । ଦେଶର ଚାରିଆଡ଼େ ଯୁଦ୍ଧ ଦୁନ୍ଦୁଭି ବାଜୁଛି । ସୁଇଜରଲଣ୍ଡ କିନ୍ତୁ ମୁଣ୍ଡ ଠିକ ରଖିଛି । ଦୁଇ ଦୁଇଟା ମହାଯୁଦ୍ଧ ସେହି ଦେଶକୁ ଯୁଦ୍ଧଗୋଷ୍ଠୀ ଭିତରକୁ ଟାଣି ନେଇ ପାରିଲା ନାହିଁ । ଜୀବନ ଧାରଣର ମାନ କେତେ ଉଚ୍ଚ ! ଦେଶଟା ଯାକକୁ ଉଦ୍ୟାନ ଭଳି ସଜାଇ ଦିଆଯାଇଛି ବୋଲି କହିଲେ ଚଳେ । ଆମେ ଯେଉଁ ଗଣତନ୍ତ୍ରର କଳ୍ପନା କରୁଛୁ ତାହା ସେହି ଦେଶରେ ହିଁ କାର୍ଯ୍ୟକାରୀ ହେଉଛି । ତେଣୁ ବହିଟିର ସେହି ଭଳି ନାମକରଣ ହେଉ ।' ଠିକ ସମୟରେ ପାଣ୍ଡୁଲିପି ଦେଇଦେଲି ।

ସରକାର ହଜାର ହଜାର ସଂଖ୍ୟାରେ ଛାପି ବାଣ୍ଟି ଛନ୍ତି । ଓକ୍ଟର ମାନସିଂହ ସେନେ କହିଲେ—"କାନୁନ୍‌ଗୋଙ୍କୁ ଦେଖ ଏ ଜାତି, ଏ ସମାଜ, ଏ ସରକାର ସୁଯୋଗ ଦିଅନ୍ତା କେତେ ହଜାର—ଇଂରାଜୀ ବହିର ସାର ସାର କଥା ସେ ଲେଖି ପକାନ୍ତେ ଓ ଓଡ଼ିଆ ଭାଷାଭାଷୀ ଲୋକେ ଅମୂଲ୍ୟ ଜ୍ଞାନ ସମ୍ପଦର ଅଧିକାରୀ ହୋଇଯାଇ ପାରନ୍ତେ । କିନ୍ତୁ ତାହା କ'ଣ ଏ ଦେଶରେ ସମ୍ଭବ ବିଶେଷତଃ ଓଡ଼ିଶାରେ !"

ଉପରେ ଯେଉଁ ଦୁଇଟିର ବର୍ଣ୍ଣନା କଲି ସେଥିରେ ମୋର ଜ୍ଞାନ ବୃଦ୍ଧିର ସେମିତି କିଛି ସୁଯୋଗ ନଥିଲା । ଭଲ ଭାଷାରେ ଶୀଘ୍ର ଶୀଘ୍ର ଲେଖିବା ଅଭ୍ୟାସ ମୋର ୧୯୩୦ରେ ଆରମ୍ଭ ହୋଇଥିଲା ଓ ଦୁଇଦଶନ୍ଧି ଭିତରେ ତାହା ଦାନା ବାନ୍ଧି ଯାଇଥିଲା । କିନ୍ତୁ ତୃତୀୟ ସୁଯୋଗଟି ମୋତେ ବେଶୀ ଆନନ୍ଦ ଦେଲା । କଟକରେ ନିଖିଳ ଭାରତ ମାଛଚାଷ ସମ୍ମିଳନୀ ହେବାର ଥାଏ । ମାଛଚାଷ ଉପରେ ଖଣ୍ଡିଏ ବହି ଓଡ଼ିଆରେ ଲେଖିଦେଲେ ଖୁବ ଭଲ ହୁଅନ୍ତା । ଏହି ହେଲା ଓଡ଼ିଶାର ମତ୍ସ୍ୟ ବିଭାଗର ମନ୍ତ୍ରୀ ଶାନ୍ତନୁ କୁମାର ଦାସଙ୍କ ଇଚ୍ଛା । ସେ ମୋତେ ମନର କଥା କହିଲେ । ତାଙ୍କୁ 'ହଁ' ବୋଲି କହିଦେଇ ଆସିଲି ମତ୍ସ୍ୟ ବିଭାଗର ଡିରେକ୍ଟର ଗଗନ ବିହାରୀ ମହାନ୍ତିଙ୍କ ପାଖକୁ । ତାଙ୍କର ବୟସ ଅତି ଅଳ୍ପ । ସେତେବେଳକୁ ତାଙ୍କର ତିରିଶ ବର୍ଷ ଟପିନଥାଏ । ଆମେରିକାର ସମୁଦ୍ରରେ ମାଛଧରା କୌଶଳ ବିଷୟରେ ଜାଣିବା ପାଇଁ ସେ ଯୁକ୍ତରାଷ୍ଟ୍ର ଆମେରିକା ଯାଇ କିଛିକାଳ ରହିଥିଲେ । ମାଛ ଓ ମାଛଚାଷ ବିଷୟରେ ତାଙ୍କର ଜ୍ଞାନ ସମ୍ପୂର୍ଣ୍ଣ ନ ହେଲେ ମଧ୍ୟ ସେ ଅନେକ କିଛି ଜାଣିଥିଲେ । ସେ ଅତ୍ୟନ୍ତ ଉତ୍ସାହ ଦେଖାଇଲେ । ସେ ମୋର ଜଣେ ଅତି ନିକଟ ଆତ୍ମୀୟ । ତାଙ୍କ ଜନ୍ମ ବେଳରୁ ମୁଁ ତାଙ୍କୁ ଦେଖି ଆସୁଛି । ସେ କିନ୍ତୁ କହିଲେ – ଦେଖ, ମୁଁ ମୁଖ୍ୟତଃ ଜଣେ କେମିଷ୍ଟ । ମାଛର ସବୁଦିଗ ମୋତେ ଜଣାନାହିଁ । କେନ୍ଦ୍ର ସରକାରଙ୍କର ଗୋଟିଏ ମତ୍ସ୍ୟ ଗବେଷଣା କେନ୍ଦ୍ର କଟକରେ ଅଛି । ମିଷ୍ଟର ଆଲିକୁନୀ ସେଠି ଜଣେ ଉଚ୍ଚ ପଦସ୍ଥ ଅଫିସର । ସେ ଯେଉଁ ପରୀକ୍ଷା ଚଳାଇଛନ୍ତି ତାହା ସଫଳ ହୋଇ ଆସିଲାଣି । ତାହାକୁ କାମରେ ଲଗାଇଲେ ବ୍ୟାପକ ଭାବରେ ମାଛ ଚାଷ କରାଯାଇ ପାରିବ । ମୁଁ ତମକୁ ତାଙ୍କର ପାଖକୁ ନେଇଯିବି ।' ଉଭୟେ ଗଲୁ । ଆଲିକୁନୀ ଜଣେ ଅତି

ନିଅନ୍ତିକ । ସେ କଅଣ ପରୀକ୍ଷା ଚଳାଉଛନ୍ତି ସେ ବିଷୟରେ ମୋତେ ଏମିତି ବୁଝାଇଲେ—

ମାଛ ଚାଷର ପ୍ରଥମ ଅସୁବିଧା ହେଲା ଠିକ ସମୟରେ ଆବଶ୍ୟକ ମୁତାବକ ଯାଆଁଳ ପାଇବା । ରୋହୀ, ଭାକୁର, ମିରକାଳି ଜାତୀୟ ମାଛ (କାର୍ପ-ବାମ୍ପ) ବଢ଼ନ୍ତି ଗୁଡ଼ିକ ନଈରେ ଯେତେବେଳେ ପ୍ରଥମେ ନୂଆ ପାଣି ଆସେ । ସେଇଥିରେ ସେମାନେ ଉପରୁ ତଳକୁ ଆସିଲାବେଳେ ଗୋଟି ଗୋଟି ପଥର ଦେହରେ ବା ସେହିଭଳି କିଛି ପଦାର୍ଥରେ ଘଷି ହୁଅନ୍ତି । ସେମାନଙ୍କଠାରେ ଯୌନ ଉତ୍ତେଜନା ସୃଷ୍ଟି ହୁଏ । ସେଭଳି ହେଲେ ଯାଇ ସେମାନେ ଅଣ୍ଡା ଦିଅନ୍ତି । ଏହି ଅଣ୍ଡିରା ମାଈ ଅଣ୍ଡା ଗୁଡ଼ିକର ନଦୀ ପାଣିରେ ଫର୍ଟିଲାଇଜେସନ ବା ସଂସେଚନ ହୁଏ—ଅର୍ଥାତ୍ ଦୁଇ ଜାତିର ଅଣ୍ଡାର ମିଶ୍ରଣରୁ ଛୁଆ ବାହାରିବା ଅବସ୍ଥା ସୃଷ୍ଟି ହୁଏ । ସେହି ଯାଆଁଳ କ୍ରମେ ତଳକୁ ତଳକୁ ଚାଲି ଆସନ୍ତି ନଦୀ ସ୍ରୋତରେ । ଆମେ ସେହିଗୁଡ଼ିକୁ ଧରି ପୁଷ୍କରିଣୀରେ ଛାଡ଼ୁ । କିନ୍ତୁ ବନ୍ଧ ଜଳରେ ପୁଷ୍କରିଣୀରେ ଯେଉଁ ମାଛ ଅଛନ୍ତି ସେମାନେ ପାଣିରେ ଅଣ୍ଡା ଛାଡ଼ନ୍ତି ନାହିଁ—ତେଣୁ ଯାଆଁଳ ଦେଖିବାକୁ ମିଳେନାହିଁ । ଜୀବବିଜ୍ଞାନ ଶରୀର ବିଜ୍ଞାନର ଅଗ୍ରଗତି ଫଳରେ ଗୋଟିଏ ନୂଆ ତଥ୍ୟ ମିଳିଲା । ଅନ୍ତଃସ୍ରାବୀ ଗ୍ରନ୍ଥି ବା ଏଣ୍ଡୋକ୍ରାଇନ୍ ଗ୍ଲାଣ୍ଡ ଗୁଡ଼ିକ ଭିତରୁ ଗୋଟିକର ନାମ ପିଟିଉଟାରୀ । ସେଇଟି ଆମ ମୁଣ୍ଡ ଭିତରେ ଅଛି—ମାଛ ମୁଣ୍ଡରେ ମଧ୍ୟ । ସେଇଥିରୁ ରସ ଆସି ଯେତେବେଳେ ରକ୍ତ ସ୍ରୋତରେ ମିଶେ ଶରୀରରେ ଯୌନ ଉତ୍ତେଜନା ସୃଷ୍ଟି ହୁଏ । ଏକଥା ଜଣା ପଡ଼ିଲା ପରେ ଆମେ ଚେଷ୍ଟା କଲୁ ମାଛ ମୁଣ୍ଡରୁ ଏହି ପିଟିଉଟାରୀକୁ ଆଣି ସେଥିରେ ଥିବା ରସ ବା ହର୍‌ମୋନକୁ ପୋଖରୀରେ ଥିବା ମାଛଙ୍କ ଦେହରେ ଇଞ୍ଜେକ୍‌ସନ ଦେଇଦେଲେ ସେଗୁଡ଼ିକ ଉତ୍ତେଜନା ପ୍ରକାଶ କରିବେ । ପରସ୍ପର ସହିତ ଘଷିହେବେ ଓ ବନ୍ଧନରୁ ପୁଷ୍କରିଣୀ ଜଳରେ ଅଣ୍ଡା ଛାଡ଼ିବେ । ଏଭଳି ହେଲେ ଆମେ ଯଥେଷ୍ଟ ଯାଆଁଳ ପାଇଯିବା । ମୁଁ କଟକରେ ସେହି ପରୀକ୍ଷା କରି ସଫଳତା ଲାଭ କଲିଣି । ମୋର ଏହି ସଫଳତା ସର୍ବଭାରତୀୟ କ୍ଷେତ୍ରରେ ସ୍ୱୀକୃତି ଲାଭ କଲିଣି । ବିଦେଶର ବୈଜ୍ଞାନିକମାନେ ମଧ୍ୟ ଆଗ୍ରହ ପ୍ରକାଶ କଲେଣି ।' ଏହି ପ୍ରସଙ୍ଗରେ ତାଙ୍କଠାରୁ ଶୁଣିଲି—ଇଉରୋପ ବା ଆମେରିକାରେ ଲୋକେ ସାଧାରଣତଃ

ସମୁଦ୍ରରୁ ଧରା ହେଉଥିବା ମାଛ ଖାଆନ୍ତି । ନଦୀ ମାଛ ମଧ୍ୟ ଧରନ୍ତି । ବଡ଼ ବଡ଼ ପୁଷ୍କରିଣୀ ଖୋଳି ସେଥିରେ ମାଛ ଗୁଡ଼ା ବଢ଼ାଇ ଧରିବା ବିଷୟରେ ସେମାନଙ୍କର ସେଭଳି କିଛି ଆଗ୍ରହ ନାହିଁ—ଯଦିଓ ଏହାର ବ୍ୟତିକ୍ରମ ଅଛି । ତେଣୁ ଇଂରାଜୀ ଭାଷାରେ ପୁଷ୍କରିଣୀରେ ମତ୍ସ୍ୟ ପାଳନ ଉପରେ ସେଭଳି କିଛି ଉପାଦେୟ ପୁସ୍ତକ ନାହିଁ । ଭାରତର ପରିସ୍ଥିତିକୁ ବିଚାରକୁ ନେଇ ମାଛଚାଷ ବିଷୟରେ ମୁଁ ଖଣ୍ଡେ ବହି ଲେଖିଛି—ସେଇଟି ପାଣ୍ଡୁଲିପି ଭାବରେ ରହିଛି । ଏଇଟି ହେଉଛି ସେହି ପାଣ୍ଡୁଲିପି । ହେଇ ନଅନ୍ତୁ ଦେଖନ୍ତୁ ।’ ମାତ୍ର ଦଶମିନିଟ ଆଖି ବୁଲାଇ ଦେଲାପରେ ଖାତାଟିଏ ବାହାରକଲି କିଛି କିଛି ନୋଟ୍ କରି ନେବାପାଇଁ । ସେ ବାଧାଦେଇ କହିଲେ ଏତେ ପରିଶ୍ରମର ଆବଶ୍ୟକତା ନାହିଁ । ଏହି ଗୋଟିକ ମୁଁ ଆପଣଙ୍କୁ ଦେଇଦେବି—ମୂଳ ମାନସ୍କ୍ରିପ୍ଟ ବହିଟି ଯାଇଛି ପୁସ୍ତକ ଆକାରରେ ପ୍ରକାଶ କରିବା ପାଇଁ । ଦୁଇବର୍ଷ ହୋଇଗଲାଣି—ସେଇଟିକୁ ପ୍ରକାଶ କରିବା ଦିଗରେ କୌଣସି ହେଲେ ପଦକ୍ଷେପ ନିଆଯାଇନାହିଁ । ଦିନେ ସେ ତାହା ଲୋକ ଲୋଚନକୁ ଆସିବ ଏ ବିଷୟରେ ମୁଁ କ୍ରମେ ସନ୍ଦିହାନ ହୋଇ ପଡ଼ିଲାଣି । ଆପଣ ଯଦି ଏଥିରେ ଥିବା ତଥ୍ୟ ଗୁଡ଼ିକ ସାହାଯ୍ୟରେ ଖଣ୍ଡେ ବହି ଲେଖିଦେବେ ମୁଁ ଜାଣିବି ମୋର ଲେଖିବା ସାର୍ଥକହେଲା । ମୋ ଆଉ କହିଲି—ଦେଖୁଛି କେତେଗୁଡ଼ାଏ ଜଟିଳ ବୈଜ୍ଞାନିକ ତଥ୍ୟ ରହିଛି—ଯେଉଁଠି ବୁଝି ପାରିବି ନାହିଁ ଆପଣଙ୍କ ପାଖକୁ ଆସିବି—ଟିକିଏ ବୁଝାଇ ଦେବେ ?’ ସେ ଜୋର ଦେଇ ହଁ ବୋଲି କହିଲେ—ଯେତେଥର ମୁଁ ଗଲେ ମଧ୍ୟ ତାଙ୍କର ଆପତ୍ତି ନାହିଁ । ‘ମାଛ ଚାଷ’ ବହିଟି ଛପା ହୋଇଗଲା । ଆଦୃତ ହେଲା । ଡିରେକ୍ଟର ଗଗନ ବିହାରୀ ମହାନ୍ତି ଅଳ୍ପ ବୟସରେ ହୃଦ୍-ଯନ୍ତ୍ରକ୍ରିୟା ବନ୍ଦ ହୋଇଯିବା କାରଣରୁ ଏ ସଂସାରରୁ ବିଦାୟ ନେଇଗଲେ । ତାହା ପରେ ଆସିଲେ ଗଜେନ୍ଦ୍ରନାଥ ମିତ୍ର । ମାଛଚାଷ ବିଷୟରେ ସେ ଦିନେ ଜଣେ ଆନ୍ତର୍ଜାତିକ ଖ୍ୟାତିସମ୍ପନ୍ନ ଲୋକ ହୋଇଥିଲେ । ଏହି ବହିଟି ଓଡ଼ିଶାର ମତ୍ସ୍ୟ ବିଭାଗର ସମସ୍ତେ ପଢ଼ନ୍ତୁ ବୋଲି ସେ ବରାବର ସୁପାରିଶ କରୁଥିଲେ ।

ଆଉ ଗୋଟିଏ ବହି ଲେଖିବାକୁ ଉଦ୍ୟମ କଲି ଫଳରେ ଶରୀର ବିଦ୍ୟା ସଂକ୍ରାନ୍ତୀୟ ଜ୍ଞାନ କେମିତି ବଢ଼ିଲା ତାହାର ଟିକିଏ ସୂଚନା ଦିଏ ।

୧୯୪୪ ଅଗଷ୍ଟରେ ଜେଲରୁ ବାହାରିଲା ବେଳକୁ ମୋର ଉପର ମାଢ଼ିର ଗୋଟିଏ ଦାନ୍ତ ଖରାପ ହୋଇଆସୁଥାଏ କଷ୍ଟ ହେଉଥାଏ । ତିନିମାସ ହଲାଇ ହଲାଇ ସେଇଟିକୁ ପକାଇ ଦେଲି । ଅନ୍ୟ ଦାନ୍ତ ଗୁଡ଼ିକ ବେଶ ମଜବୁତ ଥାଏ । ଦିନେ ମନହେଲା 'ଦାନ୍ତ' ବିଷୟରେ ଗୋଟିଏ ବହି ଲେଖିଦେଲେ ଭଲ ହୁଅନ୍ତା । ସେଥିପାଇଁ ସ୍ୱତନ୍ତ୍ର ଭାବରେ ପଢ଼ାପଢ଼ି କଲି । ଯେଉଁଭଳି ସହଜ ବୋଲି ଭାବିଥିଲି ତାଠାରୁ ଢେର କଷ୍ଟ ଏଭଳି ଗୋଟିଏ ବହି ଲେଖିବା—ଏହା ଅନୁଭବ ହେଲା । ନିଉଟ୍ରିସନ ( ସାରବାନଖାଦ୍ୟ ), କେତେକ ରୋଗ ସହିତ ଦାନ୍ତର କିଭଳି ସମ୍ପର୍କ ଅଛି ଜାଣିଲି । ସ୍ୱାସ୍ଥ୍ୟ 'ଦୁର୍ଗର ବତିଶ ପ୍ରହରୀ' । ମନେରଖ ପେଟ ଭିତରେ ଦାନ୍ତନାହିଁ । ପିଲାଦିନେ ହେଳା କରି ଦେଇଥିଲେ ଦି ପାଟି ଦାନ୍ତର ସୌନ୍ଦର୍ଯ୍ୟ ନଷ୍ଟ ହୋଇଯାଏ ଓ ତୁମେ ଯେତେ ଚେଷ୍ଟା କଲେ ମଧ୍ୟ ସୁନ୍ଦର ହସ ହସିପାରିବ ନାହିଁ । ଏମିତି କେତେ ପଏଣ୍ଟ ଟିପି ପକାଉଥାଏ । ଦି ଚାରିମାସ ପଢ଼ିଲି ପରେ ବହିଟି ଲେଖିଦେଲି । କିନ୍ତୁ ଭାବିଲି—ମୁଁ ତ ଡାକ୍ତର ନୁହେଁ, ବହିର ବିଷୟ ବସ୍ତୁ ଯେ ଠିକ ଅଛି ଏ ବିଷୟରେ ପାଠକ ମନରେ ସନ୍ଦେହ ହେବା ସ୍ୱାଭାବିକ । ଯଦି ଜଣେ ଦାନ୍ତ ବିଶେଷଜ୍ଞ ଏହାର ମୁଖବନ୍ଧ ଲେଖିଦେବେ ତେବେ ଏଇଟି ପ୍ରମାଣିକ ବୋଲି ଗୃହୀତ ହୋଇପିବ । ଡକ୍ଟର ଜଳି ପଟ୍ଟନାୟକଙ୍କ ପାଖକୁ ଗଲି । ସେତେବେଳେ ସେ ଓଡ଼ିଶାର ଏକମାତ୍ର ବିଶେଷଜ୍ଞ ବୋଲି ପରିଚିତ । ଯୁକ୍ତରାଷ୍ଟ୍ର ଆମେରିକାରେ ଟ୍ରେନିଂ ପାଇ ଫେରିଲାପରେ ତାଙ୍କର ସୁଖ୍ୟାତି ହୋଇଥାଏ । ତାଙ୍କୁ ମୋ ପିଲାବେଳୁ ଜାଣିଥାଏ । ଏକା ସ୍କୁଲରେ ପଢ଼ିଥିଲୁ । ମୋଠାରୁ ବର୍ଷେ ବଡ଼ ବୟସରେ । ତାଙ୍କ ସାନଭାଇ ବିଜୁ ପଟ୍ଟନାୟକ ମୋ ତଳ କ୍ଲାସରେ ସାଙ୍ଗ । ମୋତେ ଦେଖୁ ଦେଖୁ ସେ କହିପକାଇଲେ—ମୋର ଅନେକ ଦିନରୁ ଇଚ୍ଛା ଓଡ଼ିଆରେ ଦାନ୍ତ ବିଷୟରେ ଖଣ୍ଡେ ବହି ଲେଖା ଯାଆନ୍ତା । ମୁ ଓଡ଼ିଆରେ କଦାପି ଲେଖି ପାରିବି ନାହିଁ । ତମେ ଲେଖିଦିଅ । ଆପଣ ଟିକିଏ ସାହାଯ୍ୟ କଲେ ହୁଅନ୍ତା—ଏତିକି କହୁ କହୁ ସେ ମୋତେ ତାଙ୍କ ପଢ଼ାଘର ଆଲମାରିରେ ଥିବା ତିନିଖଣ୍ଡ ବହି ଦେଖାଇଦେଲେ । ଦାନ୍ତ ବିଷୟରେ ଯେ ଏତେକଥା ଲେଖାଯାଇ ପାରେ ଏହା ମୁଁ ଭାବିନଥିଲି । ଚାରି ପାଞ୍ଚ ଦିନ ତାଙ୍କ ପାଖକୁ ଯାଇ ପଢ଼ିଲି । ଯେଉଁ ଗୁଡ଼ିକ ଅତି ଟେକ୍‌ନିକାଲ ବିଷୟ ସେଗୁଡ଼ିକ ଛାଡ଼ିଦେଲେ ମୋ ପାଣ୍ଡୁଲିପିରେ ମଝିରେ ମଝିରେ ପରିବର୍ତ୍ତନ କରି ଦିନେ ତାଙ୍କ ପାଖକୁ ଗଲି । ଏତେ ଶୀଘ୍ର ଲେଖିଦେଲି କହି

ମୋତେ ଧନ୍ୟବାଦ ଦେଲେ । କଅଣ ଲେଖିଛ ଠିକଏ ପଢ଼—କହିବାରୁ ଦଶବାର ପୃଷ୍ଠା ପଢ଼ିଦେଲି । ଆଉ ଦରକାର ନାହିଁ । ବହିଟି ଛପି ହଉ ଆ-ଯାଉ—ଏହି ହେଲା ତାଙ୍କର ମତ । ମୁଁ କହିଲି—ଆପଣ ଗୋଟିଏ ମୁଖବନ୍ଧ ଲେଖି ଦଅନ୍ତୁ । ସେ ଟିକଏ ଶଙ୍କି ଯାଇ କହିଲେ—ମୁଁ ତ ଇଂରାଜୀରେ ହିଁ ଲେଖି ପାରିବ, ଓଡ଼ିଆରେ ନୁହେଁ । ଏତିକି କହି ସେ କାଗଜ ଖଣ୍ଡେ ଆଣି ଲେଖି ପକାଇଲେ । ମୁଁ ସାହସବାନ୍ଧି କହିଲି ଜର୍ଜ ଭାଇ ଯାହା ଲେଖିଲ ସେଥିପାଇଁ ମୁଁ କୃତଜ୍ଞ । ଏଥିରେ ତ କୌଣସି କଠିନ ବିଜ୍ଞାନ ଶବ୍ଦ ନାହିଁ ଯେ ଆପଣଙ୍କୁ ଅଡୁଆ ପଡ଼ନ୍ତା । ହେଇ ଦେଖନ୍ତୁ ମୁଁ ତାର ଓଡ଼ିଆ ଅନୁବାଦ କରିଦେଉଛି । ଅଳ୍ପ ସମୟ ଭିତରେ କରିଦେଇ ଯେତେବେଳେ ପଢ଼ି ଶୁଣାଇ ଦେଲି ସେ ଏକାବେଳକେ ଖୁସୀ ହୋଇ କହି ଉଠିଲେ ଇଂରାଜୀଠାରୁ ଓଡ଼ିଆଟା ଭଲ ଭାବରେ ବୁଝି ହେଉଛି । ତାଙ୍କୁ ପ୍ରତିଶ୍ରୁତି ଦେଲି—ବହିରେ ଆପଣଙ୍କ ମୂଳ ଇଂରାଜୀଟି ରହିବ—ତାହାର ଅନୁବାଦ ମଧ୍ୟ ରଖାଯିବ । ତାହାହିଁ ହେଲା । ବହିଟିର ନାମ କଅଣ ରଖାଯିବ ବୋଲି ଭାବିଲି । ସେତେବେଳକୁ ସାହସ ହୋଇଗଲାଣି ଦେହ ବିଷୟରେ ବିଭିନ୍ନ ଅଙ୍ଗ ପ୍ରତ୍ୟଙ୍ଗ ବିଷୟରେ କେତେଖଣ୍ଡ ବହି ଲେଖି ଦେବାପାଇଁ । ବହିଗୁଡ଼ିକ ମାଲେଗ ଦେହ ସିରିଜରେ ଛପାଯିବ । ଏହି ବହିଟିର ସେହି ନାମ ରହୁ—ପରେ ଦେଖାଯିବ । ମୋର ଧାରଣା ନଥିଲା ସେଇଟି ଏତେ ଆଦୃତ ହେବ । ଓଡ଼ିଶାର ଖବରକାଗଜ ଭଲ ସମୀକ୍ଷା କଲେ । ଏକଶହରୁ ଅଧିକ ପୃଷ୍ଠାର ବହୁଚିତ୍ର ସମ୍ବଳିତ ଗୋଟିଏ ବହି କେବଳ ଦାନ୍ତ ଉପରେ—ଭାରତର ଅନ୍ୟ କୌଣସି ଭାଷାରେ ଏଯାଏ ପର୍ଯ୍ୟନ୍ତ ଲେଖା ହୋଇ ନଥିଲା ଏହିମତ କେତେ ଜଣ ପ୍ରକାଶ କଲେ । ମୁଁ ଭାବିଲି ହୁଏତ ସେମିତି ହୋଇଥିବ । ୧୯୮୭ରେ ଟେଲିଭିଜନ ମୋର ଗୋଟିଏ ଗ୍ଲେଟ ବହି ମାଗୁଣି ତିଆରି କାରଖାନା ଉପରେ ପନ୍ଦର ମିନିଟ ଦେଖାଇଲା ବେଳେ ପ୍ରଥମେ ଏହି ବହିରେ ଥିବା କେତେଗୁଡ଼ିଏ ଚିତ୍ରକୁ ବଡ଼କରି ଦେଖାଇଥିଲେ ।

କଲେଜ ଲାଇବ୍ରେରୀକୁ ଯିବା ଆରମ୍ଭ କଲି । ସେଠାରେ ଲାଇବ୍ରେରୀ ଷ୍ଟାଫ ମୋ ଉଦ୍ୟମରେ ଯଥାସାଧ୍ୟ ସାହାଯ୍ୟ କରିବେ ବୋଲି କହିଲେ । ଗୋଟିଏ ପ୍ରସ୍ତାବ ଦେଲେ - ବେଶୀ ଅଂଶକୁ ଛାତ୍ରମାନେ ବ୍ୟବହାର କରନ୍ତୁ, ଗୋଟିଏ ଅଂଶ ଥାଏ ଅଧ୍ୟାପକମାନଙ୍କ ପାଇଁ । ସେଥିରେ ସବୁ

ପ୍ରକାର ରେଫରେନ୍‌ସ ବହି, ଏନସାଇକ୍ଳୋପିଡିଆ ଓ ଆଉ କେତେକ ମୂଲ୍ୟବାନ ବହି ଥାଏ । କେବଳ ଅଧ୍ୟାପକମାନେ ପଢ଼ାପଢ଼ି କରୁଥିବାରୁ ଗୋଳମାଳ ନାହିଁ । କିନ୍ତୁ ବାହାରର ସେଠାରେ ପଢ଼ିବାକୁ ହେଲେ ପ୍ରିନସ୍‌ପାଲଙ୍କ ଅନୁମତି ଲୋଡ଼ା । ପରେ ଯେଉଁ ବୈଜ୍ଞାନିକ ମହେନ୍ଦ୍ର ଚନ୍ଦ୍ର ରାଉତ ଉତ୍କଳ ବିଶ୍ୱବିଦ୍ୟାଳୟର ଭାଇସ ଚାନସେଲର ହେଲେ ସେହି ଥାଆନ୍ତି ଲାଇବ୍ରେରୀ ଚାର୍ଜରେ । ସେ ଲିଖିତ ଅନୁମତି ଦେଇଦେଲେ । କଅଣ ସବୁ ପଢ଼ିବି ସେ ବିଷୟରେ ମନ ଠିକ କରି ନେବାକୁ ପ୍ରାୟ ପନ୍ଦର ଦିନ ଲାଗିଗଲା । ଗୋଟିଏ ବହି ତାଲିକା କରି ପକାଇଲି ।

ଯେଉଁ ଏନସାଇକ୍ଳୋପିଡ଼ିଆ ଲେଖିବି ସେଥିରେ କି କି ବିଷୟବସ୍ତୁ ରହିବ ତାହାର ତାଲିକା ପ୍ରଥମେ ହୋଇଯିବା ଦରକାର । ୧୪ ଖଣ୍ଡରେ ସମାପ୍ତ ନଗେନ ବସୁଙ୍କ ବଙ୍ଗଳା ବିଶ୍ୱକୋଷଟିର ପୃଷ୍ଠା ଓଲଟିଗଲି । ଏମିତି ବହୁ ବିଷୟ ସେଥିରେ ସନ୍ନିବେଶିତ ଯେଉଁ ଗୁଡ଼ିକୁ ବାଦ ଦେଲେ ଚଳିବ । ତେବେ ସବୁ ଉପରେ ଆଖି ବୁଲାଇ ଦେଇ ଯିବାକୁ ହେବ । କାହିଁକି ରହିବ—କାହିଁକି ନରହିଲେ ବି ଚଳିବ ସେଥିପାଇଁ ସବୁଗୁଡ଼ିକୁ ପଢ଼ିବାକୁ ପଡ଼ିବ । ସେଇଥିରେ ଦୁଇମାସ ଚାଲିଗଲା । ସବୁଯାକ ପଢ଼ିବାର ଆବଶ୍ୟକତା ନଥିଲା । ଏହି ଖାସ ଉଦ୍ଦେଶ୍ୟରେ ଯେତିକି ପଢ଼ିବାର କଥା ପଢ଼ିଲି । ତାହାପରେ ଆରମ୍ଭ କଲି ବିଟାନିକା । ମୋଟା ମୋଟା ଚବିଶଟି ଭଲ୍ୟୁମ । ଚାଳିଶ ହଜାରରୁ ଅଧିକ ଏଣ୍ଟ୍ରି ରହିଛି । ସବୁଗୁଡ଼ିକୁ ଦେଖିବାକୁ ପଡ଼ିବ କେଉଁଟିକୁ ବାଦ୍ ଦିଆଯିବ ସେହି ଉଦ୍ଦେଶ୍ୟରେ । ବହୁ-ସଂଖ୍ୟକ ବ୍ୟକ୍ତିଙ୍କର ନାମର ଉଲ୍ଲେଖ ରହିଛି— ସେମାନଙ୍କ ବିଷୟରେ କିଛି କିଛି ଲେଖାଯାଇଛି । ଇଉରୋପ ଆମେରିକାର କେତେ ହଜାର ଭୌଗୋଳିକ ସ୍ଥାନ ବିଷୟରେ ଅଛି—ଯାହାର କି ସେଭଳି କୌଣସି ଗୁରୁତ୍ୱ ଆମ ପାଇଁ ନାହିଁ । ଅନେକ ଘଟଣା, ଯୁଦ୍ଧ, ପୌରାଣିକ ଚରିତ ବିଷୟରେ ଆମ ଓଡ଼ିଆ ବିଶ୍ୱକୋଷରେ ସ୍ଥାନପାଇବାର ଆବଶ୍ୟକତା ନାହିଁ—ଯେ ପରିକି ନଗେନ୍ ବସୁଙ୍କ ବିଶ୍ୱକୋଷରେ ଥିବା ଆମ ଦେଶର ପୁରାଣର ବହୁକଥା ବ୍ରିଟାନିକାରେ ନାହିଁ । ଯଦିବା ଅଛି ଅତି ସଂକ୍ଷେପରେ । ଟିକିଏ ଆଗେଇ ଗଲାପରେ ଗୋଟିଏ ବିଷୟରେ ଭାବିବାକୁ ପଡ଼ିଲା । ଭୌଗୋଳିକ ବିଷୟ ବା ରେଫରେନ୍‌ସ୍‌ର

ଉଦାହରଣ ଦିଆ ଯାଇପାରେ । ମହାନଦୀର ଲମ୍ବ ୫୦୦ ମାଇଲ୍ । ଠିକ୍ କଲି ପୃଥିବୀର ଯେଉଁ ନଦୀ ଗୁଡ଼ିକର ଲମ୍ବ ସେତିକ ବା ତା'ଠାରୁ ଅଧିକ କେବଳ ସେହି ଗୁଡ଼ିକୁ ଆମ ବିଶ୍ୱକୋଷରେ ସ୍ଥାନ ଦେବୁ । ସେମିତି ଯେଉଁ ସହରର ଲୋକ ସଂଖ୍ୟା ଦୁଇଲକ୍ଷ ବା ତା'ଠାରୁ ଅଧିକ ସେଗୁଡ଼ିକର ଉଲ୍ଲେଖ କରିବୁ । ଯେଉଁ ପାହାଡ଼ ପର୍ବତର ଉଚ୍ଚତା ଏତିକ ସେଗୁଡ଼ିକ ବାଛି ନେବୁ । ଏହାର ଯେ ବ୍ୟତିକ୍ରମ ନ ରହିବ ତାହା ନୁହେଁ । ଏମିତି ଗୋଟିଏ ନଦୀ ଥିବ ଯାହାର ଗୁରୁତ୍ୱ ଅନ୍ୟ ମାପ କାଠିରେ ମାପିବାକୁ ଗଲେ ରହିଛି । ଗୋଟିଏ ସହରଟିର ହୁଏତ ସ୍ୱତନ୍ତ୍ର ସ୍ଥାନ ଅଛି । ସବୁତକ ଉପରେ ଆଖି ବୁଲାଇ ଟିକିଏ ଟିକିଏ ନ ପଡ଼ିଦେଲେ ବାଦ ଦିଆଯିବ କି ନାହିଁ ତାହା ବା ସ୍ଥିର କରିବ କିପରି ? ଯେଉଁ ବ୍ୟକ୍ତି ବିଶେଷଙ୍କ ନାମ ରହିଛି ସେମାନଙ୍କ ଭିତରୁ :କେଉଁମାନେ ସମଗ୍ର ମାନବ ସମାଜ ପାଇଁ କିଛି କିଛି ଦାନ କରି ଯାଇଛନ୍ତି ସେମାନଙ୍କ ନାମ ବାଛିବାକୁ ପଡ଼ିବ । ପାଶ୍ଚାତ୍ୟ ଜଗତର ଅନେକ ଲୋକଙ୍କ ନାମ ଦେଖିଲି ଯେଉଁମାନେକି ସ୍ଥାନୀୟ ମାପ କାଠିରେ ହିଁ ବଡ଼ । ବିଜ୍ଞାନ ଜଗତକୁ ଯେଉଁମାନଙ୍କର ମହତ୍ତ୍ୱ ପୂର୍ଣ୍ଣ ଦାନ ରହିଛି ସେମାନଙ୍କୁ ନିଶ୍ଚୟ ଆମେ ସ୍ଥାନଦେବା । ଯେଉଁ ଯୁଦ୍ଧ ଗୁଡ଼ିକର ଗୁରୁତ୍ୱ ରହିଛି ସେଗୁଡ଼ିକୁ ସ୍ଥାନଦେଇ ବହୁ ସ୍ଥାନୀୟ ଯୁଦ୍ଧ ବାଦ୍ ଦେବାକୁ ପଡ଼ିବ । ଖ୍ରୀଷ୍ଟ ଜଗତର ଏଭଳି ବହୁ ଧାର୍ମିକ ଲୋକଙ୍କ ବିଷୟରେ ଲେଖା ଯାଇଛି ଯେଉଁମାନଙ୍କ ବିଷୟରେ ଓଡ଼ିଆ ବା ଭାରତୀୟ ଭାଷାର ପାଠକ ମାନେ ନ ଜାଣିଲେ କ୍ଷତି ନାହିଁ । ଭାରତୀୟ ବା ପ୍ରାଚ୍ୟ ସଂସ୍କୃତିର ବହୁ କଥାକୁ ବ୍ରିଟାନିକାରେ ଅତି ସଂକ୍ଷିପ୍ତ ଭାବରେ ଦିଆଯାଇଛି ବା ଆଦୌ ଦିଆ ଯାଇନାହିଁ । ବିଜ୍ଞାନସମ୍ମତ ମନ ନେଇ ଏଗୁଡ଼ିକୁ ବାଛିବାକୁ ପଡ଼ିବ । ''ଏନ୍‌ସାଇକ୍ଲୋପିଡିଆ ଅଫ୍ ରିଲିଜନ ଆଣ୍ଡ ଏଥିକ୍‌ସ୍'ରୁ ଧର୍ମ ସଂସ୍କୃତି ସଂପର୍କୀୟ ବିଷୟ ସଂଗ୍ରହ କରାଯିବ । ତାହା ସାଙ୍ଗକୁ ରହିଛି ଏନ୍‌ସାଇ-କ୍ଲୋପିଡିଆ ଅଫ୍ ସୋସାଲ ସାଇନ୍‌ସ । ଥରେ ଆଖି ବୁଲାଇ ଦିଆଯାଉ । ସେ କାମଟି ପ୍ରାୟ ଦି' ମାସ ଭିତରେ ଆଠ ପଣିଆ ଶେଷ ହୋଇଗଲା । କେବଳ ବ୍ରିଟାନିକା ଉପରେ ବିଷୟବସ୍ତୁ ବାଛିବା ପାଇଁ ନିର୍ଭର ନକରି ଏନ୍‌ସାଇକ୍ଲୋପିଡିଆ ଆମେରିକାନାର ପୃଷ୍ଠା ଗୁଡ଼ିକ ଲେଉଟାଇବାକୁ ହେଲା ।

## ଅସଲ ଅସୁବିଧା—ଶବ୍ଦଜ୍ଞାନ

ପଢ଼ିଲାବେଳେ ଗୋଟିଏ ଅସୁବିଧାର ସମ୍ମୁଖୀନ ହେଲି । ୧୯୫୪ ବେଳକୁ ମୋର କିଛି କିଛି ଇଂରାଜୀ ଜ୍ଞାନ ହୋଇଗଲାଣି । ରାଜନୀତି, ଅର୍ଥନୀତି, ଧର୍ମ, ସମାଜଶାସ୍ତ୍ର, ସାହିତ୍ୟ ଇତ୍ୟାଦି ବହିରେ ଯେଉଁସବୁ ଶବ୍ଦ ଥାଏ ସେଗୁଡ଼ିକ ଭିତରୁ ବହୁ ଶବ୍ଦ ସହିତ ଲୋକେ ଅଧିକେ ପରିଚିତ ହୋଇ ଯାଇଥାଏ । କିନ୍ତୁ କିଛି ବିଜ୍ଞାନ ଶବ୍ଦର ଅର୍ଥ ବୁଝିବାରେ ବିଶେଷ ଅସୁବିଧା ନୁହେଁ ଯଦିଓ ବିଜ୍ଞାନ ଶବ୍ଦ ଗୁଡ଼ିକରେ ସଂଖ୍ୟା ତୁଳନାରେ ମୋ ଜାଣିବା ଶବ୍ଦ ସଂଖ୍ୟା ଖୁବ୍ ଅଳ୍ପ । ଯେତିକି ଶବ୍ଦଜ୍ଞାନ ଥିଲା ସେତିକି ନିଅଣ୍ଟ ପଡ଼ୁଥିଲା ଏନ୍‌ସାଇକ୍ଲୋପିଡିଆର ସବୁ ବିଷୟ ପଢ଼ି ବୁଝିବା ପାଇଁ— ମୋଟା ମୋଟି ଭାବରେ ମଧ୍ୟ । ସେତେବେଳେ ମୋ ପାଖରେ ଇଂରାଜୀ ବଡ଼ ଅଭିଧାନ ନଥିଲା—ଛୋଟିଏ ଥିଲା । ୨୭-୩-୫୪ରେ ଗୋଟିଏ 'ଚାମ୍ବର୍ସ ବିଂଶ ଶତାବ୍ଦୀ ଅଭିଧାନ କିଣି ଆଣିଲି (Chambper's Twentieth Century Dictionary) । ଏପର୍ଯ୍ୟନ୍ତ ଅଭିଧାନ ଖୋଲୁଥିଲି ଗୋଟାଏ କୌଣସି ଶବ୍ଦର ଅର୍ଥ ବୁଝିବା ପାଇଁ । ସେ ଦିନ କିନ୍ତୁ ବିଚାରିଲି—ଏହାର ପ୍ରିଫେସ୍ ବା ମୁଖବନ୍ଧଟି ପଢ଼ିବା ଦରକାର । କାରଣ ବିଶ୍ୱକୋଷରେ ଯେଉଁସବୁ ବିଷୟ ରହିବ ତାହା ଭିତରେ 'ଅଭିଧାନ'ର ନାମ ଅଛି । ସେଇଟିକୁ ମନଦେଇ ପଢ଼ିଲାବେଳେ କେତେ ଗୁଡ଼ିଏ କଥା ନୂଆ ଭଳି ମନେ ହେଲା । ସେଥିରେ ଅଛି—'ବିଂଶ ଶତାବ୍ଦୀ ଓ ବିଂଶ ଶତାବ୍ଦୀର ଚେମ୍ବର୍ସ ଅଭିଧାନ ଏକ ସମୟରେ ଆରମ୍ଭ ହୋଇଥିଲେ × × ଗୋଟାଏ ସମୟରେ ଦେଖାଗଲା ଯେ ସାଧାରଣ ସଂଶୋଧନ ଆଉ କାମ ଦେଉନାହିଁ । ପ୍ରତ୍ୟେକ ଶବ୍ଦର ସଂଜ୍ଞା ବ୍ୟୁତ୍ପତ୍ତି ବିଷୟରେ ଆଉଥରେ ବିଚାର କରିବାର ଆବଶ୍ୟକତା ଦେଖାଦେଲା । ବିଜ୍ଞାନ, ସାମାଜିକ ପରିବର୍ତ୍ତନ, ନୂଆ ଅଭ୍ୟାସ ସୃଷ୍ଟିକରି ଦେଉଛି ନୂତନ ନୂତନ ଶବ୍ଦ । ଆଟଲାଣ୍ଟିକ ମହାସାଗର ଦିନେ ଗୋଟିଏ "ଭାଷା—ବାଡ଼" ଭଳି କାମ କରୁଥିଲା । କିନ୍ତୁ ସେ ମହାସାଗର ଭାଷା ଦୃଷ୍ଟିରେ ଶୁଖିଗଲାଣି । କିଭଳି ଭାବରେ ଏହି ୧୯୫୩ ସଂସ୍କରଣଟିକୁ ନୂଆ ଗ୍ରନ୍ଥରେ ପକାଗଲା ତାହାର ସଂକ୍ଷିପ୍ତ ବର୍ଣ୍ଣନା ସେହି ମୁଖବନ୍ଧରେ ରହିଛି । ଏଇଥିରୁ ବୁଝିଲି ମୋର ଯେତିକି ଶବ୍ଦ ସମ୍ବଳ ଅଛି ତାହା ମୋ ଲକ୍ଷ୍ୟ ପୂରଣ ପାଇଁ ଅର୍ଥାତ୍ କାମ ଚଳାଇବା ପାଇଁ ଆଦୌ ଯଥେଷ୍ଟ ନୁହେଁ ।

ଗୋଟିଏ କଥା କରିବା ଠିକ ହେବ ବୋଲି ଭାବିଲି । ଇଂରାଜୀ ଭାଷାରେ ଯେତେ ସଂଖ୍ୟକ ଶବ୍ଦ ଅଛି ତ ହାର ଅଧେ ମଧ୍ୟ ଏହି ୧୩୦୦ ପୃଷ୍ଠାର ଅଭିଧାନରେ ନାହିଁ ବୋଧହୁଏ । ତଥାପି ଯେତକ ଅଛି ସେଥିରୁ କେତେ ସଂଖ୍ୟକ ସହିତ ମୁଁ ପରିଚିତ ସେଇଟା ଜାଣିଗଲେ ଭଲ ହେବ । ପ୍ରଥମେ ଗଣିଗଲି A ଅକ୍ଷର ମୂଳରେ ଥିବା କେତେ ସଂଖ୍ୟକ ଜାଣିବା ପାଇଁ । ୨୦୫୭ଟି ଶବ୍ଦଅଛି । ତାହାଉପରେ ଗୋଟି ଗୋଟି କରି ଦେଖିଗଲି । ଯେଉଁ ଗୁଡ଼ିକର ଅର୍ଥ ଜାଣିନାହିଁ ସେଗୁଡ଼ିକୁ ଚିହ୍ନ ମାରିଦେବି ବୋଲି ଭାବିଲି । କିନ୍ତୁ ଦେଖିଲି ଯେ ବେଶୀ ଭାଗ ଶବ୍ଦର ଅର୍ଥ ଜାଣିନାହିଁ । ତେଣୁ ଯେଉଁଗୁଡ଼ିକ ଜାଣିଛି ସେଇଥିରେ ଟିକ୍ ମାରିଲି । ଗଣିଲି ବେଳକୁ ମାତ୍ର ୪୮୨ଟି ସହିତ ମୋର ପରିଚୟ ଅଛି । ମନଟା ଟିକିଏ ଖରାପ ହୋଇ ଗଲା । ସେଇଠୁ ଆସିଲି B କୁ । ମୋଟ ଶବ୍ଦ ସଂଖ୍ୟା ୧୯୭୭ – ସେଥିରୁ ମୁଁ ଜାଣେ ମାତ୍ର ୩୯୭ଟି । ମନ ଆଉ ଟିକିଏ ଖରାପ ହୋଇଗଲା, C ମଧ୍ୟ ମୋତେ କିଛି ଭରସା ଦେଇପାରିଲା ନାହିଁ । ସେଥିରୁ ଜାଣିଛି ମାତ୍ର ୭୭୨ଟି । Dରୁ କିଛି ଦାଗ ଦେଲା ପରେ ଯାହାକୁ କହନ୍ତି ଆହ୍ଲା ଛାଡିଦେଲି । ବ୍ୟସ୍ତ ହେବାର କିଛି ନାହିଁ—ଜଣେ ଉଚ୍ଚ ଶିକ୍ଷିତ ଇଂରାଜୀ ଜାଣିଲା ବାଲା ମଧ୍ୟ ଖୁବ ହେଲେ ସେହି ଭାଷାର ସମସ୍ତ ପ୍ରାୟ ୩୦ ହଜାରଟି ଶବ୍ଦ ଜାଣେ ବୋଲି ଯେ କୁହାଯାଏ ତାହା ମୋତେ କିଛି ହେଲେ ସାନ୍ତ୍ୱନା ଦେଇ ପାରିଲା ନାହିଁ । ଇଂରାଜୀ ଭାଷା ଉପରେ ଯେଉଁମାନେ ଗବେଷଣା ଚଳାଇଛନ୍ତି ସେମାନେ କହନ୍ତି ଜଣେ ସାଧାରଣ ଇଂରାଜୀ ପଢ଼ୁଆ ଲୋକ ଯେତକଟି ଶବ୍ଦ ସାହାଯ୍ୟରେ ପଢ଼େ ଲେଖେ ବା କହେ ସେଥିର ଚାରିଭାଗରୁ ଏକ ଭାଗରେ କେବଳ ବା'ରଟି ଶବ୍ଦହିଁ ରହିଛି—ସେଗୁଡ଼ିକ ହେଲେ I, The, And, of, In, To, If, he, It, Is, was, That; ଏଥିରେ ଆଉ ମାତ୍ର କୋଡ଼ିଏଟି ଶବ୍ଦ ଯୋଗ କରିଦେଲେ ପିଲା ବଡ଼ ସମସ୍ତେ ଯାହା ପଢ଼ୁଛନ୍ତି ତାହାର ଏକ ତୃତୀୟାଂଶ ବୁଝି ହୋଇଗଲା । ସେଗୁଡିକ ହେଲେ All, are, as, at, be, but, for, had, have, him, his, not, one, on, said, so, they, we, with, you ଏହି; ୩୨ଟି ବାଦେ ଆଉ ଯେଉଁତକ ଶବ୍ଦ ରହି ଗଲେ ସେଗୁଡିକ ମଧ୍ୟରୁ ପ୍ରାୟ ୨୦,୦୦୦ ଶବ୍ଦ ଜାଣି ଗଲେ ଜଣେ ବେଶ ଭଲ ଭାବରେ ଇଂରାଜୀ ପଢ଼ିପାରିବ ବୁଝି ପାରିବ, ଓ କହି ପାରିବ । କିନ୍ତୁ ସେଇଠି ତ କଥାଟି ଶେଷ ହୋଇଗଲା ନାହିଁ । ଉପରେ ଯେଉଁ ହିସାବ

ହୋଇଗଲା ତାଙ୍କୁ ବ୍ରିଟେନର ନେଶନାଲ ଇଉନିୟନ ଅଫ ଟିଚର୍ସ୍ ଦେଇ ସାରିଲା ପରେ କହିଛନ୍ତି—ଇଂରାଜୀ ଭାଷାରେ ଏହା ବାହାରେତ ପୁଣି ୩,୮୦,୦୦୦ (ତିନି ଲକ୍ଷ ଅଶୀ ହଜାର) ଶବ୍ଦ ରହିଗଲାଣି । ସେଗୁଡ଼ିକ ତ ଅଦରକାରୀ ନୁହନ୍ତି । ସେଥିଭିତରୁ ଯେତେ ଅଧିକ ଜଣେ ଆୟତ୍ତ କରିବ ସେହି ତୁଳନାରେ ତାର ଭାଷାଜ୍ଞାନ ବଢ଼ିବ ଓ ସେ ମାନବ ଜ୍ଞାନର ସବୁ ବିଭାଗ ଉପରେ ପ୍ରକାଶିତ ଲେଖାଗୁଡ଼ିକୁ ବୁଝିବାରେ କିଛି ଦୂରକୁ ସମର୍ଥ ହେବ । ଗଲା ପଚିଶ ବର୍ଷ ଭିତରେ ଇଂରାଜୀ ଭାଷା ଅଧିକରୁ ଅଧିକ ଶବ୍ଦ ସୃଷ୍ଟି କରି ସଂଗ୍ରହ କରି ନିଜ କଳେବରକୁ ପାଞ୍ଚଲକ୍ଷ ଶବ୍ଦ ସମ୍ବଳିତ କରି ସାରିଲାଣି । ଭାରତର ଜଣେ ଅତି ଉଚ୍ଚଶିକ୍ଷିତ ପଣ୍ଡିତ ଲୋକ ଯଦି ୨୦ ହଜାର ବାହାରେ ଆଉ ୩୦ ହଜାର ଶବ୍ଦବି ଜାଣିଥାଆନ୍ତି ତାଙ୍କ ପାଇଁ ଆହୁରି ଚାରିଲକ୍ଷ ପଚିଶ ହଜାର ଶବ୍ଦ ଅଜଣା ହୋଇ ରହିଗଲାଣି ! ହିଁ ଏକଥା ଠିକ୍ ଯେ ବିଶ୍ୱବିଦ୍ୟାଳୟରୁ ସର୍ବୋଚ୍ଚ ଡିଗ୍ରି ପାଇ ଯେଉଁ ଲୋକ ଜୀବନର ଗୋଟିଏ କ୍ଷେତ୍ର ବାଛି ନେଇଛି ସେ ଜ୍ଞାନର ସେହି ବିଭାଗର ବହୁ ପୁସ୍ତକ ପଢ଼ିଛି । ପଢ଼ିଲାବେଳେ ତା ଜ୍ଞାନ ବିଭାଗର ପ୍ରାୟ ସବୁ ଶବ୍ଦର ଅର୍ଥ ବୁଝିବାକୁ ସେ ବାଧ୍ୟ ହୋଇଛି । କିନ୍ତୁ ଜ୍ଞାନର ଅନ୍ୟ ବହୁ ବିଭାଗ ରହି ଗଲା—ଯାହା ସହିତ ସେ ସେତିକି କିଛି ପରିଚିତ ନୁହେଁ—ହେବାକୁ ହିଁଏତ ଚେଷ୍ଟା କରିନାହିଁ—କାରଣ ସେତିକି ହେବାର ଆବଶ୍ୟକତା ଅନୁଭବ କରିନାହିଁ । ଇତିହାସରେ ଜଣେ ପ୍ରଥମ ଶ୍ରେଣୀରେ ଏମ. ଏ ପାଶ କରି ଡେପୁଟୀ କଲେକ୍ଟର ଚାକିରୀ ପାଇଗଲେ । ସେ ପରେ ଜଣେ ପ୍ରସିଦ୍ଧ ଔପନ୍ୟାସିକ ବୋଲି ଖ୍ୟାତି ଲାଭ କଲେ ଓଡ଼ିଆ ଭାଷାରେ ବହୁ ସଂଖ୍ୟକ ଉପନ୍ୟାସ ଲେଖି । କିନ୍ତୁ କରୋନାରୀ ଅଟେରୀ ବା ରେଡିଓ ଆକ୍ଟିଭ ଭଳି ଶବ୍ଦର ଅର୍ଥ ସେ ଆଦୌ ବୁଝି ନାହାନ୍ତି । ସେସବୁ ଡାକ୍ତରଙ୍କର ବା ଫିଜିକ୍ସ ବାଲାଙ୍କ ଶବ୍ଦ—ମୋର ବୁଝିବାର ଆବଶ୍ୟକତା ନାହିଁ ବୋଲି ସେ ସ୍ପଷ୍ଟ ଭାଷାରେ ମତପ୍ରକାଶ କରନ୍ତି । ତେଣୁ ତାଙ୍କର ଇଂରାଜୀ ଭାଷାର କେବଳ ତିରିଶ ହଜାର ଶବ୍ଦ ସହିତ ପରିଚୟ ହୋଇଗଲେ ସେ ସନ୍ତୁଷ୍ଟ । ଇତିହାସ ସାଙ୍ଗକୁ ଧର୍ମ ଦର୍ଶନ ବିଜ୍ଞାନ ସାହିତ୍ୟ ପ୍ରଭୃତି ଆଉ ଚାରିପାଞ୍ଚଟି ବିଷୟ ସହିତ ସେ ସଂପୃକ୍ତ ସିନା, ଜିଓକେମିଷ୍ଟ୍ରୀ, ନିଉକ୍ଲିଆର ବିଜ୍ଞାନ, ଫିଜିକାଲ କେମିଷ୍ଟ୍ରୀ, ଆପ୍ଲାଏଡ଼ ଫିଜିଓଲୋଜୀ ଉପରେ କୌଣସି ବହି ସେ କେବେହେଲେ ପଢ଼ି ନାହାନ୍ତି ବା ଧରି ନେଇଛନ୍ତି ଯେ ପଢ଼ିଲେ ମଧ୍ୟ ବୁଝି

ପାରନ୍ତେ ନାହିଁ । ରେଡ଼ିଓ ଶୁଣନ୍ତି—କିନ୍ତୁ କିଭଳି ଭାବରେ ଧ୍ୱନି ଗୋଟିଏ ସ୍ଥାନରୁ ଯାଇ ଅନ୍ୟାୟଭାବରେ ଗୋଟିଏ ସ୍ଥାନରେ ପହଞ୍ଚୁଛି ସେ ବିଷୟରେ କିଛି ହେଲେ ଜାଣିବା ପାଇଁ ତାଙ୍କର ଆଗ୍ରହ ନାହିଁ । ଟ୍ରାନ୍‌ସିଷ୍ଟରର ଉପରେ କୌଣସି ଲେଖା ଖବର କାଗଜରେ ବା ପତ୍ର ପତ୍ରିକାରେ ବାହାରିଲେ ସେ ତାକୁ ନପଢ଼ି ଛାଡ଼ି ଦିଅନ୍ତି । କୌଣସି ବିଜ୍ଞାନ ମାଗାଜିନର ପୃଷ୍ଠା ସେ ଓଲଟାଇ ନାହାନ୍ତି । କିନ୍ତୁ ମୁଁ ତ ଏଭଳି ଗୋଟିଏ କାମ ହାତକୁ ନେବାକୁ ଯାଉଛି ଯେ ଜ୍ଞାନର ସବୁ ବିଭାଗ ବିଷୟରେ ମୋତେ "କିଛି କିଛି" ଜାଣିବାକୁ ପଡ଼ିବ । ସମସ୍ତ ଜ୍ଞାନକୁ ଯଦି ପଚିଶ ଭାଗରେ ବିଭକ୍ତ କରାଯାଏ ମୋତେ ସେହି ପଚିଶଟି ଯାକ ସହିତ ଊଣା ଅଧିକେ ପରିଚିତ ହେବାକୁ ହେବ । ସବୁ ବିଭାଗ ବିଷୟରେ ମୁଁ ଯେ ସବୁକଥା ଜାଣିଯିବି ଏକଥା କଦାପି ନୁହେଁ—କିନ୍ତୁ ପ୍ରତ୍ୟେକ ବିଭାଗର ଅ ଆ କ ଖ ଜାଣିବାକୁ ହେବ । ରେଡ଼ିଓ ଟେଲିଭିଜନ ଚେନ୍‌ଟ୍ ଆଇସନ୍‌ଠାରୁ ଆରମ୍ଭକରି ଅଥର୍ବ ବେଦ ଉପନିଷଦ ମନସ୍ତତ୍ତ୍ୱ ବିଷୟରେ ଲେଖିବି । ତାହାହେଲେ ମୋ ଶବ୍ଦଜ୍ଞାନର ବିଗ୍‌ବଳୟ ଅଭିମାନରେ ବିସ୍ତୃତ ହେବାକୁ ବାଧ୍ୟ । ନହେଲେ ଏନ୍‌ସାଇକ୍ଲୋପିଡ଼ିଆ ଲେଖାଯିବ କିପରି ? ଭାବିଲି ବଡ଼ ଅକ୍‌ସ୍‌ଫୋର୍ଡ ଅଭିଧାନଟିର ପୃଷ୍ଠା ଓଲଟାଇ ପ୍ରତିଶବ୍ଦ ଉପରେ ଦୃଷ୍ଟି ପକାଇଯିବି । ଯେଉଁଗୁଡ଼ିକ ନଜାଣିଲେ ଚଳିବ ନାହିଁ ସେଗୁଡ଼ିକ ଭଲଭାବରେ ଦେଖିବି ।

## 'ପଢ଼ିବା' ଆରମ୍ଭ କଲି –

ଲାଇବ୍ରେରୀରେ ବସି ଯେତେବେଳେ ବାହୁ ଖଣ୍ଡରେ ବିଭକ୍ତ ଅକ୍‌ସ୍‌ଫୋର୍ଡ଼ ଅଭିଧାନର ପୃଷ୍ଠା ମଝିରେ ମଝିରେ ଓଲଟାଇବା ଆରମ୍ଭକଲି ସେତେବେଳେ ଗୋଟାଏ ଆନନ୍ଦ ଦାୟକ ଅନୁଭୂତି ହେଲା । ଗୋଟିଏ ଗୋଟିଏ ଶବ୍ଦ ବିଷୟରେ ବହୁତ କିଛି ଲେଖା ଯାଇଛି । ଏତେ କଅଣ କୁହାଯାଇଛି ବୋଲି ଦେଖୁ ଦେଖୁ— ଗୋଟିଏ ଶବ୍ଦର ଅର୍ଥ ପ୍ରଥମେ କିଭଳି ଥିଲା ଓ ପରେ ସେଥିରେ କିଭଳି ନୂଆ ଅର୍ଥସବୁ ଯୋଡ଼ି ହୋଇଗଲା ତାହା ଭଲଭାବରେ ବୁଝାଇ ଦିଆଯାଇଛି । କେଉଁ ଲେକ କେଉଁ ବର୍ଷ ଗୋଟିଏ ଶବ୍ଦକୁ ନୂତନ ଅର୍ଥରେ ବ୍ୟବହାର କଲେ ତାହାର ଉଲ୍ଲେଖ ରହିଛି । ବୁକ୍ Book ଶବ୍ଦଟିକୁ ପ୍ରଥମେ ଦେଖିବାପାଇଁ ଇଚ୍ଛା କରିବାଟା ମୋ ପକ୍ଷରେ ଖୁବ ସ୍ୱାଭାବିକ । ମୋଭଳି ସାଧାରଣ ଟିକିଏ ପଢ଼ାଶୁଣା ଲୋକ ପାଇଁ Book ର

ଅଭିଧାନ ଅର୍ଥ ହେଲା ପୁସ୍ତକ । କିନ୍ତୁ ଯେତେବେଳେ ପୃଷ୍ଠାପରେ ପୃଷ୍ଠା ଓଲଟାଇ'ଗଲି Bookର ଏତେ ପ୍ରକାରର ଅର୍ଥ ଓ ସେଗୁଡ଼ିକର ବ୍ୟବହାର ଉଲ୍ଲେଖ ଦେଖି ବିସ୍ମିତ ହୋଇଗଲି । ପୁଲିଶ ତାକୁ ବୁକ କଲାଣି । ତା ପାଇଁ ଟ୍ରେନରେ ରିଜରଭେସନ ବୁକ କରି ଗଲାଣି, ସେ ବୁକକିପିଙ୍ଗରେ ଧୁରନ୍ଧର ! ହୋଟେଲର ସବୁ କୋଠରୀ ବୁକ୍‌ଡ୍ ହୋଇଗଲାଣି ଭଳି ସାଧାରଣ ଅର୍ଥଠାରୁ ଆରମ୍ଭ କରି ସେ ତାଙ୍କ ଜ୍ଞାନ ହାସଲ କରିଥିଲେ ପ୍ରକୃତିର ଅତି ମୂଲ୍ୟବାନ ପୁସ୍ତକରୁ (Drew his knowledge from the great book of Nature), ତାଙ୍କ ମୁଖମଣ୍ଡଳ ଥିଲା ଗୋଟିଏ ଖୋଲା ପୁସ୍ତକ ( Her face was an opens Book ) ପ୍ରଭୃତି ଯେତେବେଳେ ଦେଖି ଯାଉଥାଏ ପୁସ୍ତକର ପ୍ରତ୍ୟେକ ଶବ୍ଦ ଓ ତାହାର ବ୍ୟବହାର କିଏ, ଭାବ ପ୍ରକାଶର କେଉଁ ଆବଶ୍ୟକତା ପୂରଣ କରିବା ପାଇଁ କେବେ ବ୍ୟବହାର କଲେ ଇତ୍ୟାଦିର ଗୁରୁତ୍ୱ ମୋ ମନ ଉପରେ ଗଭୀର ପ୍ରଭାବ ପକାଉଥାଏ । ଯେଉଁ ଲୋକ ପ୍ରଥମେ Run (ରନ୍) ଶବ୍ଦ ସୃଷ୍ଟି କରିଥିଲା ସେ ବିଗୁରିଥିଲା ଗୁଲିବାଠାରୁ ଅଧିକ ବେଗରେ ଗତି କଲେ ହେଁ ଦଉଡ଼ ବୋଲି କୁହାଯିବ । କିନ୍ତୁ ସେ ତ ବିଗୁରି ନଥିଲା ଯେ ଦିନେ ସେହି ଶବ୍ଦକୁ Run on the Bank, A run for the pigs. Running nose ଭଳି ଶବ୍ଦ ପ୍ରକାରେ ବ୍ୟବହାର କରାଯିବ । ଯେଉଁମାନେ ବ୍ୟାଙ୍କରେ ଟଙ୍କା ଜମା କରିଛନ୍ତି ସେମାନେ କୌଣସି ଗୋଟାଏ ଗୁଜବ ଶୁଣି କାଳେ ବ୍ୟାଙ୍କ ଦିଆନିଆ ହୋଇଯିବ ବୋଲି ଧାଇଁଲେ ଟଙ୍କା ଉଠାଇ ନେବାକୁ, ଘୁଷୁରିଙ୍କ ପାଇଁ ଗୋଟାଏ ଖୁଆଡ଼ ତିଆରି କରି ଦିଆଯିବ । ସର୍ଦ୍ଦି ହେବା ଫଳରେ ନାକରୁ ବରାବର ପାଣି ବହି ଆସୁଛି—ଯାହା କହିବାକୁ ଗଲେ କି ରନ ଶବ୍ଦ ଆସିଯାଉଛି । ଆମ ଭାରତୀୟ ଭାଷାରେ ଯେ ଶବ୍ଦର ଭିନ୍ନ ଭିନ୍ନ ଅର୍ଥରେ ବ୍ୟବହାର ନ ହେଉଛି ତାହା ନୁହେଁ—କିନ୍ତୁ ଇଂରାଜୀରେ ଯେତେ ବ୍ୟାପକ ଭାବରେ ସେଭଳି କରା ଯାଉଛି ତାହା ଆମ କ୍ଷେତ୍ରରେ ହେଉନାହିଁ । କାରଣ ଯେଉଁ ଯୁଗରେ ବିଜ୍ଞାନ ଆଗେଇଗଲା, ସମାଜ ଥରକୁ ଥର ନୂଆ ନୂଆ ଗ୍ରନ୍ଥରେ ପଡ଼ିବାକୁ ଗଲା, ଚିନ୍ତା ଭାବନାରେ ସମ୍ପୂର୍ଣ୍ଣ ନୂଆ ନୂଆ ଦିଗନ୍ତ ଯୋଡ଼ି ହୋଇଗଲା । ଗଣତନ୍ତ୍ର ତାହାର ନିଜରୂପ ଦେଖାଇଲା ସେହି ଯୁଗରେ ଭାରତ ହୋଇଗଲା ପରାଧୀନ । ଇଂରାଜୀ ଭାଷା ଭାରତୀୟଙ୍କ ଚିନ୍ତା ଭାବନାକୁ ଏଭଳି ଭାବରେ

ପ୍ରଭାବିତ କଲା ଯେ ସେମାନେ କେବେହେଲେ ବିଶ୍ୱାସ କରି ପାରିଲେ ନାହିଁ ଭାରତୀୟ ଭାଷାରେ ଜ୍ଞାନ ବିଜ୍ଞାନର ସବୁ ବିଭାଗର ସବୁକଥା ପ୍ରକାଶ କରି ହେବ । ଯେତେବେଳେ ଇଂରାଜୀରେ ପଢ଼ାହେଲା, ଇଂରାଜୀରେ ଲେଖାଗଲା ଓ ବୁଝାଗଲା ସେତେବେଳେ ନୂତନ ଭାରତୀୟ ଶବ୍ଦସବୁ ସୃଷ୍ଟି କରିବାର ବା ପ୍ରୟୋଗ କରିବାର ସୁଯୋଗ ଆଉ ରହିଲା ନାହିଁ । ଆମ ଭାଷାଗୁଡ଼ିକର ପ୍ରଗତିର ପଥ ଏକରକମ ରୁଦ୍ଧ ହୋଇଗଲା ।

ଲାଇବ୍ରେରୀରେ ଥରକେ ଯେଉଁ ପ୍ରାୟ ସାତଘଣ୍ଟା ବସେ ସେଥିରୁ ପାଞ୍ଚଘଣ୍ଟା ହିଏ ଅଭିଧାନ ପଢ଼ିବାରେ ଓ ଦୁଇଘଣ୍ଟା ଅନ୍ୟ ବିଷୟ ପଢ଼ି ନୋଟ କରିବାରେ । ଅଭିଧାନରୁ ମଧ୍ୟ କିଛି କିଛି ସମ୍ପାଦକୀୟ ଉପାଦାନ ମିଳି ଯାଏ । ଗୋଟିଏ ଉଦାହରଣ ହିଏ । 'ଅଦା' ବିଷୟରେ ଲେଖାଯିବ ଯେତେବେଳେ ginger (ଜିଞ୍ଜର) ଶବ୍ଦଟି ଉପରେ ଆଖି ପଡ଼ିଗଲା ଟିକିଏ ମନଦେଇ ପଢ଼ିଲି । ଦେଖିଲି ବେଳକୁ ଏହି ଶବ୍ଦର ବେଶ୍ ଚମତ୍କାର ବ୍ୟବହାର ରହିଛି ଇଂରାଜୀ ଭାଷାରେ । 'ଜ୍ଞାନମଣ୍ଡଳ'ର ତୃତୀୟ ଖଣ୍ଡରେ ଅଦା ପ୍ରବନ୍ଧରେ ଲେଖିଛି ଇଂରାଜୀ ଭାଷାର ବିଶେଷତ୍ୱ ହେଲା—ପୃଥିବୀର ବୃହତ୍‌ଆଡ଼ର ବହୁ ଶବ୍ଦ ନେଇ ନିଜ ଭାଷାରେ ମିଶାଇ ହିଅନ୍ତି ଓ ସେହି ଶବ୍ଦଗୁଡ଼ିକୁ ଏଭଳି ଭାବରେ ଆଦରି ଯାଆନ୍ତି ଯେ ମନେହେବ, ସତେ ଯେପରିକି ସବୁଗୁଡ଼ିକ ମୂଳ ଇଂରାଜୀ ଶବ୍ଦ । ଅଦାର ତେଜ, ଗୁଣ ଦେଖିଲା ପରେ ଇଂରେଜମାନେ ନିଜର ଭାବ ପ୍ରକାଶ ପାଇଁ ତାକୁ ବ୍ୟବହାର କଲେ । ୧୮୪୯ ମାର୍ଚ୍ଚ ୧୧ ତାରିଖଦିନ ଶ୍ରେଷ୍ଠ ଇଂରେଜ ରାଷ୍ଟ୍ରମାନିଙ୍କ ଡିସ୍‌ରାଇଲ ପ୍ରଥମେ ପାର୍ଲାମେଣ୍ଟରେ କହିଲେ —ଟାଇମ୍‌ସ୍ କାଗଜରେ ଯେଉଁସବୁ ଲେଖା ବାହାରିଲା ତାହାଦ୍ୱାରା ସେମାନେ 'ଜିଞ୍ଜଡ଼ ଅପ୍' ହେଲେ କି ନାହିଁ ମୁଁ କହିପାରିବି ନାହିଁ । ଏହାଦ୍ୱାରା ସେ ପ୍ରକାଶ କଲେ ଯେ, ସେହି ଲେଖା ଗୁଡିକ ପଢ଼ି ସେମାନଙ୍କ ଭିତରେ ଉତ୍ତେଜନା ପ୍ରକାଶ ପାଇଥିଲା କି ନାହିଁ ଅର୍ଥାତ ସେମାନେ ଟିକିଏ ଚେତିଥିଲେ କି ନାହିଁ, ସେ କହିପାରିବେ ନାହିଁ । ତାହାର କେତେ ବର୍ଷ ପରେ ସେ ପୁଣି ଥରେ ପାର୍ଲାମେଣ୍ଟରେ କହିଲେ— ଏହି ପାର୍ଲାମେଣ୍ଟ ଏଭଳି ମଳବୁତ ହୋଇଯିବାଟା କି ବିସ୍ମୟର କଥା ! ଏହା ଭିତରେ ପ୍ରାଣ ସଞ୍ଚାର କରିବା ପାଇଁ ଏହାକୁ ଜିଞ୍ଜିର ଅପ କରାଯିବା ଦରକାର । ତାଙ୍କ ପରେ ଅଦା ବା ଜିଂଜରକୁ ଅନେକ ପ୍ରକାରର ଭାବପ୍ରକାଶର ମାଧ୍ୟମ ଭାବରେ ବ୍ୟବହାର କରାଯାଉଛି । ୧୮୪୯ର ପ୍ରାୟ

ଶହେ ବର୍ଷପରେ ନିଜକୁ ଅଗ୍ରଗାମୀ ଗୋଷ୍ଠୀର ଲୋକବୋଲି ପରିଚିତ କରିବାକୁ ଯେଉଁମାନେ ଇଚ୍ଛା କଲେ ସେମାନେ ଚୋଟିଏ ଗୋଟିଏ ଦଳଗଢ଼ି ତାହାର ନାମଦେଲେ 'ଅଦାଦଳ' ବା ଜିଂଜର ଗ୍ରୁପ୍ ।

ଇଏ ତ ଗଲା ଶବ୍ଦର ଭିନ୍ନ ଭିନ୍ନ ଅର୍ଥରେ ବ୍ୟବହାର । କିନ୍ତୁ ସେହି ଅଦା ଶବ୍ଦ ଉପରେ ଆଖି ପକାଉ ପକାଉ ଗୋଟିଏ ମଜାର କଥା ଜାଣିଲି । ତାହାର ଉଲ୍ଲେଖ ମଧ୍ୟ ଜ୍ଞାନମଣ୍ଡଳରେ ଏହିଭଳି ଭାବରେ କରି ଦେଲି ।

ପଣ୍ଡିତମାନେ ଆମକୁ ଗୋଟିଏ କଥା କୁହନ୍ତି । ସେଇଟି ହେଉଛି ଯେଉଁସବୁ ଶବ୍ଦ ଆମେ ବ୍ୟବହାର କରୁଛୁ ସେଗୁଡ଼ିକର ଆତ୍ମଜୀବନୀ ପଢ଼ିଲେ ଆମେ ହୁଏତ ବିସ୍ମୃୟରେ ବୁଡ଼ିଯିବା ବା ଆମ କୌତୁହଳର ସୀମା ରହିବ ନାହିଁ । ଗୋଟିଏ ଗୋଟିଏ ଶବ୍ଦ ସୃଷ୍ଟି କରିବା ପାଇଁ ପୂର୍ବଯୁଗର ପଣ୍ଡିତମାନେ କିଛି କମ୍ ପରିଶ୍ରମ କରିନାହାନ୍ତି ! ଦଳେ ଲୋକ ଏକାଠି ବସିଯାଇ ଏକାଦିନେ, ଏକମାସ ବା ବର୍ଷକରେ ସବୁ ଶବ୍ଦ ତିଆରି କରି ପକାଇଲେ ନାହିଁ । ଜଣେ ଜଣେ ଖୁବ୍ ଲକ୍ଷ୍ୟ କଲେ ଓ ବହୁତ କିଛି ବୁଦ୍ଧି ଖଟାଇ ଗୋଟିଏ ଗୋଟିଏ ନୂଆ ଶବ୍ଦ ସୃଷ୍ଟି କରିଗଲେ । ପୃଥିବୀର ବହୁ ଭାଷାରେ ପ୍ରଚଳିତ ଶବ୍ଦ ଗୁଡ଼ିକର ଇତିହାସ ଲେଖା ଗଲାଣି । ଦେଖାଯାଉଛି ଗୋଟିଏ ଗୋଟିଏ ଶବ୍ଦ ନିଜ ଜନ୍ମସ୍ଥାନ ବା ଦେଶରୁ ବାହାରକୁ ଯିବା ଆରମ୍ଭ କରନ୍ତି । ଭିନ୍ନ ଭିନ୍ନ ଦେଶରେ ବୁଲିଲାବେଳେ ସେମାନଙ୍କ "ରୂପ"ରେ ସାମାନ୍ୟ ପରିବର୍ତ୍ତନ ହୋଇଯାଏ । କେତେ ଶହ ବର୍ଷପରେ ସେହି ଶବ୍ଦଟିକୁ ପରିବର୍ତ୍ତିତ ରୂପରେ ଅନ୍ୟ ଦେଶରେ ଦେଖିଲେ ଆମେ ଚିହ୍ନିପାରୁ ନାହିଁ । ଆରବ ଦେଶର ଜଣେ ଲୋକ ଯଦି ଓଡ଼ିଶାର ଗୋଟିଏ ଗାଁକୁ ଯାଇ "ଖିଜମତ" ଶବ୍ଦ ଶୁଣିବ, ସେ ହଠାତ୍ ବୁଝିପାରିବ ନାହିଁ ଯେ ଶହ ଶହ ବର୍ଷ ପୂର୍ବେ ତାଙ୍କରି ଦେଶରୁ 'ଖିଦ୍‌ମତ' (ସେବା) ବୋଲି ଯେଉଁ ଶବ୍ଦ ଆସିଥିଲା, ସେହିଟି ଆଜି ଖିଜମତ ରୂପରେ ଓଡ଼ିଶାର ଗାଁ ଗଣ୍ଡାରେ ପ୍ରଚଳିତ ହେଉଛି । ସେଇଥିପାଇଁ କୁହାଯାଉଛି ଯେ ଗୋଟିଏ ଗୋଟିଏ ଶବ୍ଦର ଆତ୍ମଜୀବନୀ ବା ଭ୍ରମଣ କାହାଣୀ ଆମକୁ ବହୁତ କିଛି ଜଣାଇଦେବ । ଆରବର ବଣିକମାନେ ଭାରତର ପଶ୍ଚିମ ଉପକୂଳରେ ଥିବା କେରଳ ରାଜ୍ୟରେ ପହଞ୍ଚିଲେ । ସେଠାରୁ ସେମାନେ

ଅଦା କଣିଲେ । ଯେତେବେଳେ ତାହାର ନାମ ପଗ୍ଧରଲେ ମଲୟଲମ ଭାଷାଭାଷୀମାନେ କହଲେ 'ଇଞ୍ଜିବର' । ସେମାନେ ଏହ ଶବ୍ଦଟିକୁ ଠିକ ଭାବରେ ଉଚ୍ଚାରଣ କର ନପାର 'ଜଂଜାବଲ' ବୋଲ ମନେ ରଖିଲେ । କେହ କେହ ହୁଏତ ଇଂଜବରର ନକଟ ହୋଇଥିବା ଉଚ୍ଚାରଣ କଲେ । ତାମିଲ ଭାଷାରେ ମଧ୍ୟ ଏହାର ନାମ 'ଇଂଜ' । ଅଦା ଇଉରୋପ ବଜାରକୁ ଯାଇ ପ୍ରଥମେ ପହଞ୍ଚିଲା ଗ୍ରୀସ୍‌ରେ । ସେମାନେ ତାକୁ ଜଂଜବରୀ (Zinjiberis), ଜର୍ମାନୀ, ଡେନମାର୍କ, ଫ୍ରାନ୍‌ସ, ପର୍ତ୍ତୁଗାଲ, ସ୍ପେନ, ଇଟାଲୀ, ହଲାଣ୍ଡ ପ୍ରଭୃତିରେ ଇଂଜବର ବୁଲିଲାବେଳେ ଜଂଜବର (ପର୍ତ୍ତୁଗାଲ), ଜେଂଜବର ବା ଅଜେଂଜବର (ସ୍ପେନସ୍), ଜେଂଜବରୀ (ଇଟାଲୀୟ), ଜେମ୍ବର (ଡଚ), ଇଂଜବର (ଜର୍ମାନ୍), ଇଂଜଫର (ଡେନସ୍), ଇଂଜଫର (ସୁଇଡସ୍) ବୋଲି ନାମ ପରିବର୍ତ୍ତନ କରି କରି ଗ୍ଲଲା । ନାମରେ ଟିକିଏ ଟିକିଏ ପରିବର୍ତ୍ତନ ହେଲା ସିନା, ମୂଳ ମଲୟଲମ ଶବ୍ଦ ଇଂଜବର ତାହାର ନଜତ୍ୱକୁ ପୂରାପୂର ହରାଇଲା ନାହିଁ । ଇଂଲଣ୍ଡରେ ପହଞ୍ଚିଲା ବେଳକୁ ଇଂଜବରର ନାମ ହୋଇଗଲାଣି ଜଂଜର । ଲାଟିନକୁ ମୂଳକରି ଜଂଜବରର ନାମ ରଖାଯାଇଛି ଜଂଜବରିସ୍ ଅଫିସିଏନାଲ (Zinziberis Officianal) ।

ଅଭିଧାନ ପଢ଼ା କାମଟା ଛ' ମାସ ବା ବର୍ଷକରେ ପ୍ରାୟ ଶେଷ ହୋଇଯିବ ବୋଲି ବିଚାରିଥିଲି । କିନ୍ତୁ ଜଣେ ଟି ବଡ଼ ବଡ଼ ଇଂରାଜୀ ଡିକ୍‌ସନାରୀ ପଢ଼ିବାକୁ ପ୍ରାୟ ଚାରିବର୍ଷ ଲାଗିଗଲା । ଇଂରାଜୀ ଭାଷା କାହିଁକି ଓ କିପରି ଉନ୍ନତ କରିଗଲା ତାହା ମୋ ଦୃଷ୍ଟିରୁ ମୁଁ ବିଚାରୁଥାଏ । ଚସର ଭି ପୁଣି ଏମିତି ଲେଖିଥିଲେ—

"...There is so great diversite
In English, and in writting of owre tonge,
So prey I god that non mys write thee..."

ତାହାର ମାତ୍ର ପାଞ୍ଚଶହ ବର୍ଷ ଭିତରେ ଏହି ଭାଷା ଯାଇ କେଉଁଠି ପହଞ୍ଚିଗଲାଣି ! ହଜାର ହଜାର ବିଦେଶୀ ଶବ୍ଦକୁ ଏହି ଭାଷା ନିଜ କଳେବର ଭିତରେ ଏଭଳି ଭାବରେ ଖଞ୍ଜି ଦେଇଛି ଯେ ଜଣେ ଇଂରେଜ ମଧ୍ୟ ବିଚାରୁନାହିଁ ସେଗୁଡ଼ିକ ବିଦେଶୀ ଶବ୍ଦ । ଯାହାକୁ କୁହନ୍ତି ଗୋଟିଏ

ପୁଅକୁ ଜଣେ ପାଳି ଆଣିଲା । ତା'କୁ ଏଭଳି ଆଦର କଲା ଯେ ପିଲାଟି ବିଚାରିଲା ନାହିଁ ମୁଁ ପାଳି ହୋଇଆସିଛି ବୋଲି ଓ ପାଳକ ବାପା ମଧ୍ୟ କେବେହେଲେ ଭାବିଲା ନାହିଁ ଯେ ସେ ବାହାରୁ ପୁଅ ହୋଇ ଆସିଛି । ନିଜ ପୁଅଙ୍କ ଭଳି ସେ ଆଦର ପାଇଲା । ମନେ ମନେ ବିଚାରୁଥାଏ – କେବଳ ଖାଇଦେଲେ ତ ଚଳିବନାହିଁ । ଯାହାକୁ ଖାଇବ ତାହା ପେଟ ଭିତରେ ଭଲ ଭାବରେ ହଜମ ହେବ-- ସେଥିର ସାରତକ ରକ୍ତରେ ମିଶିବ ଓ ତାହାର ଉପଯୋଗ ହେବ ଶରୀରର ବୃଦ୍ଧିରେ । ଇଂରାଜୀ ଭାଷା ସେଇଆ କରିପାରିଛି । ତା' ସାଙ୍ଗକୁ ଆଉ ଗୋଟିଏ କଥା ଲକ୍ଷ୍ୟ କରୁଥାଏ । "ଏଇଟା ଖାଇବ, ଏଇଟା ଖାଇବ ନାହିଁ--ଖାଇଲେ କାୟା ଅପବିତ୍ର ହୋଇଯିବ"—ଇତ୍ୟାଦି ବିଚାର ଇଂରେଜମାନେ ନକରି ଭାବପ୍ରକାଶ ପାଇଁ ଯେଉଁଟା ଦରକାର ସେଇଟିକୁ ଗ୍ରହଣ କରିଗଲେ ଓ ନିଜର କରିନେଲେ । ସେଇଥିପାଇଁ କେବଳ ବିଜ୍ଞାନ ପାଇଁ ନୁହେଁ, ଜ୍ଞାନର ଯେ କୌଣସି ବିଭାଗ ଉପରେ ଲେଖିବାକୁ ବା କହିବାକୁ ଗଲେ ଆମେ ଖୋଜୁଛୁ ଗୋଟିଏ ଉପଯୁକ୍ତ ବା ମନର ଭାବକୁ ପ୍ରକାଶ କରିପାରୁଥିବା ଶବ୍ଦ । ଇଂରାଜୀ ତ ଏତେ ଉନ୍ନତ ଭାଷା । ସେମାନେ 'ପୁଣ୍ୟ' ଶବ୍ଦଟିକୁ ଗ୍ରହଣ କରି ନିଜର ଅଭିଧାନରେ ସ୍ଥାନଦେଲେ କାହିଁକି (PUNYA) ? ଆମ ଦର୍ଶନରେ ପୁଣ୍ୟ ବୋଲି ଯେଉଁ ଶବ୍ଦ ଅଛି ତାହାର ଇଂରାଜୀ ପ୍ରତିଶବ୍ଦ ସେମାନେ ଦୁଇଶହ ବର୍ଷ ଧରି ଖୋଜିଲେ ମଧ୍ୟ ପାଇଲେ ନାହିଁ । ପାପକୁ SIN ବୋଲି କହିଲେ—କିନ୍ତୁ ପୁଣ୍ୟକୁ କଅଣ କହିବେ ? ଯେଉଁଟିକୁ ବ୍ୟବହାର କଲେ ଏହି ଉଦ୍ଦେଶ୍ୟରେ, ଅର୍ଥାତ୍ ପୁଣ୍ୟ ଯାହା କହୁଛି ତାକୁ ବୁଝାଇବାରେ ସେଇଟି ନିଅଣ୍ଟ ବା ଅକୁଳାଣ ପଡ଼ିଯାଉଛି ବୋଲି ଅନୁଭବ କଲେ । ବିଚାରୁଥାଏ ଆମେ କାହିଁକି ସେମିତି କରି ନ ପାରିବା ? ଯେଉଁ ସଂସ୍କୃତ ଓଡ଼ିଆ ଭାଷାର ଜନନୀ ସେ ସଂସ୍କୃତ କେତେ ହଜାର ବର୍ଷର ପୁରୁଣା । ତାକୁ ସମୃଦ୍ଧ କରିବା ପାଇଁ କେତେ ମୁନିଋଷି ପଣ୍ଡିତ ଦାର୍ଶନିକ ହଜାର ହଜାର ବର୍ଷ ଧରି ଉଦ୍ୟମ ନ କରିଛନ୍ତି ! ଆଖିରେ ତ ଆମେ ଦେଖୁଛୁ କୌଣସି ଗୋଟିଏ ଶବ୍ଦ ଗୋଟାଏ ନିର୍ଦ୍ଦିଷ୍ଟ ଭାଷାର ଖାସ୍ ସମ୍ପତ୍ତି ହୋଇ ସବୁଦିନ ପାଇଁ ରହି ନ ପାରେ । ଯଦି ଅନ୍ୟ ଗୋଟିଏ ଭାଷା ତାକୁ ନିଜର ବୋଲି କହିବ, ଦାବୀ କରିବ, ଗ୍ରହଣ କରିଯିବ ଓ ମୂଳଭାଷା ସେଥିରେ ଆପତ୍ତି କରିବାର କାରଣ

ରହିବ ନାହିଁ । ଭାରତର ଭାଷାଗୁଡ଼ିକ ଯଦି ଅଭାବ ମେଣ୍ଟାଇବା ପାଇଁ ବହୁ ସଂଖ୍ୟକ ବିଦେଶୀ ଶବ୍ଦ ବା ଆନ୍ତର୍ଜାତିକ ସ୍ତରରେ ଗୃହୀତ ହୋଇଥିବା ଶବ୍ଦ ଗ୍ରହଣ କରିପାରିବେ ସେଗୁଡ଼ିକ ଦ୍ରୁତ ଗତିରେ ଆଗେଇପାରିବେ ପ୍ରଗତି ପଥରେ । ଆଉ ଗୋଟିଏ କଥା ମନ ଭିତରେ ଖେଳିଲା । କୌଣସି ଗୋଟିଏ ଭାଷାର ଲୋକେ ଯଦି ବହୁ ସଂଖ୍ୟକ ବହି ଲେଖିବେ ତେବେ ଯାଇ ସିନା ଶବ୍ଦର ଅଭାବ ଅନୁଭବ କରିବେ । କେବଳ ବହୁସଂଖ୍ୟକ ବହି ଲେଖିଲେ ମଧ୍ୟ ଚଳିବ ନାହିଁ—ଜ୍ଞାନ ବିଜ୍ଞାନର ପ୍ରତ୍ୟେକ ବିଭାଗ ଉପରେ ଲେଖାଯିବା ଆବଶ୍ୟକ । ନଉକ୍ଲିୟ ବିଜ୍ଞାନ ଉପରେ ଯଦି ଓଡ଼ିଆ ଭାଷାରେ ବହି ଲେଖା ନଯିବ 'ରେଡ଼ିଓ ଆକ୍‌ଟିଭ୍ ଡିକେ'କୁ କିଭଳି ପ୍ରକାଶ କରାଯିବ ସେ ବିଷୟ ଚିନ୍ତା କରିବାର ଅବକାଶ ରହିବ କାହିଁକି ? ଅର୍ଥନୀତି ବହି ଲେଖିଲେ ସିନା କେତେକ ନୂଆ ଶବ୍ଦର ଓଡ଼ିଆ ଖୋଜିବାକୁ ପଡ଼ିବ । ଏନ୍‌ସାଇକ୍ଲୋପିଡିଆ ହେଉଛି ଗୋଟାଏ ଭାଷାର ଏକମାତ୍ର ପୁସ୍ତକ ଯେଉଁଥିରେ କି ସବୁ ବିଷୟ ରହିବ । ତେଣୁ ବହୁ ସଂଖ୍ୟକ ନୂଆ ଶବ୍ଦର ପ୍ରତିଶବ୍ଦ ଖୋଜି ବାହାର କରିବାକୁ ହେବ, ସୃଷ୍ଟି କରିବାକୁ ହେବ । ସଂସ୍କୃତରୁ ରୁଟ୍ ବା ମୂଳକୁ ଆଶ୍ରା କରି ଏଭଳି କରାଯାଇପାରିବ । ଯେଉଁ ଶବ୍ଦର ଓଡ଼ିଆ ନହୋଇ ପାରିବ ତାକୁ ସେମିତି ଗ୍ରହଣ କରି ନିଆଯିବ । ଯେତେବେଳେ ପରା ଗୋଟିଏ ସେଟ୍ ଏହି ଧରଣର ବହି ନିଜେ ଲେଖିଦେବି ବୋଲି ବସୁଛୁ ସେତେବେଳେ ଏହି ଦିଗରେ କେତେ କଠିନ ମାନସିକ ପରିଶ୍ରମ କରିବାକୁ ପଡ଼ିବ ସେହି ବିଷୟ ଭାବି ଟିକିଏ ଚିନ୍ତିତ ହୋଇ ପଡ଼ୁଥାଏ । ଏହିକଥା ମନ ଭିତରେ ଥିବାରୁ ଯେତେବେଳେ ଜ୍ଞାନମଣ୍ଡଳ ଲେଖିଲି ଅକ୍‌ସିଜେନ, ଆର୍‌କାଇଭ୍‌ସ, ଏଲିଟ, ମିଉଜିୟମ ପ୍ରଭୃତି ବିଷୟରେ ଲେଖିଲାବେଳେ କୌଣସି ଓଡ଼ିଆ ପ୍ରତିଶବ୍ଦ ନଖୋଜି ସେଗୁଡ଼ିକ ଯେମିତି ଅଛନ୍ତି ସେମିତି ଗ୍ରହଣ କରିଗଲି । ଆର୍‌କାଇଭ୍‌ସର ଅନୁବାଦ ଅଭିଲେଖାଗାର କରାଯାଉଥିଲେ ମଧ୍ୟ ଜ୍ଞାନମଣ୍ଡଳରେ କାହିଁକି ତାହା ନିଜ ରୂପକୁ ନ ବଦଳାଇ ସେମିତି ରହିଗଲା ତାହା ବୁଝାଇ ଦେବାକୁ ପଡ଼ିଲା । ମୋର ସନ୍ତୋଷ ଯେ ଓଡ଼ିଆ ପାଠକମାନେ ସେଗୁଡ଼ିକୁ ଗ୍ରହଣ କରିଗଲେ—କିଛି ଆପତ୍ତି କଲେ ନାହିଁ ।

ବାରମ୍ବାର ଉଲ୍ଲେଖ କରୁଛି ଡିକ୍‌ସନାରି ବା ଅଭିଧାନ "ପଢ଼ୁଥାଏ" । ବହୁଲୋକ ନିଜ ପାଖରେ ଅଭିଧାନ ରଖିଛନ୍ତି

ଯେତେବେଳେ ଗୋଟାଏ ଶବ୍ଦର ଅର୍ଥ ଜାଣିବା ଦରକାର ପଡ଼ୁଛି ସେଇଟିକୁ ଖୋଜି ବାହାର କରୁଛନ୍ତି । ସେଇଠି ସେମାନଙ୍କ କାମ ଶେଷ ହୋଇଗଲା । (ଅଭିଧାନ ପ୍ରଣେତାମାନେ ଅବଶ୍ୟ ଏହାର ବ୍ୟତିକ୍ରମ) । ସେମାନେ A ଠାରୁ ଆରମ୍ଭ କରି Z ଶେଷ ପର୍ଯ୍ୟନ୍ତ ଥିବା ସବୁ ଶବ୍ଦର ଅର୍ଥ ଜାଣିବାକୁ ଉଦ୍ୟମ କରୁନାହାନ୍ତି । କିନ୍ତୁ ମୁଁ ଯେତେବେଳେ ଗୋଟାଏ ନିର୍ଦ୍ଦିଷ୍ଟ ଲକ୍ଷ୍ୟ ସାଧନ ପାଇଁ ଇଂରାଜୀ ଅଭିଧାନର ପୃଷ୍ଠା ଓଲଟାଇଲି, ସେତେବେଳେ ସ୍ଥାନେ ସ୍ଥାନେ ଏଭଳି କେତେକ ଶବ୍ଦ ଓ ସେଗୁଡ଼ିକର ବ୍ୟବହାର ବିଷୟରେ ଏତେ କଥା ଲେଖାଯାଇଛି ଯେ ମନେହେଲା ସତେ ଯେପରିକି ମୁଁ ଗୋଟିଏ ଗୋଟିଏ ଶ୍ରେଷ୍ଠ ବଡ଼ ପ୍ରବନ୍ଧ ପଢ଼ୁଛି । ଏହି ଅଭ୍ୟାସ ମୋତେ ସାହାଯ୍ୟ କଲା ଜ୍ଞାନମଣ୍ଡଳ ଲେଖିବାରେ । ମୋର ଆଜି ମଧ୍ୟ ବିଶ୍ୱାସ ଯେ ଜଣେ ଯଦି ଅଭିଧାନକୁ "ପଢ଼ିବା କଳା" ହାସଲ କରିପିବ ସେ ବହୁତ କିଛି ଆନନ୍ଦ ପାଇବ ଓ ନିଜର ଶବ୍ଦ ସମ୍ଭାର ବୃଦ୍ଧି କରି ପାରିବ । ଇଂରେଜମାନେ ଜାହାଜ ଖଣ୍ଡେ ଖଣ୍ଡେ ଧରି ପୃଥିବୀର ସବୁ ଅଞ୍ଚଳକୁ ଗଲେ ଧନସମ୍ପଦ ଆଣି ନିଜ ଦେଶକୁ ସମୃଦ୍ଧ କରିବା ଲାଗି । ସେମିତି ପୃଥିବୀ ଯାକର ଭାଷାରୁ ଖୋଜିଲେ କି କି ଶବ୍ଦ ସେମାନଙ୍କ କାମରେ ଆସିବ—ଯାହା କି ନିଜ ଭାଷାରେ ନାହିଁ । ସେଗୁଡ଼ିକୁ ନେଇ ଆସି ଇଂରାଜୀ ଭାଷାର ପଣ୍ଡିତମାନଙ୍କ ଆଗରେ ରଖିଦେଲେ । ତେଣିକି ସେମାନେ ଠିକ୍ କଲେ ସେଥିଭିତରୁ କେଉଁ ଗୁଡ଼ିକୁ ଗ୍ରହଣ କରିବେ ବା ନ କରିବେ । ଯଦି ବା ଗ୍ରହଣ ନ କରିବେ କେମିତି ଉଚ୍ଚାରଣ କରିବେ, ଅର୍ଥାତ୍ ଇଂରେଜମାନଙ୍କୁ ଅସୁବିଧା ହେବ ନାହିଁ । ଆହୁରି ଲକ୍ଷ୍ୟ କଲି—କେତେକ ଶବ୍ଦର ମୂଳଅର୍ଥ ଯାହାଥିଲା ତାହା ବଦଳିଯାଇଛି ଆଧୁନିକ ବ୍ୟବହାରରେ । ମୂଳଅର୍ଥର ଉଲ୍ଲେଖ କରି ଏହା ଆଉ ପ୍ରଚଳିତ ନାହିଁ ବୋଲି ସୂଚାଇ ଦିଆଯାଇଛି । ଆମ ଓଡ଼ିଆ ବା ଭାରତୀୟ ଅଭିଧାନରେ ମଧ୍ୟ ସେହିଭଳି କରାଯିବା ଆବଶ୍ୟକ । ଏନ୍‌ସାଇକ୍ଲୋପିଡିଆଟି ଶବ୍ଦ ଅଭିଧାନ ନହେଲେ ମଧ୍ୟ ଏହି ଦିଗପ୍ରତି ସଜାଗ ରହିବାକୁ ପଡ଼ିବ ଓ ପ୍ରତ୍ୟକ୍ଷରେ ନହେଲେ ମଧ୍ୟ ପରୋକ୍ଷରେ ସୂଚାଇ ଦେବାକୁ ପଡ଼ିବ ।

ସେହି ଲାଇବ୍ରେରୀରେ ବସିଲାବେଳେ ଗୋଟିଏ କଥା ବାରମ୍ବାର ବିବୃତରେ । ମନୁଷ୍ୟ ଶରୀର ସହିତ ଭାଷାକୁ ଗୋଟାଏ ଦୃଷ୍ଟିରୁ ତୁଳନା କରି

ଯାଇପାରେ । କେବଳ ଖାଇଦେଲେ ଚଳିବ ନାହିଁ—ତାହା ହଜମ ହେବ । ରକ୍ତରେ ସାରତତ୍ତ୍ୱ ମିଶିବ ଓ ଶରୀରରେ ତାହାର ଉପଯୋଗ ହେବ—ଓଡ଼ିଆ ଭାଷା ଭିତରକୁ ଆଖି ବୁଜି ଗୁଡ଼ାଏ ଶବ୍ଦ ନେଇ ଆସିଲେ କାମ ଶେଷ ହୋଇ ଗଲା ନାହିଁ । ସେଗୁଡ଼ିକୁ ଓଡ଼ିଆ ଭାଷା ଆଦରିବ, ନିଜ ଭାଷାର ଶବ୍ଦ ବୋଲି ଧରିନେବ, ଠିକ ଭାବରେ ପ୍ରୟୋଗ କରିବ, ପାଠକ ମାନଙ୍କୁ ଦରକାର ପଡ଼ିଲେ ବୁଝାଯିବ କାହିଁକି ସେଇଟିକୁ ଗ୍ରହଣ କରିନିଆ ହେଲା । ମୋଟ ଉପରେ ଓଡ଼ିଆ ଭାଷା ଭିତରେ ସେଗୁଡ଼ିକ ରହିଲେ ତାହାର ସାମର୍ଥ୍ୟ ବୃଦ୍ଧି ପାଇବ । ଭାଷା ଭିତରେ କ୍ରମେ କ୍ରମେ ଭାବପ୍ରକାଶର ସାମର୍ଥ୍ୟ ବୃଦ୍ଧି ପାଇବା ହେଲା ଅସଲ ସମସ୍ୟା । ଇଂରାଜୀ ଭାଷା ଯେତେବେଳେ ଅନୁଭବ କଲା ଯେ 'ପୁଣ୍ୟ' ଶବ୍ଦ ଭିତରେ ଭରି ରହିଥିବା ଚମତ୍କାର ଭାବନା ବା ସୌନ୍ଦର୍ଯ୍ୟକୁ କୌଣସି ପ୍ରଚଳିତ ଇଂରାଜୀ ଶବ୍ଦ ପ୍ରକାଶ କରିପାରୁ ନାହିଁ, ସେତେବେଳେ ନିଜର ସାମର୍ଥ୍ୟକୁ ବଢ଼ାଇବା ପାଇଁ ସେଇଟିକୁ ଗ୍ରହଣ କରିଗଲା । ଆମେ ଯଦି ସେମିତି କରିକରିକା ଯିବା ଦିନେ ବୁଝାଯିବ—ଯେ କୌଣସି ଭାବ ପ୍ରକାଶ ପାଇଁ, ଯେ କୌଣସି ବିଦ୍ୟାକୁ ବୁଝାଇଦେବା ପାଇଁ ଓଡ଼ିଆ ଭାଷା ଭିତରେ ଆବଶ୍ୟକୀୟ ସାମର୍ଥ୍ୟ ରହିଛି । ଆମ ଓଡ଼ିଆ ଭାଷାରେ ଅମୂଲ୍ୟ ସଂସଦ ରହିଛି, ଏହା ଗୋଟିଏ ଅତି ଶକ୍ତିଶାଳୀ ଭାଷା—ଏହିଭଳି କହିଦେଲେ ଆମର ହୁଏତ ଆତ୍ମସନ୍ତୋଷ ହେବ—କିନ୍ତୁ ବାସ୍ତବତାଠାରୁ ତାହା ନିଶ୍ଚିତ ଭାବରେ ବହୁ ଦୂରରେ । ସେହି ଆତ୍ମସନ୍ତୋଷ ଆତ୍ମପ୍ରତାରଣର ରୂପ ଅତି ବିପଜ୍ଜନକ ଭାବରେ ନିଏ । ଧର୍ମ, ପ୍ରେମ ଉପରେ ଯେତେ ପ୍ରକାରେ ଯାହା ଲେଖିଲେ ମଧ୍ୟ ତାହା ମାନବ ଜ୍ଞାନର ମାତ୍ର ଗୋଟିଏ ଗୋଟିଏ ଦିଗ । ଦୁନିଆ ଆଗେଇ ଯାଉଛି, ନୂତନ ରୂପରେ ଜ୍ଞାନ ପ୍ରକାଶ ପାଉଛି, ପଚିଶ ବର୍ଷ ପୂର୍ବେ ଅର୍ଥନୀତିରେ ଡିଗ୍ରୀ ହାସଲ କରିଥିବା ଜଣେ ବିଦ୍ୱାନ ଆଜିର ଅର୍ଥନୀତି ପୁସ୍ତକଗୁଡ଼ିକୁ ଏଭଳି ନୂଆ ରୂପରେ ଦେଖୁଛନ୍ତି ଯେ ବିଚାରୁଛନ୍ତି ସେମାନେ ସତେ ଯେପରିକି ଅଙ୍କ ଶାସ୍ତ୍ର ବା ବିଜ୍ଞାନର ବହି ପଢ଼ୁଛନ୍ତି । ଯେଉଁମାନେ ଭାଷା ବିଷୟରେ ଯଥେଷ୍ଟ ଜାଣିଛନ୍ତି ବୋଲି ବିଚାରୁଥିଲେ ସେମାନେ ଆଜିର ଭାଷାବିଜ୍ଞାନ ବା ଲିଙ୍ଗୁଇଷ୍ଟିକ ବହି ସବୁ ପଢ଼ିଲେ ନିଜର ଭାଷା ଜ୍ଞାନର ସୀମା ବିଷୟରେ ସଚେତନ ହୋଇ ଉଠୁଛନ୍ତି । ପଦାର୍ଥ ବିଦ୍ୟା (ଫିଜିକ୍ସ) ଓ ଦର୍ଶନ ( ଫିଲୋସଫୀ ) ସତେ ଯେପରିକି ଏକା ଭାଷା ହିଁ

କହୁଛନ୍ତି । ବହୁ ଉନ୍ନତ ଭାଷା ନିଜର ସାମର୍ଥ୍ୟ ବଢ଼ାଇବା ପାଇଁ ସତତ ଚେଷ୍ଟିତ । ସେମାନଙ୍କ ପକ୍ଷରେ ଯେଉଁଟା ଅପେକ୍ଷାକୃତ ସହଜ ସେଇଟା ଆମ ପକ୍ଷରେ କଷ୍ଟ । ତିନି ଦଶନ୍ଧି ପୂର୍ବେ ଏ ଦିଗରେ ମୋର ଯେଉଁ ଚିନ୍ତା ଥିଲି ଆଜି ମଧ୍ୟ ସେହି ଚିନ୍ତା ରହିଛି ୧୯୮୭ରେ । ଗଲା ତିନି ବର୍ଷ ଭିତରେ ମୋତେ ଯିଏ ଯେତେ ପ୍ରକାରେ ପଚାରୁଛନ୍ତି ମୁଁ ପ୍ରକୃତରେ କ'ଣ କରୁଛି ଜାଣିବା ପାଇଁ ସେମାନଙ୍କୁ ଗୋଟିଏ ମାତ୍ର ଉତ୍ତର ଦେଉଛି—ଓଡ଼ିଆ ଭାଷା ଭିତରେ ସାମର୍ଥ୍ୟ ଭରିବା ପାଇଁ କ୍ଷୀଣ ଉଦ୍ୟମ କରୁଛି । ଅନ୍ୟମାନେ ଯେ ନ କରୁଛନ୍ତି ତା ନୁହେଁ—କିନ୍ତୁ ସେମାନଙ୍କ ଉଦ୍ୟମ ବିଖଣ୍ଡିତ ଭାବରେ ହେଉଥିଲାବେଳେ ମୋ ଉଦ୍ୟମ ଯେତେ କ୍ଷୀଣ ହେଉ ପଛକେ ସାମୂହିକ ଭାବରେ ହେଉଛି । ମୋ କଥାଟିକୁ ଆହୁରି ଟିକିଏ ଭଲଭାବରେ ବୁଝାଇ ଦେବାକୁ ଯାଇ କୁହେ—ଦେଖନ୍ତୁ ଜ୍ଞାନମଣ୍ଡଳରେ ହୃତପିଣ୍ଡ ଓ ରକ୍ତ ଉପରେ ଲେଖା ଯାଇଛି ଅଠାଇଶ ହଜାର ଶବ୍ଦର ଦୁଇଟି ପ୍ରବନ୍ଧ । ସତ୍ତୁରିପୃଷ୍ଠାର ଏହି ପ୍ରବନ୍ଧଦୁଇଟିରେ ଗୋଟିଏ ହେଲେ ଭୁଲ ତଥ୍ୟ ନାହିଁ । ଡାକ୍ତରୀ ବହିରେ ଏ ବିଷୟରେ ଯେତେ ଯେତେ ବୈଜ୍ଞାନିକ ତଥ୍ୟ ରହିଛି ସେଥିରୁ କୌଣସିଟିକୁ ବାଦ ଦିଆଯାଇ ନାହିଁ । ଯେଉଁ ଶବ୍ଦ ଗୁଡ଼ିକୁ ଡାକ୍ତରଙ୍କ ପାଠ - ଫେଣୁ ସାଧାରଣ ଲୋକେ ବୁଝି ପାରିବେ ନାହିଁ ବୋଲି କୁହାଯାଉଥିଲା ସେହି ଶବ୍ଦ ଗୁଡ଼ିକର ଓଡ଼ିଆ ପ୍ରତିଶବ୍ଦ ଦିଆ ଯିବା ସଙ୍ଗେ ସଙ୍ଗେ ମୂଳ ଶବ୍ଦର ପ୍ରକୃତ ଅର୍ଥ କଅଣ ତାହା ମଧ୍ୟ ବୁଝାଇ ଦିଆଯାଇଛି । ଯେଉଁମାନେ କୌଣସି ଡାକ୍ତରୀ ବହି ପଢ଼ି ନଥିଲେ ସେମାନେ ଏହି ଦୁଇଟିକୁ ଭଲ ଭାବରେ ବୁଝି ପାଉଛନ୍ତି । କେତେଜଣ ଉଚ୍ଚଶିକ୍ଷିତ, ଆମ ବିଜ୍ଞାନୀ ପାଠକ ସ୍ପଷ୍ଟ ଭାଷରେ କହିଛନ୍ତି—ଆମେ ଓଡ଼ିଆରେ ଏତିକି ପଢ଼ିଦେଲାପରେ ଫିଜିଓଲଜୀ ବହିରୁ ଏହି ସମ୍ବନ୍ଧୀୟ ବିଷୟ ଗୁଡ଼ିକୁ ସହଜରେ ବୁଝି ପାଉଛୁ । ଏଥିରୁ ଆମେ ଏଇ ସିଦ୍ଧାନ୍ତରେ ପହଞ୍ଚି ପାରିବା ଯେ ଇଂରାଜୀ ଫିଜିଓଲଜୀ, ଆପ୍ଲାଏଡ଼ ଫିଜିଓଲଜୀ, ପାଥୋଲଜୀ ପୁସ୍ତକ ଗୁଡ଼ିକୁ ଓଡ଼ିଆ ଭାଷାରେ ସହଜରେ ଲେଖିଦେଇ ହେବ ବା ଅନୁବାଦ କରିଦେଇ ହେବ । ମାତ୍ର ତିନି ହଜାର ଡାକ୍ତରୀ ଶବ୍ଦକୁ ବୁଝାଇ ଗୋଟିଏ ଇଂରାଜୀ ଓଡ଼ିଆ ଅଭିଧାନ ପ୍ରସ୍ତୁତ କରିଦେଲେ । ବହୁ ଲୋକ ଡାକ୍ତରୀ ବହିଗୁଡ଼ିକୁ ଓଡ଼ିଆ କରି ଦେଇ ପାରିବେ । ଏହାର ଅର୍ଥ ହେଲା ଓଡ଼ିଆ ଭାଷା ଭିତରେ କ୍ରମେ ସାମର୍ଥ୍ୟ ଭରିଯାଉଛି ।

ଏହି ସନ୍ଦର୍ଭରେ ମୋ ସହିତ ପ୍ରାୟ ଏକମତ ହୋଇ ଗଲାପରେ ପୁଣି ପ୍ରଶ୍ନ ଉଠେ—ସେମାନେ ସିନା ତିନି ଶହ ବର୍ଷ ଉଦ୍ୟମ କଲା ଫଳରେ ଏହି ସ୍ତରରେ ପହଞ୍ଚିଛନ୍ତି । ଆମେ ସେମାନଙ୍କ ସ୍ତରକୁ କେତେ କାଳ ପରେ ଯାଇ ଉଠିବା ? ଏମିତିବି ହୋଇପାରେ ଆମେ ସେଠାକୁ ଆଦୌ ଯାଇ ପାରିବା ନାହିଁ । ସେମାନଙ୍କୁ ବୁଝାଏ—ବିଜ୍ଞାନ ଯେ କାଳ ଓ ଦୂରତାକୁ ଜୟ କରିଗଲାଣି ଏଥିରେ ସନ୍ଦେହ ନାହିଁ । ସେମାନେ ତିନିଶହ ବର୍ଷରେ ଯେତିକି ଆଗେଇଛନ୍ତି ଆମେ ପଚିଶ ବର୍ଷ ଭିତରେ ସେତିକି ଆଗେଇ ନପାରିବା କାହିଁକି ? ସେମାନେ ଯେ ଆମ ପାଇଁ ବାଟପଣିଆ କାମ କରି ଯାଇଛନ୍ତି । ମନୁଷ୍ୟ ଯାହା ଚିନ୍ତା କରୁଛି ତାକୁ ଭାଷାରେ ପ୍ରକାଶ କରିବା ପାଇଁ ଯେତେ ଯେତେ ଶବ୍ଦ ଲୋଡ଼ା ସବୁତକ ସେମାନେ ଆଣି ନିଜ ଭାଷାର ଡିକ୍‌ସନାରି ଭିତରେ ସାଇତି ଦେଇଛନ୍ତି । କେଉଁଠାରୁ ସେଗୁଡ଼ିକ ଆଣିଲେ ତାହା ମଧ୍ୟ ଉଲ୍ଲେଖ କରି ଯାଇଛନ୍ତି । ଆମକୁ ଆଉ ସେ ପ୍ରକାର ପରିଶ୍ରମ କରିବାକୁ ପଡ଼ିବ ନାହିଁ । ସେହି ପ୍ରାୟ ୪ ଲକ୍ଷ ୫୦ ହଜାର ଶବ୍ଦ ଭିତରୁ ଆମେ ବାଛି ନେବା କେଉଁଗୁଡ଼ିକ ଆମର ଲୋଡ଼ା । ସେଗୁଡ଼ିକର ପ୍ରତିଶବ୍ଦ ଦେଇ, ବୁଝାଇ ଦେଇ ଆମେ ଯଦି ଗୋଟିଏ ଇଂରାଜୀ ଓଡ଼ିଆ ଅଭିଧାନ କରିଦେବା ତେବେ ଆମେ ସେହି ଶବ୍ଦଗୁଡ଼ିକ ସହିତ ପରିଚିତ ହୋଇଗଲୁ । ଯେଉଁଗୁଡ଼ିକ ସେହି ଅଭିଧାନରେ ନାହିଁ—ନରହିବା ସ୍ୱାଭାବିକ—ଆମ ଅଭିଧାନରେ ଅଛି ସେଗୁଡ଼ିକୁ ଓଡ଼ିଆରୁ ଓଡ଼ିଆ ଅଭିଧାନ ଭିତରେ ରଖିଦେବୁ । ଏହି ଅଭିଧାନରେ ଇଂରାଜୀରୁ ଓଡ଼ିଆ ହୋଇଥିବା ଶବ୍ଦଗୁଡ଼ିକ ମଧ୍ୟ ସ୍ଥାନ ପାଇପିବ । କେତେ ସୁବିଧା ହୋଇପିବ ଅନୁମାନ କରନ୍ତୁ । ଏଭଳି ଠିକିଏ ବିଜ୍ଞାନ ସମ୍ମତ ଯୋଜନା କରିବାକୁ ହେବ । ଏଭଳି କହିବା ଦ୍ୱାରା ମୁଁ କ'ଣ ବସ୍ତୁରୁଛି ତାକୁ ସହଜରେ ବୁଝି ହୋଇପିବ ଯଦି ଗୋଟିଏ କଥା ଦେଖାଇ ଦିଏ । ଏହା କହି ୧୯୭୬ରେ ପ୍ରକାଶିତ ହୋଇଥିବା ଓ୍ୱେବ୍‌ଷ୍ଟରର ଅଭିଧାନର ( Websters third new International Dictitonary ) ପ୍ରଥମ ଖଣ୍ଡଟି ଆଣି ୨୧୦-୨୧୧ ପୃଷ୍ଠା ଖୋଲି ଦେଲି ଓ ଏଇ ଦୁଇ ପୃଷ୍ଠାରେ କେତୋଟି ଭାରତୀୟ ଶବ୍ଦ ଅଛି ଦେଖ ବୋଲି କହିଲି । ମୋ ପାଖରେ ଯେଉଁ ଉଚ୍ଚ ଶିକ୍ଷିତ ଲୋକ ତିନିଜଣ ବସିଥିଲେ ସେମାନେ କହିଲେ —ଭଜନ, ଭଗବତ, ଭାଗ, ଭକ୍ତ, ଭକ୍ତି ଭାଲୁ, ଭାଙ୍ଗ, ଭଙ୍ଗୀ ଭରତନାଟ୍ୟ, ଭର, ଭାରତୀ, ଭାଟ, ଭାତପଡ଼ା,

ଜବନଗର, ଭୂଷ, ଭୂର୍ପ୍ପା, ଭୂମିଦାର, ଭୂତ ଶବ୍ଦ ତ ରହିଛି । ଏହିଭଳି ଭାବରେ ଶହ ଶହ ଭାରତୀୟ ସଂସ୍କୃତ ଭାଷାରୁ ଶବ୍ଦ ସଂଗ୍ରହ କରି ସେମାନେ ଇଂରାଜୀ ଡିକସନାରୀ ରଚିଛନ୍ତି । ଭାଟ, ଭାଇ, ଭାଙ୍ଗ ଭକ୍ତି, ଭାଲୁ, ଭୂତର ଇଂରାଜୀ ପ୍ରତିଶବ୍ଦ ଥିଲେ ମଧ୍ୟ ସେମାନେ କାହିଁକି ସେଗୁଡ଼ିକୁ ନବଦଳାଇ ରଖି ଦେଇଛନ୍ତି ତାହାର କାରଣ ବୁଝିଲେ ଆମର ବହୁତ କିଛି ଲାଭହେବ ବୋଲି କହିଲି । ଗୋଟିଏ ଭାଷାରେ ଅଭିଧାନ କାହିଁକି ପ୍ରଣୟନ କରାଯାଏ ? ଜଣେ ଗୋଟିଏ ଇଂରାଜୀ ବହି ପଢ଼ୁଛି । ସେଥିରେ ଏଭଳି ଗୋଟିଏ ଶବ୍ଦ ଅଛି ଯେ ସେ ବୁଝିପାରୁନାହିଁ । ପାଖରେ ଥିବା ଡିକସନାରୀ ସେ ଖୋଲିବ । ଦେଖିବ ସେ ଶବ୍ଦ ନାହିଁ । ତାହାହେଲେ ସେ ବୁଝିବ କେମିତି ? ଏହି ଅସୁବିଧାଟି ଦୂର କରିବା ପାଇଁ ଇଂରାଜୀ ଭାଷାବିତ୍‌ମାନେ ଗୋଟିଏ ନୀତି ସ୍ଥିର କରିଦେଲେ । ଇଂରାଜୀ ଭାଷାରେ ଯେତେ ସଂଖ୍ୟକ ବହି ଛପା ହେଉଛି ଯେତେ ସଂଖ୍ୟକ ଖବରକାଗଜ ପତ୍ରପତ୍ରିକା ବାହାରୁଛି ସେହି ସବୁ ଥିରେ ଯେତେ ଯେତେ ଶବ୍ଦର ବ୍ୟବହାର ଅଛି ସବୁଗୁଡ଼ିକୁ ସେମାନେ ଭିତରକୁ ନେବାକୁ ବାଧ୍ୟ ହେଉଛନ୍ତି । ସେମାନଙ୍କର ଆଉ ଗୋଟିଏ ଅସୁବିଧା ହେଉଛି । ସେହି ଅସୁବିଧାଟି ଗୋଟାଏ ଦୃଷ୍ଟିରୁ ବ୍ୟାପକ ଓ ଜଟିଳ । ଓଡ଼ିଆ ଭାଷାରେ ଓଡ଼ିଆମାନେ ହିଁ ବହି ଲେଖୁଛନ୍ତି । ହୁଏତ ସାମାନ୍ୟ ବ୍ୟତିକ୍ରମ ଥିବ । କିନ୍ତୁ ଇଂରାଜୀରେ ପୃଥିବୀ ତମାମ ବହୁ ଦେଶର ଲୋକେ ଲେଖୁଛନ୍ତି—କ୍ରମେ ଅଧିକରୁ ଅଧିକ ସେହି ଧାରଣର ପ୍ରକାଶନ ଚାଲିଛି । ଭାରତ ଭଳି ଦେଶରେ ଯେତେ ସଂଖ୍ୟାରେ ଇଂରାଜୀ ପୁସ୍ତକ ଖବର କାଗଜ ପତ୍ର ପତ୍ରିକା ରିପୋର୍ଟ ପାର୍ଲାମେଣ୍ଟର ବିବରଣୀ ଇତ୍ୟାଦି ପ୍ରକାଶ ପାଉଛି ତାକୁ ଦେଖି ଆମ ଇଂରାଜୀ ଇଉରୋପୀୟ ଭାଷାଭାଷୀ ବିସ୍ମିତ ହେଉଛନ୍ତି । ଯୁକ୍ତରାଷ୍ଟ୍ର ଆମେରିକା କାନାଡ଼ାରେ ଚଳୁଥିବା ଇଂରାଜୀ ବହୁ ସଂଖ୍ୟକ ଇଉରୋପୀୟ ଶବ୍ଦକୁ ଓ ମୂଳସ୍ଥାନୀୟ ଅଧିବାସୀଙ୍କ ଶବ୍ଦକୁ ଇଂରାଜୀ ପୋଷାକ ପିନ୍ଧାଇ ଦେଲେଣି । ତେଣୁ ସେମାନେ ଅକ୍ଳାନ୍ତ ପରିଶ୍ରମ କରି ଇଂରାଜୀ ଭିତରକୁ କେଉଁ କେଉଁ ଶବ୍ଦ ଆସିଗଲା ସେସବୁକୁ ଖୋଜୁଛନ୍ତି । ଫଳରେ ଇଂରାଜୀ ଅଭିଧାନର କଳେବର ବୃଦ୍ଧି ହେବାରେ ଲାଗିଛି । ସେମାନେ ଆଉ ଗୋଟିଏ କାମ କରୁଛନ୍ତି । ପୃଥିବୀର ଯେଉଁ କୋଣରେ ହେଉପଛକେ ବହିଟିଏ ବାହାରିଲେ ସେମାନେ ଦେଖି ଦେଉଛନ୍ତି ସେଇଟି ଉପାଦେୟ କି ନୁହେଁ । ଯଦି ଦେଖିଲେ ଭଲ—ସଙ୍ଗେ ସଙ୍ଗେ ଇଂରାଜୀ ଅନୁବାଦ କରି ପକାଉଛନ୍ତି ।

ଜାପାନ ବା ଇଉ଼ସ ଭାଷାର ଜଣେ ସାହିତ୍ୟରେ ନୋବେଲ ପୁରସ୍କାର ପାଇଗଲେ ତାଙ୍କ ବହିର ଇଂରାଜୀ ଅନୁବାଦ ବାହାରି ପଡ଼ୁଛି । ସେହିସବୁ ଦେଶର ଭାଷାର କେତେଗୁଡ଼ିଏ ଶବ୍ଦ ଇଂରାଜୀରେ ଅନୁବାଦିତ ହୋଇ ପାରୁନଥିବା ଦେଖି ଯେମିତି ଅଛି ସେମିତି ରଖିଦେଇ ଟିକିଏ ବୁଝାଇ ଦେଉଛନ୍ତି । ବେଶ ଅନୁମାନ କରାଯାଇ ପାରେ ସେମାନଙ୍କ ପାଇଁ ସମସ୍ୟାଟି କେଉଁଳି ବିରାଟ ତଥା ଜଟିଳ । କୁହାଯାଉଛି ଗୋଟିଏ ଭାଷାର ଅଭିଧାନର ପୃଷ୍ଠା ଓଲଟାଇଗଲେ ଜାଣି ହୋଇଯିବ ସେ ଭାଷା କେଉଁଳି ସମୃଦ୍ଧ । ଓଡ଼ିଆରେ ଯଦି ବହୁ ସଂଖ୍ୟକ ବହି ଲେଖାଯିବ ଜ୍ଞାନର ସବୁ ବିଭାଗ ଉପରେ ଓ ବହୁ ସଂଖ୍ୟକ ପୁସ୍ତକ ମୂଳ ଲେଖାରୁ ଅନୁବାଦିତ ହେବ ତେବେ ଯାଇ ଓଡ଼ିଆ ଭାଷା ଭିତରକୁ ଅଧିକ ସଂଖ୍ୟାରେ ନୂଆ ଶବ୍ଦ ଆସିବ । ସେହି ଅନୁପାତରେ ତାହାର ସାମର୍ଥ୍ୟ ବଢ଼ିବ । ଏଇଟି ଜଣେ ବା ଦଶଜଣ ବିନୋଦ କାନୁନଗୋଙ୍କ କାମ ନୁହେଁ । ଶହ ଶହ ଓଡ଼ିଆ ଅଧ୍ୟାପକ ଲେଖକ କେବେ ଯଦି ଉଦ୍ୟମ କରିବେ ତେବେ ଯାଇ ଆମେ କିଛି ଦୂରକୁ ଆଗେଇ ପାରିବା । ସେମାନଙ୍କ ମନରୁ ଗୋଟିଏ ସନ୍ଦେହ ଦୂର କରାଇଦେବା କର୍ତ୍ତବ୍ୟ ବୋଲି ବିଚାରିଲି । ବୈଜ୍ଞାନିକମାନଙ୍କ ଭାଷାକୁ ଉଦ୍ଧାର କରି କହିଲି— ଯଦି ଯେଉଁଠି ଅଛ ସେଇଠି ରହିବାକୁ ଇଚ୍ଛା କରୁଛ ତେବେ ଦ୍ରୁତଗତିରେ ଆଗକୁ ଧାଇଁବାକୁ ପଡ଼ିବ—ଏହି ହେଲା ଆଧୁନିକ ଯୁଗର ନୀତି । ଏହାର ଅର୍ଥ ଆମେ ବୁଝିବା ଦରକାର । ଜଣେ ଆମଠାରୁ ପଚିଶ ମିଟର ଆଗରେ ଅଛି । ଆମଠାରୁ ତାହାର ଦୂରତା ହେଲା ପଚିଶ ମିଟର । ସେ ଆଗକୁ ଧାଇଁଲା—ଆମେ ଯଦି ତା' ସହିତ ତାଳ ମିଳାଇ ଆଗକୁ ନ ଧାଇଁବା ତେବେ ସେହି ପଚିଶ ମିଟର ଦୂରତାଟା ହୋଇଯିବ ଷାଠିଏ କି ସତୁରି । ତା' ପାଖକୁ ଲାଗିଯିବା ତ ଦୂରର କଥା ଜୋରରେ ନ ଧାଇଁଲେ ବ୍ୟବଧାନଟି ବଢ଼ିଯିବ । ସେମିତି ଆଜି ଇଂରାଜୀ ଓ ଆମ ଭାଷା ଭିତରେ ଯେଉଁ ବ୍ୟବଧାନ ଅଛି, ତାହା ଅଧିକ ହୋଇଯିବ ଯଦି ଆମେ ଦ୍ରୁତଗତିରେ ନ ଧାଇଁବା । ସେ ଭାଷା ଅସମ୍ଭବ ପ୍ରକାରର ଉନ୍ନତି କରିଚାଲିଛି । ଆମେ ଯେପରିକି ଅତି ଧୀର ପଦକ୍ଷେପରେ ଟିକିଏ ଟିକିଏ ଆଗେଇ ଯାଉଛୁ ।

ଅଭିଧାନ ପ୍ରଣୟନ କ୍ଷେତ୍ରରେ ଆମେ ଓଡ଼ିଶାରେ କ'ଣ କରୁଛୁ ସେହି ପ୍ରଶ୍ନ ଉଠାଇଲି । ଯୋଗଜନ୍ମା ମୁକୁନ୍ଦ ଗୋପାଳଚନ୍ଦ୍ର ପ୍ରହରାଜ ଓଡ଼ିଆ ଅଭିଧାନ ପ୍ରଣୟନ ଦିଗରେ ମନ ବଳାଇଲେ ୧୯୧୯ରେ ।

ବାରବର୍ଷ ପରିଶ୍ରମ କଲାପରେ ୧୯୩୧ରେ ପ୍ରଥମ ଖଣ୍ଡିକ ବାହାର କଲେ । ସାତ ଖଣ୍ଡରେ ବିଭକ୍ତ ଏହି ଭାଷାକୋଷର ଶେଷ ବା ସପ୍ତମ ଖଣ୍ଡ ପ୍ରକାଶ ପାଇଲା ୧୯୪୦ରେ । ତାହାର ସଂଶୋଧିତ ଓ ପରିବର୍ଦ୍ଧିତ ସଂସ୍କରଣ ୧୯୮୭ରେ ସୁଦ୍ଧା ନାହିଁ । ସେ ବହି ପୁଣି କିଣିବାକୁ ମିଳୁନାହିଁ । ମିଳୁଥିଲେ ବି ଜଣେ କାହିଁକି କିଣନ୍ତା ତାହାର ଅଭିଧାନ ଅଭାବ ମେଣ୍ଟାଇବା ପାଇଁ ? ୧୯୩୧ ପରେ ଗଲା ଦୀର୍ଘ ଛପନ ବର୍ଷ ଭିତରେ ସେହି ଅକ୍ଷରର କେତେ ସଂଖ୍ୟକ ନୂଆ ଶବ୍ଦ ଯେ ଓଡ଼ିଆ ଭାଷା ଭିତରକୁ ଚାଲି ଆସିଲାଣି ତାହାର ହିସାବ କିଏ ରଖିଛି ? ସେଇଟି ଗୋଟିଏ ଅମୂଲ୍ୟ ଗ୍ରନ୍ଥ ସତ— କିନ୍ତୁ ଉପଯୋଗିତା ଦୃଷ୍ଟିରୁ ତାହାର ମୂଲ୍ୟ କେତେ, ବେଶ୍ ଅନୁମାନ କରାଯାଇ ପାରେ । କିନ୍ତୁ ଇଂରାଜୀ ଭାଷାର ସମ୍ମାନ ରକ୍ଷାକାରୀମାନେ କେଭଳି ସଦା ସତର୍କ ରହିଛନ୍ତି ତାହା ଜଣାପଡ଼ିଯିବ ଉଏବଷ୍ଟାର ଅଭିଧାନର ୧୯୭୬ ସଂସ୍କରଣରୁ । ତାହାର ମୁଖବନ୍ଧରେ ପ୍ରଥମେ କୁହାଯାଇଛି— ଉଏବଷ୍ଟରଙ୍କ ତୃତୀୟ ନୂତନ ଆନ୍ତର୍ଜାତିକ ଅଭିଧାନ ହେଉଛି ଗୋଟିଏ ସମ୍ପୂର୍ଣ୍ଣ ଭାବରେ ନୂତନ ଅବଦାନ । ପୂର୍ବର ଡିଜାଇନ୍, ଶୈଳୀ ବା ଷ୍ଟାଇଲକୁ ବଦଳାଇ ଦେଇ ନୂଆ ଗ୍ରନ୍ଥରେ ପକାଇ ଦିଆଯାଇଛି । ଶବ୍ଦ ଗୁଡ଼ିକୁ ନୂତନ ଭାବରେ ସଜା ଯାଇଛି । ଏହାର ପ୍ରତ୍ୟେକ ଧାଡ଼ିଟି ନୂତନ Webster's Third New International Dictionary is a Completely new work, redesigned restyled and reset & every line of it Is new) ୧୮୨୮ରେ ଯେଉଁ ଅଭିଧାନ ବାହାରିଥିଲା ତାକୁ ହିଁ ୧୮୪୭ରେ ସମ୍ପୂର୍ଣ୍ଣ ନୂତନ ରୂପ ଦେଇ ଦିଆହେଲା । ସେଇଟିକୁ ପ୍ରଥମ ସଂସ୍କରଣ ବୋଲି ଧରି ନିଆଯାଇଛି । ଏବେ ଯେଉଁଟି ପ୍ରକାଶ ପାଉଛି ତାହା ହେଲା ସେହି ସିରିଜରେ ଅଷ୍ଟମ । ଆଜିର ସଂସ୍କୃତି ଓ ସଭ୍ୟତାକୁ ନୂତନ ଭାବରେ ବୁଝାଇ ଦେବା ପାଇଁ ଏହି ସଂସ୍କରଣଟି ଉଦ୍ଦିଷ୍ଟ । Linguistic Aid to interpreting the culture and ~~curtisation~~ civilization of today ମାନବ ସଭ୍ୟତାର ଯେଉଁ ଅଗ୍ରଗତି ଚାଲିଛି ସେ ବିଷୟରେ ଭଲ ଭାବରେ ଧାରଣା କରିବା ପାଇଁ ଡିକ୍ସନାରୀ ହେଉଛି ଗୋଟିଏ ସହାୟକ ସାଧନ (The Dictionary more than ever is the indispenable instrument of understanding and progress) । ଜଣେ ପ୍ରକୃତ ଅର୍ଥରେ ଶିକ୍ଷିତ ଲୋକେ କେବେହେଲେ କହିପାରିବ ନାହିଁ ଯେ ତା'

ପାଖରେ ଡିକ୍‌ସନାରୀଟିଏ ନଥିଲେ ବି କିଛି କ୍ଷତି ନାହିଁ । ଗୋଟିଏ ଶବ୍ଦର ପ୍ରକୃତ ଅର୍ଥ ବୁଝିହେବ ଯେତେବେଳେ ବାକ୍ୟରେ ତାହା କିଭଳି ଭାବରେ ବ୍ୟବହୃତ ହୋଇଛି ତାହା ଜଣେ ପାଠକ ଦେଖିବ । ତେଣୁ ଖୋଜା ଗ୍ଲା ଉଦାହରଣ ଓ ଏହି ସଂସ୍କରଣଟି ଛପାହେବାକୁ ଗଲା ପର୍ଯ୍ୟନ୍ତ ୪୫ ଲକ୍ଷ ନୂଆ 'ବ୍ୟବହାର-ନମୁନା' ବା ଏକ୍‌ଜାମ୍ପଲ ସଂଗ୍ରହ କରାଯାଇ ସାରିଥିଲା । ଏଗୁଡ଼ିକ ହେଲା ୧୯୩୬ରୁ ୭୫ ଭିତରର ସଂଗ୍ରହ । ପୂର୍ବରୁ ଉଦ୍ଦେଶ୍ୟର ଫାଇଲରେ ୧୬ ଲକ୍ଷ ୭୫ ହଜାର ଏକ୍‌ଜାମ୍ପଲ ସାଇତା ହୋଇ ରହିଥିଲା । ନୂତନ ସଂସ୍କରଣରେ କେଉଁ କେଉଁ ନୂଆ ଶବ୍ଦ ଯୋଗ କରାଯିବ ତାହା ସ୍ଥିର କରିବା ସଙ୍ଗେ ସଙ୍ଗେ ପୁରୁଣା ସଂସ୍କରଣରେ ଥିବା କେଉଁ ଶବ୍ଦ ଗୁଡ଼ିକୁ ବାଦ୍ ଦିଆଯିବ ସେଥିପାଇଁ ମଧ୍ୟ ମତ ସ୍ଥିର କରାଗଲା । ବହୁ ଶବ୍ଦକୁ ବାଦ୍ ଦିଆଯାଇଛି—କାରଣ କେହି ସେଗୁଡ଼ିକୁ ଅଭିଧାନରେ ଖୋଜୁନାହାନ୍ତି । ଯେଉଁ ଶବ୍ଦ ୧୭୫୫ ବେଳେ ଅର୍ଥାତ୍ ୨୦୦ ବର୍ଷ ତଳେ ବ୍ୟବହୃତ ହେଉଥିଲା ଏବଂ ତାହାପରେ କୌଣସି ପ୍ରସିଦ୍ଧ ଲେଖକ ତାକୁ ଆଉ ବ୍ୟବହାର କରିନାହାନ୍ତି ସେଗୁଡ଼ିକୁ ଅନାବଶ୍ୟକ ବା ପୁରୁଣା ବୋଲି ବାଦ୍ ଦିଆଗଲା । ତା' ନହେଲେ ଅଯଥାରେ ଡିକ୍‌ସନାରୀର କଳେବର ବଡ଼ ହୋଇ ଯାଇଥାଆନ୍ତା । ଏବେ ଏଥିରେ ଅଛି ୪ ଲକ୍ଷ ୫୦ ହଜାର ଶବ୍ଦ । ୭୫୭ ସମ୍ପାଦକୀୟ ବର୍ଷ ବା Editor—Years ଲାଗିଛି—ଅର୍ଥାତ୍ ଯେତିକ କାମ ହେଉଛି ସେତିକ ୭୫୭ ଜଣ ସମ୍ପାଦକ ବର୍ଷକ ଭିତରେ କରିଥାଆନ୍ତେ ବା ଦଶଜଣ ଦକ୍ଷ ସମ୍ପାଦକ ପଚସ୍ତରି ବର୍ଷରେ ସାରିଥାଆନ୍ତେ । ଦୀର୍ଘ ଦଶବର୍ଷ କାଳ ଅକ୍ଳାନ୍ତ ପରିଶ୍ରମ କଲା ଫଳରେ ଏହା ସମ୍ଭବ ହୋଇପାରିଛି ।

ମୁଁ ଯେତେବେଳେ ୧୯୭୯ ଫେବୃୟାରୀ ୨ ତାରିଖ ଦିନ ତିନି ଖଣ୍ଡରେ ବାହାରି ଏହି ଡିକସନାରୀଟି କିଣିଲି ପ୍ରଥମେ ଲକ୍ଷ୍ୟ କଲି ଯେ ବହିଛପା ଶେଷ ହେଲାବେଳକୁ ସେମାନେ ଦେଖିଲେଣି ଆହୁରି ପ୍ରାୟ ଶହ ହଜାର ଶବ୍ଦ ଯୋଗ କରିଦେବା ଆବଶ୍ୟକ । ନହେଲେ ଅପୂର୍ଣ୍ଣତା ଦୋଷ ରହିଯାଉଛି । ସେହିଗୁଡ଼ିକ ଉପରେ ଆଖି ପକାଇ ଯାଉ ଯାଉ ଆଫଗାନ-ସ୍ଥାନିଜମ୍ (Afghanistanism) ବୋଲି ଗୋଟିଏ ଶବ୍ଦ ପାଖରେ ଝୁଣ୍ଟି ପଡ଼ିଲି । ବର୍ତ୍ତମାନ ରୁଷ ଦେଶର ଆଫଗାନିସ୍ତାନ ମତ ବିଷୟରେ ବୋଧ

ହୁଏ କରୁ ଲେଖା ଯାଇ କେଉଁଠିଏ ତିଆରି କରାଯାଇଛି ଦ୍ୱିତୀୟ ବିଶ୍ୱଯୁଦ୍ଧ ବେଳେ କୁଇସ୍‌ଲିଙ୍ଗ୍ ଶବ୍ଦ ସୃଷ୍ଟି ହୋଇଥିଲା କିନ୍ତୁ ତା ନୁହେଁ । ଗୋଟାଏ ସ୍ଥିତ ଚାଲିଛି ଯାହାକୁ କି ଗୋଟିଏ ଶବ୍ଦରେ ବୁଝାଇ ଦେବାକୁ ପଡ଼ିବ । ବହୁ ଲୋକ ବିଶେଷ କରି ସାମ୍ବାଦିକମାନେ ସ୍ଥାନୀୟ ସମସ୍ୟା ବିଷୟରେ ଲେଖିବାକୁ କୁଣ୍ଠାବୋଧ କରନ୍ତି । ସେଗୁଡ଼ିକ ହୁଏତ ବିବାଦୀୟ ବା ଲେଖିଲେ ବିପଦ ଅଛି । ତେଣୁ ସେମାନେ କଅଣ କରନ୍ତି ନା ବିଦେଶର ବହୁ ଦୂର ଦେଶର ସମସ୍ୟା ବିଷୟରେ ଗୁଡ଼ାଏ ଲେଖାଁ ଲେଖି ପକାନ୍ତି । ସେଥିରୁ କେତେ ଠିକ କେତେ ଭୁଲ ତାହା ପାଠକ ପକ୍ଷରେ ଜାଣିବା କଷ୍ଟ । ଏଇଆକୁ ଇଂରାଜୀ ଅଭିଧାନରେ 'ଆଫଗାନିସ୍ତାନ ବାଦ' ବୋଲି କୁହାଗଲା । ଯୁକ୍ତରାଷ୍ଟ୍ର ଆମେରିକାରୁ ଆଫଗାନିସ୍ତାନ ବହୁଦୂର । ତାକୁ ହିଁ ବିଚାରକୁ ନେଇ ଏହି ଶବ୍ଦର ସୃଷ୍ଟି । ଯୁକ୍ତରାଷ୍ଟ୍ର ଆମେରିକା କହୁଛି ଆର୍ଥିକ ସମୃଦ୍ଧି ପଥରେ ଆଗେଇ ଯିବାପାଇଁ ସମସ୍ତଙ୍କୁ ସମାନ ଅଧିକାର ମିଳିବା ଉଚିତ । ଏଇଟି ହେବ ଗୋଟିଏ ସାମାଜିକ ଲକ୍ଷ୍ୟ ବା ଆଦର୍ଶ । ଏହି ସବୁକୁ ଆମେରିକାନ ସ୍ୱପ୍ନ (American Dream) ବୋଲି ବୁଝାଇ ଦିଆଯାଉଛି । ଓଡ଼ିଆରେ ଏଭଳି ଗୋଟିଏ ଅଭିଧାନ ପ୍ରଣୟନ ମାତ୍ର ଏପର୍ଯ୍ୟନ୍ତ ସ୍ଥିର ମଧ୍ୟ ହୋଇ ନାହିଁ—କାର୍ଯ୍ୟକାରୀ ହେବାତ ଦୂରର କଥା ।

ନମେ ଗୋଟିଏ ବିଷୟରେ ମୋ ମନ ସ୍ଥିର ହୋଇଗଲା । ଓଡ଼ିଆ ଭାଷାରେ କେତେ ସଂଖ୍ୟକ ଶବ୍ଦ ଅଛି ବୋଲି ପଚାରିଲେ କିଏ ଉତ୍ତର ଦେବ ଏକଲକ୍ଷ ତ କିଏ କହିବ ଦେଢ଼ଲକ୍ଷ । ଓଡ଼ିଆର ଶବ୍ଦ ସମ୍ଭାର ବାହାର ଲୋକଙ୍କୁ ଦେଖାଇବାକୁ ଇଚ୍ଛା କରୁଥିବାରୁ ପ୍ରହରାଜ ତାଙ୍କ ଭାଷାକୋଷରେ ବହୁ ଅପ୍ରଚଳିତ ଶବ୍ଦ ଖଂଜି ଦେଇଗଲେ । ଏହିକ୍ଷଣି, ଏକ୍ଷଣି, ଉକ୍ଷୁଣି, ଉକ୍ଷୁଣିକା—ଏହିଭଳି ଚାରିଗୋଟି ଶବ୍ଦ ବର୍ତ୍ତମାନ ଅର୍ଥରେ ଅଛି ବୋଲି ଦେଖାଇଲେ । ଥରେ ତାଙ୍କୁ ପଚାରିଥିଲି ଏମିତି କାହିଁକି କଲେ । ମୋତେ ସେ ଯେଉଁ ଉତ୍ତର ଦେଇଥିଲେ ଅନ୍ୟମାନଙ୍କୁ ମଧ୍ୟ କହିଛନ୍ତି । କେଉଁ ଗାଁ ଗହଳରେ କିଏ ହୁଏତ ଉକ୍ଷୁଣିକା ବୋଲି କହି ଦେଇଛି । ତାହା କୌଣସି ପୁସ୍ତକରେ ସ୍ଥାନ ପାଇନାହିଁ କହିଲେ ଭୁଲ ହେବନାହିଁ । କିନ୍ତୁ ସେଗୁଡ଼ିକ ସ୍ଥାନ ନଦେଲେ ଓଡ଼ିଆ ଶବ୍ଦ ସଂଖ୍ୟା କମି ଯାଆନ୍ତା— ଏହି ହେଲା ତାଙ୍କର ଆଶଙ୍କା । ଏହି ପ୍ରଶ୍ନ ଯେତେବେଳେ ପଚାରିଥିଲି ସେତେବେଳେ ଅଭିଧାନ ପ୍ରଣୟନ ବା ଭାଷାର ଶବ୍ଦ ସମ୍ଭାର

ବିଷୟରେ ମୋର ସେଭଳି କିଛି ସ୍ପଷ୍ଟ ଧାରଣା ନଥିଲା । ପରେ ଜାଣିଲି —ଓଡ଼ିଆ ଭାଷାର ନିଜସ୍ୱ ଶବ୍ଦ ଖୁବ୍ ବେଶୀ ହେଲେ ତିନିହଜାର ହେବ । ଏହି ସିଦ୍ଧାନ୍ତରେ ପହଞ୍ଚିବା ପାଇଁ ଓଡ଼ିଆ ଅଭିଧାନରୁ ଶବ୍ଦ ଗଣିଦେଇ ହୋଇ ଥାଆନ୍ତା । ତା'ନିକଟ ମୋର ଜଣେ ବନ୍ଧୁଙ୍କୁ କାମଟିଏ ଦେଲି । ଜ୍ଞାନମଣ୍ଡଳର ତୃତୀୟ ଖଣ୍ଡରେ କେତେ ସଂଖ୍ୟକ ଶବ୍ଦ ଅଛି ଗଣି ନୋଟ୍ କରିଯିବାକୁ କହିଲି । ଯେଉଁ ଶବ୍ଦ ଗୁଡ଼ିକ ବହୁବାର ବ୍ୟବହୃତ ସେଗୁଡ଼ିକର ଉଦାହରଣରେ ସେତିକିଟି ଠିକ୍ ମାତ୍ର ଦିଆଗଲା । ଏଭଳି କଲାରୁ କେଉଁ ଗୁଡ଼ିକ ଜ୍ଞାନମଣ୍ଡଳରେ ବେଶୀଥର ବ୍ୟବହୃତ ହେଉଛି ତାହା ଜଣା ପଡ଼ିଲା । ସେହିଖଣ୍ଡରେ ଅଛି ୮୦ ହଜାର ଶବ୍ଦ । ତା' ଭିତରୁ ୪ ହଜାରଟି 'ନୂଆ' ଅର୍ଥାତ୍ ନୂତନ ଭାବରେ ସ୍ଥାନ ପାଇଛନ୍ତି । ବାରମ୍ବାର ବା ଏକାଧିକବାର ଉଲ୍ଲେଖ ରହିବା ଫଳରେ ୮୦ ହଜାର ହୋଇଯାଇଛି । ସେହି ଚାରିହଜାରର ସ୍ୱତନ୍ତ୍ର ତାଲିକା ବର୍ଣ୍ଣମାଳା ଅନୁସାରେ କରିଯିବାରୁ ଦେଖାଗଲା ମାତ୍ର ୨୮୦ଟି ହେଉଛି ଓଡ଼ିଆ ଶବ୍ଦ । ବାକିଗୁଡ଼ିକ ସଂସ୍କୃତ ଇଂରାଜୀ, ପାରସୀ, ଆରବୀ ଭାଷାରୁ ଆସିଛନ୍ତି । ଯେଉଁଗୁଡ଼ିକ ସଂସ୍କୃତ ଭାଷାରୁ ଆସିଛି ସେ ଗୁଡ଼ିକୁ ମୁଁ 'ଇନ୍‌ଟମାଇଲ ଶବ୍ଦ' ବୋଲି କହିଲି । ସହାନୁଭୂତି, କରୁଣା, ଧର୍ମ, ପୁଣ୍ୟ ଶବ୍ଦ ଗୁଡ଼ିକ ବଙ୍ଗଳା ହିନ୍ଦୀ ମରହଟ୍ଟୀ, ଗୁଜୁରାଟି ଭାଷାରେ ରହିଛି । ତେଣୁ ସେଗୁଡ଼ିକ ଖାସ୍ ଓଡ଼ିଆ ଶବ୍ଦ ବୋଲି କୁହାଯାଇ ପାରିବ ନାହିଁ । ଉପରୋକ୍ତ ପ୍ରତ୍ୟେକ ଭାଷାର ଅଭିଧାନରେ ସେଗୁଡ଼ିକ ସ୍ଥାନ ପାଇଛନ୍ତି । ଆମେ ଯଦି ଏହି ତିନିହଜାର ଓଡ଼ିଆ ଶବ୍ଦକୁ ଦେବନାଗରୀ ଅକ୍ଷରରେ ଲେଖିଦେବା ଓ ତା' ପାଖରେ ଅର୍ଥ ଦେଇଦେବା ତେବେ ହିନ୍ଦୀ ଜଗତର ଜଣେ ଭାଷା ବିଜ୍ଞାନୀ ବା ଲେଖକ ଜାଣିପାରିବେ ସେଗୁଡ଼ିକର ଅର୍ଥ । ତେଣିକି ଯଦି ଗୋଟିଏ ଓଡ଼ିଆ ବହିକୁ ଦେବନାଗରୀ ଲିପିରେ ହିଁ ଛପିଦିଆଯିବ (Transliteration) ତେବେ ଏହି ଅଭିଧାନ ସାହାଯ୍ୟରେ ବନାରସ ହିନ୍ଦୁ ବିଶ୍ୱବିଦ୍ୟାଳୟର ହିନ୍ଦୀ ପ୍ରଫେସର ଟିକିଏ ପରିଶ୍ରମ କଲେ ଓଡ଼ିଆ ବୁଝିପାରିବେ । ବିନୋବା ବାବେ ଓଡ଼ିଶା ଭୂଇଁରେ ଥରେ କହିଥିଲେ—ଜଗନ୍ନାଥ ଦାସଙ୍କ ଓଡ଼ିଆ ଭାଗବତକୁ ହିନ୍ଦୀରେ ଅନୁବାଦ କରିବା ଆବଶ୍ୟକ ନାହିଁ—ଦେବନାଗରୀ ଲିପିରେ ଛପି ଦେଇ ଯେଉଁଟି ଓଡ଼ିଆ ଶବ୍ଦ ତାହାର ଅର୍ଥ ପୃଷ୍ଠା ଶେଷରେ ଫୁଟ୍‌ନୋଟ୍‌ରେ ଦେଇଦେଲେ ହିନ୍ଦୀ ଭାଷାଭାଷୀ ଲୋକ ବୁଝିପାରିବେ ।

## ସମଗ୍ର ଭାରତରେ ଉଦ୍ୟମ

ମୁଁ ଯେତେବେଳେ ପ୍ରସ୍ତୁତ ଚଳାଉଥାଏ ଓ କାହାକୁ କିଛି କହୁ ନଥାଏ ସେତିକି ବେଳେ ଆଉ ଗୋଟିଏ ପ୍ରଚେଷ୍ଟା ମନଭିତରେ ଟିକିଏ କରୁଣାଦ୍ର ଅଣୁଥାଏ ବୋଲି କହିଲେ ଭୁଲ ହେବ ନାହିଁ । ସ୍ୱାଧୀନତା ପରେ ଭାରତର ନେତୃବୃନ୍ଦ ଅନୁଭବ କଲେ—ପ୍ରତ୍ୟେକ ଭାରତୀୟ ଭାଷାରେ ଗୋଟିଏ ଲେଖାଁ ସେଟ୍ ଏନ୍‌ସାଇକ୍ଲୋପିଡିଆ ପ୍ରକାଶ ପାଇବା ଅତି ଜରୁରୀ । ତା' ନହେଲେ ସାଧାରଣ ଲୋକେ ବହୁ କଥା ଜାଣିପାରିବେ ନାହିଁ ଓ ଶିକ୍ଷକ ଅଧ୍ୟାପକମାନଙ୍କ ପାଇଁ ସହାୟକ ପୁସ୍ତକ ରହିବ ନାହିଁ । ୧୭୬୮ରେ ବ୍ରିଟାନିକା ପ୍ରକାଶ ପାଇଗଲା ପରେ ଇଂରାଜୀ ଭାଷାର ଲେଖକ କବି ଗବେଷକମାନଙ୍କର କେଉଁଳି ସୁବିଧା ହୋଇଗଲା ତାହା ଭାରତର ଉଚ୍ଚ ଶିକ୍ଷିତ ନେତାମାନେ ବେଶ୍ ବୁଝୁଥାନ୍ତି । ପଣ୍ଡିତ ନେହେରୁ ମୌଲାନା ଆଜାଦ ଏ ବିଷୟରେ ଆଗ୍ରହୀ ହୋଇ ଉଠିଲେ । ସେତେବେଳକୁ ବଙ୍ଗଳା ଭାଷାରେ ୨୪ ଖଣ୍ଡରେ ପ୍ରକାଶିତ ହୋଇଥାଏ ବିଶ୍ୱକୋଷ । ମହାରାଷ୍ଟ୍ରରେ ମଧ୍ୟ କିଛି ଉଦ୍ୟମ ହୋଇଥାଏ । ହିନ୍ଦୀ ଭାଷାଭାଷୀ ମାନେ ନଗେନ୍ଦ୍ରବସୁଙ୍କ ବିଶ୍ୱକୋଷକୁ ହିନ୍ଦୀରେ ଅନୁବାଦ କରି ସନ୍ତୁଷ୍ଟ ହୋଇ ରହିଯାଇ ଥାଆନ୍ତି । ଆଧୁନିକ ଜ୍ଞାନ ସନ୍ନିବେଶିତ ଥିବା ଏନ୍‌ସାଇକ୍ଲୋପିଡିଆ ପ୍ରକାଶ କରିବାକୁ ହିଁ ହେବ । ଭାରତସରକାର ସମସ୍ତ ଖର୍ଚ୍ଚ ବହନ କରିବେ । ହିନ୍ଦୀ ବିଶ୍ୱକୋଷ ଭାରତ-ସରକାର ନିଜ ତତ୍ତ୍ୱାବଧାନରେ ଲେଖାଇବେ ଓ ଛପାଇବେ । ଭାରତ ସରକାରଙ୍କ ପରରାଷ୍ଟ୍ର ବିଭାଗ ମନ୍ତ୍ରୀ ରହିବେ ତାହାର ସମ୍ପାଦକ । ଗୋଟିଏ ଶକ୍ତିଶାଳୀ ସଂପାଦକ ମଣ୍ଡଳୀ ରହିବ । ବଡ଼ ବଡ଼ ବାର ଖଣ୍ଡରେ ସମାପ୍ତ ହେବ । କାଶୀ ନାଗରୀ ପ୍ରଚାରିଣୀ ସଭା ଉପରେ ଦାୟିତ୍ୱ ଦିଆଯିବ ଏହାକୁ ସଂପୂର୍ଣ୍ଣ କରିବା ପାଇଁ । ବନାରସରେ ରହିବ ଏହାର ଅଫିସ । ଅନ୍ୟ ସବୁଭାଷା ପାଇଁ କୌଣସି ବିଶ୍ୱବିଦ୍ୟାଳୟ, ପ୍ରତିଷ୍ଠିତ ସାହିତ୍ୟ ଅନୁଷ୍ଠାନ ବା ସେହିଭଳି କୌଣସି ଅନୁଷ୍ଠାନକୁ ଟଙ୍କା ଦିଆଯିବ । କେନ୍ଦ୍ର ସରକାର ପ୍ରାୟ ସମସ୍ତ ଖର୍ଚ୍ଚ ବହନ କରିବେ । ଉତ୍କଳ ବିଶ୍ୱବିଦ୍ୟାଳୟ ଏହି ଦାୟିତ୍ୱ ନେବେ ବୋଲି ସ୍ଥିର କଲେ । ସେତେବେଳେ ସେହି ଗୋଟିକ ଥାଏ ଓଡ଼ିଶାର ଏକମାତ୍ର ବିଶ୍ୱବିଦ୍ୟାଳୟ । ଏହି ଖବରଜାଣି ଡକ୍ଟର ମାୟାଧର ମାନସିଂହ ଅଳ୍ପ କେତେ ପୃଷ୍ଠାର ଗୋଟିଏ ବିଶ୍ୱକୋଷ ନମୁନା ଲେଖାଇ ଦେଲେ । ଏହି ସବୁ ହେଉଛି ୧୯୫୫ ପୂର୍ବର କଥା । ଉତ୍କଳ ବିଶ୍ୱବିଦ୍ୟାଳୟ ଉକ୍ତର

ମାନସିଂହଙ୍କୁ ମୁଖ୍ୟ ସଂପାଦକ ଭାବରେ ନିଯୁକ୍ତ କଲେ ୧୯୫୭ରେ । କଟକ ରହିଲା ହେଡ୍ ଅଫିସ । ସଂପାଦକ ମଣ୍ଡଳୀରେ ପାଞ୍ଚଜଣ ଯୋଗ୍ୟ ଲୋକ ରହିଲେ । ଜ୍ଞାନର ପ୍ରତ୍ୟେକ ବିଭାଗ ପାଇଁ ଗୋଟିଏ ଗୋଟିଏ ପରାମର୍ଶଦାତା ବୋର୍ଡ଼ ବା କମିଟି ଗଠିତ ହୋଇଗଲା । ସେଥିରେ ଯେଉଁ-ମାନେ ସଭ୍ୟ ରହିଲେ ସେମାନେ ସମସ୍ତେ ନିଜନିଜ ଜ୍ଞାନ ବିଭାଗରେ ସୁପ୍ରତିଷ୍ଠିତ—ଅତ୍ୟନ୍ତ ଯୋଗ୍ୟତା ସମ୍ପନ୍ନ ବ୍ୟକ୍ତି । ଡକ୍ଟର ପ୍ରାଣକୃଷ୍ଣ ପରିଜା ଭାଇସ୍‌ଚ୍ୟାନ୍‌ସେଲର । ତାଙ୍କର ବିଜ୍ଞାନ ଜଗତରେ ଅତି ଉଚ୍ଚସ୍ଥାନ । ଓଡ଼ିଆ ଭାଷା ଉପରେ ଦଖଲ । ଡକ୍ଟର ମହତାବ ଅତିମାତ୍ରାରେ ଆଗ୍ରହ ଦେଖାଉ ଥାଆନ୍ତି ଏହାର ସଫଳତା ପାଇଁ । କେଉଁମାନଙ୍କ ପାଖକୁ ଚିଠିଚିଠି ଲେଖା ପଠାଇବା ପାଇଁ ତାହା ଜଣାଥାଏ । ଡକ୍ଟର ମାନସିଂହ ଥରେ ଥରେ ମୋ ସହିତ ଏହି ସଂକ୍ରାନ୍ତରେ ପରାମର୍ଶ କରନ୍ତି । ବିଶ୍ୱବିଦ୍ୟାଳୟର ସିଣ୍ଡିକେଟକୁ ମାନସିଂହ ଯେଉଁ ମାସିକ ରିପୋର୍ଟ ପଠାନ୍ତି କାର୍ଯ୍ୟର ଅଗ୍ରଗତି ବିଷୟରେ ସେଥିର ଗୋଟିଏ ଗୋଟିଏ କପି ସିଣ୍ଡିକେଟ ସଭ୍ୟ ସୁରଜମଲ ଶାହା ମୋତେ ଦିଅନ୍ତି । କାହାରି ମନରେ ସନ୍ଦେହ ନଥାଏ ଯେ ଓଡ଼ିଆ ଭାଷାରେ ଗୋଟିଏ ବିଶ୍ୱକୋଷ ହୋଇଯିବ । ମୋର ଟିକିଏ ନିରୁତ୍ସାହିତ ହେବାର କାରଣ ହେଲା ଯୋଗ୍ୟ ଲୋକମାନଙ୍କଠାରୁ ଲେଖା ଆଣି ବିଶ୍ୱ-ବିଦ୍ୟାଳୟ ଯେତେବେଳେ ଗୋଟିକପରେ ଗୋଟିଏ ଲେଖାଁ ଭଲ୍ୟୁମ୍ ପ୍ରକାଶ କରି ଚାଲିବ ସେତେବେଳେ ମୁଁ ଯେଉଁ ଭଲ୍ୟୁମ୍ ଗୁଡ଼ିକ ପ୍ରକାଶ କରିବି ସେଗୁଡ଼ିକ ପାଠକମାନଙ୍କ ପକ୍ଷରେ ଗ୍ରହଣୀୟ ବା ଆଦୃତ ହେବକି ! ପୁଣି ମନକୁ ବୁଝାଇ ଦିଏ ମୁଁ ତ ପପୁଲାର ବା ସୁଖପାଠ୍ୟ ବିଶ୍ୱକୋଷ ଲେଖିବି । ସବୁ ଗୁଡ଼ିକ ପ୍ରବନ୍ଧ ସମସ୍ତେ ବୁଝିପାରିବେ—ଯାହାକି ସେମାନେ କରି ପାରିବେ ନାହିଁ । ପଦାର୍ଥ ବିଦ୍ୟା ଉପରେ ଯେଉଁ ସବୁ ଲେଖା ସେମାନେ ପାଇବେ ଓ ପ୍ରକାଶ କରିବେ ସେଗୁଡ଼ିକ ସାଧାରଣ ପାଠକ ଅର୍ଥାତ୍ ଅଣ ବିଜ୍ଞାନ ପାଠକ ଭଲ ଭାବରେ ବୁଝି ପାରିବେ ନାହିଁ । ଗୋଟିଏ ଭାଷାରେ ଗୋଟିଏ ସେଟ ପ୍ରାମାଣିକ ପାଣ୍ଡିତ୍ୟ ପୂର୍ଣ୍ଣ ଏନ୍‌ସାଇକ୍ଲୋପିଡିଆ ହେଲେ କ୍ଷତି କଣ ? ମୋର ଆଉ ଗୋଟିଏ ଆଶଙ୍କା ଥାଏ ଯେ ସେମାନେ ଶୀଘ୍ର ଗୋଟିଏ ଦୁଇଟି ଭଲ୍ୟୁମ୍ ପ୍ରକାଶକରି ଦେବେ । ମୋର ବାହାରିଲା ବେଳକୁ ସେହିସବୁ ପ୍ରକାଶିତ ପ୍ରବନ୍ଧ ଗୁଡ଼ିକୁ ଟିକିଏ ଏପାଖ ସେପାଖ କରି ମୁଁ ଲେଖି ଦେଉଛି ବୋଲି କୁହାଯିବ । ଯେତେ ବେଗରେ ପ୍ରସ୍ତୁତ

ଚଳାଇଲେ ମଧ୍ୟ ମୁଁ ୧୯୬୦ ପୂର୍ବରୁ ପ୍ରଥମ ଖଣ୍ଡିକ ବାହାର କରି ପାରୁନାହିଁ । ବରାବର ଲକ୍ଷ୍ୟ କରୁଥାଏ ସେମାନେ କେତେ ଶୀଘ୍ର କେତେ ଦୂରକୁ ଆଗେଇ ଯାଉଛନ୍ତି ।

କ୍ରମେ ଜାଣିଗଲି ମୋ ପାଇଁ ଉଦ୍‌ବେଗର କୌଣସି କାରଣ ନାହିଁ । ସେମାନେ ଯେଉଁ ପନ୍ଥା ଅବଲମ୍ବନ କରୁଛନ୍ତି ସେଥିରେ ଶୀଘ୍ର ଆଗେଇବାର ପ୍ରଶ୍ନ ନାହିଁ । ପ୍ରଥମ ଭୁଲଟି ହୋଇଛି ଯେଉଁ ସ୍ଥାୟୀ ସହସଂପାଦକ ମାନଙ୍କୁ ନିଯୁକ୍ତ ଦିଆଯାଇଛି ସେମାନେ, ଓଡ଼ିଆ ସଂସ୍କୃତ ଇତ୍ୟାଦି ଭଲ ଭାବରେ ଜାଣନ୍ତି । 'ଭାଷା ଏନ୍‌ସାଇକ୍ଲୋପିଡିଆ' ପ୍ରସ୍ତୁତ ହେଉଥିଲେ ସେମାନେ ବହୁ ଦୂରକୁ କାମ ଚଳାଇ ନିଅନ୍ତେ । ଜଣେ ମାତ୍ର କେବଳ କେମିଷ୍ଟ୍ରୀ ଅଧ୍ୟାପକଙ୍କୁ ନିଆଯାଇଛି ବିଜ୍ଞାନର ସବୁ ବିଭାଗ ଦେଖିବା ପାଇଁ । ଦରକାର ପଡ଼ିଲେ ବିଜ୍ଞାନ ଉପରେ କେତେ ଗୁଡ଼ିଏ ପ୍ରବନ୍ଧ ଲେଖିଦେବା ପାଇଁ ଲୋକ ନିଯୁକ୍ତ କରାଯାଇ ନାହିଁ । ପରେ ଆଉ ଜଣେ ଯୋଗ ଦେଲେ । ସେ ଅର୍ଥନୀତି ପାଠ ପଢ଼ିଥିଲେ ମଧ୍ୟ ଜଣେ କବି ଓ ଲେଖକ । ଯେଉଁ ଦୁଇଜଣ ଆସିଷ୍ଟାଣ୍ଟ ନିଯୁକ୍ତ ହୋଇଛନ୍ତି ସେମାନେ ଜାଣନ୍ତି ନାହିଁ କି କି ଶବ୍ଦ ଆଙ୍କିବେ—କାରଣ ଲେଖା ଗୁଡ଼ିକ ଆସିଲେ ଯାଇ ସେମାନେ ଶବ୍ଦ କରିବେ । ଅବଶ୍ୟ ଏକଥା ଠିକ୍ ଯେ ବହୁ ଲୋକଙ୍କ ପାଖକୁ ଚିଠି ଯାଇଥାଏ ଲେଖା ପଠାଇବା ପାଇଁ । ସେମାନଙ୍କ ନିକଟକୁ ବାରମ୍ବାର ଲେଖିଲେ ମଧ୍ୟ କିଛି ଫଳ ହେଉ ନଥାଏ କହିଲେ ଚଳେ । ମାନସିଂହ କେବଳ ବ୍ୟସ୍ତ ହେଉଥାଆନ୍ତି ସିନା ଆଉ କିଛି କରି ପାରୁ ନଥାନ୍ତି 'ବ୍ରିଟାନିକାରେ ଏହି ପଦ୍ଧତି ଅବଲମ୍ବନ କରାଯାଇଛି', ବୋଲି ସେ ବାରମ୍ବାର କହୁ ଥାଆନ୍ତି । କିନ୍ତୁ ଓଡ଼ିଶା ଯେ ଆମେରିକା ବା ବ୍ରିଟେନ ନୁହେଁ ଏକଥା ସେ ଭୁଲିଯାଉ ଥାଆନ୍ତି । ସେ ସବୁ ଦେଶରେ ବହୁ ସଂଖ୍ୟକ ଲାଇବ୍ରେରୀ ରହିଛି । ବ୍ୟକ୍ତି ବିଶେଷଙ୍କ ଘରେଇ ଲାଇବ୍ରେରୀରେ ଅନେକ ବହି । ଗୋଟାଏ ବିଷୟ ଖୋଜିଲେ ମିଳିବ । ତେଣୁ ଯେଉଁ ମାନଙ୍କୁ ବ୍ରିଟାନିକା ଅନୁରୋଧ କରିଥାଏ ସେମାନେ ଇଚ୍ଛା କଲେ ତଥ୍ୟପୂର୍ଣ୍ଣ ଭଲ ଉପାଦେୟ ପ୍ରବନ୍ଧ ଲେଖି ଦିଅନ୍ତି । ପୃଥିବୀର ବହୁ ବିଶିଷ୍ଟ ଲୋକଙ୍କୁ ସ୍ଥାୟୀ ଭାବରେ ରଖା ଯାଇଛି ବିଭିନ୍ନ ବିଭାଗର ଲେଖା ଗୁଡ଼ିକୁ ଯାଞ୍ଚ କରି ଦେଖିବା ପାଇଁ । ସେମାନେ ପରାମର୍ଶ ଦିଅନ୍ତି କେଉଁଠି କଅଣ ସଂଶୋଧନ କରିବାକୁ ପଡ଼ିବ । ରାଧା କୃଷ୍ଣନ

ଅଟୋଲୀଙ୍କଠାରୁ ଆରମ୍ଭ ଆରମ୍ଭ କରି ପ୍ରସିଦ୍ଧ ବୈଜ୍ଞାନିକ ମାନଙ୍କଠାରୁ ଏଥି ଭଳି ସାହାଯ୍ୟ ନିଆ ଯାଇଥାଏ । ଯେଉଁ ପ୍ରାୟ ୪୦୦୦ (ଗୃରିହଜାର) ଲୋକ ବ୍ରିଟାନିକା ପାଇଁ ଲେଖୁଛନ୍ତି ସେମାନଙ୍କ ନାମ ଠିକଣା ଇତ୍ୟାଦି ବ୍ରିଟାନିକାର କଳେବରରେ ସ୍ୱତନ୍ତ୍ର ଭାବରେ ଉଲ୍ଲେଖ କରାଯାଇଛି । ତାକୁହିଁ ପଢ଼ିଦେଲେ ସେହି ଇଂରାଜୀ ଏନ୍‌ସାଇକ୍ଲୋପିଡିଆର ପ୍ରବନ୍ଧ ସଂଗ୍ରହ ବିଷୟରେ ଧାରଣା କରିହେବ । ଏହା ସାଙ୍ଗକୁ ବ୍ରିଟାନିକା ଅଫିସରେ ହଜାର ହଜାର ଫାଇଲ୍ ରହିଛି । ନାନା ପ୍ରକାରର ତଥ୍ୟ ସଂଗୃହୀତ ହୋଇ ସେ ସବୁ ଫାଇଲରେ ଅଛି ଯେଉଁମାନେ ଲେଖିବେ ସେମାନେ ଇଚ୍ଛା କଲେ ସେ ସବୁ ଫାଇଲର ସାହାଯ୍ୟ ନେଇ ପାରିବେ । ଓଡ଼ିଶାରେ ସେଭଳି ସୁଯୋଗ ବା ବ୍ୟବସ୍ଥା ନାହିଁ । 'ଜ୍ଞାନକୋଷ' ଅଫିସରେ କୌଣସି ବିଷୟ ଉପରେ ଗୋଟିଏ ହେଲେ ଫାଇଲ ନାହିଁ । ଲେଖକମାନଙ୍କୁ କୌଣସି ପ୍ରକାରର ସାହାଯ୍ୟ କରାଯିବାର ପ୍ରଶ୍ନ ନାହିଁ । କାର୍ଯ୍ୟ ଧିମାଇ ଯିବା ସ୍ୱାଭାବିକ । ତେଣେ ଭାରତ ସରକାରଙ୍କ ଶିକ୍ଷା ବିଭାଗ ବରାବର ଶଠି ଲେଖୁଛନ୍ତି କାମ କେତେ ଦୂରକୁ ଆଗେଇଲା । ସେମାନଙ୍କ ଟଙ୍କାର ଉପଯୋଗ ବିଷୟରେ ସେମାନେ ଆଗ୍ରହୀ ହେବା ସ୍ୱାଭାବିକ । ଯେତେବେଳେ ଦେଖାଗଲା ଯେ ନିକଟ ଭବିଷ୍ୟତରେ 'ଜ୍ଞାନକୋଷ' ପ୍ରକାଶିତ ହୋଇ ପାରିବ ନାହିଁ ବିଶ୍ୱବିଦ୍ୟାଳୟ ଗୋଟିଏ ନିଷ୍ପତ୍ତି ଗ୍ରହଣ କଲେ । ଗୋଟିଏ ବା ଖୁବ୍‌ବେଶୀ ହେଲେ ଦୁଇଟି ଭଲ୍ୟୁମରେ 'କ୍ଷୁଦ୍ରଜ୍ଞାନ କୋଷ' ବାହାର କରିଦେବେ । ଏହିଟି ଭାରତ ସରକାରଙ୍କ ଦାନରେ ପ୍ରକାଶିତ ଓଡ଼ିଆ ଏନ୍‌ସାଇକ୍ଲୋପିଡିଆ ବୋଲି କୁହାଯିବ । ଆଉ ୧୫ ଖଣ୍ଡ ବୃହତ୍ ଜ୍ଞାନ କୋଷ ପାଇଁ ଭାରତ ସରକାରଙ୍କ ପାଖକୁ ଯୋଜନା ପଠାଯିବ ଏବଂ ଅର୍ଥ ପାଇଁ ନିବେଦନ କରାଯିବ । ଏହି କ୍ଷୁଦ୍ର ଜ୍ଞାନ କୋଷଟି "ପଲ୍ଲୀ ପ୍ରାଇମେରୀ ବା ମାଇନର ସ୍କୁଲର ଶିକ୍ଷକ" ମାନଙ୍କୁ ସାହାଯ୍ୟ କରିବ । ସେହି ଅନୁସାରେ ନୂଆ କରି କାମ ଆରମ୍ଭ ହେଲା । ମୁଁ ନିଶ୍ଚିନ୍ତ ହୋଇଗଲି । ମୋର ପରିକଳ୍ପନା ୨୦୦ ପୃଷ୍ଠା ଲେଖା ଥାଇ ୬୦ ଖଣ୍ଡରେ ସମାପ୍ତ ହେବ । ବହୁ ଦୀର୍ଘ ପ୍ରବନ୍ଧ ସ୍ଥାନ ପାଇବ । ଯେଉଁମାନେ ଜ୍ଞାନ କୋଷଟିକୁ ପଢ଼ି ପାରିବେ ସେମାନେ ମୋ ଲିଖିତ ବିଶ୍ୱକୋଷଟିକୁ ପଢ଼ିବା ପାଇଁ ଆଗ୍ରହ ପ୍ରକାଶ କରିବେ । ଏହି କ୍ଷୁଦ୍ରଟି ପାଇଁ ବିଶ୍ୱବିଦ୍ୟାଳୟ ଯେଉଁ ଆୟୋଜନ କରୁଛି ସେଥିରେ ଦୁଇଖଣ୍ଡଯାକ ପ୍ରକାଶ କରିବାକୁ ପାଞ୍ଚ ବର୍ଷରୁ କମ୍ ଲାଗିବ ନାହିଁ । ପରୋକ୍ଷରେ ସେମାନେ ସେହିକଥା ସ୍ୱୀକାର

କରୁଥାଆନ୍ତି ଓ କହୁଥାଆନ୍ତି—"ବଙ୍ଗଳା ବିଶ୍ୱକୋଷଟିକୁ ଶେଷ କରିବା ପାଇଁ ନଗେନ୍ଦ୍ର ନାଥ ବସୁଙ୍କୁ କଲିକତାପରି ଜ୍ଞାନ କେନ୍ଦ୍ରରେ ଥାଇ ମଧ୍ୟ ୪୮ ବର୍ଷ ଲାଗିଗଲା ।" ଆମ ସୁଖପାଠ୍ୟ ବିଶ୍ୱକୋଷର ପ୍ରଥମ ଖଣ୍ଡ ନିଶ୍ଚୟ ୧୯୬୦ରେ ପ୍ରକାଶ ପାଇଯିବ । ଚେଷ୍ଟିକ ପାଠକମାନେ ଦୁଇଟିଯାକକୁ ତୁଳନା କରିବାର ସୁଯୋଗ ପାଇବେ ।

'୧୯୫୯ରେ କୁଳପତି ଡକ୍ଟର ପରିଜା ଅନୁଭବ କଲେଣି ଯେ କ୍ଷୁଦ୍ର ଜ୍ଞାନ କୋଷ ମଧ୍ୟ ଶୀଘ୍ର ପ୍ରକାଶ ପାଇ ପାରିବ ନାହିଁ । ଡକ୍ଟର ମାନସିଂହଙ୍କ ସହିତ ସେ ପରାମର୍ଶ କଲେ । ଦିନେ କଟକ ନିମଚୌଡ଼ିରେ ଥିବା ମୋ ଗ୍ରେଟ ବଖରାଟିକୁ ମାନସିଂହ ଆସି କହିଲେ—ଡକ୍ଟର ପରିଜା ମୋତେ ଆପଣଙ୍କ ପାଖକୁ ପଠାଇଛନ୍ତି । ଆମ ଅସୁବିଧା ତ ଆପଣ ଜାଣନ୍ତି । ବୃହତ୍ ଜ୍ଞାନ କୋଷ ତ ଦୂରର କଥା—କ୍ଷୁଦ୍ରଟି ମଧ୍ୟ ପ୍ରକାଶ ପାଇ ପାରୁ ନାହିଁ । ସେଥିରେ ସବୁ ବିଷୟର ସଂକ୍ଷିପ୍ତ ପରିଚୟ ମାତ୍ର ରହିଥିବ । ପରିଜା ଚାହୁଁଛନ୍ତି ଆପଣ ଯଦି ଛଅଟି ମାସ ସମୟ ଦେବେ କାମଟି ଶେଷ ହୋଇଯିବ । ଆମେ କେତେଜଣ ମିଶି ଲେଖିଦେବା । ଆପଣ ଶୁଣି ବିସ୍ମିତ ହେବେ ଯେ ଡକ୍ଟର ପରିଜା ନିଜେ ମଧ୍ୟ କିଛି ସମୟ ଦେବେ ବୋଲି କହୁଛନ୍ତି । ଆମେ ଆପଣଙ୍କୁ ମାସିକ ମାତ୍ର ତିନିଶହ ଟଙ୍କା ଦେବୁ । ଆପଣ ରାଜି ହେବେ ବୋଲି ପରିଜା ଆଶା ରଖିଛନ୍ତି । ମୁଁ ନିଜେ ଆସି ଆପଣଙ୍କୁ ପ୍ରବର୍ତ୍ତାଇବି ବୋଲି ସେ ପଠାଇଲେ । ଆପଣ କେତେ ଶୀଘ୍ର କେମିତି ଭଲ ଭାବରେ ଲେଖିପାରନ୍ତି ତାହା ମୋ ଅଭିଜ୍ଞତାରୁ କହିଲିବୋଲି ସେ କହିଲେ— ଦିନର ଦକ୍ଷତା ବିଷୟରେ ମୋତେ ଜଣା' । ମୋ ଅସୁବିଧା କଥା ତାଙ୍କୁ କହିଲି । ସେ ମୋତେ ସାଙ୍ଗରେ ନେଇଗଲେ ପରିଜାଙ୍କ ପାଖକୁ । ସେ ଏକ ରକମ ବାଧ୍ୟ କଲେ । ହଁ ଭରିଲାରୁ କହିଲେ—'ଏଇଠି ଖଣ୍ଡେ କାଗଜରେ ତୋ ସମ୍ମତି ଲେଖିଦେ । ଆଜି ସିଣ୍ଡିକେଟର ମିଟିଙ୍ଗ ଅଛି । ଏଇକଥା ପଡ଼ିବ । ତୁ କାଲିଠାରୁ ଆସିବୁ ।' ପରଦିନ ସନ୍ଧ୍ୟାରେ ଗୋଟିଏ ସଭା ଶ୍ରୀରାମଚନ୍ଦ୍ର ଭବନରେ ହେଉଥାଏ । ମୋତେ ଡାକି ଏକୁଟିଆ ସ୍ଥାନରେ ମାନସିଂହ କହିଲେ— "ଗୋଟିଏ ଅତି ଦୁଃଖର କଥା କହିବି । ପରିଜା ସାହେବ ମଧ୍ୟ ଦୁଃଖିତ । ସେ ଆଜି ଗୋଟିଏ ଖବର ପଠାଇଛନ୍ତି । ସିଣ୍ଡିକେଟରେ ଯେତେବେଳେ ଆପଣଙ୍କ କଥା ପଡ଼ିଲା ଦୁଇଜଣ ଆପତ୍ତି କରି କହିଲେ ଯୋଗ୍ୟତା ଅଛି

କମ୍‌ରେ ବି: ଏ: ପାଶ୍ ନଥିଲେ ଅନ୍ୟମାନେ ଆମକୁ ସମାଲୋଚନା କରିବେ । ଏହି ପୋଷ୍ଟ ପାଇଁ ବିଜ୍ଞାପନ ଦେବା ଦରକାର । ବିଜ୍ଞାପନରେ ଲେଖା ଯାଉ ବି: ଏ: ପାଶ୍ ନ କରିଥିଲେ ମଧ୍ୟ ସ୍ୱତନ୍ତ୍ର ଯୋଗ୍ୟତାକୁ ବିଚାରକୁ ନଆଯିବ । ସେହି ବଳରେ ଆମେ ବିନୋଦ କାନୁନ୍‌ଗୋଙ୍କୁ ନେଇଯିବା । ପୃଥିବୀର ବହୁ ବିଶ୍ୱବିଦ୍ୟାଳୟରେ ଯୋଗ୍ୟ ଲୋକଙ୍କୁ ନିମନ୍ତ୍ରଣ କରାଯାଏ—ସେମାନେ ଦରଖାସ୍ତ ଦିଅନ୍ତି ନାହିଁ । ପରିଜାଙ୍କ ଇଚ୍ଛା ଆପଣ ଗୋଟିଏ ଦରଖାସ୍ତ ପୁଣି ଦିଅନ୍ତୁ । ଏକଥା ଆପଣଙ୍କୁ କହିବାକୁ ତାଙ୍କର ଇଚ୍ଛା ହେଲାନାହିଁ ; ମୋତେ କହିଲେ ଆପଣଙ୍କୁ ଠିକଏ ସୂଚନା ଦେବାପାଇଁ । ତାଙ୍କୁ କଅଣ କହିବି ?" ମୋର ଉତ୍ତର ହେଲା—ଦେଖନ୍ତୁ, ମୋତେ ଭଗବାନ ରକ୍ଷା କରିନେଲେ । ମୁଁ ଏଭଳି ଗୋଟାଏ କାମ କରୁଛି ଯେ ତାକୁ ଛାଡ଼ି ଅନ୍ୟ କିଛିହେଲେ କରିବାକୁ ମୋର ସମୟ ନାହିଁ —ମନବି ନାହିଁ । ଆଉଥରେ ଦରଖାସ୍ତ କରିବା ପ୍ରଶ୍ନ ଉଠୁନାହିଁ । ଆପଣ ଯେଉଁ ଦୁ'ଜଣ ସିଣ୍ଡିକେଟ ସଭ୍ୟଙ୍କ ନାମ କହିଲେ ମୁଁ ସେମାନଙ୍କୁ ଭଲ ଭାବରେ ଜାଣେ । 'ସ୍ୱତନ୍ତ୍ର ଯୋଗ୍ୟତା' ବୋଇଲେ କଅଣ ବୁଝାଏ ତାହାର କିଛି ମାପକାଠି ନାହିଁ । ଧରନ୍ତୁ ମୁଁ ଦରଖାସ୍ତ କରିବି । ମୋତେ ସେ ଦୁ'ଜଣ କହିବେ—ଆମ ଆଗରେ ବସି ଟେବୁଲ ବିଷୟରେ ପଚିଶ ଧାଡ଼ି ଲେଖି ଦିଅନ୍ତୁ । ମୁଁ ଲେଖିଲି । ପଢ଼ିଦେଇ ସେମାନେ କହିବେ ମୋର କିଛି ହେଲେ ଯୋଗ୍ୟତା ନାହିଁ । ଶେଷକୁ କଥା ରହିବ ଯେ ଇଣ୍ଟରଭିଉରେ ମୁଁ ଫେଲ୍ ହୋଇଗଲି । ତେଣୁ ସେ ପ୍ରଶ୍ନ ଆଉ ଉଠାନ୍ତୁ ନାହିଁ । ପରିଜାଙ୍କୁ ମୋର ଏହି ଉତ୍ତର ବିଷୟ ଜଣାଇ ଦେବେ । ସେ କହିଲେ—'ଆପଣଙ୍କ ସାଂଟାୟାର ତ ବହୁ ସମୟରେ ଉଣ୍ଡଷ୍ଟୋଟିଙ୍ଗ୍—ଏଥର କାହିଁକି ନ ହୁଅନ୍ତା !' ସେକଥା ସେଇଠି ଛାଡ଼ିଲି । ତାଙ୍କୁ କେବଳ ଏତିକି କହି ଅନ୍ୟ କଥା ପକାଇଲି—'ଆପଣମାନେ ଏତେ ଲୋକ ରହି ଏତେ ଲକ୍ଷ ଟଙ୍କା ଖର୍ଚ୍ଚ କରି ଯାହା କରିବେ ସେତିକି ଜଣେ ରାମକୃଷ୍ଣ ନନ୍ଦ କରିଦେଇଛନ୍ତି ଏକା ଏକା । ଆପଣଙ୍କ କ୍ଷୁଦ୍ର ଜ୍ଞାନକୋଷର ପ୍ରଥମ ଖଣ୍ଡ ବାହାରିବାର ବହୁ ପୂର୍ବରୁ ତାଙ୍କ 'ବିଶ୍ୱ ପରିଚୟ' ପ୍ରକାଶ ପାଇଯାଇଥିବ । ସେଇଟି ୧୦୦୦ ପୃଷ୍ଠା ହେବ ବୋଲି ସେ କହୁଥିଲେ ।

ଉକ୍ତର ପରିଜାଙ୍କ ଆଶଙ୍କା, ମୋର ଅନୁମାନ ଓ ମାନସିଂହଙ୍କ ଉକ୍ତି ଠିକ୍ ବୋଲି ପ୍ରମାଣିତ ହେଲା । ୧୯୬୦ରେ ମୋ ଲିଖିତ

'ଜ୍ଞାନମଣ୍ଡଳ' ପ୍ରକାଶିତ ହୋଇଗଲା । "ଜଣେ ଲୋକ ମୂଳରୁ ଶେଷ ପର୍ଯ୍ୟନ୍ତ ପ୍ରତ୍ୟେକ ପାରାଗ୍ରାଫ ଲେଖିଦେଉଛୁ—ଆମେ କଅଣ କରୁଛୁ" ବୋଲି ଉତ୍କଳ ବିଶ୍ୱବିଦ୍ୟାଳୟର ଲୋକେ କହିଲେ । ୧୯୬୨ରେ ଦ୍ୱିତୀୟ ଖଣ୍ଡ ପ୍ରକାଶିତ ହେଲାବେଳକୁ ମଧ୍ୟ ସେମାନେ ମାରିବ । ତୃତୀୟ ଖଣ୍ଡିକ ପ୍ରକାଶିତ ହେବାକୁ ଯାଉଥିଲାବେଳେ ଜ୍ଞାନକୋଷର ପ୍ରଥମ ଖଣ୍ଡିକ ବାହାରିଲା । ଉଦ୍‌ଘାଟନ ଉତ୍ସବକୁ ମୁଁ ଯାଇଥିଲି । ଶିକ୍ଷାମନ୍ତ୍ରୀ ଆସିବାକୁ ଡେରିଥାଏ । ପରିଜ ମୋତେ ଦୂରକୁ ଡାକିନେଇ କହିଲେ—ଗୋଟିଏ କଥା ଚଳେ ପଚାରିବି । ତୋଆର କାହିଁକି ଗୋଟିକ ପରେ ଗୋଟିଏ ବାହାରି ଯାଉଛି – ଆମର ହୋଇପାରୁ ନାହିଁ ? ଅତି ଶଙ୍କିଯାଇ କହିଲି —'ମାମୁଁ, ଆପଣ ଯଦି କଷ୍ଟ ନ ଭାବିବେ ଗୋଟିଏ କଥା କହିବି ।' ସେ ଆଗ୍ରହ ପ୍ରକାଶ କଲାରୁ କହିଲି—'ଆପଣ ତ ମାତ୍ର ଦେଢ଼ଜଣ ଲୋକ ରଖିଲେ—କାମଟି କେମିତି ହୁଅନ୍ତା ?' ସେ ହସି ହସି କହିଲେ—'ନାହିଁ, ଆମେତ ଏତେ ଲୋକ ରଖିଛୁ ଏମିତିକା ହ' ଡନଖଣ୍ଡ ଶେଷ କରିଦେବା ପାଇଁ' । ମୋ ଉତ୍ତର—"ଡକ୍ଟର ମାନସିଂହ, ପଣ୍ଡିତ ବାନାମ୍ବର ଆଚାର୍ଯ୍ୟ, ବୈକୁଣ୍ଠନାଥ ପଟ୍ଟନାୟକ, ପଣ୍ଡିତ ଲିଙ୍ଗରାଜ ମିଶ୍ର, ଶ୍ରୀ ଚନ୍ଦ୍ରଧର ମହାପାତ୍ର –ଏମାନେ ସମସ୍ତେ ତ ସାହିତ୍ୟରଥୀ । କେବଳ ଅଧ୍ୟାପକ ଶରତଚନ୍ଦ୍ର ମିଶ୍ର ରହିଛନ୍ତି ବିଜ୍ଞାନ ବିଷୟରେ ଲେଖିବା ପାଇଁ । ସେଇଥି ଯୋଗୁଁ କହିଲି ଦେଢ଼ଜଣ । ସେମାନଙ୍କ ଯୋଗ୍ୟତା ତଥା ଦକ୍ଷତା ବିଷୟରେ ମୋର କିଛି ହେଲେ କହିବାର ନାହିଁ । କିନ୍ତୁ ଡାକ୍ତରୀଶାସ୍ତ୍ର, ପଦାର୍ଥବିଦ୍ୟା, ମନସ୍ତତ୍ତ୍ୱ, ଭୂତତ୍ତ୍ୱ ଜ୍ୟୋତିର୍ବିଜ୍ଞାନ, ଉଦ୍ଭିଦବିଜ୍ଞାନ ପ୍ରଭୃତି ଉପରେ କିଏ ଲେଖିବେ ? ଆପଣ ତ ଜଣେ ବୈଜ୍ଞାନିକ । କହନ୍ତୁ ଦେଖି ଏନ୍‌ସାଇକ୍ଲୋପିଡିଆଟି କ'ଣ ଗୋଟିଏ ଟେକ୍‌ନିକାଲ ଜବ୍ ନୁହେଁ ? ଅନ୍ୟ ଭାଷାର ପୁସ୍ତକରୁ ଦେଖି ମଧ୍ୟ କ'ଣ ପଣ୍ଡିତ ଆଚାର୍ଯ୍ୟ ପରମାଣୁ ବିଷୟରେ ସମସ୍ତେ ବୁଝିପାରିଲା ଭଳି ନିର୍ଭୁଲ ଭାଷାରେ ଲେଖିଦେଇ ପାରିବେ ?" ସେ କିଛି ନ କହି ଚୁପ୍ ରହିଲେ—ଟିକିଏ ପରେ କହିଲେ– 'ହଁ ସେଇ ଭୁଲ ଯୋଗୁଁ ଆମର ଅସୁବିଧା ।' କ୍ଷୁଦ୍ର ଜ୍ଞାନ କୋଷର ମୁଖବନ୍ଧରେ ଉଲ୍ଲେଖ ରହିଛି—"ନିକଟରେ ଶ୍ରୀ ବିନୋଦ କାନୁନ୍‌ଗୋ ଓ ଶ୍ରୀ ରାମକୃଷ୍ଣ ନନ୍ଦଙ୍କର ଏ କ୍ଷେତ୍ରରେ ଚେଷ୍ଟା ମଧ୍ୟ ଉଲ୍ଲେଖ ଯୋଗ୍ୟ ।" ୧୯୬୨ରେ ଶ୍ରୀ ନନ୍ଦଙ୍କର ବହିଟି ବାହାରିସାରିଥାଏ । ଜ୍ଞାନ କୋଷ ଛପାସରି ଯେତେ-

ବେଳେ ମୁଖବନ୍ଧ ବା "ପୂର୍ବ-ଭାଷ" ଲେଖା ଆରମ୍ଭ ହେଲା ସେତେବେଳେ ଗୋଟିଏ ପ୍ରଶ୍ନ ଉଠିଲା—ଏହି କ୍ଷୁଦ୍ର ପୁସ୍ତକଟି କାହା ଉଦ୍ଦେଶ୍ୟରେ ଲେଖା ଯାଇଛି ? ଏଥିରେ ଏମିତି କିଛି ନାହିଁ ଯାହାକୁକି ତଳଠାରୁ ଉପର— ସବୁ ଶ୍ରେଣୀର ଲୋକେ ପଢ଼ିବେ । କଲେଜର ଅଧ୍ୟାପକ ବା ଅନ୍ୟ ଉଚ୍ଚ ଶିକ୍ଷିତ ମାନଙ୍କ କଥା ଦୂରେ ଥାଉ ହାଇସ୍କୁଲର ଶିକ୍ଷକ ମାନଙ୍କୁ ମଧ୍ୟ ଏହାତ ସେଭଳି କିଛି ସହାୟକ ଉପାଦାନ ଯୋଗାଉ ନାହିଁ । ଡକ୍ଟର ମାନସିଂହ ମଧ୍ୟ ସେହିଭଳି ଅନୁଭବ କଲେ । ତାଙ୍କ ମନରେ ସେଭଳି କିଛି ଅହଂଭାବ ନଥିଲା । ସ୍ପଷ୍ଟ ଭାଷାରେ ଉଲ୍ଲେଖ କଲେ—"ଏହି କ୍ଷୁଦ୍ରଜ୍ଞାନ କୋଷ ପାଇଁ ସମ୍ପାଦକ ମଣ୍ଡଳୀଙ୍କ ଆଖିରେ ରଖାଯାଇଛି ପଲ୍ଲୀ ପ୍ରାଇମେରୀ ବା ମାଇନର ସ୍କୁଲ ଶିକ୍ଷକ, ସେମାନଙ୍କ ହାତରେ ଏହି ବହିଖଣ୍ଡିକ ପଡ଼ିଲେ ସେମାନେ ଯେପରି ବହୁଜ୍ଞାନ ସେହି ପଲ୍ଲୀରେ ରହି ପାଇପାରିବ ଏହାହିଁ ଆମର ଲକ୍ଷ୍ୟ । ଏହି କ୍ଷୁଦ୍ର-ଜ୍ଞାନ କୋଷକୁ ସାଧାରଣ ଜ୍ଞାନର ଅଭିଧାନ କହିଲେ, ବୃହତ୍ ଜ୍ଞାନକୋଷକୁ ମାନବିକ ଚିନ୍ତାର ମଞ୍ଜୁଷା କହିବାକୁ ହେବ । ଉଦାହରଣ ସ୍ୱରୂପ ଏହି ଜ୍ଞାନ-କୋଷରେ ସାମ୍ୟବାଦର କାର୍ଲମାର୍କସ୍ ପ୍ରଭୃତି ବିଖ୍ୟାତ ମନୀଷୀମାନଙ୍କର କେବଳ ପରିଚୟ ପ୍ରଦାନ କରାଯାଇଛି । କିନ୍ତୁ ବୃହତ୍ ଜ୍ଞାନ କୋଷରେ ସାମ୍ୟବାଦ, ମାର୍କସ୍‌ବାଦ, ତର୍କ ମୂଳକ ଭୌତିକ ବାଦ ଉପରେ ଏକ ଏକ ବଡ଼ ପ୍ରାମାଣିକ ପ୍ରବନ୍ଧ ନିଶ୍ଚୟ ସ୍ଥାନ ପାଇବ । ସେହିପରି ପୌରାଣିକ ନାୟକ ନାୟିକାମାନଙ୍କ ଉପରେ କ୍ଷୁଦ୍ର ଜ୍ଞାନକୋଷର ସାମାନ୍ୟ ସାମାନ୍ୟ ପରିଚୟ ଦିଆ ଯାଇଛି, କିନ୍ତୁ 'ପୁରାଣ' ଉପରେ ଆଲୋଚନା ମୂଳକ ପ୍ରବନ୍ଧ ଦିଆ ଯାଇନାହିଁ । ତାହାର ସ୍ଥାନ, ବୃହତ୍ ଜ୍ଞାନ କୋଷ ।" ମାନସିଂହଙ୍କ ଅନୁରୋଧ ରକ୍ଷା କରି ବିଶ୍ୱବିଦ୍ୟାଳୟ କ୍ଷୁଦ୍ର ଜ୍ଞାନ କୋଷକୁ ଦୁଇ ଖଣ୍ଡରେ ବିଭକ୍ତ ନକରି ଗୃହଖଣ୍ଡରେ ବିଭକ୍ତ କଲେ । ତାହାପରେ ଭାରତ ସରକାର ଏ ଦିଗରେ ଆଉ ଟଙ୍କା ଖର୍ଚ୍ଚ କରିବାକୁ ମନ କଲେ ନାହିଁ । କାରଣ ସେମାନେ ଟଙ୍କା ଦେଇଥିଲେ ଗୋଟିଏ ପ୍ରାମାଣିକ ବୃହତ୍ ଏନ୍‌ସାଇକ୍ଲୋପିଡିଆ ପାଇଁ ଏହି ଗୃହଖଣ୍ଡ ସହାୟକ ପୁସ୍ତକ ମାତ୍ର । ଏହି ସେଟ୍‌କୁ ଏନ୍‌ସାଇକ୍ଲୋପିଡିଆ ବୋଲି କୁହାଯାଇ ପାରିବ ନାହିଁ । ବିଶ୍ୱବିଦ୍ୟାଳୟ ପନ୍ଦର ଖଣ୍ଡରେ ବିଭକ୍ତ ବୃହତ୍ ଜ୍ଞାନକୋଷ ପ୍ରଣୟନ ପାଇଁ ଯେଉଁ ଯୋଜନା ଦେଲେ ତାହା ପାଇଁ କେନ୍ଦ୍ରରୁ ଟଙ୍କା ଆସିଲା ନାହିଁ । ବହୁଲୋକଙ୍କ ପାଖକୁ ଚିଠି ପଠାଇ କିଛି

କିନ୍ତୁ ଲେଖା ସଂଗ୍ରହ ବି କରାଯାଇଥିଲା । ରାଜ୍ୟ ସରକାର ଅର୍ଥ ସାହାଯ୍ୟ ଦେବାପାଇଁ ଅନିଚ୍ଛା ପ୍ରକାଶ କଲେ । ବିଶ୍ୱବିଦ୍ୟାଳୟ କର୍ମଚାରୀମାନଙ୍କୁ ଦରମା ଦେଇ ଥାଆନ୍ତି । ଏମିତି ହୋଇ ହୋଇ ସମ୍ପୂର୍ଣ୍ଣ ଯୋଜନାଟି ଅକାମୀ ହୋଇଗଲା । ଜ୍ଞାନମଣ୍ଡଳର ବହୁ ଭଲ୍ୟୁମ୍ ପ୍ରକାଶ ପାଇ ଯାଇଥିବାରୁ ଓ ସେଗୁଡ଼ିକ ଅତି ମାତ୍ରାରେ ଆଦୃତ ହୋଇ ଥିବାରୁ ଆଉ ଗୋଟିଏ ସେଟ୍ ବୃହତ ଜ୍ଞାନକୋଷ ବିଷୟରେ କେହି ଆଗ୍ରହୀ ହେଲେ ନାହିଁ । ମାନସିଂହଙ୍କ ମନ ତିକ୍ତ ହୋଇଗଲା । ତାଙ୍କ ମୃତ୍ୟୁ ପୂର୍ବରୁ ଦିନେ ସେ ମୋ ପାଖରେ ଚାରିଘଣ୍ଟା କାଳ ବସି ଓଡ଼ିଆ ଭାଷା କାହାଦୋଷରୁ ଗୋଟିଏ ସୁଚର୍ଚ୍ଚିତ ବୃହତ ଜ୍ଞାନକୋଷ ସେଟ୍‌ରୁ ବଞ୍ଚିତ ହେଲା ବର୍ଣ୍ଣନା କଲେ । ସେ ଯାହା କହିଲେ ମୋ ମନରେ ଅଛି—କିନ୍ତୁ ପ୍ରକାଶ କରିବି ନାହିଁ । ତାଙ୍କ ମନର ଦୁଃଖ ଟିକିଏ ଲାଘବ କରିବା ପାଇଁ କହିଲି—ମୁଁ ସେମାନଙ୍କୁ ଦୋଷ ଦେଉନାହିଁ । ଏନ୍‌ସାଇକ୍ଲୋପିଡିଆର ଗୁରୁତ୍ୱ ସେମାନେ ବୁଝିନାହାନ୍ତି । ବ୍ରିଟାନିକା ବାହାରିଲାପରେ ଇଂରେଜ ଭାଷାଭାଷୀ ଲେଖକ କବି ରାଷ୍ଟ୍ରନୀତିଜ୍ଞ ଅଧ୍ୟାପକ ଶିକ୍ଷକଙ୍କଠାରୁ ଆରମ୍ଭକରି ସବୁଶ୍ରେଣୀର ଲୋକେ କିଭଳି ଉପକୃତ ହେଲେ ତାହାର ଇତିହାସ ସେମାନେ ଜାଣି ନଥିବାରୁ ଆପଣଙ୍କ ପ୍ରତିଭାକୁ କାମରେ ଲଗାଇ ପାରିଲେ ନାହିଁ । ସେଠାରେ ଆପଣ ଯେତେ ବର୍ଷ କଟାଇଲେ ସେହି ସମୟ ଭିତରେ ଭାଷା ସାହିତ୍ୟର ଗୋଟିଏ ଚମତ୍କାର ଏନ୍‌ସାଇକ୍ଲୋପିଡିଆ ସେଟ୍ ଲେଖିଦେଇ ପାରିଥାଆନ୍ତେ । ସେ ନୀରବ ରହି ମୋ ସହିତ ଏକମତ ହେଲେ ବୋଲି ବୁଝିଲି ।

ତିନି ଚାରି ଗୋଟି ଏନ୍‌ସାଇକ୍ଲୋପିଡିଆ ସେଟ୍‌ର ପୃଷ୍ଠା ଗୁଡ଼ିକ ଉପରେ ଆଖି ବୁଲାଇ ଗଲାବେଳେ ଅନୁଭବ କଲି ଯେ ଯେଉଁ ସବୁ ବିଷୟ ବାଛୁଛି ସେହିସବୁ ଉପରେ ଗୋଟିଏ ଗୋଟିଏ ସ୍ୱତନ୍ତ୍ର ଫାଇଲ ନ ଖୋଲିଲେ ଚଳିବ ନାହିଁ । ଯେଉଁଠୁ ଯାହା ନୋଟ୍ କରୁଛି ବା ଜାଣୁଛି ସେଗୁଡ଼ିକ ବର୍ଣ୍ଣମାଳାନୁକ୍ରମେ ଭିନ୍ନ ଭିନ୍ନ ଫାଇଲ ଭିତରେ ନ ରଖିଲେ ଖୋଜିଲା ବେଳକୁ ମିଳିବ କିପରି ? ତଥ୍ୟ ସଂଗ୍ରହ ପାଇଁ ମୁଖ୍ୟତଃ ଦୁଇଟି ସୂତ୍ର ବାଛି ନେଲିଣି । ଆର୍ଥିକ ଦୁଃସ୍ଥିତି ସତ୍ତ୍ୱେ ପ୍ରତିଦିନ ଆଠ ଦଶଟି ଦୈନିକ କାଗଜ ଓ କେତେ ଗୁଡ଼ିଏ ପତ୍ର ପତ୍ରିକା କିଣିବା ଆରମ୍ଭ କରିଦେଲି । ପ୍ରତିଦିନ ସେଗୁଡ଼ିକ ପଢ଼େ । କେଉଁ କେଉଁ ବିଷୟ ଉପରେ ଦାଗ ଦେଇ ଦିଏ । ପରେ ସେହିସବୁ ଆଇଟେମକୁ କାଟି ବର୍ଣ୍ଣମାଳା କ୍ରମରେ ସାଇତିଦିଏ ।

ପତ୍ରପତ୍ରିକା କ୍ଷେତ୍ରରେ ମଧ୍ୟ ସେଇଆ କରେ । ଲାଇବ୍ରେରୀରେ ପଢ଼ିଲା ବେଳେ ଯାହା ନୋଟ୍ କରିଥାଏ ସେତକ ମଧ୍ୟ ଗୁରୁତ୍ୱପୂର୍ଣ୍ଣ । ଗୋଟିଏ ବିଷୟ ସ୍ପଷ୍ଟ କରିଦିଏ । ଗୋଟିଏ ହେଲେ ଏନ୍‌ସାଇକ୍ଲୋପିଡ଼ିଆ ସେଟ୍ ସେତେବେଳେ କିଣି ପାରିନଥିଲି । କଠିନ ପରିଶ୍ରମ କରି ଲାଇବ୍ରେରୀରୁ ଯାହାକିଛି ନୋଟ୍ କରିଆଣେ । ଭଲ ଅଭିଧାନ ଖଣ୍ଡିଏ ନଥିଲା । କେବଳ ଚେମ୍ବର୍ସଟି ଥାଏ ଏହିଗରେ ସମ୍ବଳ । ରେବତୀକାନ୍ତ ଘୋଷଙ୍କ ଘରୁ ଶରି କଲୁ ବ୍ରୁମର ଗୋଟିଏ ଗୋଟିଏ ଭଲ୍ୟୁମ୍ ଆଣି ପଢ଼େ । ସେତେବେଳକୁ ସେଇଟି ଦୁର୍ଲଭ ବା ରେୟାର ପୁସ୍ତକ ହୋଇ ଯାଇଥାଏ । ଘୋଷଙ୍କ ପାଖରେ ଯେଉଁଟିଥାଏ ତାହାର ପୃଷ୍ଠା ପୁରୁଣା ହୋଇ ଯାଇଥିବାରୁ ସାବଧାନତାର ସହିତ ପୃଷ୍ଠା ଗୁଡ଼ିକୁ ଓଲଟାଇବାକୁ ପଡ଼େ । ସେହି ବହି ସେଟ୍‌ର ଅତିମାତ୍ରାରେ ଦୁଷ୍ପ୍ରାପ୍ୟତା ଥିବାରୁ ଓ ବିଦେଶର ଲୋକେ ଯେ କୌଣସି ମୂଲ୍ୟ ଦେଇ କିଣି ନେଉଥିଲେ । ଭାରତ ସରକାର ପୁଣିଥରେ ତାକୁ ଛପାଇ ଦେଇ ଦୁଇଶହଟଙ୍କା ମୂଲ୍ୟ ରଖିଲେ ବୋଧହୁଏ । ସେଥିରୁ ଗୋଟିଏ ସେଟ ତୁରନ୍ତ କିଣି ନେଲି । ବାହାରଙ୍କ ଇଂରାଜୀ ହିନ୍ଦୀ ଅଭିଧାନଟି କିଣିଲାପରେ ସେଥିରୁ ବହୁତ କିଛି ସାହାଯ୍ୟ ପାଇଲି । ପ୍ରଥମେ ପ୍ରଥମେ ଭାବିଥିଲି ବହୁସଂଖ୍ୟକ ବିଷୟ ଯିବା ହୁଆଯିବ—ସେଗୁଡ଼ିକ ଜ୍ଞାନର ଯେଉଁ ବିଭାଗର ସେହି ବିଭାଗ ଉପରେ ଫାଇଲ ଖୋଲାଯାଉ । ଭାଷା, ସାହିତ୍ୟ, ଭୂଗୋଳ, ଇତିହାସ କେମିଷ୍ଟ୍ରୀ, ଫିଜିକସ୍, ପ୍ରାଣୀଜଗତ, ପୃଥିବୀ, ଭିନ୍ନ ଭିନ୍ନ ମହାଦେଶ—ଏହିଭଳି ଫାଇଲ ସବୁ ଆରମ୍ଭକଲି । କିନ୍ତୁ ଅଳ୍ପଦିନ ପରେ ଅନୁଭବ କଲି ଯେ ଅନ୍ତତଃ ପାଞ୍ଚଶହ ଫାଇଲ ନଖୋଲିଲେ କୌଣସି କଥାକୁ ଖୋଜି ପାଇବା ସହଜ ହେଉନାହିଁ । କ୍ରମେ ଫାଇଲ ସଂଖ୍ୟା ବଢ଼ିଲା । ପୃଥିବୀ ଓ ପାଞ୍ଚ ମହାଦେଶ—ଏହିଭଳି ଛ'ଟି ଫାଇଲ ସ୍ଥାନରେ ପ୍ରାୟ ଦେଢ଼ଶହ ଭିନ୍ନ ଭିନ୍ନ ଫାଇଲ ଖୋଲିଗଲା । ପ୍ରତ୍ୟେକ ଦେଶ ପାଇଁ ଗୋଟିଏ । ତା' ନହେଲେ ସେ ସବୁ ଦେଶରେ ଯାହା ସବୁ ଘଟିଯାଉଛି ସେଗୁଡ଼ିକର ଧାରାବାହିକ ବିବରଣୀ ରହିବ କିପରି ? ବଡ଼ ବଡ଼ ପର୍ବତ, ନଦୀ, ହ୍ରଦ, ମହାସାଗର, ସାଗର ବିଷୟରେ ଯାହାତଥ୍ୟ ମିଳୁଛି ସେସବୁକୁ ଯତ୍ନର ସହିତ ରଖାଯିବ । ପୃଥିବୀର, ଭାରତର, ଓଡ଼ିଶାର ବହୁ ଲୋକଙ୍କ ଉପରେ ହିନେ ଲେଖାଯିବ । ସେମାନଙ୍କ ଭିତରୁ ଅନେକଙ୍କ ବିଷୟରେ ଖବର କାଗଜ ଓ ପତ୍ର

ପତ୍ରିକାରେ ମଝିରେ ମଝିରେ ବାହାରେ । ସୁନ୍ଦର ସୁନ୍ଦର ହାଫ୍‌ଟୋନ୍ ଓ ଲାଇନ ଚିତ୍ରକୁ ସାଇତି ରଖିଲେ ସେଥିରୁ ସହଜରେ ବ୍ଲକ କରିଦେଇ ହେବ—ଡିଜାଇନ୍ କରାଇବା ଖର୍ଚ୍ଚରୁ ରକ୍ଷା ମିଳିଯିବ । ଉଦାହରଣ ସ୍ୱରୂପ 'ଭବନ୍ ଜର୍ଣ୍ଣାଲ'ରେ ବହୁ ବିଶିଷ୍ଟ ଭାରତୀୟଙ୍କର ଚମତ୍କାର ଲାଇନ ଚିତ୍ର ବାହାରେ । ସେଗୁଡ଼ିକୁ ଯତ୍ନରେ ରଖିଥିବାରୁ ଆଜାଦ ଆମ୍ବେଦକରଙ୍କ ଉପରେ ଯେଉଁ ସବୁ ଲେଖା ଜ୍ଞାନମଣ୍ଡଳରେ ଦିଆଗଲା ସେତେବେଳେ ଭଲ ଚିତ୍ରଟିଏ ପାଇଁ ପରିଶ୍ରମ କରିବାକୁ ପଡ଼ିଲା ନାହିଁ । ୧୯୮୬-୮୭ରେ ଯେଉଁମାନେ ଜ୍ଞାନମଣ୍ଡଳ ଅଫିସକୁ ଆସୁଛନ୍ତି ସେମାନେ ଦେଖୁଛନ୍ତି ହଜାର ହଜାର ଫାଇଲ ରହିଛି । ବର୍ଣ୍ଣମାଳାନୁକ୍ରମରେ ଥିବାରୁ ଯେ କୌଣସି ଫାଇଲଟି ଖୋଜି ସହଜରେ ବାହାର କରି ଦେଇ ହେଉଛି ।

ଯେତେବେଳେ ସବୁଯାକ ବିଷୟ ମୋତେହିଁ ଲେଖିବାକୁ ହେବ ସେଥିପାଇଁ ଖାଣ୍ଟିମତ ମାନସିକ ପ୍ରସ୍ତୁତି ଲୋଡ଼ା । କୌଣସିଠାରେ ମାତ୍ର ଜଣେ ଲୋକ ଏନ୍‌ସାଇକ୍ଲୋପିଡିଆ ସେଟ୍‌ଟିଏ ଲେଖିଦେଉଛି ବୋଲି ମୋତେ କେହି କହୁନଥାନ୍ତି । ଭାଷା ସାହିତ୍ୟ ଇତିହାସ ରାଜନୀତି ଇତ୍ୟାଦି ପାଇଁ ଟିକିଏ ଅଧିକା ପଢ଼ାପଢ଼ି କଲେ ଚଳିଯିବ—କିନ୍ତୁ ବିଜ୍ଞାନର ସବୁ ବିଭାଗ ଉପରେ ଲେଖିବି କେମିତି । ୧୯୫୪ରେ ହିଁ ଗୋଟିଏ ପରୀକ୍ଷା ଚଳାଇଲି । ସେଭଳି ଚଳାଇବା ପାଇଁ ସୁଯୋଗଟିଏ ମିଳିଗଲା । ସେହିବର୍ଷ କେନ୍ଦ୍ରର ଶିକ୍ଷା ବିଭାଗ ଶିଶୁସାହିତ୍ୟ ପାଇଁ ଗୋଟିଏ ପୁରସ୍କାର ଘୋଷଣାକଲେ । ପ୍ରତ୍ୟେକ ଭାଷାର ସବୁଠୁ ଭଲ ପିଲାଙ୍କବହି ପାଇଁ ହଜାରେ ଟଙ୍କା ପୁରସ୍କାର ଦେବା ସଙ୍ଗେ ସଙ୍ଗେ ଦି' ହଜାର ବହି କିଣି ନେବେ । ଏହିଚିଠି ଓଡ଼ିଶା ସରକାରଙ୍କ ପାଖକୁ ଆସିଥିଲେ ମଧ୍ୟ ସେଇଟିକୁ ଗୁପି ରଖିଦିଆ ଯାଇଥିଲା । ଯେଉଁଦିନ ବହି ସବ୍‌ମିଟ୍ କରିବା ପାଇଁ ଶେଷ ତାରିଖ ତାହାର ମାତ୍ର ୭୨ ଘଣ୍ଟା ପୂର୍ବରୁ 'ସମାଜ'ରେ ସରକାରୀ ବିଜ୍ଞାପନ ପ୍ରକାଶ ପାଇଲା । ସେଥିରେ ଲେଖାଥିଲା 'ଗଲା ବର୍ଷକ ଭିତରେ ପ୍ରକାଶିତ ବହି ଗ୍ରହଣ କରାଯିବ ।' ମୁଁ ଭାବିଲି ଗୋଟିଏ ବହି ଲେଖି ସବ୍‌ମିଟ୍ କରିଦେବି । ଯୋଗକୁ ମାନବ ଶରୀର ଉପରେ ଗୁଡ଼ିଏ ବ୍ଲକ ମୋ ପାଖରେ ଥିଲା । ରାତିକ ଭିତରେ ବହିଟି ଲେଖିଦେଇ ସକାଳୁ ସାମାଜ ଅଫିସକୁ ଗଲି ଓ ସତ୍ୟବାଦୀ ପ୍ରେସରେ ସେଇଟିକୁ ଛପାଇ ଦେବା ପାଇଁ କିଛି ଅଗ୍ରୀମ ମଧ୍ୟ ଦେଲି ।

ସତ୍ୟବାଦୀ ପ୍ରେସର ସମସ୍ତଙ୍କ ସମ୍ମତି ମୋର ଚାହିଁ । ଦୁଇଦିନ ଭିତରେ ୪୮ ପୃଷ୍ଠାର ବହିଟି ଛପା ହୋଇଗଲା । ବହୁସଂଖ୍ୟକ ଶବ୍ଦ (ହିନ୍ଦୀ ଓ ହିନ୍ଦୀଙ୍ଗର ଦୁଇଟି ଶବ୍ଦ ସମେତ) ସେଥିରେ ଥାଏ । ଠିକ୍ ସମୟରେ ଓଡ଼ିଶା ସରକାରଙ୍କ ଶିକ୍ଷା ବିଭାଗକୁ ଦେଇ ଦେଲି । ସମସ୍ତେ କହିଲେ ଏହି ବହିଟି ନିଶ୍ଚୟ ପୁରସ୍କାର ପାଇବା ପାଇଁ ଶ୍ରେଷ୍ଠ ବୋଲି ବିବେଚିତ ହେବାପରେ ଶୁଣିଲି ପ୍ରଥମ, ଦ୍ଵିତୀୟ, ତୃତୀୟ—ଏହିଭଳି ତିନୋଟି ପୁରସ୍କାର ଅଛି । କିନ୍ତୁ ଯେତେବେଳେ ଫଳ ପ୍ରକାଶ ପାଇଲା ମୋ ବହିଟି ନାହିଁ । ଗୋଟିଏ ନିର୍ଦ୍ଦିଷ୍ଟ ଲେଖକ ଗୋଷ୍ଠୀର ତିନି ଖଣ୍ଡିଯାକ ବହି ପୁରସ୍କାର ପାଇଁ ବଛା ଯାଇଛି । ସେ ଗୁଡ଼ିକ ପୁଣି ବହୁ ପୂର୍ବରୁ ଛପା ଯାଇଛି । ସଙ୍ଗେ ସଙ୍ଗେ ମୌଲାନା ଆଜାଦଙ୍କ ପାଖକୁ ଖଣ୍ଡେ ଚିଠି ଲେଖିଲି । ପ୍ରଥମ ପଏଣ୍ଟଥିଲା— ଏଇଦିନ ସନ୍ଧ୍ୟାରେ କଟକରେ ସମାଜରେ ବିଜ୍ଞାପନ ବାହାରିଲା । ସମାଜଟି ଓଡ଼ିଶାର ଦୂର ସ୍ଥାନରେ ପହଞ୍ଚିବାକୁ ତିନିଦିନ ଲାଗିବ । ସେହିଦିନଟି ହେଉଛି ବହି ସବ୍‌ମିଟ୍‌ର ଶେଷ ତାରିଖ, ଲେଖକ କେଉଁଦିନ ଲେଖି ଛପାଇ ସବ୍‌ମିଟ୍ କରିବେ କଟକରେ । ଦ୍ଵିତୀୟରେ ଏହି ଯେଉଁ ତିନିଖଣ୍ଡି ବହି ବଛା ଯାଇଛି ସେ ଗୁଡ଼ିକ ପ୍ରାଇଜ୍ ପାଇବା ପାଇଁ ଉପଯୁକ୍ତ ବୋଲି କିଏ ବାଛିଲା । ଏହି ବଛା ବଛି ସଂପର୍କରେ ଜଣଙ୍କ ବିରୁଦ୍ଧରେ ଖାସ ଗୁରୁତର ଅଭିଯୋଗ କଲି । ଦିଲ୍ଲୀ ଠିକ୍ କଲା ଯେ ପ୍ରକୃତରେ ଅନ୍ୟାୟ ହୋଇଛି— ଓଡ଼ିଶାରୁ କେହି ପାଇଲେ ନାହିଁ ।

ଏହି ବହି ମୋ ପାଇଁ ଦୁଇଟି କାମ କରିଦେଲା । ଜଣେ ନିଜ ନାମଦେଇ 'ସମାଜ'ରେ ଏହା ବିରୁଦ୍ଧରେ ଲେଖିଲେ । ଏହାର ନାମକରଣ ଠିକ୍ ହୋଇ ନାହିଁ ବୋଲି ଉଲ୍ଲେଖ କଲେ । ଏହାର ଉତ୍ତର ଦେବା ପାଇଁ ଗୋଟିଏ ସୁଚିନ୍ତିତ ଉପାୟ ବାହାର କଲି । ଡକ୍ଟର ପରିଜା, ଡକ୍ଟର ମହତାବ, ପଣ୍ଡିତ ନୀଳକଣ୍ଠ ଦାସ, ସମାଜ ସମ୍ପାଦକ ପଣ୍ଡିତ ଲିଙ୍ଗରାଜ ମିଶ୍ର, ସାରଙ୍ଗଧର ଦାସ, ଡକ୍ଟର ବନବିହାରୀ ପଟ୍ଟନାୟକ, ରାଧାମୋହନ ଗଡ଼ନାୟକ ପ୍ରଭୃତି କୋଡ଼ିଏ ଜଣ ବିଶିଷ୍ଟ ଲୋକଙ୍କୁ ବହିଟିକୁ ପଢ଼ିବାକୁ ଦେଇ ଲିଖିତ ମତ ନେଇ ଆସିଲି । ସେଗୁଡ଼ିକୁ ୧୬ ପୃଷ୍ଠାର ଗୋଟିଏ ବହିରେ ଛପାଇ ବାଣ୍ଟି ଦେଲି । ଏମାନେ ଅତି ସ୍ପଷ୍ଟ ଭାଷାରେ ଉଲ୍ଲେଖ କଲେ—"ଉକ୍ତଶୃଙ୍ଖଳା ଉପରେ ଏଭଳି ଚମତ୍କାର ବହି ଲେଖା ଯାଇ

ନପାରେ । ଏହି ଭଳି ଶୈଳୀରେ ଓ ଭାଷାରେ ଯଦି ଶରୀର ଉପରେ କେତେ ଗୁଡ଼ିଏ ବହି ଲେଖି ଦିଆଯିବ ପିଲା ବଡ଼ ସମସ୍ତେ ଉପକୃତ ହେବେ । ପିଲାଦିନୁ ଆମେ ଯଦି ଏଭଳି ବହି ପଢ଼ି ଥାଆନ୍ତୁ ଆମର କେତେ ଯେ ଉପକାର ହୋଇଥାଅନ୍ତା ତାହା ଅନୁମାନ ମଧ୍ୟ କରିହେବ ନାହିଁ । ଏହାର ନାମଟି ଅତି ଚମତ୍କାର ହୋଇଛି ବୋଲି ସମସ୍ତେ ଲେଖିଲେ । ବହିଟିର ନାମ ରଖାଯାଇଥିଲା—"ଚଳନ୍ତା ରାଇଜର ଅମୁହାଁ ନଈ ।" ଗଳ୍ପରେ କୁହାଯାଇଥିଲା ଗୋଟିଏ ରାଇଜ ଅଛି—ଯେଉଁଟି ଗୋଟି ସ୍ଥାନରେ ସ୍ଥିର ନରହି ଚାଲେ । ସେହି ରାଇଜରେ ଏଭଳି ଗୋଟିଏ ନଈ ଅଛି ଯାହାକୁ ପର୍ବତରୁ ବାହାରି ସମୁଦ୍ରରେ ନପଡ଼ି ପୁଣି ସେହି ପର୍ବତ ଗହ୍ୱରକୁ ଫେରି ଯାଇଛି । ତାହାର ଗତି ପଥରେ ସେଇଟି କୋଟି କୋଟି ମାଇଲ ଶାଖା ମେଲି ମେଲି ରାଜ୍ୟର ପ୍ରତି ଗଳି କନ୍ଦିକୁ ଯାଇଛି । ତାହାର ଭିତରେ ଚାଲିଥିବା ଜଳରେ ଖାଦ୍ୟ ଓ ପବନ ଯାଇ ରାଇଜର ଶହ ଶହ କୋଟି ବାସିନ୍ଦାଙ୍କ ପାଖରେ ପହଞ୍ଚି ଯାଉଛି । ପିଲାମାନେ ବିସ୍ମିତ ହୋଇ ଏହିଗଳ୍ପ ଶୁଣୁଥିବା ବେଳେ ସେମାନଙ୍କୁ ହୃତ୍‌ପିଣ୍ଡ ଓ ଶରୀର ଭିତରେ ରକ୍ତ ଚଳନାର ପ୍ରକ୍ରିୟାକୁ ବହୁଚିତ୍ର ସାହାଯ୍ୟରେ ବୁଝାଇ ଦିଆଯାଇଛି । ସେଥିରୁ ୮୦୦ ବହି କିଣିନେଇ ଜଣେ ଆସେମ୍ବ୍ଲି ସଭ୍ୟ ତାଙ୍କ ନିର୍ବାଚନ ମଣ୍ଡଳୀର ପ୍ରତ୍ୟେକ ପ୍ରାଇମେରୀ ସ୍କୁଲକୁ ଦେଲେ । ମୋର ଆତ୍ମବିଶ୍ୱାସ ବଢ଼ିଗଲା—ଶରୀର ବିଦ୍ୟାଉପରେ ଲେଖିବା ପାଇଁ । ସେ ବହିର ପୁନର୍ମୁଦ୍ରଣ ବହୁବାର ହୋଇଛି ୧୯୮୫ ପର୍ଯ୍ୟନ୍ତ । ୧୯୮୬ରେ ଦୂରଦର୍ଶନ କେନ୍ଦ୍ର (କଟକ) ଜ୍ଞାନମଣ୍ଡଳ ଅଫିସରେ ସେହି ବହିଟିକୁ ଟେଲିଭାଇଜ୍ କରାଗଲା କେତେ ଜଣ ପିଲାଙ୍କୁ ବସାଇ । ଦିଲ୍ଲୀ କେନ୍ଦ୍ରରୁ ତାହା ଓଡ଼ିଆ କାର୍ଯ୍ୟକ୍ରମରେ ପ୍ରଚାରିତ ହେଲା ଓ ଓଡ଼ିଶାର ଲକ୍ଷ ଲକ୍ଷ ପିଲା ବଡ଼ ଦେଖିଲେ । ପିଲାମାନଙ୍କୁ ଭାରି ଭଲ ଲାଗିଲା । ମୋର ଏତିକି ସନ୍ତୋଷ ହେଲାଯେ ୧୯୫୪ରେ ପିଲାଙ୍କ ପାଇଁ ଯେଉଁ ବହି ଖଣ୍ଡିକ ଲେଖିଥିଲି ତାହାର ପ୍ରଚାର ୧୯୮୬ରେ—୩୨ ବର୍ଷ ପରେ ହେଲା । ପିଲାଙ୍କ ପାଇଁ ୫୦୦ ଖଣ୍ଡ ବହିଲେଖିଦେବାର ପରିକଳ୍ପନାର ଜନ୍ମଦାତା ହେଉଛି ଏହି ବହି ଖଣ୍ଡିକ ।

ତାହାପରେ ମନହେଲା ପିଲାଙ୍କ ପାଇଁ ସବୁ ବିଷୟରେ—ବିଶେଷ କରି ବିଜ୍ଞାନ ଉପରେ ବହୁସଂଖ୍ୟକ ଲେଖା ପ୍ରକାଶ କରି ଲୋକେ ସେଗୁଡ଼ିକୁ

କେମିତି ଗ୍ରହଣ କରୁଛନ୍ତି ଜାଣିବା ପାଇଁ । ତାହାର ଏକମାତ୍ର ଉପାୟ ହେଉଛି, ଗୋଟିଏ ମାସିକ ଶିଶୁ ପତ୍ରିକା ବାହାର କରିବା । "ଶିଶୁସଂପଦ" ନାମ ଦେଇ ୧୯୫୪ରେ ହିଁ ସେଭଳି ଗୋଟିଏ ପତ୍ରିକା ବାହାର କଲି । ୪୮ ପୃଷ୍ଠାର ପତ୍ରିକାଟିର ମୂଲ୍ୟ ଖଣ୍ଡକ ମାତ୍ର ପଚଶ ପଇସା ରଖାଯିବ ଓ ବାର୍ଷିକ ମୂଲ୍ୟ ଅଢ଼େଇ ଟଙ୍କା । ବହୁସଂଖ୍ୟକ ଚିତ୍ର ଦିଆଯିବ । ଭବିଷ୍ୟତରେ ଜ୍ଞାନମଣ୍ଡଳରେ ଯେଉଁସବୁ ଚିତ୍ର ଦିଆଯିବ ସେହି ବୁଡ଼ିକର ବ୍ଲକ ତିଆରି କରିଦିଆଯିବ । ଠିକ୍ କଲି—କେବଳ ଗୀତ ବା ପଦ୍ୟ ବ୍ୟତୀତ ପତ୍ରିକାର ଆଉ ସବୁଗୁଡ଼ିକ ଲେଖା ମୋ କଲମ ଯୋଗାଇଦେବ । ପ୍ରତି ଲେଖାରେ ମୋ ନାମ ରହିବ ନାହିଁ । କବିତା ଯେଉଁମାନେ ଲେଖିବେ ସେମାନଙ୍କ ନାମ ରହିବ । ତିନି ଜଣଙ୍କୁ ବା ଚାରି ଜଣଙ୍କୁ ଅନୁରୋଧ କରିବି ବୋଲି ସ୍ଥିର କଲି । ସେମାନେ ହେଲେ ମୋର ଜଣେ ରାଜନୈତିକ ଗୁରୁ ଜାତୀୟ କବି ବୀରକିଶୋର ଦାସ, ରାଜନୈତିକ ବନ୍ଧୁ ବିପ୍ଳବୀ କବି ଅନନ୍ତ ପଟ୍ଟନାୟକ, ଗୋଦାବରୀଶ ମହାପାତ୍ର ଓ କବି ରାଧା ମୋହନ ଗଡ଼ନାୟକ । ୧୯୫୪ ବେଳକୁ ଗଡ଼ନାୟକ ବା ଗୋଦାବରୀଶ ମହାପାତ୍ର ବଡ଼ଙ୍କ ପାଇଁ ଚମତ୍କାର କବିତା ଲେଖୁଥିଲେ ସିନା, ପିଲାଙ୍କପାଇଁ ଲେଖୁ ନଥିଲେ । ସେମାନଙ୍କୁ କହିଲି—ଯିଏ ଲେଖାଇର କଳା ହାସଲ କରିଛି ସିଏ ବଡ଼ଙ୍କ ପାଇଁ ପଲଉ ତିଆରି କରିପାରିବ ତ ଅତି ଶ୍ରେଷ୍ଠ ଜୁଆପାଇଁ ବଡ଼ା ସ୍ୱତ କରିଦେଇ ପାରିବ । ଆଜି ଗର୍ବର କୃତଜ୍ଞତାର ସହିତ ଜଣାଉଛି ଯେ ଚାରିଜଣ ଯାକ ମୋତେ ନିରାଶ କଲେ ନାହିଁ । ପ୍ରତି ସଂଖ୍ୟାରେ ସେମାନଙ୍କ ଲେଖା ପ୍ରକାଶ ପାଇଲା । ବହୁ ଚିତ୍ର ସମ୍ବଳିତ ଅତି ସରଳଭାଷାରେ ପିଲାଙ୍କ ପାଇଁ ଲେଖାଥିବା ଏହି ପତ୍ରିକାଟି ଓଡ଼ିଶାରେ ଖୁବ୍ ଆଦୃତ ହେଲା । ତିନି ହଜାର ଛପାହେଲା । ତାକୁ ଲେଖିବା, ଛପାଇବା, ଚାରିଆଡ଼କୁ ପଠାଇବା, ବିକ୍ରିପାଇଁ ବ୍ୟବସ୍ଥା କରିବା, ଗ୍ରାହକ ସଂଗ୍ରହ କରିବା ଆଦିରେ ମୋର ସବୁ ସମୟ ଚାଲିଗଲା । ଗ୍ରାହକ ସଂଗ୍ରହ ପାଇଁ ମୋର ଜଣେ ସ୍କୁଲବନ୍ଧୁ ଓ ସ୍ୱାଧୀନତା ସଂଗ୍ରାମର ସାଥୀ ହରିପିନାକୀହାରୀ ମହାନ୍ତି ଓ ମୁଁ ଦି' ଖଣ୍ଡି ସାଇକଲ ଧରି କେମିତି ପ୍ରାୟ ତିନିଚାରି ଶହ ମାଇଲ ବୁଲିଥିଲୁ ଓ ପାଞ୍ଚଶହ ଗ୍ରାହକ ସଂଗ୍ରହ କରି ପାରିଥିଲୁ ସେକଥା ମନେ ପକାଇଲେ ଆଜିମଧ୍ୟ ମୋ'ର ଆନନ୍ଦ ହୁଏ । ଯେତେବେଳେ ଅନୁଭବ କଲି ଯେ ଏହା ପିଛିରେ ଲାଗିଲେ ଜ୍ଞାନମଣ୍ଡଳ ପାଇଁ ପଡ଼ାପଡ଼ି

ବନ୍ଦ ହୋଇ ଯାଉଛୁ ସେତେବେଳେ ଟିକଏ ଭୟ ପାଇଗଲି । କ୍ରମେ ସେହି ପତ୍ରିକାଟି ବନ୍ଦ ହେବା ଉପରକୁ ଆସିଗଲା । ମଝିରେ ମଝିରେ ଗୁରୁ ପାଞ୍ଚଥର ବାହାରି ଶେଷରେ ପୁରାପୁରି ବନ୍ଦ ହୋଇ ଯାଇଥିଲେ ମଧ୍ୟ ମୁଁ ଯେ ପିଲାମାନଙ୍କ ପାଇଁ ଭଲ ଲେଖିପାରେ ଏକଥାଟି ସମସ୍ତଙ୍କୁ ଜଣାଇ ଦେଲା ଓ ମୋତେ ମଧ୍ୟ ସାହସ ତଥା ଉତ୍ସାହ ଦେଲା । ଆଜି ବହୁଲୋକଙ୍କର ଦାବୀ ସେଇଟି କେମିତି ପୁଣି ବାହାରନ୍ତା । କିନ୍ତୁ ଯେତେବେଳେ ଠିକ୍ କଲି ଯେ ପିଲାଙ୍କ ପାଇଁ ପାଞ୍ଚଶହଟି ବହି ଲେଖିଦେବି ସେତେବେଳେ ଆଉ ସେହି 'ଶିଶୁସଂସଦ'ର ପୁନଃ ପ୍ରକାଶର ଆବଶ୍ୟକତା ଦେଖିଲି ନାହିଁ ।

ଦେଶର ବହୁ ସମସ୍ୟା, ଆନ୍ତର୍ଜାତିକ ସ୍ଥିତି ସାଙ୍ଗକୁ ଜ୍ଞାନ ବିଜ୍ଞାନର ପ୍ରଗତି ବିଷୟରେ ବହୁ ସଂଖ୍ୟକ ଲେଖା ପ୍ରକାଶ ପାଇଲେ ଯାଇ ମୋ ହାତ ଦୋରସ୍ତ ହେଉଛୁ ବିଶ୍ୱକୋଷ ଲେଖିବା ପାଇଁ ଏହା ପ୍ରମାଣିତ ହେବ ଓ ଯାହାକୁ କୁହନ୍ତି ମୋ ହାତ ଫିଟିଯିବ । ଗୋଟିଏ ସାପ୍ତାହିକ କାଗଜ ବାହାର କରି ତାହାର ନାମ ରଖିଲି "ଲୋକଶାସନ" । ଅଳ୍ପ ଦିନ ଭିତରେ ସେଇଟି ବେଶ୍ ନାମ କଲା । କ୍ରମେ ଅଧିକରୁ ଅଧିକ ସଂଖ୍ୟାରେ ଛପା ହେଲା । ଗୋଟାଏ ସମୟରେ ସେଥିରେ ପ୍ରକାଶ ପାଉଥିବା କେତେ ଗୁଡ଼ିଏ ଲେଖାକୁ ଓଡ଼ିଶା ଶାସନରେ ଥିବା ସର୍ବୋଚ୍ଚ ନେତାମାନେ ପସନ୍ଦ କଲେ ନାହିଁ । କୌଣସି ସରକାରୀ ବିଜ୍ଞାପନ ଉପରେ ଲୋକ ଶାସନ ନିର୍ଭର ନକରୁଥିବାରୁ ମୁଁ ଟିକଏ ହେଲେ ବିଚଳିତ ହେଲି ନାହିଁ—ଯଦିଓ ମୁଁ ଜଣେ ନିବାଗଦ ଲୋକ ବୋଲି ପ୍ରଚାର କରିଗଲା । ଯେଉଁ କାରଣରୁ ଶିଶୁସଂସଦ ବନ୍ଦ କରିଥିଲି ଠିକ୍ ସେହି କାରଣରୁ ଲୋକ ଶାସନ ମଧ୍ୟ ବନ୍ଦ ହୋଇଗଲା ।

୧୯୫୯ ଜୁନ ବେଳକୁ ପ୍ରସ୍ତୁତି ଆରମ୍ଭ କରିଦେଲି ସୁଖପାଠ୍ୟ ଏନ୍‌ସାଇକ୍ଲୋପିଡିଆର ପାଣ୍ଡୁଲିପି ତିଆରି କରିଦେବା ପାଇଁ । ଏ ବିଷୟରେ କହିଲା ପରରୁ ଆଉ ଗୋଟିଏ କଥା କହିଦେଲେ ଭଲ ହେବ । ଗୋଟାଏ ବର୍ଷ ଚିନ୍ତା କଲି ମୁଁ ଯେଉଁ ପୁସ୍ତକ ସେଟ୍‌ଟି ଲେଖିବାକୁ ଯାଉଛୁ ତାହାର ଆକାର କେମିତି ହେବ । ବଙ୍ଗ, ମହାରାଷ୍ଟ୍ର, ଦିଲ୍ଲୀ, ବମ୍ବେ ବା ମାନ୍ଦ୍ରାଜର ଲୋକେ ସହଜରେ ଅନୁମାନ କରିପାରିବେ ନାହିଁ ମୋ ପାଇଁ କେଉଁ ଗୁଡ଼ିକ ହୋଇଥିବ ଚିନ୍ତାର ବିଷୟ । ପ୍ରଥମଟି ହେଲା ଓଡ଼ିଆ

ପାଠକଙ୍କର ଆର୍ଥିକସ୍ଥିତି । ଅଳ୍ପ ମୂଲ୍ୟର ବହି କିଣିବା ଅବସ୍ଥାରେ ମଧ୍ୟ ଲକ୍ଷ ଲକ୍ଷ ଲୋକ ନଥାନ୍ତି । ଦ୍ୱିତୀୟତଃ ଶିକ୍ଷା ଦିଗରେ ଓଡ଼ିଶା ଅତ୍ୟନ୍ତ ପଛୁଆ । ତୃତୀୟତଃ ଓଡ଼ିଶାର ଲୋକସଂଖ୍ୟା ଯେତେବୋଲି ଜନଗଣନା ରିପୋର୍ଟରେ ଅଛି ସେଥିରୁ କେହି ଯେମିତି ଅନୁମାନ ନ କରନ୍ତି ଯେ ପ୍ରାୟ ସେତିକ ଲୋକେ ଓଡ଼ିଆ ଭାଷାଭାଷୀ ହୋଇଥିବେ । ୧୯୮୧ ଜନଗଣନା ରିପୋର୍ଟରେ ଓଡ଼ିଶାର ଲୋକସଂଖ୍ୟା ୨ କୋଟି ୮୨ ଲକ୍ଷ ବୋଲି ଲେଖାଅଛି । କିନ୍ତୁ ସେମାନଙ୍କ ଭିତରୁ ପ୍ରାୟ ୩୦ ଲକ୍ଷ ହେଉଛନ୍ତି ଭିନ୍ନ ଭିନ୍ନ ଗୋଷ୍ଠୀର ଆଦିବାସୀ । ସେମାନେ ବହୁ ଭିନ୍ନ ଭିନ୍ନ ଭାଷାରେ କଥାବାର୍ତ୍ତା କରନ୍ତି— ସେମାନଙ୍କର ଲିପି ନାହିଁ । ଓଡ଼ିଆ ବୁଝନ୍ତି ସିନା ପଢ଼ନ୍ତି ନାହିଁ ବୋଲି କହିଲେ ଚଳେ । କେବଳ ଯେଉଁମାନେ ସ୍କୁଲ କଲେଜକୁ ଆସୁଛନ୍ତି ସେହିମାନେ ଓଡ଼ିଆ ପଢ଼ୁଛନ୍ତି । ଓଡ଼ିଶା ରାଜ୍ୟର ଦକ୍ଷିଣ ଅଂଶରେ ଥିବା ଦୁଇଟି ବଡ଼ ବଡ଼ ଜିଲାରେ ବହୁ ସଂଖ୍ୟକ ତେଲୁଗୁ ଭାଷାଭାଷୀ ଲୋକ ଅଛନ୍ତି । ଏହିଭଳି ପରିସ୍ଥିତିରେ ଓଡ଼ିଆ ବହିର ବହୁଳ ପ୍ରସାର ବା ବିକ୍ରିର ସମ୍ଭାବନା ନିଶ୍ଚିତ ଭାବରେ ସୀମିତ । ୧୯୮୭ରେ ମଧ୍ୟ ଲେଖକମାନେ ସରକାରଙ୍କ ଦ୍ୱାରସ୍ଥ ହେଉଛନ୍ତି ବହି ବିକିବା ପାଇଁ । ଖୋଲା ବଜାରରେ ବହି ବିକି ଆଶାନୁରୂପ ପଇସା ପାଇବାର ଅଭିଜ୍ଞତା କାହାରି ନାହିଁ ବୋଲି କହିଲେ ଚଳେ । ଲେଖାକୁ ବୃତ୍ତି ବୋଲି ଧରିବା ଲୋକ ଆଜି ମଧ୍ୟ ଦି'ଗୁରିଜଣ ଥିବେ କି ନାହିଁ ସନ୍ଦେହ । ଅନେକ ଲୋକଙ୍କର ସରକାରୀ ବେସରକାରୀ ଚାକିରି ବା ବଣିଜ ବେପାର ଅଛି । ସେମାନେ ବହି ଲେଖିଲେ ମଧ୍ୟ କଲମକୁ ଭରସା କରି ଚଳିପିବେ ଏହି ଅବସ୍ଥା ଆସିନାହିଁ । ୧୯୬୦ ଦଶନ୍ଧି ଆରମ୍ଭ ପୂର୍ବରୁ ପରିସ୍ଥିତିଟି ଏହି ଦୃଷ୍ଟିରୁ ଆହୁରି ହତାଶାଜନକ ଅବସ୍ଥାରେ ଥିଲା । ଏଣେ ପୁଣି ବିଶ୍ୱବିଦ୍ୟାଳୟ ପ୍ରକାଶ କରିଦେବ ଗୋଟିଏ କୋଡ଼ିଏ ଭଲ୍ୟୁମ୍‌ରେ ସେଟ୍ । ତାହା ସହିତ ପ୍ରତିଯୋଗିତା କରିବାକୁ ପଡ଼ିବ । ବହୁତ ଭାବିଚିନ୍ତି ଠିକ କଲି ଅଢ଼େଇ ଟଙ୍କା (ଦୁଇଶହ ପଚାଶ ପଇସା) ମୂଲ୍ୟରେ ଅଣୀଖଣ୍ଡ ବହି ବାହାର କରିଦେବି । ସେତିକବେଳେ ମୋର ବ୍ରିଟାନିକାର ଆରମ୍ଭ କଥା ମନେ ପଡ଼ିଗଲା । ଖୋଲା ଫର୍ମାଟ୍‌ରେ ଛପା ହେଲା । ମୂଲ୍ୟ ରଖାଗଲା ମାତ୍ର ଛ ପେନ୍‌ସ । ଲୋକେ ଗୋଟିକ ପରେ ଗୋଟିଏ ଖବରକାଗଜ ଭଳି କିଣିନେଲେ । ପରେ ତାଙ୍କୁ ବନ୍ଧାଇ ଦେଲେ । କିଏ ଗୃହଖଣ୍ଡରେ ତ କିଏ ପାଞ୍ଚଖଣ୍ଡରେ । ବ୍ରିଟାନିକା ପ୍ରକାଶକ

୧୭୭୧ରେ ଡିନଖଣ୍ଡରେ ବନ୍ଧାଇ ଶେଷରେ କେତେଗୁଡ଼ିକୁ ବନ୍ଧି ସେହି ଭାବରେ ବିକଲେ । ସେହି ଅନୁସାରେ ପାଣ୍ଡୁଲିପି ପ୍ରସ୍ତୁତ କରି ଚାଲିଲି । ସବୁଗୁଡ଼ିକୁ ସଂକ୍ଷେପରେ ଲେଖୁଥାଏ । ଖଣ୍ଡିଏ ପ୍ରଚାର ପତ୍ରରେ ସୂଚନା ଦେଲି ଯେ ମୁଁ ଅଶୀଖଣ୍ଡ ବହି ଲେଖିବି । ସେତେବେଳେ ମଧ୍ୟ ଏନ୍‌ସାଇକ୍ଲୋପିଡ଼ିଆ କଥା କହୁ ନଥାଏ । କିଛିଦିନ ପରେ ମୋ ମନ ସେଥିରେ ମାନିଲା ନାହିଁ । ଏତେ ସଂକ୍ଷେପରେ କଅଣ ବା ଲେଖାଯାଇ ପାରିବ ? ଦ୍ୱିତୀୟରେ ବର୍ଣ୍ଣମାଳାନୁକ୍ରମେ ଲେଖିଗଲେ ସମସ୍ତେ ଯେ ସବୁ ଗୁଡ଼ିକ ସାଇତି ରଖି ବନ୍ଧାଇବେ ଏ ବିଷୟରେ କିଛି ନିଶ୍ଚିତତା ନାହିଁ । ମଫସଲରେ ସୁବିଧା ମଧ୍ୟ ନାହିଁ । ତେଣୁ ସେ ଉଦ୍ୟମ ସେଇଠି ରହିଲା । ତାହାପରେ ଠିକ କଲି ଖଣ୍ଡିକର ମୂଲ୍ୟ ଦଶଟଙ୍କା ରଖି ୪୦ ଖଣ୍ଡରେ ଶେଷ କରିଦେବି । ପୁଣିଥରେ ମୂଳରୁ ଯୋଜନା । ଚାରିମାସ ଚାଲିଗଲା । ଶେଷରେ ପୁଣି ମନ ମାନିଲା ନାହିଁ ।

୧୯୫୯ ଜୁନରେ ଠିକ କଲି ୬୦ ଖଣ୍ଡରେ ବହି ସେଟଟି ସମ୍ପୂର୍ଣ୍ଣ ହେବ—ପ୍ରତି ଭଲ୍ୟୁମ୍‌ରେ ପ୍ରାୟ ୨୦୦ ପୃଷ୍ଠା ଲେଖା ରହିବ । ମନପୂରାଇ ଲେଖିହେବ ଅନେକ ବିଷୟରେ ।"ଶେଷ ପ୍ରସ୍ତୁତି" ଏଇଥିପାଇଁ ଚାଲିଲା । ଅ, ଅଙ୍କ, ଅଙ୍ଗାର, ଅଙ୍ଗାରକାମ୍ଳ, ଅକ୍‌ସିଜେନ୍, ଅଗର ଅଗର, ଅଜଗର, ଅଞ୍ଜନା, ଅଙ୍ଗୁଳି, ଅଣ୍ଡା, ଅଗ୍ନି, ଅକ୍ଟୋପସ ପ୍ରଭୃତି ହେଲା ବିଜ୍ଞାନ ବିଷୟ । ଓଡ଼ିଆ ଭାଷାରେ ଗଣିତକୁ ଅଙ୍କ ବୋଲି କୁହାଯାଏ । ମନୁଷ୍ୟ ସଭ୍ୟତାର କେଉଁ ସ୍ତରରେ ମନୁଷ୍ୟ ଗଣିବା ଶିଖିଲା ଓ ସେଇଠୁ ମିଶାଣ, ଫେଡ଼ାଣ, ଗୁଣନ, ହରଣ ବାହାରକଲା ତାହାର ସୂଚନା ଦେବାକୁ ହେବ ଓ ଅଙ୍କ ହିଁ ସବୁପାଠ ଭିତରେ ପୂର୍ଣ୍ଣତା ହାସଲ କରିଛି ବୁଝାଇବାକୁ ପଡ଼ିବ । ବିନୋବାଙ୍କର ଗୋଟିଏ କଥାକୁ ଟିପି ପକାଇଲି । ଭଗବାନଙ୍କ ପରକୁ ପୂର୍ଣ୍ଣତାରେ ଅଙ୍କ ହିଁ ସ୍ଥାନ ପାଇଛି । ଅନ୍ୟ ସବୁପାଠ ସେଭଳି ଦାବି କରିପାରିବେ ନାହିଁ । ସାଧାରଣ ଉଦାହରଣ ଦେଇ ଏଇଟିକୁ ବୁଝାଇ ଦେବାକୁ ହେବ । ସବୁ ବିଜ୍ଞାନ ମୂଳରେ ଅଙ୍କ ହିଁ କେନ୍ଦ୍ରବିନ୍ଦୁ— ଏହି କଥାଟିକୁ ଅତି ଭଲ ଭାବରେ ବୁଝାଇବାକୁ ପଡ଼ିବ । ଯାହାକୁ କୁହନ୍ତି 'ଅଙ୍କର ଦର୍ଶନ' ବୁଝାଇବାକୁ ପଡ଼ିବ । 'ଅ' ଯେତେବେଳେ ବର୍ଣ୍ଣମାଳାର ପ୍ରଥମ ଅକ୍ଷର ତା' ବିଷୟରେ ଭାଷାତତ୍ତ୍ୱକୁ ମନରେ ରଖି ବୁଝାଇବାକୁ ହେବ । କାରଣ ଭଗବାନଙ୍କର ମନୁଷ୍ୟକୁ ଶ୍ରେଷ୍ଠ ଦାନ ହେଉଛି ଭାଷା ।

ଅଙ୍ଗାରଟି ସମ୍ପୂର୍ଣ୍ଣ ଭାବରେ ବିଜ୍ଞାନ ବିଷୟ ହୋଇଥିବାରୁ ସେଇଟିକୁ ଯଥା ଭଲ ଭାବରେ ବୁଝାଇଦେଇ ହେବ ତେବେ ଆଉସବୁ ମୌଳିକ ଉପାଦାନ ବା ଏଲିମେଣ୍ଟ ଉପରେ ସହଜରେ ଲେଖିଦେଇ ହେବ । ଅକ୍ସିଜେନ (Oxygen) ଶବ୍ଦଟିକୁ ଯେମିତି ସେମିତି ରଖାଯିବ ନା ଅମ୍ଳଜାନ ବୋଲି ଲେଖାଯିବ ସେ ବିଷୟରେ ଆଠ ଦଶଜଣଙ୍କ ସହିତ ଆଲୋଚନା କଲାପରେ 'ଅକ୍ସିଜେନ' ଶବ୍ଦଟିକୁ ଓଡ଼ିଆ ଭାଷାରେ ସ୍ଥାନ ଦେଇଦେବା ପାଇଁ ସ୍ଥିର କଲି । ଏହି ଦୁଇଟି ବିଷୟ ସାହାଯ୍ୟରେ ସମଗ୍ର ବିଶ୍ୱର ସବୁପଦାର୍ଥ କେଉଁଥିରେ ତିଆରି ବୁଝାଇଦେଲେ ପାଠକଙ୍କ ମନକୁ ପାଇଲି ଭଳି ଭବିଷ୍ୟତରେ ବହୁ ପ୍ରବନ୍ଧର ବିଷୟବସ୍ତୁ ବୁଝାଇଦେବା ସହଜ ହେବ । ଅଗର ଅଗର ଜାପାନରୁ ଅଣା ଯାଉଥିଲା । ଓଡ଼ିଶାର ଚଳାକରେ ତାକୁ ସଂଗ୍ରହ କରାଯାଇପାରିଲା ଡକ୍ଟର ପ୍ରାଣକୃଷ୍ଣ ପରିଜା ଏବଂ ଡକ୍ଟର ବଂଶୀଧର ମିଶ୍ରଙ୍କ ଉଦ୍ୟମରେ । ଅଗ୍ନି ବିଷୟରେ ଲେଖିବା ପାଇଁ ବହୁତ କଷ୍ଟ ପ୍ରସ୍ତୁତି ଲୋଡ଼ା । ବିଜ୍ଞାନ ଦୃଷ୍ଟିରୁ ତ ମାନବ ସଭ୍ୟତା ଉପରେ ଅଗ୍ନିର ପ୍ରଭାବ ଦୃଷ୍ଟିରୁ ତଥ୍ୟ ସଂଗ୍ରହ ହୋଇଗଲା ଗୋଟାଏ ସମସ୍ୟା । ଅଙ୍ଗୁଳି ପ୍ରବନ୍ଧରେ ସୂଚାଇ ଦେବାକୁ ହେବ ମନୁଷ୍ୟକୁ ଦ୍ୱି'ଗୋଡ଼ିଆ କରିଦେଲାପରେ ହାତକୁ ପ୍ରକୃତି ଚାଲିବା ଦାୟିତ୍ୱରୁ ମୁକ୍ତ କରିଦେଲା ଓ ସେହି ହାତ ବହୁତ କଷ୍ଟ କରିବ ବୋଲି ପାଞ୍ଚଟିଯାକ ଆଙ୍ଗୁଠିକୁ ଅତି କୌଶଳର ସହିତ ଖଞ୍ଜିଲା ଓ ମନୁଷ୍ୟକୁ ପ୍ରକୃତ ଅର୍ଥରେ ମନୁଷ୍ୟ ପଦବାଚ୍ୟ କରିଦେଲା । ଅନ୍ୟ କେତେକ ପ୍ରାଣୀଙ୍କର ଅଙ୍ଗୁଳି ଥିଲେ ମଧ୍ୟ ମନୁଷ୍ୟ ହାତର ଅଙ୍ଗୁଳିଖଞ୍ଜା କୌଶଳରେ ପ୍ରକୃତି ଚରମ ବାହାଦୁରି ଦେଖାଇଛି । ଅଣ୍ଡା ଉପରେ ଲେଖିବାବେଳେ ପୂର୍ଣ୍ଣଖାଦ୍ୟ କାହାକୁ କାହିଁକି କୁହ ଯାଏ— ତାହାର ସୂଚନା ଦେବାକୁ ହେବ । ଏହି ପ୍ରବନ୍ଧଟି ହୁଏତ ଦୀର୍ଘ ହୋଇଯିବ । ଅକ୍ଟୋପସ ବା ଅଷ୍ଟପଦୀଟି ସମୁଦ୍ରର ଜୀବ—ତା' ବିଷୟରେ ଭଲ ଭାବରେ ଲେଖାଯିବ । ଅଜଗର ଗୋଟାଏ ସାପ । ସାପର ଶରୀର ଗଠନ ବିଷୟରେ ଭଲ ଭାବରେ ବୁଝାଇଦେଲେ ଭବିଷ୍ୟତରେ ବହୁ ପ୍ରକାର ସାପଙ୍କ ବିଷୟରେ ସଂକ୍ଷେପରେ ଲେଖିହେବ । ଧରିନେଲି ଯେ ଯେତୋଟି ବିଷୟ ଲେଖାଯିବ ସବୁଗୁଡ଼ିକ ଅତି ଯତ୍ନର ସହିତ ସଂପାଦିତ ହେବ । ସେଥିପାଇଁ ସ୍ୱତନ୍ତ୍ର ଭାବରେ ପଢ଼ିବାକୁ ଓ ନୋଟ୍ କରିବାକୁ ପଡ଼ିବ ।

୧୯୬୦ ଜୁନ୍ ସୁଦ୍ଧା ପାଣ୍ଡୁଲିପି ପ୍ରସ୍ତୁତ ହୋଇଗଲା । ପୂର୍ବରୁଥିଲା ଓ ନୂଆକରି ତିଆରି କରିବାକୁ ହେବ କେତେଗୁଡ଼ିଏ ବ୍ଲକ । କେବଳ 'ଅ' ପାଇଁ ନଅଟି ଚିତ୍ର ବଛାଗଲା । ଶରୀରର କେଉଁଠାରୁ ଓ କିଭଳି ଭାବରେ ସ୍ୱରର ଉତ୍ପତ୍ତି ତାହା ବୁଝାଇବାକୁ ଗଲେ ଫୁସ୍‌ଫୁସ୍, ପବନ ନଳୀ, ଜିଭର ଚିତ୍ର ଲୋଡ଼ା । ପ୍ରଥମ ଅବସ୍ଥାର ଚିତ୍ର ଲେଖାରୁ ବର୍ଣ୍ଣମାଳାର ସୃଷ୍ଟି ପର୍ଯ୍ୟନ୍ତ ବହୁ କଥା ବୁଝାଇବା ପାଇଁ ବ୍ଲକ ତିଆରି କରିବାକୁ ପଡ଼ିବ । ବହୁସଂଖ୍ୟକ ଚିତ୍ର ନ ରହିଲେ ବହିଟି ସୁନ୍ଦର ତ ହେବନାହିଁ—ପାଠକମାନଙ୍କ ପାଇଁ ଉପଯୋଗୀ ମଧ୍ୟ ହେବ ନାହିଁ ।

## ବହିଟିର ନାମକରଣ

ଏନ୍‌ସାଇକ୍ଲୋପିଡିଆର ଓଡ଼ିଆ କଅଣ ହେବ ସେହି ବିଷୟରେ ଠିକିଏ ଭାବିବାକୁ ପଡ଼ିଲା । ପୂର୍ବରୁ ସମସ୍ତେ ଲେଖୁଥିଲେ 'ବିଶ୍ୱକୋଷ'— ଏବେ ମଧ୍ୟ ସେମିତି ଲେଖୁଛନ୍ତି । କିନ୍ତୁ ସେହି ନାମଟି ମୋତେ ଭଲ ଲାଗୁନଥାଏ । 'କୋଷ' କହିଲେ ଯାହା ବୁଝାଉଛି ଏନ୍‌ସାଇକ୍ଲୋପିଡିଆ ତାହାଠାରୁ ଅଧିକ ବ୍ୟାପକ । ଗ୍ରୀକ ଭାଷାର ଏନ୍ (En) ଅର୍ଥାତ୍ In ଇନ୍ ବା ଭିତରେ; Kyklosର ଅର୍ଥ ସାଇକ୍ଲୋ ବା ଚକ୍ର, 'ପିଡିଆ' (Paedia)ର ଅର୍ଥ ଜ୍ଞାନ ବା ଶିକ୍ଷା— ଏଇଥିରୁ ତ Encyclopaedia ଶବ୍ଦର ସୃଷ୍ଟି । ଚକ୍ରର ଆରମ୍ଭ (ବା ଆଦ୍ୟ) ନାହିଁ ବା ଶେଷ (କିମ୍ବା ଅନ୍ତ) ନାହିଁ । ଏଥିରେ ଯେକୌଣସି ପଏଣ୍ଟଟିକୁ ଆଦ୍ୟ ବା ଅନ୍ତ ବୋଲି ଧରାଯାଇ ପାରେ । ତେଣୁ ଏହାକୁ 'ଜ୍ଞାନଚକ୍ର' ବୋଲି କୁହାଗଲେ ଅଧିକ ଠିକ ହେବ । ସେଇ ଅନୁସାରେ ଡିଜାଇନ୍‌ଟିଏ କରି ବ୍ଲକ ତିଆରି କରିଦେଲି । ତଥାପି ମନ ମାନୁ ନଥାଏ । ଆଉ ଟିକିଏ ଭଲ ଶୁଣାଯାଆନ୍ତା କି ! ହଠାତ୍ ଭାବିଲି 'ମଣ୍ଡଳ' ଶବ୍ଦଟି ବ୍ୟବହାର କରାଯାଉ । ଏହାର ବ୍ୟବହାର ଆମ ଶାସ୍ତ୍ର ପୁରାଣରେ ରହିଛି· ଏଥିରୁ ବୃ·ତ· କିଛି ବୁଝାଯାଉଛି । 'ଜ୍ଞାନମଣ୍ଡଳ' ନାମ ରହିଲା । ବହୁଲୋକ ଏହି ନାମକୁ ପସନ୍ଦ କଲେ— କେତେଜଣ କହିଲେ 'କୋଷ' ଶବ୍ଦଟି ଗୃହୀତ ହୋଇ ସାରିଥିବା ସ୍ଥଳେ ଏହି ନୂଆ ନାମଟି ପାଠକ ମନରେ ଭ୍ରମ ଧାରଣ ସୃଷ୍ଟି କରିବ । ଆମ ବହିର ଗୋଟିଏ ଖାସ ପ୍ରତୀକ ବା ସିମ୍ବଲ ରହୁ ବୋଲି ଯେତେବେଳେ ବିଚାରିଲି ସେତେବେଳେ କେତେଗୁଡ଼ିଏ ପ୍ରସ୍ତାବ ଆସିଲା । ଜ୍ଞାନ ବିତରଣ

କରିବାଟି ଲକ୍ଷ୍ୟ ଥିବାରୁ 'ଘାପରେ ସଳତା' ବା 'ଗୋଲାପଫୁଲ' ରହୁ ବୋଲି ପ୍ରସ୍ତାବ । ଶେଷରେ ଠିକ ହେଲା ଗୋଟିଏ ବୃତ୍ତ ମଧ୍ୟରେ ପ୍ରଶ୍ନ ଚିହ୍ନଟିଏ ରହିବ । ବୃତ୍ତ ବା ମଣ୍ଡଳ ସୂଚାଇ ଦେବ ଜ୍ଞାନର ଅନ୍ତ ବୋଲି କିଛି ନ ଥିବାରୁ ଏଇଥିରେ ବସି ଘୂରିଲେ ମନୁଷ୍ୟ ଜ୍ଞାନ ଅର୍ଜନ କରି ଚାଲିଥିବ । ପୁରୁଣା ନୂଆ ଜ୍ଞାନ ବୋଲି କିଛିନାହିଁ । ବୈଜ୍ଞାନିକମାନେ ଅଣୁ ପରମାଣୁ ବିଷୟରେ ଯେଉଁ ସିଦ୍ଧାନ୍ତରେ ପହୁଞ୍ଚିଲେ ତାହାର ସୂଚନା କଣାଦ ଦେଇ ସାରିଥିଲେ ଓ ହିନ୍ଦୁ ଦର୍ଶନ ଶାସ୍ତ୍ରରେ ଧର୍ମ ଦର୍ଶନର ଅନେକ ଋଷି ମୁନି ଧାର୍ମିକ ବ୍ୟକ୍ତି 'ଜଗତ'ର ସୃଷ୍ଟିବେଳେ ସେହିଭଳି କହିଯାଇଛନ୍ତି । ଭିତରେ ପ୍ରଶ୍ନ ଚିହ୍ନଟିଏ ଦେବାର ଅର୍ଥ ହେଲା—ଗୋଟିଏ ଜ୍ଞାନମଣ୍ଡଳ ସେଇ୍ ଭିତରେ ସବୁପ୍ରଶ୍ନର ଉତ୍ତର ପ୍ରତ୍ୟକ୍ଷ ବା ପରୋକ୍ଷ ଭାବରେ ଅଳ୍ପ ବହୁତେ ରହିଛି । ପାଠକ ଯଦି ପ୍ରଶ୍ନ କରିବାର କଳା ହାସଲ କରିବେ ଏନ୍‌ସାଇକ୍ଲୋପିଡିଆରୁ ତାହାର କିଛି ନା କିଛି ଉତ୍ତର ପାଇବେ । ଜ୍ଞାନମଣ୍ଡଳ କାହାକୁ ହେଲେ ନିରାଶ କରିବ ନାହିଁ । ଏହି ପ୍ରତୀକ ଭିତରେ ଏହି ଦୁଇଟି ଅର୍ଥ ରହିଯାଉଛି । ୧୯୭୫ରେ ବ୍ରିଟାନିକାର ଯେଉଁ ପଞ୍ଚଦଶ ସଂସ୍କରଣଟି ନୂତନ ବେଶ ପିନ୍ଧି ପ୍ରକାଶ ପାଇଲା ସେଥିର ମୁଖବନ୍ଧର ଶିରୋନାମା ରହିଛି "Circle of Learning" । ଏହାର ଆକ୍ଷରିକ ଅର୍ଥ ହେଲା 'ଜ୍ଞାନମଣ୍ଡଳ' । ଏହି ପ୍ରତୀକଟି ତୃତୀୟ ଖଣ୍ଡ ପ୍ରକାଶ ପାଇଲା ପରେ ଯାଇ ସ୍ଥିରହେଲା ।

୧୯୬୦ ନଭେମ୍ବର ୧୫ ତାରିଖ ବେଳକୁ ବହିଟିର ଛପା କାର୍ଯ୍ୟ ଶେଷ ହୋଇଗଲା । ୧୮୪ ଛପା ପୃଷ୍ଠା ସାଙ୍ଗକୁ ବାର ପୃଷ୍ଠାର ଚିତ୍ର । ୧୯୬ ବା ୨୦୦ ପୃଷ୍ଠାର ବହିଟିର ମୂଲ୍ୟ ରଖାଗଲା ମାତ୍ର ଦଶଟି ଟଙ୍କା । ବନ୍ଧାଇ କରାଗଲା ।

ସେତେବେଳକୁ ଓଡ଼ିଶାର ପାଠକମାନେ ଏହି ଧରଣର ବହି ସହିତ ସେଭଳି କିଛି ପରିଚିତ ହୋଇ ନଥାନ୍ତି । ବ୍ରିଟାନିକା ସେଇ୍ଟିକୁ ଅଳ୍ପ ସଂଖ୍ୟକ ଶିକ୍ଷିତ ଲୋକେ ଦେଖି ଥାଆନ୍ତି । ସମଗ୍ର ଓଡ଼ିଶାରେ ସେ ବହି ସେଇଟି ପଚାଶ ହଜାର ଜଣଙ୍କ ପାଖରେ ଥାଏ କି ନା ସନ୍ଦେହ । ଥିଲେ ମଧ୍ୟ ପଢ଼ିଥାଆନ୍ତି ଅଳ୍ପ ସଂଖ୍ୟକ ଲୋକ । ତେଣୁ ସେମାନଙ୍କୁ ପ୍ରଥମେ ବୁଝାଇବାକୁ ପଡ଼ିବ ବିଶ୍ୱକୋଷ ବୋଇଲେ କଅଣ ବୁଝାଏ । ବହୁଦିନ ଧରି

ମୁଣ୍ଡରେ ଏହିକଥା ଖେଳିଲା । ଶେଷକୁ ସାହସ କରି ଲେଖିଦେଲି--"ମୁଁ ମନୁଷ୍ୟ, ଅନ୍ୟ ପ୍ରାଣୀମାନଙ୍କ ତୁଳନାରେ ମୋର ଗୋଟିଏ ଉନ୍ନତ ମସ୍ତିଷ୍କ ଅଛି । ତେଣୁ ଜଗତର ଯେ କୌଣସି କଥାଜାଣିବା ପାଇଁ ମୋର ଇଚ୍ଛା ହେବ । ମୁଁ ସହଜରେ ଜାଣିବ ଓ ଜାଣିବାର ସୁଯୋଗ ପାଇବ । ମୁଁ ମନୁଷ୍ୟ ହୋଇ ଥିବାରୁ ଜ୍ଞାନହାସଲ କରିବାଟା ମୋର ଜନ୍ମଗତ ଅଧିକାର, ସେ ଅଧିକାରରୁ ମୋତେ କେହି ହେଲେ ବଞ୍ଚିତ କରି ପାରିବେ ନାହିଁ । ···ଦିନେ କେହି ଜଣେ ନିଶ୍ଚେ ଏହିଭଳି ଚିନ୍ତାକରିଥିଲେ । ସେ ତାଙ୍କ ଭାବନାକୁ ଅନ୍ୟ ମାନଙ୍କ ଆଗରେ ପ୍ରକାଶ କରିଥିଲେ ଓ ତାଙ୍କ ସହିତ ସେମାନେ ଏକମତ ହୋଇଥିଲେ । ସେହି ଆଲୋଚନା ଓ ସେହି ଭାବନାରୁ ଜନ୍ମ ଲଭ କଲା ଏନ୍‌ସାଇକ୍ଲୋପିଡ଼ିଆ, ଜ୍ଞାନମଣ୍ଡଳ ବା ଜ୍ଞାନକୋଷ" । ଦୁଇ ଶହ ବର୍ଷ ପୂର୍ବେ ପ୍ରଥମେ କିଭଳି ଇଂରାଜୀ ଭାଷାରେ ଏନ୍‌ସାଇକ୍ଲୋପିଡ଼ିଆ ପ୍ରକାଶିତ ହେଲା ତାହାର ଉଲ୍ଲେଖ କରି ଏହି ଦୁଇଶହ ବର୍ଷ ଭିତରେ ଜ୍ଞାନ କିଭଳି ବୃଦ୍ଧିପାଇଛି ତାହାର ସୂଚନା ଦିଆଗଲା । ଆଧୁନିକ ଜ୍ଞାନମଣ୍ଡଳ କିଭଳି ହେବା ଦରକାର ସେ ବିଷୟରେ ଏଚ୍. ଜି. ଓ୍ୱେଲସ୍‌ଙ୍କ ଉକ୍ତିକୁ ଏହିଭଳି ଉଦ୍ଧାର କରାଗଲା—"ଏନ୍‌ସାଇକ୍ଲୋପିଡ଼ିଆ ବହି ଗୁଡ଼ିକ ଧାଡ଼ି ହୋଇ ଥୁଆ ହୋଇଥିବ । ପାଠକ ସେଥିଭିତରୁ ଯେତେବେଳେ ଇଚ୍ଛା କରିବ ସହଜରେ ପାଇଯିବ ଜ୍ଞାନର ସମସ୍ତ ବିଭାଗର ନିର୍ଭୁଲ ତଥ୍ୟ । ମାନବସମାଜର ତଥା ପୃଥିବୀର ଇତିହାସ ଓ ବ୍ରହ୍ମାଣ୍ଡର ଜ୍ଞାନତାକୁ ମିଳିଯିବ ସେ ବୁଝିଲାଭଳି ଭାଷାରେ । ସେଥିରେ ଯାହା ଲେଖାଯାଇଥିବ ତାକୁ ବୁଝିବାକୁ ଯେପରି ତାକୁ ପରିଶ୍ରମ କରିବାକୁ ପଡ଼ିବ ନାହିଁ । ଦୁନିଆର ଚାରିଆଡ଼େ ମନୀଷୀମାନେ କିଭଳି ଚିନ୍ତା କରୁଛନ୍ତି ତାହା ସେ ଜାଣିପାରିବ ତାହାର ସେହି ପୁସ୍ତକରୁ । ପୃଥିବୀର ପ୍ରତ୍ୟେକ ବୁଦ୍ଧିଜୀବୀଙ୍କର ଏହି 'ବିଶ୍ୱ ଏନ୍‌ସାଇକ୍ଲୋପିଡ଼ିଆକୁ' କିଛି ନା କିଛି ଦାନ ଥିବ, ଏଇଟି ହୋଇଥିବ ଗୋଟିଏ ଜୀବନ୍ତ ପୁସ୍ତକ—ଏହାର ବୃଦ୍ଧି ଚାଲିଥିବ । ପୃଥିବୀର ଭାବୁକମାନେ ସେମାନଙ୍କର ଜ୍ଞାନଜଳ ସିଞ୍ଚି ଏହି ବର୍ଦ୍ଧିଷ୍ଣୁ ଜ୍ଞାନବୃକ୍ଷକୁ ବଞ୍ଚାଇ ରଖିଥିବେ । ପ୍ରତ୍ୟେକ ବିଶ୍ୱବିଦ୍ୟାଳୟ ଓ ଗବେଷଣା କେନ୍ଦ୍ର ଏହାପାଇଁ ଖାଦ୍ୟ ଯୋଗାଇ ଦେଉଥିବେ । ଏଇଟି ହେବ ପୃଥିବୀର ଓ ମାନବ ସଂସ୍କୃତିର ସର୍ବ ଶ୍ରେଷ୍ଠ ପୁରାଣ । ଏହି ପୁସ୍ତକଟି ସମଗ୍ର ପୃଥିବୀକୁ ଗୋଟିଏ ମାନସିକ ରଜ୍ଜୁରେ ବାନ୍ଧି ଦେଇଥିବ ।" ଏହିଭଳି ଗୋଟିଏ ସେହି ପୁସ୍ତକ

ପ୍ରକାଶ କରିବା ପାଇଁ ଆବଶ୍ୟକ ଲୋକବଳ ସାଙ୍ଗକୁ ଅର୍ଥବଳ । ଏହାରି ଅଭାବରୁ ଓଡ଼ିଶାରେ ଓଡ଼ିଆଭାଷାରେ ଗୋଟିଏ ସେଟ୍ ବିଶ୍ୱକୋଷ ପ୍ରକାଶ ପାଉନାହିଁ । କିନ୍ତୁ ଆମଭାଷା କଣ ଏହିଭଳି ପଛରେ ପଡ଼ିରହି ଥିବ ? ଏଭଳି ପୁସ୍ତକର ଅଧିକାଂଶ ଆମଭାଷା ହେବନାହିଁ ? ଏହି ପ୍ରଶ୍ନ ଯେତେ-ବେଳେ ମୋ ମନ ଭିତରେ ଉଠିଛି ମୁଁ ବ୍ୟଥିତ ହୋଇ ଉଠିଛି । ବିଜ୍ଞାନର ଏହି ଯୁଗରେ ଅସମ୍ଭବ କଅଣ ? ମନୁଷ୍ୟ ଯେତେବେଳେ ଚନ୍ଦ୍ରରେ ପହଞ୍ଚି ଯିବା ପାଇଁ ଉଦ୍ୟମ କରୁଛି ଆମ ଓଡ଼ିଶାର ସେହି ମନୁଷ୍ୟ ଏହି 'ସାମାନ୍ୟ' କାର୍ଯ୍ୟଟି କରିପାରିବ ନାହିଁ ? ନିଶ୍ଚୟ ହେବା ଉଚିତ ବୋଲି ଧରିନେଇ ୧୯୫୪ରେ ଗୋଟିଏ ଯୋଜନା କଲି । ଆଜିର ଏହି ପ୍ରଥମ ଖଣ୍ଡଟି ସେହି ଫଳ । ଏଇଟିକୁ 'ସୁଖପାଠ୍ୟ' ବୋଲି କହିବାର ଉଦ୍ଦେଶ୍ୟ ବୁଝାଇ ଦେଲି । ଇଂରାଜୀରେ ଯାହାକୁ ପପୁଲର୍ ବୋଲି କୁହନ୍ତି ତାହାର ଓଡ଼ିଆ ହେବ ଜନପ୍ରିୟ ବା ଲୋକପ୍ରିୟ । କିନ୍ତୁ ଏହି ବହିଟି ପାଇଁ ସେହିନାମ ଠିକ୍ ହେବ ନାହିଁ । ଲୋକେ ଏହାକୁ ସହଜରେ ପଢ଼ିପାରିବେ, ମଝିରେ ମଝିରେ ଝୁଣ୍ଟିବେ ନାହିଁ । ବୁଝିବାରେ ଅସୁବିଧା ହେବନାହିଁ ବିଷୟଟି ଯେତେ ଜଟିଳ ହୋଇଥାଉ ପଛକେ—ଏହି ଅର୍ଥରେ ପପୁଲର ଶବ୍ଦର ବ୍ୟବହାର ହୋଇଛି । ତାହାର ଅନୁବାଦ ହେବା ଉଚିତ 'ସୁଖ ପାଠ୍ୟ' । ତାହା ପରେ ଲେଖି ଦେଲି—"ଶେଷରେ କେବଳ ଗୋଟିଏ କଥା କହିବାର ଅଛି । ଏ ବହିରେ ଯେତେ କଥା ଦିଆଯାଇଛି ସେଥିରୁ କୌଣସିଟି ମୋର ନୁହେଁ ବୋଲି କହିଲେ ଆଦୌ ଭୁଲ ହେବନାହିଁ । ଅନ୍ୟମାନେ ହାସଲ କରିଥିବା ଜ୍ଞାନକୁ ଓଡ଼ିଶାର ଜନସାଧାରଣ ବୁଝିଲା ଭଳି ସରଳ ଭାଷାରେ ହିଁ ଲେଖିବାକୁ ମୁଁ ଚେଷ୍ଟା କରିଛି । ପୃଥିବୀର ବହୁ ପଣ୍ଡିତ, ବହୁ ପୁସ୍ତକରେ ବହୁ ପ୍ରବନ୍ଧରେ ଯେଉଁ ସବୁକଥା ଲେଖି ଯାଇଛନ୍ତି ସେଥିରୁ ସାର ସଂଗ୍ରହହିଁ କରାଯାଇଛି । ଏଥିରେ ମୌଳିକତା ଅଛି ବୋଲି ବିଚାରିବାର କୌଣସି କାରଣ ନାହିଁ ।

ବିଷୟ ଗୁଡ଼ିକ ବାଛିଲାବେଳେ କେଉଁ ବିଷୟରେ କେତେ ଲେଖା ଯିବ ବୋଲି ଯେଉଁ ହିସାବ କରାଯାଇଥିଲା—ପ୍ରକୃତରେ ଲେଖିଲା ବେଳକୁ ସେଥିରେ ବହୁତ କିଛି ଓଲଟ ପାଲଟ କରିବାର ଆବଶ୍ୟକତା ଦେଖା ଦେଲା । 'ଅ' ଲେଖିଲାବେଳକୁ ମନୁଷ୍ୟ କିଭଳି ପ୍ରଥମ ଅବସ୍ଥାରେ କଥା

କହୁଥିଲି ଓ ସେହି କଥା କରିବାଟି ହିଁ ତାକୁ ପଶୁଠାରୁ ଭିନ୍ନ ବୋଲି ପ୍ରମାଣ କରିଦେଲା ଏଇଠୁ ବୁଝାଇବାକୁ ପଡିଲା । ସେଇଟି ପ୍ରଥମ ବିଷୟ ଏହି ପ୍ରଥମ ଖଣ୍ଡର । ସେଇଟି ଯଦି ଭଲ ନହେବ ପାଠକଙ୍କର ଆଗ୍ରହ କମିଯିବ ଅନ୍ୟ ବିଷୟ ସବୁ ପଢ଼ିବା ପାଇଁ । ସେଇଥି ପାଇଁ ବହୁତ ପରିଶ୍ରମକଲି ଭାଷା, ଧ୍ୱନି, ବର୍ଣ୍ଣମାଳା ଓ ଭାଷାତତ୍ତ୍ୱ ସଂମ୍ପର୍କରେ ପଢ଼ିବା ପାଇଁ । ନଅଟି ଚିତ୍ର ଦେବାକୁ ହେଲା । ଏକୋଇଶ ପୃଷ୍ଠାର ଏହି ପ୍ରବନ୍ଧରେ ପନ୍ଦରଟି ଚିତ୍ର ଦେଇ 'ଅଙ୍କ' ପ୍ରବନ୍ଧରେ ଗଣିତର ଶ୍ରେଷ୍ଠତା ବିଷୟରେ ବହୁତ କିଛି ଲେଖାଗଲା ସତର ପୃଷ୍ଠାରେ । ଅଙ୍କ ବିଷୟରେ ମଜାମଜା ଗପ ସବୁ ଦିଆ ଯାଇଥିବାରୁ ଲୋକେ ଆଗ୍ରହରେ ପଢିଲେ । ଅଙ୍ଗାରଟିକୁ ପଚିଶ ପୃଷ୍ଠା ଏଇଥିପାଇଁ ଲେଖାଗଲା ଯେ ସେଇଟି ଗୋଟିଏ ଏଲିମେଣ୍ଟ ବା ମୌଳିକ ଉପାଦାନ' ଓ ତା' କଥା ବୁଝାଇବାକୁ ଯାଇ ଏଲିମେଣ୍ଟ ବା କମ୍ପାଉଣ୍ଡ (ଯୌଗିକ) କଥା ବୁଝାଇ ଦିଆଗଲା ୯୨ଟି ଯାକ ଏଲିମେଣ୍ଟର ତାଲିକା ଦେଇ । ଆଠପୃଷ୍ଠା ବ୍ୟାପୀ ଅଙ୍ଗୁର ପ୍ରବନ୍ଧରେ ବହୁତ କିଛି ଲେଖାଗଲା । 'ଅଙ୍ଗୁଳି' ପ୍ରବନ୍ଧରେ କୁହାଗଲା ଗଛରଗୋଡ଼ିଆରୁ ମନୁଷ୍ୟ କେମିତି ଦି ଗୋଡ଼ିଆ ହେଲା ଓ ତାହାର ହାତର ଆଙ୍ଗୁଳି ଗୁଡ଼ିକ ଏମିତି କୌଶଳରେ ଖଞ୍ଜିଦିଆଗଲା ଯେ ସେ ହାତକୁ ମୁଠା କରିପାରିଲା । ବୁଢ଼ା ଆଙ୍ଗୁଠିର ବିଶେଷତ୍ୱ ଉପରେ ଜୋର୍ ଦିଆଗଲା । ସେଥିରେ ଥିବା ବିଷୟରେ ମୁଁ ୧୯୪୪ରୁ ବରାବର ପଢ଼ା ପଢ଼ି କରୁଥିବାରୁ କୌଣସି ଡାକ୍ତରଙ୍କ ସହିତ ପରାମର୍ଶ ନକରି ୧୭ଟି ଚିତ୍ର ଦେଇ ସବୁକଥା ବୁଝାଇ ଦେଇ ପାରିଲି । 'ଅଣ୍ଡା' ପ୍ରବନ୍ଧର ସୁଯୋଗ ନେଇ ପ୍ରୋଟିନ୍ କଥା କୁହାଗଲା । ତା' ସାଙ୍ଗରେ ଖାଦ୍ୟର ପ୍ରକାର ଭେଦ ବୁଝାଇବାକୁ ପଡ଼ିଲା । ୨୦ ପୃଷ୍ଠାରୁ ଅଧିକ ସ୍ଥାନ ନେଇଥିବା ଏହି ପ୍ରବନ୍ଧଟିକୁ ଭେଟରିନାରି ଡ଼ାକ୍ତରମାନେ ମଧ୍ୟ ମନଦେଇ ପଢ଼ିଲେ ବୋଲି ପରେ ଜାଣିଲି । ଅଣ୍ଡା ଏବଂ କ୍ଷୀର କେବଳ ପୂର୍ଣ୍ଣ ଖାଦ୍ୟ' ସେଇଟିକୁ ଅତି ସରଳ ଭାଷାରେ ଲେଖା ଯାଇଛି । ଶରୀରର ରକ୍ତ ମାଂସ ଚର୍ମ ହାଡ଼ ଇତ୍ୟାଦି ଗଠନ ପାଇଁ ଅଣ୍ଡାଭିତରେ ସବୁ ଉପାଦାନ ଥିବାରୁ ତା' ଭିତରୁ କୁକୁଡ଼ା ଛୁଆଟିଏ ବାହାରି ପଡୁଛି-- ଏହି ଉଦାହରଣଟିକୁ ଏବେ ମଧ୍ୟ ସ୍କୁଲରେ ପିଲମାନଙ୍କୁ ବୁଝେଇ ଦେଉଛନ୍ତି ଶିକ୍ଷକମାନେ । ୧୯୮୭ ରେ ଖାଦ୍ୟ ଏବଂ ହଜମ ପ୍ରକ୍ରିୟା ଉପରେ ଲେଖା ଯାଇଥିବା ମୋର ଗୋଟିଏ ଶିଶୁ ପୁସ୍ତକ 'ଜୀବନ ତିଆରି କାରଖାନା' ଯେତେବେଳେ ଟେଲିଭିଜନରେ

ମୁଁ ବୁଝାଇଲି ପିଲାମାନେ କେମିତି ବୁଝିପାଉଛନ୍ତି ଓ ଖୁସିହୋଇ ଉଠୁଛନ୍ତି ତାହା ସେମାନଙ୍କ ମୁଖଭଙ୍ଗୀ ଓ ହସରୁ ଲକ୍ଷ ଲକ୍ଷ ଲୋକେ ଦେଖିଲେ । ଜଣେ ଟେଲିଫୋନ୍ କରି କହିଲେ—ମୋ ପିଲାମାନେ ତ ତାଙ୍କୁ ଦେଖି ନାଚିଗଲେ—ମୁଁ ନିଜେମଧ୍ୟ ବହୁତ କଥା ଶିଖିଲି । ଅକ୍ସିଜେନ୍ (Oxygen)ଶବ୍ଦଟିକୁ ଯେମିତି ସେମିତି ରଖି ଦେଲି ଏଇଥି ପାଇଁ ଯେ ଅନେକ ଲୋକ ତାଙ୍କୁ ବ୍ୟବହାର କଲେଣି ଓ ସେଇଟି ଓଡ଼ିଆ ଭାଷାରେ ଆଠପଣିଆ ଅଂଶୀଦାର ହୋଇ ରହିଲାଣି ଅମ୍ଳଜାନ ସହିତ । ଅଙ୍ଗାର ପ୍ରବନ୍ଧର ଏଇଟି ହୋଇଗଲା ପରିପୂରକ ଏଲିମେଣ୍ଟ କମ୍ପାଉଣ୍ଡ ଇତ୍ୟାଦି ବୁଝାଇବାରେ । ଦଶ ପୃଷ୍ଠାରୁ ଅଧିକ 'ଅଗ୍ନି' ପ୍ରବନ୍ଧଟିକୁ ଲେଖିବା ଗୋଟିଏ କଠିନ ସମସ୍ୟା ବୋଲି ମୂଳରୁ ଧରନେଲି । କାରଣ ମନୁଷ୍ୟ ଯେତେବେଳେ ଅଗ୍ନିର ବ୍ୟବହାର ଜାଣିଲା; ତାଙ୍କୁ ସାଇତିବାର ଉପାୟ ବାହାର କଲା ଓ ଲିଭିଗଲେ ତାଙ୍କୁ ପୁଣି ଲଗାଇ ପାରିଲା ବା ସୃଷ୍ଟି କରିଦେଲା କାଠ ପଥର ଘଷିବା ଭଳି ସହଜ ଉପାୟରେ, ସେତେବେଳେ ସେ ପ୍ରକୃତ ଅର୍ଥରେ ମନୁଷ୍ୟ ହୋଇ ଯାଇ ପାରିଲା । ଗ୍ରୀକ୍ ପୁରାଣ ଭାରତୀୟ ଶାସ୍ତ୍ର ପୁରାଣରୁ ବହୁତ କଥା ଉଦ୍ଧାର କରାଗଲା ଏହାର ଗୁରୁତ୍ୱ ବୁଝାଇବା ପାଇଁ । ଏଗାରଟି ଚିତ୍ର ସାହାଯ୍ୟରେ ଏଇଟିକୁ ଏମିତି ଲେଖି ଦିଆଗଲା ଯେ ସବୁ ଶ୍ରେଣୀର ଲୋକଙ୍କ ଦ୍ୱାରା ଆଦୃତ ହେଲା । ଋଗ୍‌ବେଦରେ ଅଗ୍ନିଙ୍କ ବନ୍ଦନା କେମିତି କରାଯାଇଛି ତାହା ମୂଳ ଶ୍ଳୋକ ଓ ଅନୁବାଦ ସହିତ ଦେଇ ଦିଆହେଲା । ପାଠକମାନଙ୍କୁ ଏଠାରେ ଗୋଟିଏ କଥା କହିଦେବା ଅପ୍ରାସଙ୍ଗିକ ହେବନାହିଁ ବୋଲି ଭାବୁଛି । ଯେହି ପ୍ରବନ୍ଧଟି ଲେଖିବା ପାଇଁ ଯେଉଁ ପ୍ରସ୍ତୁତି କରିଥିଲି ଓ ଯେଉଁସବୁ ସମ୍ପାଦକୀୟ ଉପାଦାନ ଅଗ୍ନି ଫାଇଲରେ ସଜାଇ ରଖିଥିଲି ସେହି ସବୁର ସାହାଯ୍ୟରେ ୧୯୮୦ ଦଶନ୍ଧିରେ ପିଲାଙ୍କ ପାଇଁ ଖଣ୍ଡିଏ ବହି ଲେଖିଦେଲି ଓ ତାହାର ନାମ ରଖିଲି 'ଚିତ୍ରକ ପଥର କଥା'। ପ୍ରସ୍ତର ଯୁଗରେ ମନୁଷ୍ୟ କେମିତି ଥିଲା ଓ କିଏ ତାଙ୍କୁ କେମିତି ସଭ୍ୟତା ପଥରେ ସାତ ପାହାଚ ଆଗେଇ ନେଲା—ତାହାହିଁ ହେଉଛି ଗଳ୍ପ । ବହିଟି ୧୯୮୫ ରେ ଓଡ଼ିଆ ସାହିତ୍ୟ ଏକାଡେମୀ ଦ୍ୱାରା ପୁରସ୍କୃତ ହୋଇଗଲା । ରୋଗ ଭିତରେ ପ୍ରଥମେ ପଡିଗଲା 'ଅଗ୍ନିମାନ୍ଦ୍ୟ'। ୧୪ ପୃଷ୍ଠାରେ ପ୍ରବନ୍ଧଟିଏ ଲେଖିବାକୁ ପଡ଼ିଲା ଚିତ୍ରସଂଖ୍ୟା—କୋଡ଼ିଏଟି । ଆଠପୃଷ୍ଠା ଓ ବହୁଚିତ୍ର ସମ୍ବଳିତ ଅଜଗର ପ୍ରବନ୍ଧଟି ସମସ୍ତଙ୍କ ଦୃଷ୍ଟି ଆକର୍ଷଣ କରିଲା ଭଲ ହୋଇଗଲା ।

ମାତ୍ର ଗୋଟିଏ ଉଦ୍ଦେଶ୍ୟରେ ଏତେକଥା କହିଲି । ପ୍ରଥମ ଖଣ୍ଡରେ ଯାହାସବୁ ଲେଖା ଯାଇଥିଲା ସେଗୁଡ଼ିକର କିଛିଟା ସ୍ଥାୟୀ ମୂଲ୍ୟ ଥିଲା ବୋଲି ଦିନେ ସ୍ୱୀକୃତ ହେଲା । ଏହି ଧରଣର ପୁସ୍ତକର କିଛି କିଛି ପରିବର୍ତ୍ତନ ହୋଇଯାଏ ଯେତେବେଳେ ତିନି ଚାରି ବର୍ଷରେ ପୁନର୍ମୁଦ୍ରଣ ହୁଏ । କିନ୍ତୁ ୧୯୬୦ ଶେଷରେ ପ୍ରକାଶିତ ପ୍ରଥମ ଖଣ୍ଡର ପୁନର୍ମୁଦ୍ରଣ ଯେତେବେଳେ ୧୯୮୪ରେ ହେଲା ଷଷ୍ଠ ଥର ପାଇଁ ସେତେବେଳେ ଖୁବ୍ ବେଶି ହେଲେ ଆଠଦଶଟି ବାକ୍ୟ ବା ଖଣ୍ଡବାକ୍ୟରେ ଟିକିଏ ପରିବର୍ତ୍ତନ ହେଲା । ୧୯୮୬ ଶେଷରେ ଏହାର ସପ୍ତମ ପୁନର୍ମୁଦ୍ରଣ ହେଉଛି—ଗୋଟିଏ ବାକ୍ୟ ପରିବର୍ତ୍ତନ କରାଯାଉନାହିଁ । ଏହା କିଭଳି ସମ୍ଭବ ହେଉଛି ବୋଲି ପଚାରିଲେ ଉତ୍ତର ହେଉଛି—ଜଣେ ଲୋକ ସମଗ୍ର ପରିକଳ୍ପନାଟିକୁ କାର୍ଯ୍ୟକାରି କରୁଥିବାରୁ ଏଭଳି ହୋଇ ପାରୁଛି । 'ଅଙ୍ଗାର' ବିଷୟରେ ଲେଖାହେଲା । ତାହାପରେ କେତେକ ନୂଆ ତଥ୍ୟ ମିଳିଲା । 'ଗ୍ରାଫାଇଟ୍' ଲେଖାହେବ । ତାହା ଅଙ୍ଗାରର ଗୋଟିଏ ଭାଗ । ସେତିକି ବେଳେ ଏତିକି ଯୋଗକରି ଦିଆଯିବ । ସେଇଠୁ ଆସିଲା 'ମୌଳିକ ଉପାଦାନ'—କାର୍ବନ ସେଥିଭିତରୁ ଗୋଟିଏ ହୋଇଥିବାରୁ ତାକୁ ଟିକିଏ ନୂତନ ତଥ୍ୟ ସମ୍ବଳିତ କରିଦେଲୁ । ଶେଷରେ ଆସିବ ହୀରା—ଏହିହୀରା ହେଉଛି ଗୋଟାଏ ବିଶୁଦ୍ଧ ଅଙ୍ଗାର ବା କାର୍ବନ । ଏହିଭଳି ପ୍ରଥମ ଖଣ୍ଡରେ ଥିବା ବିଷୟକୁ ନୂତନ ରୂପ ଦେଇ ଦେଇ ଚାଲିଲୁ । ତାହାହିଁ ହୋଇ ହୋଇ ଆସୁଛି ଓ ଯେତିକି ସଫଳତା ମିଳୁଛି ପାଠକ ସେଥିରେ ସନ୍ତୁଷ୍ଟ । ଚାରିଜଣ ଲୋକ ଉପରେ ବିଭିନ୍ନ ଚାରିଗୋଟି ବିଷୟରେ ଲେଖିଲେ ଏହା ଭଲ ଭାବରେ କରାଯାଇ ପାରନ୍ତା ନାହିଁ ।

## "ଡିସେମ୍ବର ୨ ତାରିଖ"

ପ୍ରଥମ ଖଣ୍ଡିକ ଛପା ହେଲା ପରେ ଦିନେ ଗୋଟିଏ ଦିନ ସ୍ଥିର କରି ସେଇଟିକୁ ଜନସାଧାରଣଙ୍କ ହାତରେ ଅର୍ପଣ କରିଦେବା ପାଇଁ ଇଚ୍ଛା ହେଲା । ଗୋଟିଏ ବନ୍ଧୁ ମିଳନ କରି ସେଭଳି କଲେ ଭଲ ହେବ । କାହା ହାତରେ ଦିଆଯିବ ଅର୍ଥାତ୍ କିଏ ଉଦ୍‌ଘାଟନ କରିବ ସେଇକଥା ଚିନ୍ତାରୁ ଥାଏ । ଦିନେ ଆକସ୍ମାତ୍ ମହତାବଙ୍କ ସହ ଦେଖାହୋଇଗଲା ରାଜଭବନର ଗୋଟିଏ ଉତ୍ସବରେ । ଭି: ଭି: ଗିରି ଓ ଆଉଜଣେ କେନ୍ଦ୍ର ମନ୍ତ୍ରୀ ଓଡ଼ିଶା

ଆସିଥାଆନ୍ତି । ଦୁଇବର୍ଷରୁ ଅଧିକ କାଳ ହେଲା ମହତାବଙ୍କ ସହିତ ଦେଖା ହୋଇନଥାଏ । ସେ ଥାଆନ୍ତି ମୁଖ୍ୟମନ୍ତ୍ରୀ । ମୋର ତ ତାଙ୍କଠାରେ କିଛି କାମ ନଥାଏ—କାହିଁକି ବା ଦେଖା ହୁଅନ୍ତା ? ଉତ୍ସବର ଗୋଟିଏ କୋଣରେ ବସିଥାଏ—ସେ ଦୂରରୁ ଦେଖି ମୋ ପାଖକୁ ଚାଲିଆସି ପଚାରିଦେଲେ—କହୋ ବିନୋଦ, ତମ ସହିତ ତ କେତେକାଳ ହେଲା ଦେଖା ନାହିଁ । କଅଣ କରୁଛ ? ଉତ୍ତର ଦେଲି "ଗୋଟିଏ ସେଟ୍ ଏନ୍‌ସାଇକ୍ଲୋପିଡିଆ ଲେଖୁଛି ।" ସେ ଟିକିଏ ବିସ୍ମିତ ହୋଇ ଯାଇ କହି ଉଠିଲେ—'ଗୋଟାଏ ଏନ୍‌ସାଇକ୍ଲୋପିଡିଆ ଲେଖୁଛ ? ଆଉ କିଏ କିଏ ସାହାଯ୍ୟ କରୁଛନ୍ତି ? କେତେ ବଡ଼ ହେଉଛି ? କେବେ ଛପା ହେବ ? ଇଏତ ବଡ଼ ଖବର !'

ଏତକ ତରତରରେ କହିଦେଇ ମୋ ପାଖରେ ବସି ପଡ଼ିଲେ । ତାଙ୍କୁ କହିଲି—'ଗଲା ସାତବର୍ଷ ହେଲା ଏଇ କାମରେ ଲାଗିଛି । ଏକା ଏକା ଲେଖୁଛି । ୬୦୦ ପୃଷ୍ଠାର ଗୋଟିଏ ଲେଖାଁ ଭଲ୍ୟୁମ୍ ହେବ - ୭୦ ଖଣ୍ଡରେ ଶେଷ ହେବ । ପ୍ରଥମ ଖଣ୍ଡିକ ଛପା ସରିଲାଣି । ଖୁବ୍ ନିକଟରେ ପ୍ରକାଶ ପାଇବ ।' ସେ ତ ଉତ୍କଳ ବିଶ୍ୱବିଦ୍ୟାଳୟର 'ଜ୍ଞାନକୋଷ' ସହିତ ଘନିଷ୍ଠ ଭାବେ ସଂପୃକ୍ତ । ମୋ କଥା ଶୁଣି ସେ ବିସ୍ମିତ ହୋଇଯିବା ସ୍ୱାଭାବିକ । 'ମୋ ପାଖକୁ ଖଣ୍ଡେ ପଠାଇ ଦେବ' ବୋଲି କହି ଏ ସଂପର୍କରେ ଆହୁରି ଶୁଣିବାକୁ ଇଚ୍ଛା କଲେ । ବ୍ୟକ୍ତିଗତ ଭାବରେ ସେ ମୋତେ ଭଲଭାବରେ ଜାଣନ୍ତି ୧୯୩୦ରୁ । ଜନଦଶନ୍ଧିପରେ ମୋ ଉଦ୍ୟମ ତାଙ୍କୁ ଟିକିଏ ଆନନ୍ଦ ଦେଲା—ଏଇକଥା ଲକ୍ଷ୍ୟ କରୁଥାଏ । ତାହାର ସୁଯୋଗ ନେଇ କହିଲି—'ମୋର ଭାରି ଇଚ୍ଛା ଆପଣ ସେଇଟିକୁ ଉଦ୍‌ଘାଟନ କରନ୍ତେ । ଜଣେ ମୁଖ୍ୟମନ୍ତ୍ରୀ ଭାବରେ ନୁହେଁ, ସାହିତ୍ୟ ପ୍ରେମୀ ଭାବରେ ଉଦ୍‌ଘାଟନ କରନ୍ତେ ।' ଟିକିଏ ନ ଭାବି 'ହଁ' କହି କେଉଁ ଦିନ ଯିବି କହ' ବୋଲି ପଚାରିଲେ । କହିଲି—'ଡିସେମ୍ବର ଦୁଇ ତାରିଖ ଦିନଟିକୁ ଧାର୍ଯ୍ୟ କରିଛି ।' ହସିହସି ପଚାରିଲେ —ଜ୍ୟୋତିଷ କଣ ସେହି ଦିନଟି ଭଲ ବୋଲି କହିଛନ୍ତି ? ଉତ୍ତର ଦେଲି—ହଁ, ବିଜ୍ଞାନର ଜଣେ ଜ୍ୟୋତିଷଙ୍କୁ ସ୍ମରଣ କରି ଦିନ ଧାର୍ଯ୍ୟ କରିଛି ।

ନଭେମ୍ବର ୨୧ ତାରିଖରେ ମହତାବଙ୍କ ଜନ୍ମଦିନ । କଟକ ଶିଶୁଭବନରେ ସମ୍ବର୍ଦ୍ଧନା ସଭା । ବହୁ ବିଶିଷ୍ଟ ଲୋକ ଯୋଗ ଦେଇ

ଥାଆନ୍ତି । ମହତାବ ମଞ୍ଚ ଉପରକୁ ଉଠିଲା ମାତ୍ରେ ଖଣ୍ଡିଏ ବହି ଦେଇ ଆସିଲି । ସେ ପଢ଼ିବା ଆରମ୍ଭ କଲେ । ଅନ୍ୟମାନେ ଭାଷଣ ଦେଉ ଥାଆନ୍ତି — କିନ୍ତୁ ସେ ପଢ଼ିବାରେ ଲାଗିଥାଆନ୍ତି । ତଳେ ବସିଥିଲେ ଡକ୍ଟର ପରିଜା, ବରିଷ୍ଠ ସାମ୍ବାଦିକ ସଚନ ଦତ୍ତ ଓ ଅନ୍ୟମାନେ । ମୋ ହାତରେ ଆଉଖଣ୍ଡିଏ ଥାଏ । ପରିଜା ମାଗିଲେ ଦେଖିବା ପାଇଁ । ପଢ଼ିବା ଆରମ୍ଭ କଲେ । ଦେଖିଲି ଘଣ୍ଟାଏରୁ ଅଧିକ ସମୟ ସେ ପଢ଼ୁଛନ୍ତି । 'ମୋତେ ଏଖଣ୍ଡିକ ଦେ' କହିବାରୁ ଉତ୍ତର ଦେଲି — ଏଇଟି ଆତ୍ମପ୍ରକାଶ କରିବ ଡ଼ିସେମ୍ବର ଦୁଇ ତାରିଖ ଦିନ । ତିନି ତାରିଖ ସକାଳେ ନେଇ ଦେଇ ଆସିବି । ଆମେତ ଏପର୍ଯ୍ୟନ୍ତ କରି ପାରିଲୁ ନାହିଁ ତୁ କରିଦେଲୁ । ଆମର କେବେ ବାହାରିବ କେଜାଣି ! ସେ ଖଣ୍ଡିକ ପୁଣି ହେବ ସଂକ୍ଷିପ୍ତ । ତୁ ତ ଗୋଟିଏ ଷ୍ଟିତମତ ଏନ୍‌ସାଇକ୍ଲୋପିଡିଆ କରିଦେଲୁ । ବିଗ୍ଭରୁଛି ଏଥିରୁ ଶହେ ଖଣ୍ଡ କିଣିନେଇ ବିଶ୍ୱବିଦ୍ୟାଳୟ ପ୍ରତ୍ୟେକ କଲେଜକୁ ଦେଇ ଦେବା ଉଚିତ' ।

ନିମନ୍ତ୍ରଣରେ ଯେଉଁ ଗ୍ରେଟ ହଟାଟି ଭିତରେ ଉତ୍ସବଟି ହେବ ସେଠାରେ ଖୁବ୍ ଅଧିକ ହେଲେ ଶହେ କୋଡ଼ିଏଟି ଚଉକି ପଡ଼ିବ । ତେଣୁ ବେଶୀ ଲୋକଙ୍କୁ ନିମନ୍ତ୍ରଣ କରିପିବ ନାହିଁ । ଦେଡ଼ଶହଟି କାଡ଼ ଛାପି ନିଜେ ଗଲି ବାଣ୍ଟିବା ପାଇଁ । ୧୪୭ ଜଣଙ୍କ ପାଖକୁଗଲି — ତିନିଜଣଙ୍କ ନିମନ୍ତ୍ରଣ କାଡ଼ ମୋର ଜଣେ ଅନ୍ତରଙ୍ଗ ବନ୍ଧୁଙ୍କୁ ଦେଲି ନିଜେ ନେଇ ପହଞ୍ଚାଇ ଦେବା ପାଇଁ । ମୋ ମନେ ଅଛି ରେଭେନ୍‌ସା କଲେଜରେ ପ୍ରିନ୍‌ସିପାଲ ଡକ୍ଟର ସଦାଶିବ ମିଶ୍ରଙ୍କୁ ଯେତେବେଳେ କାଡ଼୍ ଦେଇ କହିଲି — ଆପଣ ଯଦି ସେଦିନ ନଯିବେ ତା' ପରଦିନ ସକାଳେ ଆପଣଙ୍କୁ ଦେଖିବାକୁ ଆସିବି । କାରଣ ଆପଣଙ୍କ ଦେହ ନିଶ୍ଚୟ ଖରାପ ହୋଇଥିବ — ନହେଲେ ନଯାଆନ୍ତେ କେମିତି ? ଏହିଭଳି ପ୍ରତ୍ୟେକଙ୍କୁ କାଡ଼୍ ଦେଲି ଓ ପଦେ ପଦେ କହି ଦେଇ ଆସିଲି ।

ଉଦ୍‌ଘାଟନ ଉତ୍ସବଟି ମୋତେ ଉତ୍ସାହିତ ହେଲା — ବିସ୍ମିତ ମଧ୍ୟ କରିଦେଲା । ୧୪୭ ଜଣ ନିମଂନ୍ତିତ ବ୍ୟକ୍ତିଙ୍କ ମଧ୍ୟରୁ ୧୪୫ ଜଣ ଆସିଥିଲେ । ସେମାନଙ୍କ ଭିତରୁ ପ୍ରତ୍ୟେକ ଜଣେ ଜଣେ ବରିଷ୍ଠ ବ୍ୟକ୍ତି ନିଜ ନିଜ କ୍ଷେତ୍ରରେ । ମୋତେ ୧୯୫୪ରୁ ଆଶ୍ରୟ ଦେଇଥିବା ବଲେଇବା (ବୃନ୍ଦାବନ

ବହାସୀ ପାଲଟି), ଡକ୍ଟର ମହାତାବ, ଲକ୍ଷ୍ମୀନାରାୟଣ ସାହୁ ଓ ପ୍ରଫେସର ଆର୍ତ୍ତବଲ୍ଲଭ ମହାନ୍ତି ସାମନାରେ ଦର୍ଶକମାନଙ୍କ ଆଡ଼କୁ ମୁହଁ କରି ବସିଲେ । ପ୍ରଥମେ କହିଲେ ଲକ୍ଷ୍ମୀନାରାୟଣ ସାହୁ କହିଲାବେଳେ ସେ ଭାବ ପ୍ରବଣ ହୋଇ ଉଠିଲେ । ଜଣେ ଓଡ଼ିଆ ଯଦି ଭଲକାମ କଲୁ ତାଙ୍କର ଆନନ୍ଦର ସୀମା ରହେ ନାହିଁ । ମହତାବ କହିଲେ—'ସାର୍, କିଛି କୁହନ୍ତୁ ।' ମାମୁଁ କହିବାକୁ ଉଠି କାନ୍ଦି ପକାଇଲେ । 'ଏହି ପିଲା ଯେତେବେଳେ ପାଠ ଛାଡ଼ି ଦେଲା ଓ ଜେଲ ଯିବାକୁ ବାହାରିଲା ମୁଁ ତାକୁ ଖୁବ୍ ପିଟିଥିଲି । ଆଜି ବୁଝୁଛି ସେଠିକ୍ କରିଥିଲା – ମୁଁ ଭୁଲ କରିଥିଲି । ସେ ମୋ ଭଣଜା ତା' ପ୍ରଶଂସା କଅଣ ବା କରିବି ? ପୁଣି କାନ୍ଦିଲେ । ମୋ ଅନୁରୋଧରେ ମହାତାବ ଡକ୍ଟର ମାନସିଂହଙ୍କୁ କହିଲେ କିଛି କହିବା ପାଇଁ । ସେ ମୋତେ ପ୍ରଶଂସା କରିବା ସଙ୍ଗେ ସଙ୍ଗେ କହିଲେ—ଏଇଟି ଜଣେ ବ୍ୟକ୍ତିଙ୍କ କାମ ନୁହେଁ । ଭଗବାନ କରନ୍ତୁ ନ ହେଉ – କିନ୍ତୁ ସେ ଯଦି ଏ ସଂସାରରୁ ବିଦାୟ ନେଇ ଯାଆନ୍ତି କାମଟି ଅଧାରହିଯିବ । ଓଡ଼ିଆ ଭାଷାର ପ୍ରଥମ ଏନ୍‌ସାଇକ୍ଲୋପିଡ଼ିଆ ଆହୁରି ଭଲ କାଗଜରେ ଭଲ ଭାବରେ ଛପା ହେବା ଉଚିତ ଥିଲା ।' ଡକ୍ଟର ମହତାବ ଗୋଟିଏ ଚମତ୍କାର ଭାଷଣ ଦେଇ ମୋ ଉଦ୍ୟମର ଉଚ୍ଚ ପ୍ରଶଂସା କରି ପୁସ୍ତକଟିକୁ ଉଦ୍‌ଘାଟନ କରି ପ୍ରଫେସର ଆର୍ତ୍ତବଲ୍ଲଭ ମହାନ୍ତିଙ୍କ ହାତରେ ଦେଇଥିଲେ । ସେତାଙ୍କ ପାଖରେ କଲେଜରେ ପାଠପଢ଼ୁ ଥିଲେ ତାଙ୍କର ଛାତ୍ର ଥିଲାବେଳେ ଅସହଯୋଗ ଆନ୍ଦୋଳନରେ ଯୋଗ ଦେଇଥିଲେ । ଭାରତ ସେବକ ସମାଜର ପୁରୁଖା ସଭ୍ୟ ଏବଂ ଓଡ଼ିଶାର ସମ୍ମାନିତ ସର୍ବଜନ ପୂଜ୍ୟ ଲକ୍ଷ୍ମୀନାରାୟଣ ସାହୁଙ୍କୁ ଧନ୍ୟବାଦ ଦେଲେ । ମହତାବଙ୍କ ତାଙ୍କ ଭାଷଣ ମଝିରେ ଡକ୍ଟର ମାନସିଂହଙ୍କୁ ଉତ୍ତର ଦେଇ କହିଲେ—"ମୋର ସେହି ଇଂରେଜ ଦାର୍ଶନିକଙ୍କ କଥା ମନେ ପଡ଼ୁଛି । ସେ କହିଥିଲେ (Better is the worst enemy of good)—ଆହୁରି ଭଲ କରିବାକୁ ଅପେକ୍ଷାକରି ଆଦୌ ଭଲ ନ କରିବାଟା ବୁଦ୍ଧିମାନର କାମ ନୁହେଁ । 'ଆହୁରି ଭଲ'ଟା ସେ କ୍ଷେତ୍ରରେ ଭଲର ଶତ୍ରୁ ହୋଇ ଠିଆହୋଇ ଯାଏ । ଏନ୍‌ସାଇକ୍ଲୋପିଡ଼ିଆ ବା ଜ୍ଞାନମଣ୍ଡଳ ଯିଏ ଲେଖିବେ, ଛପା କେମିତି ହେଲା ସେ ବିଷୟରେ ତାଙ୍କୁ ଦୋଷ ଦେଇ ଲାଭ ନାହିଁ । ବରଂ ବହୁବର୍ଷ ପରେ ଓଡ଼ିଶାରେ ମୁଦ୍ରଣ ଶିଳ୍ପର ଇତିହାସ ଯେଉଁମାନେ ଲେଖିବେ, ସେମାନେ ଆଲୋଚନା କରିବେ,

ଜ୍ଞାନମଣ୍ଡଳ ଭଳି ପୁସ୍ତକ କାହିଁକି ଏଭଳି ଭାବରେ ଛପାହେଲା । ଏଥିରେ ଥିବା ବିଷୟ ବସ୍ତୁ ଉପାଦେୟ ହୋଇଛି କି ନାହିଁ । କେବଳ ସେତିକିହିଁ ଦେଖିବାର କଥା । ତା' ଯଦି ହୋଇଛି ବୋଲି ଆମ୍ଭେମାନେ ବିଚାରୁଛୁ, ତେବେ ଏହିକାମ ଆଗେଇ ଚାଲୁ । ମୁଁ ଅଗ୍ନି ପ୍ରବନ୍ଧଟି ଜ୍ଞାନମଣ୍ଡଳରୁ ପଢ଼ୁଥିଲି । ତାହା ଯେ ଖୁବ୍ ଭଲ ହୋଇଛି କେବଳ ତା' ନୁହେଁ, ସେଥିରେ ଥିବା ଅନେକ ବିଷୟ ମୁଁ ନିଜେ ଜାଣିନଥିଲି । ଯଦି ମାନସିଂହଙ୍କ ଉଦ୍ୟମରେ ଅଗ୍ନି ବିଷୟରେ ଆହୁରି ଭଲ କରି ଲେଖାଯାଏ ଆମେ ସମସ୍ତେ ଖୁସୀ ହେବୁ । ତା' ନହେବା ପର୍ଯ୍ୟନ୍ତ ବିନୋଦ ବାବୁଙ୍କ କଲମ ସ୍ଥିର ରହିବ, ଏଭଳି ବିଚାରିବା ଠିକ୍ ନୁହେଁ ।'

କିନ୍ତୁ ମାନସିଂହ ଯାହା କହିଲେ ସେଥିରେ କିଛି ଭୁଲ ଅଛି ବୋଲି ମୁଁ ବିଚାରିଲି ନାହିଁ । ତାଙ୍କୁ ସ୍ପଷ୍ଟ ଭାଷାରେ ସେହି କଥା କହି ମଧ୍ୟ ଦେଲି । ତାଙ୍କର ଦୁଃଖିତ ହେବାର କାରଣ ଥିଲା । ସେ ଜଣେ ସାହିତ୍ୟ ପ୍ରେମୀ, ପ୍ରସିଦ୍ଧ କବି ଓ ଲେଖକ । ଓଡ଼ିଆ ଭାଷାର ଏନ୍‌ସାଇକ୍ଲୋପିଡିଆ ଖୁବ୍ ଭଲ ଭାବରେ ଭଲ କାଗଜରେ ଛପା ହେଉ ବୋଲି ଆଶା କରିବା ତାଙ୍କ ପକ୍ଷରେ ସ୍ୱାଭାବିକ । ଅଦରକାରୀ ବୋଲି ବିଚାରୁ ଥିଲେ ମଧ୍ୟ ଗୋଟିଏ କଥାର ଉଲ୍ଲେଖ କରି ଦେଉଛି । ମୋ ପାଖରେ ପଇସା ନଥାଏ । ସେହି କଥାଟି ଜାଣି ଥିବାରୁ କଟକର କୌଣସି ବଡ଼ ପ୍ରେସ ମୋ କାମକୁ ହାତକୁ ନେଲେ ନାହିଁ । ଚାରିଗୋଟି ପ୍ରେସ କିଛି କିଛି ଛପି ଜୁନ୍‌ରୁ ନଭେମ୍ବର ୧୫ ତାରିଖ ଭିତରେ ତେଇଶ ଫର୍ମାର ବହିଟିକୁ ଶେଷ କଲେ । ଏକାବେଳକେ କାଗଜ କିଣିବା ସମ୍ଭବ ନହେଉ ଥିବାରୁ ଗୋଟିଏ ଫର୍ମାର ପେଜ୍ ପ୍ରୁଫ ଠିକ୍ ହୋଇଗଲେ ଗୋଟିଏ ରିମ୍ କାଗଜ କିଣା ଯାଏ । ତେଣୁ ଭିନ୍ନ ଭିନ୍ନ କିସମର କାଗଜ କିଣା ଯାଉଥାଏ । ପ୍ରୁଫ ଦେଖା ଅସୁବିଧାରୁ ବହୁତ କିଛି ଭୁଲ ରହିଗଲା । ଛୋଟ ଛୋଟ ଭୁଲ ଛାଡ଼ିଦେଲେ ମଧ୍ୟ ପ୍ରାୟ ୧୮୦ଟି ଭୁଲକୁ ହାତରେ ସଂଶୋଧନ କରିବାକୁ ପଡ଼ିଲା । ସବୁ ବହିରେ ଏମିତି କରିଥାଉ । ତେଣୁ ମାନସିଂହ ଦୁଃଖିତ ହେଲେ ।

## ମନକଷ୍ଟ ପୁଣି ଦବିଗଲା !

ବହିଟିର ଉଦ୍‌ଘାଟନ ଖବର ସମ୍ବାଦପତ୍ର ମାନଙ୍କରେ ପ୍ରକାଶ ପାଇଲା । କଲିକତାର ଦୁଇଟି କାଗଜ 'ଅମୃତବଜାର ପତ୍ରିକା' ଏବଂ

ହିନ୍ଦୁସ୍ତାନଷ୍ଟାଣ୍ଡର୍ଡ ଖୁବ୍ ଭଲ ଭାବରେ ଲେଖିଲେ । ଗୃହଆଡ଼୍ ବହୁ ସଂଖ୍ୟକ ଚିଠି ଆସିଲା । ସବୁଗୁଡ଼ିକ ସାଇତି ରଖି ଦେଇଛି ହୁଏତ ଭବିଷ୍ୟତରେ କାଏ ପଢ଼ିବେ । ଯେଉଁମାନେ ଧରି ନେଇଥିଲେ ସବୁ ଗୁଡ଼ିକ ଲେଖା କେବେହେଲେ ନିର୍ଭୁଲ ହୋଇ ନ ଥିବ କିମ୍ବା ସେଭଳି କିଛି ଉପାଦେୟ ହୋଇ ନଥିବ ସେମାନେ ପ୍ରତ୍ୟେକଟି ବିଷୟକୁ ପଢ଼ିଲେ ମନଦେଇ । ସେମାନଙ୍କ ଭିତରୁ କେତେ ଜଣ ବିଶିଷ୍ଟ ଲୋକ "ଏମିତି ବିଗୁରିଥିଲୁ– କିନ୍ତୁ ପ୍ରକୃତିରେ ଏମିତି ଦେଖିଲୁ" ବୋଲି ଆସି କହିଗଲେ । ଶୀଘ୍ର ଶୀଘ୍ର ଅନ୍ୟ ଭଲ୍ୟୁମ୍ ଗୁଡ଼ିକ ପ୍ରକାଶ ପାଇଯାଉ ବୋଲି ସମସ୍ତଙ୍କର ଇଚ୍ଛା ତଥା ଆଗ୍ରହ । ଯେକୌଣସି ଲେଖକ ଏଥିରେ ଉତ୍ସାହିତ ହେବାର କଥା ।

କିନ୍ତୁ ଏହିସବୁ ହେଲାବେଳକୁ ମୋ ମନଦବିଯାଇ ସାରିଲାଣି । କେଉଁଦିନ ଏଭଳି ଦବିଯିବା ଆରମ୍ଭ ହେଲା ସେହି ତାରିଖଟି ମୋର ସଠିକ ଭାବରେ ମନେଅଛି । ସେଇଟି ଲେଖା ହୋଇ ମଧ୍ୟ ରହିଛି । ତାହା ହେଲା ୧୯୬୦ ଡିସେମ୍ବର ୫ ତାରିଖ । ଅକ୍ଟୋବର ମାସରେ ଅନୁଭବ କଲି ବରାବର କଲେଜ ଲାଇବ୍ରେରୀକୁ ଯାଇ ବ୍ରିଟାନିକା ଓ ଅନ୍ୟ ବହି ସେଟ୍ ପଢିବାରେ ବହୁତ ସମୟ ଯାଉଛି । ବହୁତ କିଛି ନୋଟ୍ କରିବାକୁ ପଡ଼ୁଛି ସମୟେ ସମୟେ ହାତ ଝୋଳାଇ ହୋଇଯାଉଛି । କୌଣସି ପୃଷ୍ଠାରେ ଦାଗ ଦେଇ ହେଉନାହିଁ—ପରେ ଓଲଟାଇ ଦେଖିବି ବୋଲି । କେତେ ପ୍ରବନ୍ଧର କେତେକ ଅଂଶକୁ ଟାଇପ୍ କରାଇ ଆଣିବାକୁ ପଡୁଛି । ସେଥିରେ ବେଶୀ ଖର୍ଚ୍ଚ । ଗୋଟିଏ ସେଟ୍ ବ୍ରିଟାନିକା କିଣିନେବି । ସେତେବେଳେ ସେଟ୍‌ଟିର ମୂଲ୍ୟ ଥାଏ' ବୋଧହୁଏ ଏକୋଇଶ ଶହ ଟଙ୍କା । ଇନ୍‌ଷ୍ଟଲମେଣ୍ଟରେ ମିଳିଯିବ । ଯେ ଶଙ୍କୁ କଲିକତା ଷ୍ଟାଣ୍ଡାର୍ଡ଼ ଲିଟରେଚର କମ୍ପାନୀର ଦତ୍ତବାବୁ ଆସିଗଲେ ଓ ବହି ସେଟ୍‌ଟି କିଣିବା ପ୍ରସ୍ତାବ ଦେଲେ । ମାତ୍ର ପଚିଶଟି ଟଙ୍କା ଅଗ୍ରୀମ ଦେଲେ ସେ ବହି ପାଇଦେବେ । କିଛି ଟଙ୍କା ଦେଇ ପାର୍ଶଲ ଛଡାଇବାକୁ ହେବ—ପରେ ମାସକୁ ମାସ ଦିଆଯିବ । ସଙ୍ଗେ ସଙ୍ଗେ ତିନିସେଟ୍ ବହିପାଇଁ ଅର୍ଡର ଦେଲି । ଗୋଟିଏ ସେଟ୍ ବ୍ରିଟାନିକା (୨୪ ଭଲ୍ୟୁମ୍, ଗୋଟିଏ ସେଟ୍ 'ପପୁଲାର ସାଇନ୍ସ୍' (ଦଶ ଭଲ୍ୟୁମ୍) ଏବଂ ଗୋଟିଏ ସେଟ୍ ଲାଣ୍ଡସ୍ ଆଣ୍ଡ ପିପ୍‌ଲ୍‌ସ୍ । ସେ ଗଳ୍ପରେ ପାଖରେ ବସି ଥିବା ଶ୍ରୀମତୀ କୃଷ୍ଣକୁମାରୀ ଦେବୀ ଓ ତାଙ୍କ

ସ୍ୱାମୀ ସୁବୋଧ ଚନ୍ଦ୍ର ଦାସ ମୋ ଆଡ଼କୁ ବସ୍ମୃୟରେ ଚାହିଁଲେ । ସ୍ୱାଧୀନତା ସଂଗ୍ରାମ କାଳରେ ସେ ଦୁହିଁଙ୍କ ସନ୍ନତ ପରିଚୟ—ଘନିଷ୍ଠ ପରିଚୟ । ଶ୍ରୀମନ୍ତ କହିଲେ—ବିନୋଦ, ଇଏ କଅଣ କରୁଛ ? କରଜରେ ତ ବୁଡିଲଣି । ପୁଣି କରଜ କରି ବହି କାଣିବ ? ଯେତିକ ଯାହାଅଛି କାମ ଚଳାଇ ଦେଉନା ?" ମୁଁ ଟିକଏ ହସିଲି । 'ଋଣଜ, ଯଦି ବୁଡ଼ି ମରିବାକୁ ହେବ ତେବେ ପ୍ରଶାନ୍ତ ସାଗରର ଗଭୀରତମ ସ୍ଥାନରେ ମରିବ । ନାଁ ରହିଯିବ, ମୋର ଗୋଟାଏ ସନ୍ତୋଷ ମଧ୍ୟ ହେବ । ଗଭୀର ବାଂଫୀ ଭିତରେ ବୁଡ଼ି କାହିଁକି ମରିବ ? ମୁଁ ତ କାମ କରୁଛି ଓଡ଼ିଆ ଭାଷା ଭିତରେ ସାମର୍ଥ୍ୟ ଭରିବା ପାଇଁ । ସୁଝି ନ ପାରି ଯଦି ଜେଲ ଯିବି କିଛି ଲୋକତ ପ୍ରଶଂସା କରିବେ । ବ୍ୟସ୍ତ ହେବାର କଅଣ ଅଛି ? ବହିତକ ପହଞ୍ଚିବାକୁ ହୋଇଗଲା ଡିସେମ୍ବର ପାଞ୍ଚ ତାରିଖ । କଲେଜ ଲାଇବ୍ରେରୀରେ ଏହାର ପୂର୍ବ ସଂସ୍କରଣଟି ପଢିଥିଲି । ଏଇଟି ୧୯୬୦ ସଂସ୍କରଣ । ଟିକଏ ନୂଆ ନୂଆ ଲାଗୁଥାଏ Editor's Preface (ସମ୍ପାଦକଙ୍କ ମୁଖବନ୍ଧ)ଟି ପଢିବାକୁ ବସିଗଲି । ମାତ୍ର ଗୋଟିଏ ପୃଷ୍ଠା । ପଢିବାକୁ ଅଧଘଣ୍ଟା ଲାଗିଗଲା । ତାହାର କାରଣ ପ୍ରତ୍ୟେକ ପାରାଗ୍ରାଫ୍‌ଟିକୁ ପଢ଼ି ଟିକଏ ଦମ୍ ନିଏ । ଛଅ ଗୋଟି ଯାକ ପଢିଦେଲି । ଆଖିବୁଜି ଅଧଘଣ୍ଟାଏ ବସିଲି । ପୁଣିଥରେ ପଢିଲି । ତୃତୀୟ ଥରକ ପଢିସାରିଲା ପରେ କାଗଜ ଧରିଲି ।

ସେଥିରେ ଲେଖାଅଛି—୧୭୬୮ରେ ଯେତେବେଳେ ବ୍ରିଟାନିକ ପ୍ରକାଶ କରିବା ପାଇଁ ସ୍ଥିର ହେଲା ସେତେବେଳେ ମୂଳ ସମ୍ପାଦକଙ୍କ ସମ୍ମୁଖରେ ଥିଲା ଏହାର ଉପଯୋଗିତା ବା ଲାଭପ୍ରଦତା (utility) । ପରେ ଯେଉଁମାନେ ଏହାର ସଂପାଦନାର ଦାୟିତ୍ୱ ନେଲେ ସେମାନଙ୍କର ମଧ୍ୟ ମୁଖ୍ୟତଃ ସେହି ଉଦ୍ଦେଶ୍ୟ ରହିଲା ଆଖି ଆଗରେ । ବ୍ରିଟାନିକା କାଉଳ ଆଗେଇ ଗଲା ତାହାର ଇତିହାସ ହେଉଛି ବିସ୍ତାରଣ (Expansion) ଏବଂ ବୃଦ୍ଧି ବା ପରିବର୍ଦ୍ଧନ (Enlargement) । ସଂପାଦକ ମାନଙ୍କର ଲକ୍ଷ୍ୟ ହେଲା ଅନ୍ତବେଶୀ ମାତ୍ରାରେ ହସ୍ତଗତ ହୋଇଥିବା ସବୁ ତଥ୍ୟକୁ ଅଲଗା ଅଲଗା କରିଦେଇ ପାଠକମାନଙ୍କ ପାଇଁ ଯାହା ଅତି ଆବଶ୍ୟକ ସେଗୁଡ଼ିକୁ ବ୍ରିଟାନିକାର କଳେବର ଭିତରେ ସାଇତି ଦେବା ।

ଗୋଟାଏ ଅସୁବିଧା ହୋଇଛି ଏହି ସବୁ ଉପଯୋଗୀ ତଥ୍ୟକୁ ଏଭଳି ଭାବରେ ରଖାଯିବ ଯେ ପାଠକ ପକ୍ଷରେ ତାକୁ କାମରେ ଲଗାଇବା

ବା ଖୁଜିବା ସୁବିଧାଜନକ ହେବ । ସମସ୍ତ ବଦଳି ଯାଉଛି; ନୂଆ ନୂଆ ତଥ୍ୟ ସବୁ ଆସି କହିଲେଣି ଆମେ ରହିବା ପାଇଁ ସ୍ଥାନ ଦିଅ । ପୁରୁଣା ଭଲ୍ୟୁମ ଗୁଡ଼ିକ ସହିତ ନୂଆ ଭଲ୍ୟୁମ୍ ଯୋଗ କରିଦେଲେ ପାଠକଙ୍କୁ ନୂଆକଥା ଜଣାଇବା ସମସ୍ୟାର ସମାଧାନ ହୋଇ ଯାଉନାହିଁ । ନୂତନ ସଂସ୍କରଣ ବାହାର କରିଦେଲେ ମଧ୍ୟ ସମାଧାନ ହେଉନାହିଁ । ଅତୀତରେ ତିରିଶରୁ ଚଉଦ ବର୍ଷ ବ୍ୟବଧାନରେ ଗୋଟିଏ ଗୋଟିଏ ସଂସ୍କରଣ ପ୍ରକାଶ ପାଇଛି, ପରବର୍ତ୍ତୀ ଭଲ୍ୟୁମ୍‌ଟିକୁ ଛପାଇଲା ବେଳକୁ ପୂର୍ବବର୍ତ୍ତୀ ଭଲ୍ୟୁମ୍‌ରେ ଥିବା ବିଷୟ ପୁରୁଣା ହୋଇଗଲାଣି ।

ଅନବରତ ସଂଶୋଧନ ଲାଗି ଯେଉଁ ନିଜ ପଦ୍ଧତିଆ ଯୋଜନା ପୋଖତ ବର୍ଷର ପରେ ବାହାର କରାଗଲା ତାହା ଏହି ଅସୁବିଧାକୁ ଦୂରକରି ଦେଲା ।

୧୭୭୧ ରେ ବ୍ରିଟାନିକାଟି ତିନିଗୋଟି ଭଲ୍ୟୁମ୍‌ରେ ପ୍ରକାଶ ପାଇଲା । ସେଗୁଡ଼ିକର ପୃଷ୍ଠା ଏତେବଡ଼ ନଥିଲା—ମଧ୍ୟମ ଧରଣର ସାଇଜ୍ । ଆଜି ବ୍ରିଟାନିକାକୁ ତିନୋଟି ଏକକ ବା ୟୁନିଟ୍‌ରେ ଭାଗ କରିଦିଆ ଯାଇଛି । ୨୪ ଭଲ୍ୟୁମ୍‌ରେ ତ ସେଟ୍‌ଟି ଶେଷ ହୋଇଛି—ତାହାର ଗ୍ରନ୍ଥାକାର ନିୟମିତ ଭାବରେ ଚାଲିଛି । ପ୍ରତିବର୍ଷ ଗୋଟିଏ ବର୍ଷ ପୁସ୍ତକ ବା ଇୟର୍ ବୁକ୍ (year Book) ପ୍ରକାଶ ପାଉଛି । ଆଉ ଗୋଟିଏ ହେଲା 'ଲାଇବ୍ରେରୀ ରିସର୍ଚ୍ଚ ସର୍ଭିସ ।' ବହୁବର୍ଷର ଅଭିଜ୍ଞତାରୁ ଦେଖାଯାଉଛି ଏନ୍‌ସାଇକ୍ଲୋ-ପିଡ଼ିଆର ଶତକଡ଼ା ୭୫ଭାଗ ପାଠରେ ବହୁଦିନ ପରେ ଯାଇ କିଛି ପରିବର୍ତ୍ତନ କରିବାକୁ ପଡ଼ିପାରେ । ବାକି ଯେଉଁ ୨୫ ଭାଗ ରହିଲା ସେଥିରେ ବରାବର ପରିବର୍ତ୍ତନ ବା ସଂଶୋଧନ କରିବାକୁ ପଡ଼େ । ନୂଆ ବ୍ୟବସ୍ଥା ଅନୁସାରେ ଦେଖିଦିଆ ହେଉଛି ସବୁ ବିଷୟରେ କ'ଣ ସବୁ ସଂଶୋଧନ ଲୋଡ଼ା ଛପାହେବା ବେଳେ । ଏନ୍‌ସାଇକ୍ଲୋପିଡ଼ିଆ ଇତିହାସରେ ଏଥିପୂର୍ବରୁ ଏଭଳି କେବେ ହୋଇ ନଥିଲା । ଫଳ ହୋଇଛି ବ୍ରିଟାନିକାରେ ଯେଉଁ ତିନି କୋଟି ୮୦ ଲକ୍ଷ ଶବ୍ଦ ରହିଛି ତାହା କେବେହେଲେ ପୁରୁଣା ହୋଇ ଯାଉନାହିଁ । ଅବଶ୍ୟ ଭଲ୍ୟୁମ୍ ଗୁଡ଼ିକରେ ମିଳୁଥିବା ସ୍ଥାନ ଓ ସଜାସଜିକୁ ବରାବର ବଢ଼ାଇବାକୁ ଦିଆଯାଉଛି । "ବର୍ଷ ପୁସ୍ତକ"ଟି ପାଇଗଲେ ପାଠକ ଜାଣିଗଲେ କଅଣ ସବୁ ନୂତନ ବିଷୟ ଯୋଗ କରାଗଲା । ପୂର୍ବ ବର୍ଷରେ

ଯାହା ସବୁ ଘଟି ଯାଇଛି ସେଗୁଡ଼ିକୁ ଆଣି ୭ ଲକ୍ଷ ଶବ୍ଦ ଥିବା ଏହି ବହି ପୁସ୍ତକରେ ଲିପିବଦ୍ଧ କରି ଦିଆଯାଉଛି । ଯେଉଁମାନେ ବ୍ରିଟାନିକା କିଣିଛନ୍ତି ସେମାନଙ୍କ ହଜାର ହଜାର ପ୍ରଶ୍ନର ଉତ୍ତର ଦେବା ପାଇଁ ଲାଇବ୍ରେରୀ ରିସର୍ଚ୍ଚ ସେଣ୍ଟରର ସୃଷ୍ଟି । ଏଭଳି ସୁଚିନ୍ତିତ ବା ଯୋଜିତ ବ୍ୟବସ୍ଥା କରାଯାଇଛି । ଏହି ଯେଉଁ ତିନୋଟି ବ୍ୟବସ୍ଥା କରାଗଲା ତାହା ଏହି ଜଟିଳ ଓ ପରିବର୍ତ୍ତିତ ପୃଥିବୀରେ ଗୋଟିଏ ଆଧୁନିକ ତଥ୍ୟ ଯୋଗାଣ ଯନ୍ତ୍ର ବୋଲି କୁହାଯାଇ ପାରେ (The thee units which now constitute the Encyclopaedia Britannica Present modern informational instrument in a changing and complex world) । ଏଇଟି ଅଳ୍ପ କେତେଜଣ ଲେଖକଙ୍କ କାମ ନୁହେଁ ବା କୌଣସି ଗୋଟିଏ ଦେଶର ଲେଖକଙ୍କ କାମ ମଧ୍ୟ ନୁହେ । ପୃଥିବୀର ସବୁଦେଶର ୬୦୦୦ (ଛ’ ହଜାର) ବିଶେଷଜ୍ଞଙ୍କ ସୌହାର୍ଦ୍ଦ୍ୟପୂର୍ଣ୍ଣ ସହଯୋଗର ଏଇଟି ହେଉଛି ଫଳ । ସେମାନଙ୍କ ସାହାଯ୍ୟ ନ ମିଳିଥିଲେ ଜ୍ଞାନର ସବୁବିଷୟର ତଥ୍ୟକୁ ପରିବେଷଣ କରି ହୋଇ ନଥାନ୍ତା । ଶେଷରେ ଲେଖାଅଛି ଏଥିରେ ୪୩ ହଜାରଟି ବିଷୟ ଲେଖାଯାଇଛି (43,000 entries).

ତାହାପରେ ଆଖିବୁଲାଇଦେଲି କେଉଁମାନେ ସଂପାଦନାରେ ମୁଖ୍ୟ ଭାଗ ନେଇଚନ୍ତି ସେହି ତାଲିକା ଉପରେ । Watter Yust ହେଉଛନ୍ତି ମୁଖ୍ୟ ସଂପାଦକ, ଓଜ୍ ପରିଚାଳନା ସଂପାଦକ ଏବଂ JohnArmitage ଲଣ୍ଡନ ସଂପାଦକ ।

ଏତେ ସଂଖ୍ୟକ ଅତି ଯୋଗ୍ୟ ଲୋକ ଲେଖାଲେଖି କରିଥିଲେ ମଧ୍ୟ ଆବଶ୍ୟକତା ପୂରଣ ହୋଇପାରିଲେ ନାହିଁ । ଇଂଲଣ୍ଡର ଅକ୍ସଫୋର୍ଡ୍, କେମ୍ବ୍ରିଜ, ଲଣ୍ଡନ ଓ ଆମେରିକାର ସିକାଗୋ ଏହି ଚାରିଗୋଟି ବିଶ୍ୱବିଦ୍ୟାଳୟ ବ୍ରିଟାନିକା ପ୍ରସ୍ତୁତିରେ ସାହାଯ୍ୟ କରୁଥାଆନ୍ତି । ସେହିସବୁ ବିଶ୍ୱବିଦ୍ୟାଳୟର ୭୩ ଜଣଙ୍କ ନାମ ରହିଛି ପରାମର୍ଶ ଦାତା ବୋର୍ଡ଼ରେ । ତାହା ପଛକୁ ଆସିଗଲା ପରାମର୍ଶ ଦାତାମାନଙ୍କ ନାମ—(Consulants and Advisers) । ଗଣିଗଲି ଗଣ୍ଠି ଗଣ୍ଠି ବାଁ ପଟେ ନମ୍ବର ଦେଇଗଲି । ପ୍ରତ୍ୟେକଙ୍କର ଯୋଗ୍ୟତାର ପରିଚୟଥାଏ । ସେମାନଙ୍କ ସଂଖ୍ୟା ୧୮୫

ଚହଲ । ଦେଖିଲି ଏମାନେ ଏକୁଆଟରେ ବଳଆର । ସର୍ବପଲ୍ଲୀ ରାଧାକୃଷ୍ଣନ ଭାରତର ଭାଇସ୍‌ପ୍ରେସିଡେଣ୍ଟ ଓ ଅକ୍‌ସ୍‌ଫୋର୍ଡ଼ ବିଶ୍ୱବିଦ୍ୟାଳୟର ଭୂତପୂର୍ବ (Spalding Prof)—ଅଛନ୍ତି ପ୍ରାଚ୍ୟ ଦର୍ଶନ ପାଇଁ; ଡଗଲାସ୍ ମାର୍କ ଆର୍ଥର, ଯୁକ୍ତରାଷ୍ଟ୍ର ଆମେରିକାର ସୈନ୍ୟ ବାହିନୀରେ ଜେନେରାଲ—ସାମରିକ ବିଷୟ ଗୁଡ଼ିକ ପାଇଁ; କ୍ଲେମେଣ୍ଟ ରିଚାର୍ଡ଼ ଆଟ୍‌ଲି, ୧୯୪୫ରୁ ୫୧ ବ୍ରିଟେନର ପ୍ରଧାନମନ୍ତ୍ରୀ ଓ ୧୯୩୫ରୁ ୫୭ ବ୍ରିଟିଶ ଲେବରପାର୍ଟିର ଲିଡର—ବେଛିବାକୁ ନାମ ଦେଲି ପାଠକଙ୍କର ଗୋଟିଏ କଥା ଜାଣିବାର ସୁଯୋଗ ପାଇଁ, କଥାଟି ହେଲା ଏହିଭଳି ଯୋଗ୍ୟତା ସଂପନ୍ନ ୧୮୫ ଜଣ ଅଛନ୍ତି ବିଜ୍ଞାନଙ୍କର ପରାମର୍ଶ ଦାତା । ତାହାପରେ ଗୋଟି ଗୋଟି କରି ପଢ଼ିଲି ଯେଉଁମାନେ ଲେଖା ଦେଇଛନ୍ତି ସେମାନଙ୍କ ନାମ ଓ ଯୋଗ୍ୟତା ଜାଣିବା ପାଇଁ । ୬୨୦୦ ଜଣଙ୍କର ନାମର ଉଲ୍ଲେଖ ରହିଛି ୧୭୩ ପୃଷ୍ଠାବ୍ୟାପୀ ଷ୍ଟ୍ରେଟ ଷ୍ଟ୍ରେଟ ଅକ୍ଷରରେ । ପଢ଼ୁ ପଢ଼ୁ ଓ ବାମପଟେ ନମ୍ବର ଦେଇ ଦେଇ ରାତି ପ୍ରାୟ ବାଜିଗଲା ଆଖି କହିଲା, ମୁଁ ଆଉ ଖୋଲା ରହିପାରିବି ନାହିଁ । ବନ୍ଦ କଲି, ଶୋଇ ପଡ଼ିଲି । ଉଠୁ ଉଠୁ ଛ'ଟା ବାଜିଗଲା । ପଢ଼ିବା ସୂଚୀଟା ଦିନ ଦଶଟା ବେଳକୁ ଶେଷ ହେଲା ୧୯୬୦ ଡିସେମ୍ବର ୭ ତାରିଖ ଦିନ ।

ମୁଁ ଥକ୍କା ହୋଇ ବସିଗଲି । ଗୋଟିଏ ସେଟ୍ ଏନ୍‌ସାଇକ୍ଲୋପିଡିଆ କରିବା ପାଇଁ ଯଦି ଏତିକି ଆୟୋଜନ ଲୋଡ଼ା, ମୁଁ କାହିଁକି ସାହସ କରୁଛି ଓଡ଼ିଶାରେ ସେମିତି କରିବା ପାଇଁ ? ସଂଖ୍ୟା ଦୃଷ୍ଟିରୁ ନହେଲେ ମଧ୍ୟ ଗୁଣ ଦୃଷ୍ଟିରୁ ସମାନ । ବ୍ରିଟାନିକା କଳେବରରେ ୩୮୦ ଲକ୍ଷ ଶବ୍ଦ ରହିବ, ଜ୍ଞାନମଣ୍ଡଳରେ ତ ୫୦ ଲକ୍ଷ ରହିବ । ସେମାନେ ଗୋଟାଏ ବିଷୟରେ ସାତ ପୃଷ୍ଠା ଲେଖିଲାବେଳକୁ ମୁଁ ତ ପୃଷ୍ଠାଏ ଲେଖିବି । ତା' ହେଲେ ମଧ୍ୟ ସେହି ସୀମା ଭିତରେ ସବୁକଥା ବୁଝାଇବାକୁ ତ ପଡ଼ିବ । ବିଷୟରେ ଏହାକୁ ସଦା ନୂତନ କରିରଖିବାର ଯେଉଁ ପ୍ରଚେଷ୍ଟା କରୁଛନ୍ତି ଅଳ୍ପରେ ହେଲେ ମଧ୍ୟ ସେହିଭଳି ପ୍ରଚେଷ୍ଟା ଆମକୁ କରିବାକୁ ହେବ । ୬ ହଜାର ୨୦୦ ଲୋକଙ୍କ କଲମ ଯାହା କରୁଛି ଜଣକ କଲମ ତାହା କା କରିବ କିପରି ? ଇଚ୍ଛା ଥିଲେ ବି ସମ୍ବଳ କାହିଁ ? ଏତେ ଆୟୋଜନ ସତ୍ତ୍ୱେ ସେମାନେତ ପୁଣି ଆଶଙ୍କା କରୁଛନ୍ତି ଯେ ଗୋଟିଏ ଭଲ୍ୟୁମ୍ ଛପା ପରେ

ଆଜି ଗୋଟିଏ ଛପା ହେଲାବେଳକୁ ଯଦି ସତର୍କତା ଅବଲମ୍ବନ କରାଯାଇ ନଥିବ ପ୍ରଥମ ଭାଲ୍ୟୁମଟି କେତେ ଦୂରକୁ ପୁରୁଣା ହୋଇ ଯାଇଥିବ । ସେହି ସତର୍କତା ମୋ ପକ୍ଷରେ କ'ଣ ସମ୍ଭବ ? ପ୍ରଥମ ଖଣ୍ଡରେ ମିନା ଲେଖି ଦେଇଛି "ସବୁଆଡ଼ୁ ସାହାଯ୍ୟ ସହାନୁଭୂତି ଓ ସହଯୋଗ ମିଳିଲେ ୭ ବର୍ଷ ଭିତରେ ସଂପୂର୍ଣ୍ଣ ସେଟ୍‌ଟି ପ୍ରକାଶ ପାଇବ ବୋଲି ଆଶା କରୁଛି"— କାର୍ଯ୍ୟରେ ଯଦି ତାହା ସମ୍ଭବ ହୋଇ ନପାରିଲା— ଦଶବର୍ଷ ଲାଗିଗଲା, ମୋ ଲିଖିତ ଏହି ସବୁ ବିଷୟ ବସ୍ତୁ ପୁରୁଣା ହୋଇ ଆସିଥିବ । ଇଏତ ବିଷମ ସମସ୍ୟା ! ବରଂ ଲୋକେ କୁହନ୍ତି 'ପାଉଁଲାନି ହିଁ'— ତା' ଠାରୁ ଅଧିକ ହାସ୍ୟାସ୍ପଦ ହେବ ଯଦି ବାଆଁ ଗଡ଼ୁ ଗଡ଼ୁ ମାଙ୍କଡ଼ ହୋଇଯାଏ । ପାଠକ ୧୯୮୬ରେ ଯେତେବେଳେ ଦେଖୁଛନ୍ତି ୬୦ ଖଣ୍ଡରୁ ମାତ୍ର ୪୦ ଖଣ୍ଡ ଜ୍ଞାନମଣ୍ଡଳ ପ୍ରକାଶ ପାଉଛି ସେତେବେଳେ ମୋତେ ଯେ ଖୁବ୍ ଗାଳି ନଦେଉଛନ୍ତି ସେଇଟା ସେମାନଙ୍କ କ୍ଷମାଗୁଣର ପରିଚୟ । ଆରମ୍ଭରେ ମୋତେ ଯଦି କେହି କହି ଦେଇଥାଆନ୍ତା ଛବିଶ ବର୍ଷପରେ ମଧ୍ୟ ଏହା ଶେଷ ହେବ ନାହିଁ, ମୁଁ ନିଶ୍ଚୟ ମୋ ଉଦ୍ୟମ ଶେଷରେ ପୂର୍ଣ୍ଣଚ୍ଛେଦ ଟିଏ ଦେଇ ଥାଆନ୍ତି ।

## କ୍ଷୀଣ ଆଲୋକ ରେଖା

ଏହି ସବୁ କଥା ଭାବୁଥିଲି ବେଳେ ନୂଆ ବିଶ୍ୱକୋଷ ପୃଷ୍ଠା ଓଲଟାଇ ଆଖିପକାଇ ଯାଉଥିଏ କଅଣ କେମିତି ଲେଖା ଯାଇଛି ଜାଣିବା ପାଇଁ । ଇଂରାଜୀ ଭାଷାର ପ୍ରଥମ ଅକ୍ଷରଟି ଉପରେ ଯାହା ଲେଖା ଯାଇଛି ତାକୁ ପଢ଼ିଲି । ଗୋଟିଏ ଶବ୍ଦ ଅଛି । ପଢ଼ିଲାବେଳେ ଜ୍ଞାନମଣ୍ଡଳରେ ପ୍ରଥମ ଓଡ଼ିଆ ଅକ୍ଷର 'ଅ' ଉପରେ ଯାହା ଅଛି ତାହା ସହିତ ତୁଳନା କରୁଥାଏ । ଗୋଟିଏ କଥା ଲକ୍ଷ୍ୟ କଲି ବିଶ୍ୱକୋଷର ପାଠକ ହେଲେ ସେହିମାନେ, ଯେଉଁ ମାନେ କ କେତେ କେତେ ଜାଣିଛନ୍ତି— ମାନସିକ ସ୍ତରରେ ହ' ଘର ପାହାଚ ଉପରକୁ ଉଠି ଯାଇଛନ୍ତି । ତେଣୁ ଅତି ମୌଳିକ କଥା ଲେଖିବାର ଆବଶ୍ୟକତା ନାହିଁ । ସେଇଟିତ "ପପୁଲାର" ବହି ନୁହେଁ । ପଢ଼ୁଆ ଲୋକେ ଲେଖିଛନ୍ତି ପାଠୁଆଙ୍କ ପାଇଁ । ୬୫୦ଟି ଶବ୍ଦରେ ସବୁକଥା କହିଦେଇଛନ୍ତି । କିନ୍ତୁ ଜ୍ଞାନମଣ୍ଡଳର 'ଅ' ପ୍ରବନ୍ଧରେ ସେହିସବୁ କଥା ଓ ତାକୁ ବୁଝିଲା ଭଳି ଆଉ କେତେ କହିବା ପାଇଁ ଲେଖିବାକୁ ପଡ଼ୁଛି ୪୮୦୦ ଶବ୍ଦ ଓ ଦିଆଯାଇଛି ନଅଟି ଚିତ୍ର । ସେମିତି ନ କରିଥିଲେ କଥାଟା ଭଲ

ସ୍ତରରେ ବୁଝାଇ ହୋଇନଥାନ୍ତା । ତାହାହେଲେ ଆମ ବହିର ଉପଯୋଗିତା ଆଜ ଗୋଟାଏ ଦୃଷ୍ଟିରୁ ଦେଖନ୍ତୁ । ଆମ ଆଗରେ ଲେଖା ଯାଇଛି—ପାଠକ ଅତି ଅଳ୍ପ ଜାଣିଛନ୍ତି ବୋଲି ଧରିନଅ' ( assumption of pre-knowledge-minimum) । ବ୍ରିଟାନିକାର ସଂପାଦକମାନଙ୍କ ଆଗରେ ଲେଖାଅଛି—"ପାଠକ ଏ ବିଷୟରେ ଜାଣିଛି—ତାକୁ ଆହୁରି ଅଧିକ ଜଣାଇବାକୁ ପଡିବ" ସେଇଠୁ ଗୁଲିଲି ଆମ ବହିରେ ଥିବା ଅନ୍ୟ ବିଷୟ ଗୁଡ଼ିକ କେମିତି ଲେଖା ଯାଇଛି ଦେଖିବା ପାଇଁ । ସେତେବେଳେ ମଧ୍ୟ ସେହି ଅଭିଜ୍ଞତା । ତା' ସାଙ୍ଗକୁ ଲକ୍ଷ୍ୟ କଲି ଯେ କେତେ ଗୁଡ଼ିଏ କଥା ମୁଁ ମଧ୍ୟ ବୁଝିପାରୁ ନାହିଁ । ଭାବିଲି—ମୁଁ ଯାହାବୁଝି ନ ପାରୁଛି ତାକୁ ଜ୍ଞାନମଣ୍ଡଳରେ ଦେଇ ଲାଭ କଅଣ ? ତାକୁ ବାଦ୍ ଦେଇ ଦେଲେ ଚଳିବ । ନିଜେ ଯେତିକି ବୁଝୁଛି ସେତିକି ଲେଖିଦିବି । ଯାହା ବୁଝି ନ ପାରୁଛି ଅର୍ଥାତ୍ ଯେଉଁ ଗୁଡ଼ିକ ବିଶେଷଜ୍ଞ ବା ଗୋଟାଏ ନିର୍ଦ୍ଦିଷ୍ଟ ବିଭାଗରେ ଅଧିକ ଜାଣିଥିବା ଲୋକଙ୍କ ପାଇଁ ଉଦ୍ଦିଷ୍ଟ ତାକୁ ବାଦ୍ ଦେବି । ଉତ୍କଳ ବିଶ୍ୱ-ବିଦ୍ୟାଳୟ ଯେଉଁ ବଡ଼ ବଡ଼ କୋଡ଼ିଏ ଭଲ୍ୟୁମ୍ ପ୍ରକାଶ କରିବେ ସେଥିରେ ସେ ସବୁ ରହିବ । ଜ୍ଞାନମଣ୍ଡଳକୁ ପଢ଼ି ସାରିଲା ପରେ ପାଣ୍ଡିତ୍ୟ ପୂର୍ଣ୍ଣ ତଥ୍ୟ ସବୁଥିବା ଜ୍ଞାନକୋଷକୁ ପଢ଼ିବେ । ପ୍ରତିଯୋଗିତାର ପ୍ରଶ୍ନ ନାହିଁ—ପରିପୂରକ ହେବାର ପ୍ରଶ୍ନହିଁ ରହୁଛି । ସେତେବେଳେ ଏହି ସିଦ୍ଧାନ୍ତରେ ପହୁଞ୍ଚି ପାରିଥିବାରୁ ୧୯୮୭ ରେ ପ୍ରକାଶିତ ହୋଇ ସାରିଥିବା ୪୦ ଖଣ୍ଡ ଜ୍ଞାନମଣ୍ଡଳର ପ୍ରତ୍ୟେକ ବିଷୟଟିକୁ ସମସ୍ତେ ବୁଝି ପାରୁଛନ୍ତି—ମନଦେଇ ପଢୁଛନ୍ତି । 'ହୃତପିଣ୍ଡ' ଉପରେ ଯେଉଁ ୨୦ ହଜାର ଶବ୍ଦ ବିଶିଷ୍ଟ (୫୦ ପୃଷ୍ଠା) ଲେଖ ଟି ରହିଛି ତାକୁ ଯେ ଅଷ୍ଟମ ନବମ ଶ୍ରେଣୀ ପର୍ଯ୍ୟନ୍ତ ବା ତା'ଠାରୁ ଟିକିଏ କମ ପଢ଼ିଥିବା ବୟସ୍କ ପାଠକ ବୁଝିପାରୁଛନ୍ତି, ତାହାର କାରଣ ହେଲା ସେହିମାନେ ବୁଝିପାରିବା ଭଳି କଥାହିଁ ଦିଆଯାଇଛି । ଅବଶ୍ୟ ଡାକ୍ତର ମାନେ ମଧ୍ୟ କହୁଛନ୍ତି ଯେ ଏଥିରେ ଯାହ ସବୁ ଦିଆ ଯାଇଛି ତାହାଠାରୁ ଅଧିକ ଜାଣିବାର ଆବଶ୍ୟକତା ଉଚ୍ଚ ଶିକ୍ଷିତ ଲୋକଙ୍କ ପାଇଁ ମଧ୍ୟ ନାହିଁ । ଅନ୍ଧାର ଭିତରେ କ୍ଷୀଣ ଆଲୋକ ରେଖାଟିଏ ଅଛି ବୋଲି ଦେଖିଲି ଓ ମୋ ଭିତରୁ ନୈରାଶ୍ୟ ଟିକିଏ ଦୂର ହୋଇଗଲା ।

କିନ୍ତୁ ଅନ୍ୟ ସମାନ ସ୍ତରରେ ଜଟିଳ ପ୍ରଶ୍ନଟିର ଉତ୍ତର ଖୋଜିବାକୁ ପଡ଼ିଲା । ଯେଉଁ ସବୁ ଗୁରୁତ୍ୱ ପୂର୍ଣ୍ଣ ବିଷୟ ଷାଠିଏ ଖଣ୍ଡ ଯାକ ବହିରେ

ସ୍ଥାନ ପାଇବ ସେଥିଭିତରୁ ପ୍ରତ୍ୟେକଟି ବିଷୟରେ ଫାଇଲ ଖୋଲିବାକୁ ପଡ଼ିବ । ସେଭଳି କଲେ ଯାଇ ଯେତେବେଳେ ସେହି ସଂପର୍କରେ କିଛି ବାହାରିବ ପତ୍ର ପତ୍ରିକାରେ, ଖବର କାଗଜରେ ସେତିକ ସଂଗ୍ରହ କରି ସଂପୃକ୍ତ ଫାଇଲରେ ରଖିହୋଇପାରିବ । କେଉଁ ବିଷୟଟିର ଅନ୍ୟ କେଉଁ ବିଷୟ ସହିତ ସଂପର୍କ ରହିଛି ତାହାର ଉଲ୍ଲେଖ ସେହି ସବୁ ଫାଇଲରେ ଲେଖା ହୋଇ ରହିବା ଆବଶ୍ୟକ । ତାକୁହିଁ କୁହାଯାଏ କ୍ରସ୍ ରେଫରେନ୍ସ୍ । ଏଭଳି ଗୋଟିଏ ତଥ୍ୟ ମିଳିଲା ଯାହାରିକି ପାଞ୍ଚଛଟା— ଏଭଳି କି ଦଶବାରଟା ବିଷୟ ସହିତ ସଂପର୍କ ରହିଛି । 'ହୃତ୍ପିଣ୍ଡ' ଫାଇଲର ସଂପର୍କ ରହିଛି ଶରୀର ବିଦ୍ୟା, ମସ୍ତିଷ୍କ, ରକ୍ତ ଫୁସ୍ ଫୁସ୍ ସହିତ ହୃତ୍ପିଣ୍ଡ ବିଷୟରେ ଲେଖିଲା ବେଳକୁ ସେହି ଆଉଗୋଟି ଫାଇଲ କାଢ଼ିବାକୁ ପଡ଼ିବ । ସେହି ଦୃଷ୍ଟିରୁ ବିଷୟ ବାଛିବାରେ ଲାଗିଲି । ହିସାବ କରିଦେଖିଲି ଯେ ଅତି କମ୍‌ରେ ସାତ ହଜାର ବିଷୟ ବଛାଯିବ । ସେଥିଭିତରୁ ୫୦୦୦ ହେଉଛି ଗୁରୁତ୍ୱପୂର୍ଣ୍ଣ । ସେଗୁଡ଼ିକ ଉପରେ ସ୍ୱତନ୍ତ୍ର ଫାଇଲ ରହିବ । ସବୁ ପାଇଁ ଫର୍ଦ୍ଦେ ଲେଖାଁ କାଗଜ ରହିଲା, ଉପରେ ହେଡ୍‌ଇଙ୍ଗ୍‌ଟି ଲେଖିବା ପାଇଁ । ଏତିକ ପଢ଼ିଦେଲେ ଯେମିତି ସହଜ ବୋଲି ମନେ ହେଉଛି କାର୍ଯ୍ୟରେ ସେମିତି ନୁହେଁ—ଘୋରକଷ୍ଟ । ଏଇତକ ନକରି ଯଦି ମାଡ଼ିଯିବି ତେବେ ଜଙ୍ଗଲ ଭିତରେ ପଥହରା ହୋଇ ଗଲେଭଳି କଥା ହେବ । ବିଷୟଟିରୁ କିଛି ପଢ଼ିବାକୁ ହେବ । ହୋଇପାରିବକି ନପାରିବ ସେ ବିଷୟରେ ସ୍ଥିର କରିବା ପାଇଁ ଏତିକ ଲୋଡ଼ା । ତା' ବାଦେ—ଦେଲେ କେତେ ହୋଇପାରିବ ଆମ ସୀମା ଭିତରେ ସେ ବିଷୟରେ ଯଥା ସମ୍ଭବ ମନ ସ୍ଥିର କରିବାକୁ ହେବ । ବ୍ରିଟାନିକାର ପ୍ରଥମ ଖଣ୍ଡରେ ସୌନ୍ଦର୍ଯ୍ୟ ବୋଧ ବା ଜ୍ଞାନ (Aesthetics) ଉପରେ ଲେଖା ଯାଇଛି ୧୯ ସ୍ତମ୍ଭ ବା କଲମ୍ । ସେତିକ ଓଡ଼ିଆରେ ଅନୁବାଦ କଲେ ଜ୍ଞାନମଣ୍ଡଳରେ ୩୬ ପୃଷ୍ଠାରୁ ଅଧିକ ହୋଇଯିବ । ଆମେ ଖୁବ୍ ହେଲେ ଚାରିପୃଷ୍ଠା ଦେବୁ । ସେ ବିଷୟରେ ଏତିକବେଳୁ ମାନସ୍ଥିର କରିବାକୁ ହେବ । କେତେ ଗୁଡ଼ିଏ ବିଷୟ ପାଶ୍ଚାତ୍ୟ ଦେଶର ପାଠକମାନଙ୍କ ବୁଝିବାକୁ ମନରେ ରଖି ହୋଇ ଯାଇଛି । ସେଭଳି ବ୍ୟକ୍ତି, ସ୍ଥାନ, ଯୁଦ୍ଧର ବର୍ଣ୍ଣନା ବିଷୟରେ ଆମ ପାଠକ ଜାଣିବାର ଆବଶ୍ୟକତା ନାହିଁ । ସେ ଗୁଡ଼ିକୁ ବାଦ୍ ଦେବାକୁ ପଡ଼ିବ । ଆମ ପାଠକ ଜାଣିବା ପାଇଁ ଆଗ୍ରହୀ ଥିବା କେତେକ ବିଷୟର ଉଲ୍ଲେଖ ମଧ୍ୟ ବ୍ରିଟାନିକା କରିନାହିଁ । ସେ ଗୁଡ଼ିକୁ

ଯୋଗ କରିବାକୁ ହେବ, ନଗେନ ବସୁଙ୍କ ବିଶ୍ୱକୋଷ ବା ଆମ ଓଡ଼ିଆରେ ପ୍ରକାଶିତ କେତେକ ପୁସ୍ତକରୁ । ବି୍ୃଟାନିକାରେ ଥିବା ୪୩୦୦୦ ବିଷୟରୁ ୧୫୦୦୦କୁ ମୂଳରୁ ବାଦଦିଆ ଯାଇପାରେ । ବାକି ଯେତକ ରହିଲା ସେଥିରୁ ଦଶହଜାର ବିଷୟରେ ଅତି ସଂକ୍ଷେପରେ ଲେଖିଲେ ଚଳିବ । ଏହା କରିବା ପାଇଁ କେତେମାସ ଲାଗିଗଲା । ଆହୁରି ଜଟିଳ ହୋଇପାରି ଥାଆନ୍ତା—

କିନ୍ତୁ ଗୋଟିଏ କାମ ମୋ କାନ୍ଧଉପରେ ସବାର ହୋଇଗଲାଣି । ପ୍ରଥମ ଖଣ୍ଡରେ ଲେଖିଥିଲି ସବୁଆଡୁ 'ସାହାଯ୍ୟ ସହାନୁଭୂତି' ସହଯୋଗ ମିଳିଲେ ଶୀଘ୍ର ଶୀଘ୍ର କାମ ହୋଇଯିବ । ଗୋଟାଏ ବିଚିତ୍ର ଅନୁଭବ ହେଲା, ଯେତେଶୀଘ୍ର ଏହି ଅଳ୍ପମୂଲ୍ୟର ବହିଖଣ୍ଡିକ ବିକି ହୋଇଯିବ ବୋଲି ବିଚାରିଥିଲି ସେତେଶୀଘ୍ର ହେଲାନାହିଁ । ତାହାର ରହିଗଲା ଦୁଇ ତିନୋଟି କାରଣ । ପ୍ରଥମଟି ହେଲା ଏନ୍‌ସାଇକ୍ଲୋପିଡିଆ ବିଷୟରେ ବହୁଲୋକଙ୍କର ଧାରଣା ନଥିବାରୁ ସେମାନେ ଏହାର ଉପଯୋଗିତା ବିଷୟରେ ଆଗ୍ରହ ପ୍ରକାଶ କଲେ ନାହିଁ । ଦ୍ୱିତୀୟଟି ଏଇଟି ପିଲାଙ୍କ ପାଇଁ ଉଦ୍ଦିଷ୍ଟ ବୋଲି ବିଚାରିଲେ । ଏହାର ପୃଷ୍ଠାଗୁଡ଼ିକ ଆଦୌ ନଓଲଟାଇ କେତେକ ହାଇସ୍କୁଲର ଶିକ୍ଷକ ବିଚାରିଲେ—ବିଶ୍ୱବିଦ୍ୟାଳୟ ଯେଉଁ ଜ୍ଞାନକୋଷ ପ୍ରକାଶ କରିବ ତାହା ଆମ ଜ୍ଞାନମଣ୍ଡଳଠାରୁ ବହୁଗୁଣ ଭଲହେବ । ତ କିଣି କଣାଯିବ—ଏଇଟିକିଣି ଲାଭ ନାହିଁ । ତେଣୁ ପ୍ରତିଦିନ ମୋର ଗୋଟାଏ କାମଥାଏ ସାଇକେଲ ପଛରେ ହ'ଚାରିଖଣ୍ଡି ବହି ବାନ୍ଧି ଭିନ୍ନ ଭିନ୍ନ ଲୋକଙ୍କ ପାଖକୁଯିବା । ନାନା ପ୍ରଶ୍ନର ଉତ୍ତର । ବଡ ପ୍ରଶ୍ନ ହେଉଛି—ଜଣେ କେମିତି ଏହାକୁ ଲେଖିବେ ଓ ଏହାକିଣ ଶେଷ ହୋଇପାରିବ ? ଏହି ପ୍ରଶ୍ନର ଉତ୍ତର କଅଣ ବା ଦିଅନ୍ତି । ମଝିରେ ମଝିରେ ଭୁବନେଶ୍ୱର ଯାଏ । ଉଚ୍ଚପଦସ୍ଥ ଅଫିସର, ବଡ଼ଲୋକେ, ଉଚ୍ଚଶିକ୍ଷିତ ଲୋକଙ୍କ ଭିତରେ ଏହାର ସେମିତିକିଛି ଆଦର ଦେଖିଲି ନାହିଁ । ଏହାର ନିଶ୍ଚୟ ବ୍ୟତିକ୍ରମ ଥିଲା । ଯାହାହେଉ ମୋତେ ବହୁତ କଷ୍ଟ ଶରୀର ଶ୍ରମ କରିବାକୁ ପଡ଼ୁଥାଏ ଲୋକଙ୍କ ପାଖକୁ-ଯାଇ ବହି ବିକିବା ପାଇଁ ।

ବର୍ଷକରୁ ଅଧିକ କାଳ ଶାରୀରିକ ଓ ମାନସିକ ପରିଶ୍ରମ କରିବାକୁ ପଡ଼ିଲା । ଦିନକରେ ମାତ୍ର ତିନିଘଣ୍ଟା ଶୁଏ—ବାକିସମୟରେ ଗୋଟାଏ ନା

ଗୋଟାଏ କିଛି କାମ କରୁଥାଏ । ଦେହ ଟିକିଏ ଦୁର୍ବଳ ହୋଇଗଲା— କିନ୍ତୁ ଉପାୟ ବା କଅଣ ? କେତେକାମ କରୁଥିଲି ସେ ବିଷୟରେ ଗୋଟିଏ ମଜାର 'କାହାଣୀ' କଟକ ରୋଟାରୀ କ୍ଲବରେ ଦିନେ ଡକ୍ଟର ସଦାଶିବ ମିଶ୍ର କହିଲେ । ରୋଟାରୀ କ୍ଲବ ତରଫରୁ ରାଧାନାଥ ରଥଙ୍କୁ ଓ ମୋତେ ଏକାଦିନେ ଅଭିନନ୍ଦନ ଦିଆ ଯାଇଥାଏ । ସେହିଦିନ ସେ କହିଲେ '୧୯୬୧ ଆରମ୍ଭରେ ଦିନେ ମୁଁ ମଟରରେ ଯାଉଥିଲି । ସାମନାରେ ଦେଖିଲି ଜଣେ ସାଇକଲରେ ଯାଉଛନ୍ତି ପଛରେ ପୁଡ଼ାଟିଏ ବନ୍ଧାହୋଇଛି । ସାମନାରେ ନେଇ ମଟରଟିକୁ ରଖିଦେଲି । ବିନୋଦ ବାବୁ ସାଇକଲରୁ ଓହ୍ଲାଇ-ପଡ଼ିଲେ । ଜ୍ଞାନମଣ୍ଡଳର ପ୍ରଥମ ଖଣ୍ଡିକ ସେ ମୋତେ ଦେଇଥିଲେ—ମୁଁ ପଢ଼ିସାରିଥିଲି । ତାଙ୍କୁ ପଚାରିଲି ଆପଣଙ୍କ ଅଫିସରେ କେତେଜଣ କାମ କରୁଛନ୍ତି । ସେ ଉତ୍ତର ଦେଲେ ଚାରିଜଣ ମାତ୍ର । ସେମାନଙ୍କ ବିଷୟରେ ଟିକିଏ ଜାଣିବାକୁ ଆଗ୍ରହ ପ୍ରକାଶ କଲାରୁ ସେ କହିଗଲେ—ବିନା, ବିନ, ବିନୋଦ ଓ ବିନୋଦ କାନୁନ୍‌ଗୋ ଏହି ହେଲେ ଚାରିଜଣ । ସକାଳେ ଯେତେବେଳେ ଉଠି ଘରଝାଡ଼େ—ସେତେବେଳେ ମୁଁ ହେଉଛି ଝାଡ଼ୁଦାର 'ବିନା' । ତାହାପରେ ଖବର କାଗଜ ଚକ ସଜାଡ଼ି ରଖିଦିଏ—ଯେଉଁଠି ଟିକ୍ ମରାଯାଏ ତାକୁ କାଟିଦେଇ ରଖେ । ଅଠାବାନ୍ଧି ସେଗୁଡ଼ିକୁ ଫୁଲସ୍କେପ୍ କାଗଜରେ ମଡ଼ାଇଦିଏ । ସେତେବେଳେ ମୁଁ ବିନ । ତାହାପରେ ଚିଠିପତ୍ର ଲେଖେ ଓ ସେମିତି କିଛି କାମକରେ । ସେତେବେଳେ ମୁଁ ବିନୋଦ । ସେହି କାଟାଗିରିରେ ବନ୍ଦିବନ୍ଦି ପାଇଁ ବାହାରେ । ତାହାପରେ ଲେଖାପଢ଼ା ନୋଟ୍ ଇତ୍ୟାଦି କରେ । ସେତେବେଳକୁ ବିନୋଦ କାନୁନ୍‌ଗୋ । ଏକାଧାରରେ ମୁଁ ସୁଇପର, କିରାଣୀ, ମାନେଜର ଓ ଲେଖକ । ତାଙ୍କ କଥାଶୁଣି ମୁଁ ଟିକିଏ ବିସ୍ମିତ ହୋଇଥିଲି । ଆଜ ସେହି ପଦ୍ମଶ୍ରୀ ବିନୋଦ କାନୁନ୍‌ଗୋଙ୍କୁ ଆମେ ଦେଖୁଛୁ ଏଠାରେ ବସିଛନ୍ତି ।...'' ଯେତେବେଳେ କଥାଟା ଗୋଟାଏ ବାଗଜଉପରକୁ ଆସିଗଲା, ମନଟା ଗୁଳାରେ ପଡ଼ିଲାଭଳି ହୋଇଗଲା ସେତେବେଳେ ଦ୍ୱିତୀୟ ଖଣ୍ଡିକ ଲେଖିବା ଆରମ୍ଭ କଲି ।

'ଜ୍ଞାନମଣ୍ଡଳ'ର ପ୍ରତ୍ୟେକ ପୃଷ୍ଠାଶେଷରେ ଗୋଟିଏ ଗୋଟିଏ 'ସୂକ୍ତି' ବାଣୀ ଦିଆଯାଉଥାଏ । ଇଂରାଜୀରୁ ସେଗୁଡ଼ିକ ଅନୁବାଦ କରିବା ସହଜ-ନୁହେଁ ବୋଲି ସେତେବେଳେ ବିଚାରିଥିଲି—ଆଜିଆହୁରି ଅଧିକ ବିଚାରୁଛି ।

ଜୀବନ କାଳଭିତରେ ଯେଉଁ ଅଭିଜ୍ଞତା ଲାଭ କରିଥାନ୍ତି ଯେଉଁଜ୍ଞାନ ଅର୍ଜନ କରିଛନ୍ତି ସେଥିର ବହୁଭାଗର ସାହାଯ୍ୟନେଇ ପଣ୍ଡିତମାନେ ଯେଉଁ ଗୋଟିଏ ଗୋଟିଏ ବାକ୍ୟ କହିଯାଇଛନ୍ତି ତାହାଭିତରେ ଏଭଳି ଚମତ୍କାର ଭାବେ, ପ୍ରେରଣା, ସୌନ୍ଦର୍ଯ୍ୟ ରହିଛି ଯେ, ସେଇଟିକୁ ପଢ଼ିଦେଲାବେଳେ ମନଭିତରେ ଦେହ ଭିତରେ ଗୋଟାଏ ଶିହରଣ ଖେଳିଯାଏ । ଭାବର ଅନୁବାଦ କରିବା ପାଇଁ ବହୁତ କଷ୍ଟ ମାନସିକ ପରିଶ୍ରମ ଲୋଡ଼ା । ଆକ୍ଷରିକ ଅନୁବାଦ କରିଦେଲେ ଚଳିବନାହିଁ—ବରଂ କଥାଟିର ପ୍ରକୃତ ମହତ୍ତ୍ୱ ବହୁଦୂରକୁ କମିଯିବ ! "ଅନ୍ୟର ମଙ୍ଗଳ କରିବାର ସର୍ବୋତ୍କୃଷ୍ଟ ପନ୍ଥା ହେଉଛି ନିଜେ ଭଲ ହୋଇଯିବା"— ଏହି କଥାଟି ଇଂରାଜୀରେ ଯେମିତି ଅଛି ସେମିତି ଆକ୍ଷରିକ ଅନୁବାଦ କରି ଦେଇଥିଲେ ଚଳିନଥାନ୍ତା । ପ୍ରଥମ ଖଣ୍ଡିକ ଦେଖିଲାବେଳେ ପରେ ପ୍ରାୟ ସମସ୍ତେ କହିଲେ—'ଏଭଳି ହିଅ ଯାଉ ।' ହିଆଯିବ କି ନାହିଁ ବୋଲି ଯେତେବେଳେ ସ୍ଥିର ହେଉଥାଏ ଭାଷାକୋଷର ସଙ୍କଳକ ପ୍ରହରାଜଙ୍କ ଭାଇ ସୁଲେଖକ ବଟକୃଷ୍ଣ ପ୍ରହରାଜ କହିଥିଲେ—'ସେ ସବୁହିଅ ନାହିଁ । ଅଳ୍ପ କେତୋଟି ଦେଇ ପରେ ଦେଖିବ ଆଉ ଭଲ ମିଳୁନାହିଁ । ତେଣିକି ବାଜେ ଲୋକ ଯାହା କହିଛନ୍ତି ତାକୁ ଦେଇଦେବ । ଓଡ଼ିଆରେ ଏମିତି କେତେ କଥା କୁହାଯାଇଛି ଯେ ସେଥିଭିତରୁ ଏହିଭଳି ସବୁ ବାକ୍ୟ ଖୋଜିଲେ ବାହାର ପଡ଼ିବ ?' ତାଙ୍କୁ ବୁଝାଇଥିଲି—ଆମେ ଓଡ଼ିଶା ବା ଭାରତ ଭିତରେ କାହିଁକି ନିଜକୁ ଏହି ସମ୍ପର୍କରେ ସୀମିତ କରି ରଖିବା ? ପୃଥିବୀର ବହୁ ମନୀଷି ପଣ୍ଡିତ ବୈଜ୍ଞାନିକ ଅନେକ କଥା କହିଛନ୍ତି । ମୁଁ ତ ପ୍ରାୟ ହଜାରକରୁ ଅଧିକ ସଂଗ୍ରହ କରି ରଖିଲିଣି । ସେ ମଧ୍ୟ ପ୍ରଥମ ଖଣ୍ଡିକ ଦେଖିଲା ପରେ ଖୁସି ହେଲେ । ମଝିରେ କେତେ ଖଣ୍ଡରେ ଏଭଳି ହିଆଗଲା ନାହିଁ, କାରଣ ଦେଖାଗଲା ଯେ ବହୁତ ସ୍ଥାନ ରହିଯାଉଛି ଓ ଶେଷସୁଦ୍ଧା ଦେଖାଯିବ ପ୍ରାୟ ତିନିଖଣ୍ଡର ସ୍ଥାନ ଏହାରି ପାଇଁ ରଖିବାକୁ ପଡ଼ିବ । କିନ୍ତୁ ଗୋଟିଏ ଶ୍ରେଣୀର ପାଠକ ଦୁଃଖ କଲେ । ଜଣେ ଅବସରପ୍ରାପ୍ତ ଉଚ୍ଚପଦସ୍ଥ ଅଫିସର ଲେଖିଲେ—'ମୁଁ ଜ୍ଞାନମଣ୍ଡଳ କିଣେ ଏହି 'ବାଣୀ' ଗୁଡ଼ିକ ପଢ଼ିବା ପାଇଁ । ବହୁଦିନ ପର୍ଯ୍ୟନ୍ତ ମୁଁ ସେଥିରୁ ମାନସିକ ଖୋରାକ ପାଇଯାଏ । ତାକୁ ବନ୍ଦ କରନ୍ତୁ ନାହିଁ ।' ପୁଣି ଆରମ୍ଭ କଲୁ ଓ ପ୍ରତ୍ୟେକ ପୃଷ୍ଠାରେ ନ ଦେଇ ପ୍ରତି ଦ୍ୱିତୀୟ ପୃଷ୍ଠା ଶେଷରେ ଦେଲୁ । ସେଗୁଡ଼ିକୁ ଏକାଠି କରି—ଟିକିଏ ଲେଖାଁ ଟିପ୍ପଣୀ

ଦେଇ 'ଅମୃତ ବଚନ' ବୋଲି ଖଣ୍ଡିଏ ବହି ଲେଖି ପାଣ୍ଡୁଲିପି ଅବସ୍ଥାରେ ରଖିଦେଇଛି ।

ଆଜ ଗୋଟିଏ ଆପତ୍ତି ଉଠିଲି । ଓଡ଼ିଆ ବିଶ୍ୱକୋଷ ଲେଖାଯାଉଛି—ସେଥିରେ ଓଡ଼ିଶାର ବ୍ୟକ୍ତି ସ୍ଥାନ ଉତ୍ସବ ଇତ୍ୟାଦି ବିଷୟରେ ଭଲ କରି ଲେଖା ନ ଯାଉଛି କାହିଁକି ? ଗୋଟାଏ ଦୃଷ୍ଟିରୁ ଏଇଟି ଗୋଟିଏ ମୌଳିକ ପ୍ରଶ୍ନ । ଏହାର ଉତ୍ତର ଉପରେ ନିର୍ଭର କରୁଛି ଓଡ଼ିଆ ପାଠକଙ୍କ ନିକଟରେ ଜ୍ଞାନମଣ୍ଡଳ ଆଦୃତ ହେବ କି ନାହିଁ । ଏନ୍‌ସାଇକ୍ଲୋପିଡିଆର ଉଦ୍ଦେଶ୍ୟ ବିଷୟରେ ବୁଝାଇବାକୁ ପଡ଼ିଲା । ଏମିତି କୁହାଗଲା—ବିଶ୍ୱକୋଷ ଲେଖାହେଲାବେଳେ ମନ ଭିତରେ ଥାଏ କି କି ବିଷୟ ଲୋକେ ଜାଣିବା ଦରକାର । ଏଠାରେ 'ଲୋକେ' କହିଲେ ବଙ୍ଗାଳୀ, ଓଡ଼ିଆ ବା ଇଂରେଜଙ୍କୁ ବୁଝାଉନାହିଁ—ସମଗ୍ର ମାନବ ସମାଜକୁ ବୁଝାଉଛି । ପରମାଣୁର ଗଠନ ଓ ତା' ଭିତରେ ଲୁଚି ରହିଥିବା ଏନର୍ଜି ବିଷୟରେ ସବୁ ଭାଷାଭାଷୀ ଲୋକେ ଜାଣିବେ । ଯେକୌଣସି ଭାଷାରେ ଲିଖିତ ବିଶ୍ୱକୋଷରେ ସେ ବିଷୟ ରହିବ ।' ସେମିତି ପୃଥିବୀର ପ୍ରସିଦ୍ଧ ପର୍ବତ, ହ୍ରଦ, ନଦୀ ବିଷୟରେ ସମସ୍ତେ ଜାଣିବେ । ଯେଉଁମାନେ ମାନବ ସମାଜ ପାଇଁ ସ୍ଥାୟୀ ଦାନ ଦେଇ ଯାଇଛନ୍ତି ସେମାନଙ୍କ ସହିତ ପ୍ରତ୍ୟେକ ଲୋକ ପରିଚିତ ହେବା ଉଚିତ । ତେଣୁ ଯେଉଁମାନେ ବା ଯେଉଁମାନଙ୍କ କାର୍ଯ୍ୟ ଗୋଟିଏ ଭୌଗୋଳିକ ସୀମା ଭିତରେ ସୀମିତ ସେମାନଙ୍କ ନାମ ବାଦ୍ ପଡ଼ିଯିବ । ଅବଶ୍ୟ ଏକଥା ଠିକ ଯେ ଯେଉଁ ଭାଷାରେ ବିଶ୍ୱକୋଷ ଲେଖାଯିବ ସେହିଭାଷା ଯେଉଁ ଭୌଗୋଳିକ ସୀମା ଭିତରେ ସୀମିତ ସେହି ସୀମାରେ ବାସ କରୁଥିବା ବ୍ୟକ୍ତି, ପୁସ୍ତକ, ପାହାଡ଼, ପର୍ବତ ଇତ୍ୟାଦି ବିଷୟରେ ସୂଚନା ଦିଆଯିବ । କିନ୍ତୁ କେବଳ ସେହି ଗୁଡ଼ିକର ପ୍ରାଧାନ୍ୟ ରହିଲେ ଅନ୍ୟମାନେ ପଢ଼ିବେ କାହିଁକି ? ବିଶ୍ୱକୋଷର ଲେଖକ ସବୁବେଳେ ବିଚାରୁଥାଏ ମୁଁ ଓଡ଼ିଆରେ ଲେଖୁଛି ସିନା—ବଙ୍ଗଳାରେ ହିନ୍ଦୀରେ ବା ଇଂରାଜୀରେ ମଧ୍ୟ ଲେଖି ପାରୁଥାଆନ୍ତି । ତେଣୁ ମୋର ବ୍ୟାପକ ଦୃଷ୍ଟିକୋଣ ରହିବା ଉଚିତ । ଏହି ଅସୁବିଧା ଥିବାରୁ ସ୍ୱତନ୍ତ୍ର ପ୍ରକାରର ବିଶ୍ୱକୋଷ ସବୁ ଏହି ଉଦ୍ଦେଶ୍ୟରେ ଲେଖାଯାଏ । ଆମର ମଧ୍ୟ ପରିକଳ୍ପନା ରହିଛି ଯେ "ଓଡ଼ିଆ ବିଶ୍ୱକୋଷ" ପ୍ରକାଶ କରିବୁ । ସେଥିରେ ଓଡ଼ିଶାର ବହୁ ବିଷୟ ବିସ୍ତୃତ ଭାବରେ ଲେଖାଯିବ । ଜ୍ଞାନମଣ୍ଡଳରେ

ମହାନଗ୍ଧ ବିଷୟରେ ଯେତିକ ଲେଖାଯିବ "ଓଡ଼ିଆ ବିଶ୍ବକୋଷ"ରେ ତାହାର ଗୁରୁତ୍ବ ରହିବ । ଏହାକୁ ହିଁ କୁହାଯାଏ 'ସ୍ଥାନୀୟ ଗୁରୁତ୍ବ' । ଏଇତକ ବୁଝାଇବା ପାଇଁ ବହୁ ଦିନ ଲାଗିଲା । ଏବେ ମଧ୍ୟ ସେହି କାମ ଅବ୍ୟାହତ ରହିଛି । ଜର୍ମାନୀର ଅମୁକ ଲୋକ ବିଷୟରେ ଏତେ କାହିଁକି ଲେଖାଯାଇଛି—ଏହି ହେଲା ଅଭିଯୋଗ । "ସେ ମାନବ ସମାଜକୁ ଏହି ଜ୍ଞାନ ଦେଇଛନ୍ତି" ହେଲା ଉତ୍ତର ।

ଦ୍ୱିତୀୟ ଖଣ୍ଡରେ କେଉଁସବୁ ବିଷୟ ଦିଆଯିବ ତାହାର ଗୋଟିଏ ତାଲିକା କରି ବସିଲି । ଅଟୋମେକାନ, ଅଣୁ ପରମାଣୁ, ଅଣୁବୀକ୍ଷଣ— ଏହି ଶବ୍ଦଗୁଡ଼ିକୁ ଭଲ ଭାବରେ ଲେଖିବାକୁ ସାହସ ବଳାଉ ନଥାଏ । ବହୁତ କିଛି ପରିଶ୍ରମ କରିବାକୁ ପଡ଼ିବ । ଅଣୁ ପରମାଣୁ ( Atoms Molecules) ଉପରେ କେତେଗୁଡ଼ିଏ ଲେଖା ଓ ବହି ପଢ଼ିଲି । ସେଥିର କେତେକ ଅଂଶ ବୁଝି ହେଉନଥାଏ । ପଦାର୍ଥ ବିଦ୍ୟାର ଜଣେ ଅଧ୍ୟାପକଙ୍କ ପାଖକୁ ଗଲି । ସେ ବେଶ୍ ନମ୍ରତା ଅଥଚ ଦୃଢ଼ତାର ସହିତ କହିଲେ— 'ଓଡ଼ିଆରେ ଏ ସବୁ ଲେଖିହେବ ନାହିଁ ଭଲ ଭାବରେ । ଯଦି ଟାଣି ଓଟାରି କସରତ କରି ଅନୁବାଦ କରି ଦେବେ ତାହା ଅବୋଧ ହୋଇଯିବ ।' ଜଣେ କେମିଷ୍ଟ୍ରୀ ଅଧ୍ୟାପକ ସେତେ ଜୋରରେ ନ କହିଲେ ମଧ୍ୟ ବିଶେଷ କିଛି ଉତ୍ସାହ ଦେଖାଇଲେ ନାହିଁ । ପୃଷ୍ଠାଏ ଦି' ପୃଷ୍ଠା ଭିତରେ କିଛି ଲେଖି ଦିଅନ୍ତୁ ବୋଲି ପରାମର୍ଶ ଦେଲେ । ଅଟୋମେଶନଟା ପ୍ରକୃତରେ କଅଣ ଓ କିଭଳି କାମ ହେଉଛି ଜାଣିଲାପରେ ଏହାକୁ 'ସ୍ୱୟଂଚଳନ' ବୋଲି ନଲେଖି ସେହି ନାମଟି ଦେବି ବୋଲି ଠିକ କଲି । କାରଣ ବହୁ ଲୋକ ଅଟୋମାଟିକ ଶବ୍ଦ ବ୍ୟବହାର କଲେଣି । ଓଡ଼ିଆରେ କହିବା ଦେଲେ । ଅଣୁବୀକ୍ଷଣରେ ଠିକଣାଖି ବର୍ଣ୍ଣନା ନ କରି ତାହା କଅଣ କରୁଛି ସେହି ବିଷୟରେ ବୁଝାଇଦେବି କେତୋଟି ଚିତ୍ର ଦେଇ— ଏହାହିଁ ଠିକ କଲି । ରୋଗ ଭିତରୁ ପଡ଼ିଗଲା ଅତିସାର ବା ଡାଇରିଆ । ସେଇଟି ବିଷୟରେ ସରଳ ଭାଷାରେ ବୁଝାଇ ଲେଖିବାକୁ ପଡ଼ିବ । ଡାଇନୋସରର ଓଡ଼ିଆ କରାଯାଇଥାଏ "ଅତିକାୟ ସରୀସୃପ" । ବହୁ ସଂଖ୍ୟକ ଚିତ୍ର ନଦେଲେ ଚଳିବ ନାହିଁ । 'ଲେଖିଯିବି—ଯେଉଁ ଅଂଶ ବୁଝିପାରିବି ନାହିଁ ଛାଡ଼ିଦେବି'— ଏହି ମାତ୍ର କଥା ମନେ ପକାଇ ସାହସ ବାନ୍ଧିଲି ।

ମୋର କେବେହେଲେ ଅନୁମାନ ନଥିଲା ଯେ ଅଣୁ ପରମାଣୁ ପ୍ରବନ୍ଧଟି ଏତେ ବଡ଼ ହୋଇଯିବ । ଲେଖୁ ଲେଖୁ ଫୁଲ୍‌ସ୍କେପ କାଗଜରେ ପ୍ରାୟ ନବେ ପୃଷ୍ଠା ହୋଇଗଲା । ଏହାର ଅର୍ଥ ହେଲା ଏଇଟି ହେବ ୧୭ ହଜାର ଶବ୍ଦ ବିଶିଷ୍ଟ ଗୋଟିଏ ପ୍ରବନ୍ଧ । କେତେଗୁଡ଼ିଏ ଚିତ୍ର ଦିଆଗଲା । ଆହୁରି ଅନେକ କିଛି ବାକି ରହିଗଲା । ତେଣୁ ସମ୍ପୃକ୍ତ ବିଷୟ ବା Related articles ହେବ ଏହି ଗୁଡ଼ିକ—ଏତିକି ଲେଖି ବନ୍ଦ କଲି । ଶେଷରେ ରହିଲା - ଦେଖନ୍ତୁ—ଆଇସୋଟୋପ୍, ଆଟମ, ଇଲେକ୍‌ଟ୍ରିସିଟୀ, ଇଲେକ୍‌ଟ୍ରନ, କେମିଷ୍ଟ୍ରୀ, ନିଉଟ୍ରନ, ମଲିକିଉଲ୍, ପଦାର୍ଥବିଦ୍ୟା, ପ୍ରୋଟନ । ଲେଖାଟିକୁ ଦି' ଗୁରି ଥର ପଢ଼ିଲି—କାଳେ କେଉଁଠି ତଥ୍ୟଗତ ଭୁଲ୍ ରହିଯାଉଛି କି ।

ଏ ଖଣ୍ଡିକ ଛପାହେଲା ବେଳକୁ ପ୍ରେସ୍ ଅସୁବିଧା ନ ଥିଲା । ରାଷ୍ଟ୍ରଭାଷା ସମବାୟ ପ୍ରେସ୍‌ଟି ଖୁବ୍ ବଡ଼ । ସେମାନେ କହିଲେ ଆମେ ଭଲ କାଗଜରେ ଛାପିଦେବା । ଆପଣ ପରେ ପଇସା ଦେବେ । ଏଇଟି ଗୋଟିଏ ଜାତୀୟ କାମ । ୧୯୬୨ ମାର୍ଚ୍ଚ ପହିଲା ଦିନ ବହିଟି (ଦ୍ୱିତୀୟ ଖଣ୍ଡ) ପ୍ରକାଶ ପାଇଲା । ସେତେବେଳକୁ ବିଶ୍ୱ ବିଦ୍ୟାଳୟ ତରଫରୁ ଲେଖା ଯାଉଥିବା ଜ୍ଞାନକୋଷର ପ୍ରଥମ ଖଣ୍ଡିକ ମଧ୍ୟ ପ୍ରକାଶ ପାଇନଥାଏ ।

ଏହି ଖଣ୍ଡକର ସବୁଠାରୁ ବଡ଼ ପ୍ରବନ୍ଧ ଅଣୁଟି ବହୁ ପାଠକଙ୍କ ଦୃଷ୍ଟି ଆକର୍ଷଣ କଲା । ବିଜ୍ଞାନର ଛାତ୍ରମାନେ ମଧ୍ୟ ମନଦେଇ ପଢ଼ିଲେ । ସେମାନେ କହିଲେ ଏଇଟିକୁ ପଢ଼ି ଦେଲାପରେ ସେମାନେ ପାଠ୍ୟ ପୁସ୍ତକକୁ ଭଲ ଭାବରେ ବୁଝି ପାରୁଛନ୍ତି । କିନ୍ତୁ ମୋର ସବୁଠାରୁ ବେଶୀ ସନ୍ତୋଷ ହେଲା ଯେଉଁଦିନ ମାମୁଁଙ୍କ ମୁହଁରୁ ଶୁଣିଲି ଏହାର ଉଚ୍ଚ ପ୍ରଶଂସା । ସେ ଯେ ଓଡ଼ିଆ ଏବଂ ସଂସ୍କୃତରେ କେବଳ ପଣ୍ଡିତ ତା' ନୁହେଁ ସେ ଜଣେ ଶାସ୍ତ୍ରଜ୍ଞ । ବହୁତ କିଛି ପଢ଼ିଛନ୍ତି । ତାଙ୍କର ମତ ହେଲା—ଭଗବାନଙ୍କ ମହିମା କେତେ ଶ୍ଳୋକରେ ଗାଇଛି—ସେ ଏହି ବିଶ୍ୱର ସବୁ କିଛିର ସ୍ରଷ୍ଟା ବୋଲି ମୁନି ଋଷିମାନେ ଚମତ୍କାର ଭାବରେ ଉଲ୍ଲେଖ କରି ଯାଇଛନ୍ତି । କିନ୍ତୁ ଅଣୁ ପରମାଣୁ ପ୍ରବନ୍ଧଟି ପଢ଼ି ହେଲା ପରେ ଜାଣୁଛି ତାଙ୍କର ମହିମା କିଭଳି । କଣାଦ ମୁନି ପରମାଣୁ କଥା କହି ଥିଲେ । ତାକୁ ପଢ଼ି ବିସ୍ତର ଭାବେ ଏହି ବିଚିତ୍ର ସୃଷ୍ଟି କେବେହେଲେ ସମ୍ଭବ ହୋଇନଥାନ୍ତା ଅତି ସୂକ୍ଷ୍ମ

ଉପାଦାନରେ ଯେବ ତାକୁ ଭଗବାନ ସୃଷ୍ଟି କରିନଥାନ୍ତେ । କିନ୍ତୁ ଏବେ ଜାଣୁଛୁ ପରମାଣୁ ଠାରୁ ମଧ୍ୟ କ୍ଷୁଦ୍ର ଇଲେକ୍‌ଟ୍ରନ ପ୍ରୋଟନ ନିଉଟ୍ରନ ଏହି ମାତ୍ର ତିନିଗୋଟି ଅତି ସୂକ୍ଷ୍ମ ପଦାର୍ଥ ବା ଉପାଦାନରେ ଏହି ବିଚିତ୍ର ବିଶ୍ୱର ସୃଷ୍ଟି । ଧୂଳିକଣାଠାରୁ ଆରମ୍ଭ କରି ନକ୍ଷତ୍ର ରାଜି, ଅତି କ୍ଷୁଦ୍ର କୀଟଠାରୁ ଆରମ୍ଭ କରି ମନୁଷ୍ୟ ପର୍ଯ୍ୟନ୍ତ ସବୁକିଛି ତିଆରି କରିବା ପାଇଁ କେବଳ ଏହି ତିନୋଟି ପଦାର୍ଥ ଲୋଡ଼ା ହୋଇଛି । ଧନ୍ୟ ସେ ସ୍ରଷ୍ଟା ! ଧନ୍ୟ ସେ ବିଚିତ୍ର କାରିଗର ! ଆମେ ସବୁ ପଢ଼ିଲାବେଳେ ବିଜ୍ଞାନ ବିଷୟରେ କିଛି ଜାଣିନଥିଲୁ । ଭାବୁଥିଲୁ ସେଗୁଡ଼ାକର ଆବଶ୍ୟକତା କିଛି ନାହିଁ । ଧର୍ମ ସାହିତ୍ୟ ଇତିହାସ ହେଉଛି ଅସଲ ପାଠ । କେମିଷ୍ଟ୍ରୀ ବାଲାଙ୍କୁ ମୁଁ ଥଟ୍ଟା କରୁଥିଲି । ତୁମେ ସବୁ ନାଳିପାଣିକି ନେଇ—ନେଇପାଣିକୁ ନାଳି କରିବା ବାଲା—ତୁମେ କେବେ ବେଦ ପୁରାଣ ଶାସ୍ତ୍ରର ଭାଷା ବୁଝି ପାରିବ ? ତୁମ ମୁଣ୍ଡ ଭିତରେ ସେ ସବୁ ଖେଳି ପାରିବ ? ଆଜି କିନ୍ତୁ ଦେଖୁଛି ସେମାନେ ହିଁ ପ୍ରକୃତ ସତ୍ୟର ଅନୁସନ୍ଧାନ କରୁଛନ୍ତି । ଜଣେ ଜଣେ ବିଜ୍ଞାନୀ ଜଣେ ଜଣେ ଋଷି । ଏହି ଅଣୁ ପରମାଣୁ ପ୍ରବନ୍ଧଟି ନପଢ଼ି ମୋର ମୃତ୍ୟୁ ହୋଇ ଯାଇଥିଲେ ମୋର ଏହି ମହତ ଜ୍ଞାନର ଅଭାବ ରହିଯାଇ ଥାଆନ୍ତା । ଏହିଟିକୁ ମୁଁ ଦୁଇଥର ପଢ଼ି ସାରିଲିଣି ।

କେବଳ ମୋତେ ଉତ୍ସାହ ଦେବାପାଇଁ ଯେ ସେ ଏହି କଥା କହିଲେ ତା' ନୁହେଁ--କିଛି ଲୋକଙ୍କୁ ଏଭଳି କହି ଥିବାର ଜାଣିଲି । କେମିଷ୍ଟ୍ରୀ ପ୍ରଫେସର ଗୁରୁଚରଣ ମହାନ୍ତି ଖୁସି । କେମିଷ୍ଟ୍ରୀ ସଂକ୍ରାନ୍ତୀୟ କିଛି ଗୋଟାଏ କଷ୍ଟକଥା ବୁଝିବାକୁ ତାଙ୍କ ପାଖକୁ ଗଲେ ସେ ଯଥା ସମ୍ଭବ ସରଳ ଭାଷାରେ କଥାଟିକୁ ବୁଝାଇ ଦେବାପାଇଁ କୁଣ୍ଠାବୋଧ କରନ୍ତି ନାହିଁ । ପ୍ରଫେସର ଅର୍ତ୍ତବଲ୍ଲଭ କିନ୍ତୁ ସେତେବେଳକୁ ଜ୍ଞାନମଣ୍ଡଳକୁ ଆଉ ଗୋଟିଏ ଦୃଷ୍ଟିରୁ ଦେଖିବାକୁ ଆରମ୍ଭ କଲେଣି ବୋଲି ଜାଣିଲି । ଜଣେ ଓଡ଼ିଆ ପ୍ରଫେସର ମୋତେ ଆସି ଦିନେ କହିଲେ—"ସାର୍ ଆମ କେତେଜଣଙ୍କୁ ଆପଣଙ୍କ ବିଷୟରେ ଯାହାକହିଲେ ତାହା ଆମ ସମସ୍ତଙ୍କ ମନକୁ ପାଇଲା । ସେ କହିଲେ—ଆମେ ଯେ ଓଡ଼ିଆରେ ଏମ୍. ଏ ଏବଂ ଓଡ଼ିଆ ଭାଷାର ଉନ୍ନତି ପାଇଁ କାମ କରୁଛୁ ଏକଥା କହିଲାବେଳେ କଅଣ ବୁଝାଉଛୁ ? ଆମେ କାମ କରି ପ୍ରମାଣ କରିଦେବା ଉଚିତ ଯେ ଓଡ଼ିଆ

ଗୋଟିଏ ଉନ୍ନତ ଭାଷା । ଜ୍ଞାନ ବିଜ୍ଞାନର ଯେ କୌଣସି ବିଭାଗର ବିଷୟ ବସ୍ତୁକୁ ଓଡ଼ିଆରେ ଲେଖିଦେଇ ହେବ । ଭାବ ପ୍ରକାଶର ସାମର୍ଥ୍ୟ ଓଡ଼ିଆ ଭାଷାର ଅଛି—ଯେ କୌଣସି ଭାରତୀୟ ଭାଷାର ଅଛି । କିନ୍ତୁ ଆମେ ତାହାତ କରି ପାରିଲୁନାହିଁ କି ଏବେ ମଧ୍ୟ ଚେଷ୍ଟା କରୁନାହୁଁ କରିବା ପାଇଁ । ଲୋକେ ଦାମ୍ଭିକତା ଦେଖାଇ କହୁଛନ୍ତି ଓଡ଼ିଆ ଭାଷାରେ ବିଜ୍ଞାନର ସବୁକଥା ଲେଖା ଯାଇ ପାରିବ ନାହିଁ – ଆମେ ଓଡ଼ିଆ ଏମ୍. ଏ ବାଲା ସେହି ଅପମାନକୁ ମୁଣ୍ଡପୋତି ସହିଯାଉଛୁ । କିନ୍ତୁ ଜ୍ଞାନମଣ୍ଡଳ ପ୍ରମାଣ କରି ଦେଇ ସାରିଲାଣି ଯେ ଓଡ଼ିଆରେ ସେସବୁ ଲେଖାଯାଇ ପାରିବ—ଅତି ସରଳ ଭାଷାରେ ସୁନ୍ଦର କରି ଲେଖା ଯାଇ ପାରିବ । ତାହାହେଲେ ଓଡ଼ିଆ ଭାଷାର ସମ୍ମାନ ବଢ଼ାଉଛି କିଏ ? ଆମେ ନା ଜ୍ଞାନମଣ୍ଡଳ ? ବିନ ମୋ ଭଣଜା ବୋଲି ଯେ ମୁଁ ଏଭଳି କହୁଛି ତା' ନୁହେଁ—ମୁଁ ତ ଜାଣିପାରୁଛି ଯେ ସେ ଏକା ଆମ ସମସ୍ତଙ୍କ କାମ କରି ଦେଉଛି ।"

ସେହିଁ ଦୁଇ ଅଧ୍ୟାପକ ବନ୍ଧୁଙ୍କ ସହିତ ପ୍ରଥମେ ପରାମର୍ଶ କରିଥିଲି ସେମାନଙ୍କୁ ନେଇ ଦୁଇଖଣ୍ଡ ବହି ଦେଲି । ପରେ ସେମାନେ କହିଲେ—'ଖୁବ୍ ଭଲ ହୋଇଛି' । ତାହାପରେ ସେମାନେ ମୋତେ ବହୁତ କିଛି ସାହାଯ୍ୟ କରିଛନ୍ତି ସମ୍ପାଦନା କାମରେ । ସେମାନେ ଗୋଟିଏ କଥା କହିଲେ—ଏହିଭଳି ଲେଖା ଆମ ପିଲା ପଢ଼ିଗଲେ ସେମାନେ ଆମେ ଯାହା ପଢ଼ାଉଛୁ ତାକୁ ଆହୁରି ଭଲଭାବରେ ବୁଝିପାରିବେ ।

## "ଏକବିଂଶ ଶତାବ୍ଦୀରୁ ରିପୋର୍ଟ ଆସିଛି"......

ଦ୍ୱିତୀୟଖଣ୍ଡ ପାଇଁ ଯେତେବେଳେ ପ୍ରସ୍ତୁତି ଚାଲିଥାଏ ସେତିକବେଳେ ଗୋଟିଏ ବହି ପାଇଗଲି । ତାହାର ନାମଟା ମୋତେ ଭାରି ଲାଗିଲା । ନାମ ହେଉଛି "Reports from the 2/st Century" । ଏକବିଂଶ ଶତାବ୍ଦୀରୁ ରିପୋର୍ଟ—ଲେଖିଛନ୍ତି ସୋଭିଏତ ରୁଷର M. Vasilyer ଏବଂ S. Gushcher. ଏହି ବହିଟି ମୋ ଚିନ୍ତାଧାରାକୁ କେମିତି ଗୋଟାଏ ନୂଆ ବାଟରେ ନେଇଯିବା ଆରମ୍ଭ କଲା ତାହା ପାଠକମାନଙ୍କୁ ନିଶ୍ଚୟ ଜଣାଇବି । ସେମିତି ନହୋଇଥିଲେ ଅଣୁ-ପରମାଣୁ ବିଷୟରେ ୪୩ ପୃଷ୍ଠା ଲେଖିବାର ଆବଶ୍ୟକତା ଅନୁଭବ କରିନଥାନ୍ତି । ଏହି ଦୁଇ ଲେଖକ

ମାତ୍ର ଗୋଟିଏ ପୃଷ୍ଠାରେ କହିଦେଇଛନ୍ତି ଏଭଳି ଗୋଟିଏ ପୁସ୍ତକ ସେମାନେ କାହିଁକି ଲେଖିବାକୁ ଗଲେ । ସେଥିର ସାର ହେଲା

'ବିଖ୍ୟାତ ବୈଜ୍ଞାନିକ, ଇଞ୍ଜିନିୟର ଓ ଉଦ୍‌ଭାବକମାନଙ୍କୁ ଆମେ ଭେଟିଲୁ । ସେମାନଙ୍କ ଭିତରୁ ସମସ୍ତେ ଏମିତିକା କାମ କରୁଛନ୍ତି ଯାହାକି ଭବିଷ୍ୟତରେ କଳ୍ପନା କରୁ ଚମକପ୍ରଦ ଫଳ ଦେଖାଇବ । କୋଟି କୋଟି ପାଠକଙ୍କ ପକ୍ଷରୁ ସେମାନଙ୍କୁ ଆମେ କହିଲୁ— ଦୟାକରି ଆମ ସହିତ ଆପଣମାନେ ଟିକିଏ ସ୍ୱପ୍ନ ଦେଖନ୍ତୁ । ବିଜ୍ଞାନର ଯେଉଁ ବିଭାଗରେ ସେମାନେ କାମ କରୁଛନ୍ତି ସେହି ସେହି ବିଭାଗରେ କିଭଳି ପ୍ରଗତି ହେବ ଓ ଜୀବନ ଉପରେ ତାହାର କିଭଳି ପ୍ରଭାବ ପଡ଼ିବ ସେ ବିଷୟରେ ସେମାନେ କଅଣ ସବୁ ଚିନ୍ତା କରୁଛନ୍ତି । ପ୍ରଥମ ଅଙ୍କୁରଟିକୁ ଦେଖି ତ ଜୀବବିଜ୍ଞାନୀମାନେ କହିଦେଇ ପାରିବେ ଭବିଷ୍ୟତରେ ଏଇଟି କିଭଳି ଦ୍ରୁମରେ ପରିଣତ ହେବ ଏବଂ ପତ୍ରପୁଷ୍ପ ଫଳ ଶୋଭିତ ହେବ । ସେମିତି ସେମାନେ ନିଜ ନିଜ ବିଭାଗର ଯେଉଁ ଅଙ୍କୁର ଦେଖୁଛନ୍ତି ତାହା କିଭଳି ବିଶାଳ ଦ୍ରୁମରେ ପରିଣତ ହେବ ଓ ଆମେ କେମିତିକା ଦୃଶ୍ୟ ଦେଖିବୁ ବୋଲି ସେମାନେ ବିଚାରୁଛନ୍ତି ତାହାର ଗୋଟିଏ ଚିତ୍ର ଆଙ୍କି ଦିଅନ୍ତୁ । ସେମାନେ କେତେବର୍ଷ ବା କେତେ ଦଶନ୍ଧିକୁ ଆଖିରେ ନରଖି ଏକବିଂଶ ଶତାବ୍ଦୀ ଆରମ୍ଭରେ କଅଣ ହୋଇଥିବ ତାହାହିଁ ଅନୁମାନ କରି ଆମକୁ କୁହନ୍ତୁ । ସେମାନେ ରାଜିହେଲେ ଏବଂ ଏକବିଂଶ ଶତାବ୍ଦୀ ଆସିବା ଓ ଆଜି ଭିତରେ ଯେଉଁ ବ୍ୟବଧାନ ରହିଛି ତାକୁ ଲୋପ କରିଦେଇ ସେହି ଦିନରେ ଆମକୁ ଚିନ୍ତା ରାଜ୍ୟରେ ନେଇ ପହଞ୍ଚାଇ ଦେବେ ବୋଲି ପ୍ରତିଶ୍ରୁତି ଦେଲେ । ସେମାନଙ୍କ ସହିତ ସାକ୍ଷାତକାରକୁ 'ଏକବିଂଶ ଶତାବ୍ଦୀରୁ ରିପୋର୍ଟ' ନାମରେ ପ୍ରକାଶ କରିବା ଠିକ୍ ହେବ ବୋଲି ବିଚାରିଲୁ' ।

ସେମାନଙ୍କୁ ବୈଜ୍ଞାନିକ Alhands Nesmeyauov କହିଲେ— ସତ କହିବାକୁ ଗଲେ ସ୍ୱପ୍ନ ଦେଖିବାକୁ ଆମେ ମନ ବଳାଉ ନାହିଁ କି ସେଥିପାଇଁ ଆମର ସାମର୍ଥ୍ୟ ନାହିଁ । କିନ୍ତୁ କିଛି ସ୍ୱପ୍ନର ତ ଆବଶ୍ୟକତା ରହିଛି । ସ୍ୱପ୍ନ ନ ଦେଖିଲେ ଭବିଷ୍ୟତରେ ସଫଳତା ନାହିଁ । ଆଗକୁ ଯିବାପାଇଁ ସ୍ୱପ୍ନର ଅଭାବ ହେଲେ ମନୁଷ୍ୟ ସ୍ଥାଣୁ ଅବସ୍ଥାରେ ରହିଯାଏ । ବୈଜ୍ଞାନିକମାନେ ସେଥିରୁ ବାଦ୍ ଯାଉନାହାନ୍ତି । କିନ୍ତୁ ଗୋଟିଏ ସ୍ଥାନରେ

ଠିଆ ହୋଇ ଗୋଡ଼କୁ ବାଁ ଡାହାଣ କରି ଉଠାଇବା ପକାଇବା ଓ ସୃଜନାତ୍ମକ କାର୍ଯ୍ୟ—ଏହି ଦୁଇଟି କଦାପି ଏକ ସଙ୍ଗରେ ଚାଲି ପାରିବ ନାହିଁ । ସମବର୍ଦ୍ଧିଷ୍ଣୁ ବିଜ୍ଞାନକୁ ମୁଁ ଗୋଟିଏ ଡାଳ ଓ ଶାଖାପ୍ରଶାଖା ଶୋଭିତ ବୃକ୍ଷ ସହିତ ତୁଳନା କରିବି । ତାହାର ଚେରଗୁଡ଼ିକ ମାଟିରେ ଗଭୀର ପ୍ରଦେଶକୁ ଯାଇଛନ୍ତି । ବିଜ୍ଞାନ ଦ୍ରୁମରେ ଯେ ଫଳ ନିଶ୍ଚୟ ଫଳିବ ଏଭଳି ଆଶା କରିବା ଅସଙ୍ଗତ ନୁହେଁ । ମନୁଷ୍ୟର ଭୌତିକ ତଥା ଆଧ୍ୟାତ୍ମିକ ଚାହିଦା ପୂରଣ କରିବା ହେଲା ବିଜ୍ଞାନର ଲକ୍ଷ୍ୟ । ମାଟିତଳୁ ଯେତେ ରସ ଟାଣିଲେ ସାର ପାଇଲେ ମଧ୍ୟ ଗଛଟିର ବୃଦ୍ଧି ହୋଇପାରିବ ନାହିଁ ସୂର୍ଯ୍ୟକିରଣ ନ ପାଇଲେ । ବୈଜ୍ଞାନିକଙ୍କ ପାଇଁ ଏହି ସୂର୍ଯ୍ୟକିରଣ (Sunshine) ହେଉଛି ସ୍ୱପ୍ନ, ଗୋଟାଏ ମହତ୍ ତଥା ପ୍ରେରଣା ଦାୟକ ଚିନ୍ତା ବା ଭାବନା (a lofty inspiringidea) । ସେହିଭଳି । ସେହି ଆଇଡ଼ିଆ ଓ ସ୍ୱପ୍ନ ତାକୁ ଆଲୋକ, ତାପ ଓ ସୃଜନାତ୍ମକ ଶକ୍ତି ଯୋଗାନ୍ତି । ଇଞ୍ଜିନିୟରିଂ ବିଦ୍ୟାର ବିକାଶ ଯେଉଁ ଅନୁପାତରେ ହେଉଥିବ ସେହି ଅନୁପାତରେ ବିଜ୍ଞାନ ଦ୍ରୁମ ଶିଳ୍ପରେ ତାହାର ଚେରକୁ ଗଭୀରକୁ ବଢ଼ାଉଥିବ । ଚେର ଗଭୀରକୁ ଯିବା ସଙ୍ଗେ ସଙ୍ଗେ ଗଛର ଗଣ୍ଡି କ୍ରମେ ଉଚ୍ଚା ହୋଇ ବଢ଼ୁନଥାଏ ? ତାହାର ଶାଖାଗୁଡ଼ିକ କ୍ରମେ ସୂର୍ଯ୍ୟକିରଣ ପାଇବା ପାଇଁ ଆତୁର ଉପରମୁହାଁ ହୋଇ ବଢି ଯାଉନଥାନ୍ତି ? ଏହି ପ୍ରକ୍ରିୟା ସାମ୍ୟବାଦ ଉପରେ ପ୍ରତିଷ୍ଠିତ ଏଭଳି ଗୋଟିଏ ସମାଜ ଗଢ଼ିଦେବ ଯାହାର ସ୍ୱପ୍ନ ମନୁଷ୍ୟ ହଜାର ହଜାର ବର୍ଷ ଧରି ଦେଖିଆସୁଛି । × × × ଭବିଷ୍ୟତର ଚିତ୍ର ଆଙ୍କିବା ସାମର୍ଥ୍ୟ ନ ରହିଲେ ବିଜ୍ଞାନ, ଅର୍ଥନୀତି ଓ ରାଜନୈତିକ ଜୀବନ ଯେଉଁସବୁ ଜଟିଳ ସମସ୍ୟା ଆଣି ଆମ ସମ୍ମୁଖରେ ଥୋଇ ଦେଇଛନ୍ତି ସେଗୁଡ଼ିକର ସମାଧାନ ହୋଇପାରିବ ନାହିଁ ।

ଏହାପରେ ସେମାନେ ଚବିଶ ଜଣ ପ୍ରସିଦ୍ଧ ବୈଜ୍ଞାନିକଙ୍କ ସହିତ ଦେଖାକରିଛନ୍ତି । ସେମାନେ ନିଜ ନିଜ ବିଦ୍ୟାର ଭବିଷ୍ୟତ ବିଷୟରେ ଯେଉଁ ସ୍ୱପ୍ନ ଦେଖୁଛନ୍ତି ତାହାର ବର୍ଣ୍ଣନା କରି ଯାଉଛନ୍ତି । ଜଣେ ଦୁ'ଜଣ କହୁଛନ୍ତି ସେମାନଙ୍କ ସ୍ୱପ୍ନଗୁଡ଼ାଇ ସଫଳ ହେବ ବାଇଶ ଶତାବ୍ଦୀରେ, କାରଣ ଏକବିଂଶ ଶତାବ୍ଦୀରେ ସେହି ସଫଳତା ପାଇଁ ବହୁତ କଷ୍ଟ କରା ହୋଇ ଯାଇଥିବ । ଦୁଇଶହ ତେର ପୃଷ୍ଠାର ବହିଟିକୁ ପଢ଼ିବା ପାଇଁ ଦଶଦିନ ଲାଗିଗଲା, ଯଦିଓ ଉପନ୍ୟାସ ଭଳି ଲାଗୁଥାଏ । ସବୁଗୁଡ଼ିକ ବୁଝୁଥାଏ ବୋଲି

କହିଲେ ଭୁଲ୍ ହେବ । ମୋଟାମୋଟି ଗୋଟିଏ ଧାରଣା ହୋଇଗଲା ଭବିଷ୍ୟତ ବିଷୟରେ ବୈଜ୍ଞାନିକମାନେ କଅଣ ସବୁ ଚିନ୍ତୁରୁଛନ୍ତି, ମନୁଷ୍ୟର ବୁଦ୍ଧିର ବିକାଶ ଦିଗରେ ମଧ୍ୟ ସେମାନେ କେମିତି କାମ କରୁଛନ୍ତି ଓ କିଭଳି ସ୍ୱପ୍ନ ଦେଖୁଛନ୍ତି ପଢ଼ି ମୁଁ ବିସ୍ମୟରେ ବୁଡ଼ିଗଲି ।

ଏହାକୁ ପଢ଼ି ସାରିଲାପରେ ଚିନ୍ତିଲି—କେତେ ଗୁଡ଼ିଏ ମୌଳିକ ତଥ୍ୟ ବିଷୟରେ ଯଦି ସୁଯୋଗ ପାଇଲି ମାନେ ଜ୍ଞାନମଣ୍ଡଳର ପ୍ରଥମ କେତେ ଖଣ୍ଡରେ ଦେଇ ନ ଦିଆଯିବ, ଆମ ପାଠକମାନଙ୍କର ଜ୍ଞାନର ହ୍ରାସ ଯାହା ସେମାନେ ବହୁ ବିଷୟ ବୁଝି ପାରିବେ ନାହିଁ । ସମ୍ପୃକ୍ତ ପ୍ରତ୍ୟେକ ବିଷୟ ଲେଖିବାକୁ ଗଲାବେଳେ ପୁନାବୃତ୍ତି ହୋଇ ଯାଉଥିବ ନହେଲେ ବିଷୟଟି ଖାପ ଛଡ଼ା ଖାପଛଡ଼ା ହୋଇ ଯାଉଥିବ । ସେଇଥି ପାଇଁ ସବୁ ଜ୍ଞାନର ଅସଲ ଏବଂ ପ୍ରଥମ ଗୁର ‘ଅଣୁ ପରମାଣୁ’ ବିଷୟରେ ବିସ୍ତୃତ ଭାବରେ ଲେଖିବା ପାଇଁ ଯଥା ସାଧ୍ୟ ଉଦ୍ୟମ କଲି । ଦ୍ୱିତୀୟରେ ଗଛଟି ବିରାଟ ହେବାକୁ ଗଲେ ଚେର ତଳକୁ ଯିବା ସଙ୍ଗେ ସଙ୍ଗେ ଡାଳ ମଧ୍ୟ ଉପରକୁ ଉପରକୁ ଯିବା ଆବଶ୍ୟକ ବୋଲି ଯାହା କୁହାଗଲା ତାହା ମୋ ମନ ଉପରେ ଅନ୍ୟ ଭାବରେ ପ୍ରଭାବ ପକାଇଲା । ମନେ ପଡ଼ୁଥାଏ ଏଚ୍. ଜି ଓ୍ୱେଲସଙ୍କ କଥା । ପୃଥିବୀର ଭାବୁକମାନେ ସେମାନଙ୍କର ଜ୍ଞାନଜଳ ସିଂଚି ଏହି ବର୍ଦ୍ଧିଷ୍ଣୁ ଜ୍ଞାନ ବୃକ୍ଷକୁ ବଞ୍ଚାଇ ରଖିଥିବେ । ଜ୍ଞାନ ମଣ୍ଡଳକୁ ଗୋଟିଏ ବୃକ୍ଷ ସହିତ ତୁଳନା କରୁଥାଏ । ଏହାର ଚେର ସବୁ ଗଭୀରକୁ ଯାଉଥିବ । ଜ୍ଞାନ ଜଳ ସିଞ୍ଚା ହେଲେ ଫଳରେ ଚେର ଗୁଡ଼ିକ ସମର୍ଥ ହେଉଥିବେ ମାଟିରୁ ସାର ଓ ରସ ଟାଣିବାପାଇଁ । ଜ୍ଞାନମଣ୍ଡଳର ସୌଭାଗ୍ୟ ନାହିଁ ପୃଥିବୀର ବହୁ ସଂଖ୍ୟକ ଭାବୁକଙ୍କର ଜ୍ଞାନଜଳ ପାଇବା ପାଇଁ । କିନ୍ତୁ ଗୋଟିଏ ଉପାୟରେ ତ ତାହା କରାଯାଇ ପାରିବ । ସେମାନଙ୍କ ଲିଖିତ ବହୁ ସଂଖ୍ୟକ ପୁସ୍ତକ ତ ପ୍ରକାଶ ପାଉଛି । ବାଛି ବାଛି ସେଥିରୁ କିଛି କିଛି କଣିବାକୁ ପଡ଼ିବ । ଲାଇବ୍ରେରୀରେ ଯେଉଁ ସବୁ ସେହି ଧରଣର ବହି ରହିଛି ସେଗୁଡ଼ିକ ସହିତ ପରିଚିତ ହେବା ଦରକାର । ଖବର କାଗଜ ପତ୍ର ପତ୍ରିକାରେ ଯେଉଁସବୁ ତଥ୍ୟ ପୂର୍ଣ୍ଣ ମୁଲ୍ୟବାନ ଲେଖା ବାହାରୁଛି ସେଗୁଡ଼ିକ ଯତ୍ନର ସହିତ ସାଇତିଲେ ବହୁତ କିଛି ହୋଇଯିବ । ଅଧିକ ସଂଖ୍ୟକ ପତ୍ର ପତ୍ରିକା ମଗାଯିବ । ଭିନ୍ନ ଭିନ୍ନ ଦୂତାବାସରୁ କିଛି

କଲ୍ପନା ଭିତରେ ଆଣାଯିବ । ଏହି ପ୍ରକ୍ରିୟା ମାଧ୍ୟମରେ 'ଜ୍ଞାନମଣ୍ଡଳ' ରୂପକ ଭୂମିଟିକୁ ସଦା ଜୀବନ୍ତ ଓ ପତ୍ରପୁଷ୍ପ ଶୋଭିତ କରିବାକୁ ହିଁ ପଡ଼ିବ । ସେହି ଭାବନା ପଚିଶ ବର୍ଷ ପୂର୍ବେ ମନ ଭିତରେ ଦାନା ବାନ୍ଧିଥିବାରୁ ଆଜି ଜ୍ଞାନମଣ୍ଡଳ ଅଫିସରେ କେତେ ଶହ ଫାଇଲ ରହିଛି ଯେଉଁ ଗୁଡ଼ିକୁ ଗୋଟିଏ ଗୋଟିଏ ମୂଲ୍ୟବାନ ପୁସ୍ତକ ବୋଲି କୁହାଯାଇ ପାରେ । ଗୋଟିଏ ପୁସ୍ତକକୁ ଜଣେ ଲେଖିଛନ୍ତି—ଫାଇଲରେ କିନ୍ତୁ ବହୁ ପ୍ରସିଦ୍ଧ ଲୋକଙ୍କ ଲେଖା ରହିଯାଇଛି । ସୂର୍ଯ୍ୟ, ଚନ୍ଦ୍ର, ଅଣୁ, ହୃତପିଣ୍ଡ, ମସ୍ତିଷ୍କ, ସମୁଦ୍ର, ଶିକ୍ଷା କୃଷି, ଇଂରାଜୀ ଭାଷା, ମାନବ ଶରୀର, ଭାଷାତତ୍ତ୍ୱ, ଶବ୍ଦ, କାନ୍‌ସର କୁକୁର ଭଳି ଯେଉଁସବୁ ଫାଇଲ ଅଛି ସେଥିରେ କେତେ ପଣ୍ଡିତ, ବୈଜ୍ଞାନିକ, ଶିକ୍ଷାବିତ୍, ରାଷ୍ଟ୍ର ନାୟକଙ୍କ ଲେଖା ଯେ ରହିଛି ତାହାର ଠିକଣା ନାହିଁ । ବହୁ ପ୍ରସିଦ୍ଧ ଲୋକଙ୍କ ଜୀବନ ଉପରେ ଅଛି ଲେଖା । ମହାକାଶ ଉପରେ ପ୍ରାୟ ଦେଢ଼ ଶହ ଫାଇଲ । ସୋୟୁଜ, ଆପୋଲୋ ଭଳି ମହାକାଶ ଯାନ ଫାଇଲ ଦେଖିବାକୁ ବହୁଲୋକ ଆସୁଛନ୍ତି । ସେ ସବୁଥିରେ ହଜାର ହଜାର ଚିତ୍ର ଅଛି ବୋଲି ସମସ୍ତେ ଦେଖିଛନ୍ତି । ସେଇଥିରୁ ଚିତ୍ର ସବୁ ନେଇ ଟେଲିଭିଜନ ବାଲା ଦେଖାଉଛନ୍ତି । 'ଫାଇଲ'ର ଗୁରୁତ୍ୱ ଉପରେ ସ୍ୱତନ୍ତ୍ର ଭାବରେ ଲେଖିବି ଏହି ପୁସ୍ତକର ଗୋଟିଏ ଅଂଶରେ, ତେଣୁ ଏତିକରେ ଛାଡ଼ି ଦେଉଛି । ମୋଟ ଉପରେ ଏହି ପ୍ରଚେଷ୍ଟା ଜ୍ଞାନମଣ୍ଡଳର ଚେରକୁ ତଳକୁ ନେଉଛି ବୋଲି କୁହାଯାଇପାରେ ।

ଆଉ ଗୋଟିଏ ପ୍ରଶ୍ନ ମନ ଭିତରେ ଉଠିବା ସ୍ୱାଭାବିକ, ଏହି କହିଟି ପଢ଼ି ସାରିଲା ପରେ । ଜ୍ଞାନମଣ୍ଡଳଟି ମାତ୍ର ଷାଠିଏ ଖଣ୍ଡରେ ଶେଷ ହେବ । ଆମ ମାପ କାଠିରେ ସାଧାରଣ ପାଠକ ପାଇଁ ଏଇଟି ଗୋଟିଏ ବଡ଼ ପୁସ୍ତକ ସେଟ ହେଲେ ମଧ୍ୟ ଏହାର ଗର୍ଭରେ କେତେ ପାଠ ବା ଜ୍ଞାନ ପାଇବ ? ବ୍ରିଟାନିକାରେ ଯେତିକ ପାଠ ଅଛି ସେତିକ ଯଦି ଓଡ଼ିଆ ଭାଷା ମାଧ୍ୟମରେ ଓଡ଼ିଶାର ପାଠକ ମାନଙ୍କ ନିକଟରେ ପହଞ୍ଚାଇବାକୁ ପଡ଼ିବ ତେବେ ୮୦୦ ଖଣ୍ଡ ଜ୍ଞାନମଣ୍ଡଳ ଲେଖିବାକୁ ପଡ଼ିବ । ଏତେ ବଡ଼ ବହି ସେଟ ଓଡ଼ିଶାର ପାଠକମାନେ କିଣି ପାରିବେ ନାହିଁ କି ସହଜରେ ଲେଖି ମଧ୍ୟ ହେବ ନାହିଁ । ତାହାହେଲେ ବାଟ କଅଣ ? ସ୍ଥିର କଲି ଜ୍ଞାନମଣ୍ଡଳ ଶେଷ ହେଲା ମାତ୍ରେ ୨୫ ସେଟ—ଅବଶ୍ୟ ଛୋଟ ଛୋଟ "ସ୍ୱତନ୍ତ୍ର ବିଷୟ ଜ୍ଞାନମଣ୍ଡଳ" (Subject Encyclopaedia) ଲେଖିବାକୁ ପଡ଼ିବ । କୃଷି

ଉପରେ ୫ଖଣ୍ଡ ଲେଖିଦେଲେ ତାକୁ କୃଷକମାନେ ପଢ଼ିବେ । ମିସ୍ତ୍ର ସଭ୍ୟତା, ନିଗ୍ରୋ ନିର୍ଯ୍ୟାତନା ବା ରୁଷ ବିପ୍ଳବର ଇତିହାସ ସେ ନପଢ଼ିଲେ ଚଳିବ—ହୁଏତ ସେ କହିବ ସେ ମୋର ଏହି ସବୁ ଲୋଡ଼ା ନାହିଁ । କିନ୍ତୁ ମୁଖ୍ୟ ପାଠ୍ୟ ଜ୍ଞାନମଣ୍ଡଳରେ ମାଟି ସମ୍ପର୍କରେ ଦଶ ପୃଷ୍ଠା ଲେଖା ଯାଇଥିବା ସ୍ଥଳେ ଏହି ଖାସ୍ ବିଷୟ ଏନ୍‌ସାଇକ୍ଲୋପିଡିଆରେ ମାଟି ଉପରେ ରହିବ ପ୍ରାୟ ଶହେ ପୃଷ୍ଠା । ପୃଥିବୀର ଗଠନ ମାଟିର ଗଠନ ସମ୍ପର୍କରେ ବଡ଼ ଜ୍ଞାନମଣ୍ଡଳରେ ଯାହା ସବୁ ଲେଖା ଯାଇଛି ତାକୁ ବିସ୍ତୃତ ଭାବରେ 'କୃଷି ଜ୍ଞାନମଣ୍ଡଳ'ରେ ଲେଖି ଦେଲେ ଯାଇ ସେ ଉର୍ବର ବାଲିଆ ବା ଲିରସା ମାଟି ସମ୍ପର୍କରେ ସ୍ପଷ୍ଟ ଧାରଣା କରି ପାରିବ । ପାଞ୍ଚ ଖଣ୍ଡରେ ବିଭକ୍ତ ଏହି କ୍ଷୁଦ୍ର ବହି ସେଟ୍‌ଟିକୁ ପ୍ରତ୍ୟେକ ଗାଁରେ ଲୋକେ ରଖିବେ । ବସ୍ତାଏ ଧାନ ଗୁନ୍ଧା କରି ଦେଲେ ଏହା ହୋଇ ପାରିବ । ଯେ କୌଣସି ସ୍ୱଚ୍ଛଳ କୃଷକ ଏଇଟିକୁ କିଣି ପାରିବ । କୃଷି ବିଷୟରେ ଯାହା କୁହାଗଲା ଜ୍ଞାନର ସବୁ ବିଭାଗ ବିଷୟରେ ସେହି କଥା କୁହାଯାଇ ପାରେ । ସେଦିନର ମୋର ଏହି ସ୍ୱପ୍ନ ପଚିଶ ବର୍ଷ ପରେ ୧୯୮୭ରେ ଆଜି ମଧ୍ୟ ସ୍ୱପ୍ନରେ ହିଁ ରହିଯାଇଛି । କାରଣ ବଡ଼ ସେଟଟିର କାମ ଶେଷ ହୋଇ ନାହିଁ । ତେବେ କୃଷି ଓ ସ୍ୱାସ୍ଥ୍ୟ ଉପରେ "ବିଷୟ" ବା ସବ୍‌ଜେକ୍ଟ ସେଟ ଏନ୍‌ସାଇକ୍ଲୋ-ପିଡିଆ ୧୯୮୮ ଜୁନ୍ ପୂର୍ବରୁ ଲେଖି ଦେଇ ନମୁନା ରଖି ଦେଇ ଯିବି ବୋଲି ଭାବୁଛି । ଏହି ଯୋଜନାଟିକୁ କାର୍ଯ୍ୟକାରୀ କଲେ ଓଡ଼ିଆ ଭାଷାରେ ୧୨୫+୬୦ = ୧୮୫ ଭଲ୍ୟୁମ୍‌ର ଗୋଟିଏ ସେଟ ଜ୍ଞାନମଣ୍ଡଳ ପ୍ରଣୟନ କରାଗଲା ବୋଲି କୁହାଯିବ ।

୧୯୬୩ରେ ବିଶ୍ୱ ବିଦ୍ୟାଳୟର କ୍ଷୁଦ୍ର ଜ୍ଞାନକୋଷର ପ୍ରଥମ ଖଣ୍ଡିକ ପ୍ରକାଶିତ ହୋଇଗଲା । ସମସ୍ତେ ଦେଖିଲେ ଯେ ଏଇଟି ଶିକ୍ଷକ ମାନଙ୍କ ପାଇଁ ଗୋଟିଏ ସହାୟକ ବା ରେଫରେନ୍‌ସ୍ ପୁସ୍ତକ ମାତ୍ର । ମୁଖ ବନ୍ଧରେ ସେମାନେ ସେହି କଥା ମଧ୍ୟ ଲେଖିଛନ୍ତି । ବରଂ "ପଲ୍ଲୀର ମାଇନର ପ୍ରାଇମେରୀ ସ୍କୁଲର ଶିକ୍ଷକ ମାନଙ୍କ ପାଇଁ ଏହା ଉଦ୍ଦିଷ୍ଟ" ବୋଲି ଲେଖି ଡକ୍ଟର ମାନସିଂହ ନିଜର ବିନୟ ଗୁଣର ପରିଚୟ ଦେଇଛନ୍ତି । ଜ୍ଞାନ-ମଣ୍ଡଳର ତୃତୀୟ ଖଣ୍ଡ ବାହାରିଲାଣି ସେତେବେଳକୁ ।

ବନାରସଠାରେ ସର୍ବୋଦୟ ସଂସ୍ଥା ପକ୍ଷରୁ ଗୋଟିଏ ସମ୍ମିଳନୀ ହେଉଥାଏ । ଉମାଶଙ୍କର ଯୋଶୀଙ୍କ ସମେତ ପ୍ରାୟ ପଚିଶ ଜଣ ସାହିତ୍ୟିକ

ଯୋଗ ଦେଇଥିଲେ । ମୋତେ ନିମନ୍ତ୍ରଣ ଥିଲା । ସନ୍ଧ୍ୟାବେଳେ ଆମେ କେତେଜଣ ଗଙ୍ଗାକୂଳରେ ବୁଲୁଥିଲୁ । ଜ୍ଞାନମଣ୍ଡଳର ପ୍ରଶଂସା ଜଣେ କଲେ । ଏହାଦ୍ୱାରା ଓଡ଼ିଶାର ଜନସାଧାରଣଙ୍କର ବହୁତ କିଛି ଲାଭ ହେବ ବୋଲି ଆଉ ଜଣେ ମତପ୍ରକାଶ କଲେ । କାହିଁକି କେଜାଣି ମୋ ମନ ଭିତରେ ଗୋଟିଏ ପ୍ରଶ୍ନ ଉଠିଲା । କହି ପକାଇଲି—"ଷାଠିଏ ଖଣ୍ଡରେ ଏଇଟି ସମାପ୍ତ ହୋଇଗଲେ ନିଶ୍ଚୟ ଗୋଟାଏ ଭଲକଥା ହେବ । କିନ୍ତୁ ଏହା ମାଧ୍ୟମରେ ଜ୍ଞାନକୁ ପ୍ରତ୍ୟେକ ଗୃହସ୍ଥଙ୍କ ପାଖରେ ପହଞ୍ଚାଇ ହେବନାହିଁ । ଆମ ପିଲା ପଢ଼ିବା ପାଇଁ ଯଦି କେତେଶହ ଶ୍ରେଷ୍ଠ ଶ୍ରେଷ୍ଠ ବହି ଲେଖାଯାଇ ପାରନ୍ତା, ପ୍ରତ୍ୟେକଟିରେ ଚିତ୍ର ରହିଥାଆନ୍ତା ଓ ବହି ଗୁଡ଼ିକ ଶସ୍ତା ହୋଇଥାଆନ୍ତା ତେବେ ଦରିଦ୍ର ପରିବାରର ପିଲା ମଧ୍ୟ ତାକୁ କିଣି ପାରନ୍ତେ । ପିଲାଙ୍କ ମନକୁ ସ୍ପର୍ଶ କରିବ ବୋଲି ସେମାନଙ୍କୁ କୁହାଯାଆନ୍ତା—ତୁମେ ୩୬୫ ଦିନରେ ୩୬୫ଟି ବହି ପଢ଼ିବ । ପ୍ରତିଦିନଟି ହେଉଛି ଅତୀତର ଗୋଟିଏ ମହତ୍ୱପୂର୍ଣ୍ଣ ଘଟଣାର ବାର୍ଷିକୀ Everyday is the Anniversary of some big event of the past—ସକାଳେ ଉଠି ତୁମେ ଯେଉଁ ବହିଟି ପଢ଼ୁଥିବ ସେହି ବହି କହି ଦେଉଥିବ ସେହି ଦିନଟିକୁ ସେହି ବହି ପାଇଁ କାହିଁକି ବଛାଯାଇଛି । ଅକ୍ଟୋବର ଦୁଇ ତାରିଖଦିନ ତୁମେ ମହାତ୍ମା ଗାନ୍ଧୀଙ୍କ ଜୀବନୀ ପଢ଼ୁଥିବ —କାରଣ ସେହି ଦିନରେ ସେ ଜନ୍ମ ହୋଇଥିଲେ ।" ସମସ୍ତେ ଏହି ଆଇଡିଆର ପ୍ରଶଂସା କଲେ । ପୁଣି କହିଲି—ଖଣ୍ଡିଏ ବହି ଲେଖାସରିଛି—ଯଦିଓ ଏହି ଯୋଜନାଟି ମୋ ମନ ଭିତରେ ନଥିଲା, ସେଇଟି ରହିଛି କଳ୍ପନା ଉପରେ । ଆଜି ରାତିରେ ସେଇଟିକୁ ଆପଣମାନଙ୍କୁ ଦେଖାଇବି ।

ସତେ ଯେପରିକି ଗୋଟିଏ ନୂଆବାଟ ଦିଶିଗଲା । ଏହି ୩୬୫ ଖଣ୍ଡ ବହି ଯେତେବେଳେ ବନ୍ଧାଇ ହୋଇ ୩୬ ଖଣ୍ଡରେ ରହିଯିବ ସେତେବେଳେ ଓଡ଼ିଆ ଭାଷାରେ ଗୋଟିଏ କିଶୋର ଜ୍ଞାନମଣ୍ଡଳ ବା ଚିଲ୍ଡ୍ରେନ୍ସ ଏନ୍‌ସାଇକ୍ଲୋପିଡିଆ ହୋଇଯିବ । ଏକା ଉଦ୍ୟମରୁ ଦୁଇ ସେଟ୍ ହୋଇଯିବ । କିନ୍ତୁ ତରତର ହେବାର କିଛି ନାହିଁ । ଜ୍ଞାନମଣ୍ଡଳଟି ଆଗେଇ ଯାଉ – ନହେଲେ ଲୋକେ ସେହିଗୁଡ଼ିକ କିଣି ହୁଏତ ସନ୍ତୁଷ୍ଟ ରହିଯିବେ । ସମସ୍ତଙ୍କୁ ଜାଣିବାର ସୁଯୋଗ ଦେବାରୂପକ ଯେଉଁ ଭାବନା ଏହି

ଶିଶୁ ପୁସ୍ତକ ପ୍ରଣୟନ ଯେ ଜନା ପଛରେ ଥିଲ, ତାକୁ ଦୂରୀଭୂତ କରଦେଲ ବୈଜ୍ଞାନକ, ଦାର୍ଶନକ ଆଇନ୍‌ଷ୍ଟାଇନଙ୍କର ଗୋଟିଏ ବାକ୍ୟ । ଲିନ୍‌କଲ୍‌ନ ବାର୍‌ନେଟ୍‌ (Lincoln Barnett) ଖଣ୍ଡିଏ ଗ୍ରନ୍ଥ ବହି ଲେଖିଥିଲେ ୧୯୪୮ରେ । ତାହାର ନାମ 'ଦ ଇଉନଭର୍ସ ଆଣ୍ଡ ଡକ୍ଟର ଆଇନ୍‌ଷ୍ଟାଇନ' (The universe and Dr. Einstein) । ତାହାର ମୁଖବନ୍ଧ ଲେଖିଛନ୍ତି ନଜେ ଆଇନ୍‌ଷ୍ଟାଇନ । ସେଥିରେ ସେ ଏହି ମର୍ମରେ କହିଛନ୍ତି—ବିଜ୍ଞାନର ଗୋଟାଏ କଟିମିଟିଆ ବା ଦୁର୍ବୋଧ ବିଷୟକୁ ସାଧାରଣ ଲୋକେ ବୁଝି ପାରିଲା ଭଳି ଭାଷାରେ ବୁଝାଇବାକୁ ଉଦ୍ୟମ କଲାବେଳେ କଉଳି ଘର କଷ୍ଟ ହୁଏ, ତାହା କଲାବାଲାଙ୍କର ଅଭଜ୍ଞତା ହୋଇଛି । ସମସ୍ୟାଟିର ଅସଲ ତତ୍ତ୍ୱକୁ ଲୁଗୁଇଦେଇ, ଉପରଠାଉରିଆ ଭାବରେ କିଛି କହିଦେଇ ପାଠକକୁ ଏକ ପ୍ରକାର ଠକି ଦଅନ୍ତି ଓ ସେ ଧରିନଏ ଯେ କଥାଟିକୁ ଠିକ ଧରିନେଉଛି—ଏହିଭଳି କରି ସେ ସଫଳତା ହାସଲ କରନ୍ତି ବା ସମସ୍ୟା ଉପରେ ଜଣେ ବିଶେଷଜ୍ଞ ଯେମିତି କହିବାର କଥା ସେମିତି କୁହନ୍ତି । ତାହାର ଫଳ ହୁଏ ପାଠକ ନଜର ମନକୁ ଏଥିପାଇଁ ତାଲିମ ନଥିବାରୁ କଅଣ କୁହାଯାଉଛି ତାହା ବୁଝିପାରେ ନାହିଁ । ଫଳରେ ଆଉ ବେଶୀ ପଢ଼ିବାକୁ ମନ ବଳାଏ ନାହିଁ । ଆଜକାଲର ସର୍ବସାଧାରଣଙ୍କ ପାଇଁ ଉଦ୍ଦିଷ୍ଟ ବିଜ୍ଞାନ ସାହିତ୍ୟରୁ ଯଦି ଏହି ଦୁଇଟିକୁ ବାଦ୍ ଦିଆଯିବ ତେବେ ଆଉ ପ୍ରାପ୍ୟ କିଛି ରହିଲା ନାହିଁ ବୋଲି କହିଲେ ବିସ୍ମିତ ହେବାର କିଛି ନାହିଁ । କିନ୍ତୁ ଯେଉଁ ଅଳ୍ପ କିଛି ରହିଗଲା ତାହାର ନିଶ୍ଚୟ ଯଥେଷ୍ଟ ମୂଲ୍ୟ ରହିଛି । ଯେଉଁସବୁ ବୈଜ୍ଞାନିକ ଗବେଷଣା ହେଉଛି ଓ ସେଥିରୁ ଯେଉଁ ଫଳ ମିଳୁଛି ସେ ବିଷୟରେ କିଛି ଜାଣିବାର ସୁଯୋଗ ଜନସାଧାରଣ ପାଇବା ଉଚିତ—ତାହା ପୁଣି ଭଲ ଭାବରେ ବୁଝିଶୁଝି ଓ ବୁଦ୍ଧି ପ୍ରୟୋଗ କରି । ଏହାର ଗୁରୁତ୍ୱ ରହିଛି । ଗବେଷଣା ପ୍ରସୂତ ପ୍ରତ୍ୟେକ ତଥ୍ୟଟିକୁ ବିଶେଷଜ୍ଞ ମାନେ ଭଲ ଭାବରେ ବୁଝି କାର୍ଯ୍ୟରେ ପ୍ରୟୋଗ କରିଦେଲେ ଯଥେଷ୍ଟ ହୋଇଗଲା ନାହିଁ । ଯଦି ଜ୍ଞାନକୁ ଗୋଟିଏ କ୍ଷୁଦ୍ର ଗୋଷ୍ଠୀ ଭିତରେ ସୀମିତକରି ରଖି ଦିଆଯିବ ଜନସାଧାରଣଙ୍କ ଦାର୍ଶନିକ ଚିନ୍ତାଧାରା ବ୍ୟାହତ ହୋଇଯିବ ଓ ସେମାନେ ଆଧ୍ୟାତ୍ମିକ ଦାରିଦ୍ର୍ୟ ଭିତରକୁ ଠେଲି ହୋଇଯିବେ ।

ANYONE WHO HAS EVER TRIED TO PRESENT A RATHER abstract scientific subject in a popular manner knows the great difficulties of such an attempt. Either he succeeds in being intelligible by concealing the core of the problem and by offering to the reader only superficial aspects or vague allusions, thus deceiving the reader by arousing in him the deceptive illusion of comprehension; or else he gives an expert account of the problem, but in such a fashion that the untrained reader is unable to follow the exposition and becomes discouraged from reading any further.

If these two categories are omitted from today's popular scientific literature, surprisingly little remains. But the little that is ieft is very valuable indeed. It is of great importance that the general public be given an opportunity to experience—consciously and intelligently—the efforts and results of scientific research. It is not sufficient that each result be taken up, elaborated, and applied by a few specialists in the field. Restricting the body of knowledge to a small group deadens the philosophical spirit of a people and leads to spiritual povery.

ଦୁଇଟି କଥା ସ୍ପଷ୍ଟ ହୋଇଗଲା । ଜ୍ଞାନ କଦାପି ଗୋଟିଏ କ୍ଷୁଦ୍ରଗୋଷ୍ଠୀ ଭିତରେ ସୀମିତ ହୋଇ ରହିବା ଉଚିତ ନୁହେଁ । ଗୋଟାଏ ସମୟ ଆସିଲା ଯେତେବେଳେ କି ବେଦଉପନିଷଦ ରହିଗଲା ଅଳ୍ପ କେତେଜଣଙ୍କ ତୁଣ୍ଡରେ ବା ମୁଣ୍ଡରେ । ଅନ୍ୟମାନେ ତାକୁ ଉଚ୍ଚାରଣ କରିପାରିବେ ନାହିଁ କି ପଢ଼ିପାରିବେ ନାହିଁ ବୋଲି ନିଷିଦ୍ଧ କରାଗଲା । ଅନ୍ୟମାନେ କେବଳ ସେହି କ୍ଷୁଦ୍ରଗୋଷ୍ଠୀର ଲୋକଙ୍କ ମୁହଁରୁ ଶୁଣିବେ । ସେମାନେ ଯାହା କହିଲେ ତାହାହିଁ ଜ୍ଞାନ ବିଦ୍ୟା ବୋଲି ଧରିନିଆଗଲା । ଫଳରେ ଭାରତରେ ଆଧ୍ୟାତ୍ମିକ ଦାରିଦ୍ର୍ୟ ଦେଖାଦେଲା । ଆଧ୍ୟାତ୍ମିକତା ବା ଧର୍ମ ଆସି ସୀମିତ

ହୋଇଗଲା କେତୋଟି ଶାସ୍ତ୍ର ଭିତରେ । କେବଳ ଶାସ୍ତ୍ର ରହିଲେ କୁସଂସ୍କାର ତାହାର ରାଜୁତି ଚଳାଇବାର କଥା । କାର୍ଯ୍ୟତଃ ତାହାହିଁ ହେଲା ଗୁହା ଭିତରେ ଜ୍ଞାନ ବନ୍ଦ ହୋଇ ରହିଲା । ଅସଲ ଜ୍ଞାନକୁ ଅନ୍ୟମାନଙ୍କ ଠାରୁ ଗୁପ୍ତ ରଖିବାର ପ୍ରବୃତ୍ତି ଯେଭଳି ଅନିଷ୍ଟ କରିବାର କଥା ସେହିଭଳି କରିବା ପାଇଁ କ୍ରମେ କ୍ରମେ କ୍ଷେତ୍ର ପ୍ରସ୍ତୁତ ହୋଇଗଲା । ଅନ୍ୟମାନେ ମୋ ସହିତ ଏକମତ ହୁଅନ୍ତୁ କି ନାହିଁ ବିଚାରିଲି—ଯଦି ମୁଁ କିଛି ଲେଖିବି ତାହା ଲକ୍ଷ ଲକ୍ଷ ଲୋକଙ୍କ ନିକଟରେ ପହଞ୍ଚିବା ଦରକାର । ଜ୍ଞାନମଣ୍ଡଳ ଜନସାଧାରଣଙ୍କ ଭିତରେ ପ୍ରବେଶ କରୁ ବୋଲି କହିବାର ଅର୍ଥ କଅଣ ? ଓଡ଼ିଶା ଭଳି ଗୋଟିଏ ରାଜ୍ୟରେ ହୁଏତ ଦଶ ପନ୍ଦର ହଜାର ସେଟ୍ ଏହି ବହି ରହିବ । ଯାହାଙ୍କ ପାଖରେ ରହିବ ସେମାନଙ୍କ ଭିତରୁ ଅଧିକାଂଶ ଅନ୍ୟକୁ ସୁଯୋଗ ଦେବେ ନାହିଁ ତାକୁ ପଢ଼ିବା ପାଇଁ । ଓଡ଼ିଶାରେ ତ ବହୁ ଲୋକ ଇଂରାଜୀ ଜାଣନ୍ତି । କିନ୍ତୁ ବ୍ରିଟାନିକା କେତେ ପରିବାର ଭିତରେ ସ୍ଥାନ ପାଇଛି ? ଏତେ ଟଙ୍କା ଦେଇ ଏହି ପ୍ରକାରର ବହି କିଣିବା କେତେ ଲୋକଙ୍କ ପକ୍ଷରେ ସମ୍ଭବ ? ଜ୍ଞାନମଣ୍ଡଳ ପ୍ରସାରିତ ହେବାର ଗୋଟିଏ ସୀମା ଅଛି । କିନ୍ତୁ ୭୫ ଦିନ ସିରଜଟି ସମସ୍ତେ କିଣି ପାରିବେ ଇଚ୍ଛା କଲେ । ଯାହାର ଯେଉଁଟା ମନ ହେବ କିଣିବ । ଅଦଳ ବଦଳ କରି ଲୋକେ ପଢ଼ିଦେଇ ପାରିବେ । ତେଣୁ ଏହି ଧରଣର ବହି ପ୍ରକାଶ ପାଉ—ଏଇଟା ମନଭିତରେ ରହିଗଲା ।

ବିଜ୍ଞାନରେ ଆଇନ୍‌ଷ୍ଟାଇନ କି ଚମତ୍କାର ଭାବରେ କହିଗଲେ ଗୋଟାଏ ବିଜ୍ଞାନ ବିଷୟର ସବୁକଥା ଯେ ସମସ୍ତେ ଜାଣିବେ ଏଭଳି ବିଚାରିବାର କାରଣ ନାହିଁ । ମୋଟାମୋଟି ଭାବରେ ବୁଝିଗଲେ ହେଲା । ମୋ ହାତରେ ତ ଗୋଟିଏ ମାପକାଠି ଅଛି । ଅଣୁପରମାଣୁ ବିଷୟରେ ମୁଁ ଯେତିକି ବୁଝିଛି ସେତିକି ଅନ୍ୟମାନଙ୍କୁ ବୁଝାଇଦେବି ସେମାନେ ବୁଝିପାରିଲା ଭଳି ଭାଷାରେ । ଯେଉଁ ଦିଗଟିକୁ ମୁଁ ବୁଝିପାରୁ ନାହିଁ ତାକୁ ଲକ୍ଷ ଲକ୍ଷ ଲୋକ ନ ବୁଝିଲେ କ୍ଷତି ବା କଅଣ ? ନିଜକୁ ମୁଁ ଗୋଟିଏ ନିର୍ଭରଯୋଗ୍ୟ ମାପକାଠି କରିଦେଲେ ସବୁଠାରୁ ଭଲ ହେବ । ବିଜ୍ଞାନ ପଢ଼ିବି । ଯେଉଁଠି ବୁଝି ନପାରିବି ସେଠି ଅନ୍ୟର ଆଶ୍ରୟ ନେବି । ସେ ବୁଝାଇଲା ପରେ ଯେତିକି ବୁଝିଲି ଲେଖିଦେବି । ସେଥିରେ କେହି ଅସନ୍ତୁଷ୍ଟ ହେବାର କୌଣସି କାରଣ ନାହିଁ ।

## ସତରେ କ'ଣ ଜଣେ ଲେଖିଛନ୍ତି ?

ଜଣେ ଅଧେ କାହାଣଠାରୁ ସିନା ଶୁଣେ—କିନ୍ତୁ ସେଥିପ୍ରତି ଗୁରୁତ୍ୱ ଦିଏନାହିଁ । ବିଷୟଟି ହେଲା— ଦୁଇଖଣ୍ଡ ଜ୍ଞାନମଣ୍ଡଳ ପ୍ରକାଶ ପାଇଲା ପରେ ମଧ୍ୟ ଦୁଇଟି ସନ୍ଦେହ କେତେକ ଲୋକଙ୍କ ମନରେ ରହିଯାଉଥିଲା । ସେଭଳି ରହିବାରେ ଆଦୌ ଅସ୍ୱାଭାବିକତା ନାହିଁ । ଗୋଟିଏ ହେଲା—ଦି'ଖଣ୍ଡ ସିନା ଲେଖିଦେଲେ—ଯେତେବେଳେ ଜ୍ଞାନର ସବୁ ବିଭାଗର ବିଷୟ ବସ୍ତୁ ଆସିଯିବ ସେ ହଟିଯିବେ । କାରଣ ଯେକୌଣସି ବିଶ୍ୱକୋଷ ହେଉଛି ପ୍ରତ୍ୟେକ ଜ୍ଞାନବିଭାଗର ପଣ୍ଡିତମାନଙ୍କ କୃତି । ଇଏ ପାରିବେ ନାହିଁ । ଅନ୍ୟଟି ହେଲା—ଏଇ ଦୁଇ ଭଲ୍ୟୁମ୍‌ରେ ଯେଉଁସବୁ କଠିନ କଠିନ ବିଷୟ ବସ୍ତୁ ଅଛି ସେଗୁଡ଼ିକ ସବୁ ସିଏ ଲେଖିନାହାନ୍ତି । ଅନ୍ୟମାନଙ୍କ ଠାରୁ ଲେଖାଇ ଆଣିଛନ୍ତି । ଜଣେ ସଙ୍କଳକ ଲେଖକ ନୁହନ୍ତି । 'ଏନ୍‌ସାଇକ୍ଲୋପିଡ଼ିଆର ଲେଖକ' ବୋଲି କେହି ଦାବୀ କରି ପାରିବେନାହିଁ । ଗୋଟିଏ ଗୋଟିଏ ନିର୍ଦ୍ଦିଷ୍ଟ ବିଷୟର ଲେଖକ ଅଛନ୍ତି ।

ତୃତୀୟ ଖଣ୍ଡିକ ବାହାରିବା'ର କିଛିଦିନ ପରେ ପାଞ୍ଚଜଣ ବିଶିଷ୍ଟ ଲୋକ ମୋ ପାଖକୁ ଆସିଥିଲେ । ସେମାନେ ସମସ୍ତେ ତୃତୀୟ ଖଣ୍ଡକୁ ଭଲ କରି ପଢ଼ିଛନ୍ତି । ନିଜ ନିଜ ଭିତରେ ଓ ଅନ୍ୟମାନଙ୍କ ସହିତ ଆଲୋଚନା କଲାପରେ ମୋ ପାଖକୁ ଆସିଛନ୍ତି । ପ୍ରଥମେ ଟିକିଏ ଶଙ୍କିତ ହେଉଥିଲେ କଥାଟା ଉଠାଇବା ପାଇଁ । ମୋଠାରୁ ଆଗ୍ରହଭରା ଉତ୍ସାହ ପାଇଲା ପରେ କହିଲେ ଆମେ ଧରିନେଇଥିଲୁ ଯେ ଆପଣ ଦୁଇଖଣ୍ଡ ଯାକର ସବୁତକ ବିଷୟ ଲେଖିନାହାନ୍ତି । ଅନ୍ୟମାନଙ୍କ ଲେଖାକୁ ଟିକିଏ ମାଜିଘଷି ଦେଇଛନ୍ତି କିମ୍ବା ଆପଣଙ୍କ ଭାଷା ତଥା ଶୈଳୀ ଗୁମ୍ଫରେ ପକାଇ ଦେଇଛନ୍ତି । କିନ୍ତୁ ତୃତୀୟ ଖଣ୍ଡିକ ପଢ଼ିଲା ପରେ ଆମ ମନରେ ଆଉ ସେ ସନ୍ଦେହ ରହିଲା ନାହିଁ । ତାହାର କାରଣ ହେଲା ଏହି ଖଣ୍ଡରେ ଜ୍ଞାନର ଏତେ ବିଭାଗ ଉପରେ ଦୀର୍ଘ ପ୍ରବନ୍ଧ ରହିଛି । ତଥ୍ୟ, ଶୈଳୀ, ଭାଷା ସବୁଦିଗରୁ ଦେଖିବାକୁ ଗଲେ ଅନ୍ୟ କେହିଜଣେ ଲେଖକ ସେମିତି ଲେଖିବା ସମ୍ଭବ ନୁହେଁ । ଅଦା ବିଷୟରେ ଆମର ଏହି ବନ୍ଧୁ ଓଡ଼ିଆ ଭାଷାର ଯେ କୌଣସି ବିଶ୍ୱକୋଷ ପାଇଁ ଲେଖିଦେବେ । କିନ୍ତୁ ସେତ ମସଲା-ଗନ୍ଧ-ସ୍ୱାଦ ବିଷୟରେ ତଥ୍ୟଦେଇ ପ୍ରଥମରୁ ବୁଝାଇବାର ଆବଶ୍ୟକତା ଅନୁଭବ କରିବେ ନାହିଁ । ଏହି ପ୍ରବନ୍ଧରେ ଅଦା ଶବ୍ଦର ଅର୍ଥ ଲେଖିବାକୁ ଯାଇ ଗୋଟିଏ ଗୋଟିଏ

ଶହ କଭଳ ଦେଶ ଭ୍ରମଣରେ ଗଲାବେଳେ ବରାବର୍ ବେଶ ବଦଳାନ୍ତ ତାହା ଆପଣ ଚମତ୍କାର ଭାବରେ ଲେଖିଛନ୍ତ—ଅନ୍ୟ କାହାର ମୁଣ୍ଡକୁ ସେ କଥା କାହିଁକ ତ୍ ୂକ ଥାଥାନ୍ତା । କେବଳ ଅଦା ନୁହେଁ ଜ୍ଞାନର ଛ'ଗୋଟି ବିଭାଗ ଉପରେ ଏହି ତୃତୀୟ ଖଣ୍ଡରେ କେତୋଟି ଘାର୍ଘ ପ୍ରବନ୍ଧ ରହିଛି । ସେଗୁଡ଼କ ଭିତରୁ ପ୍ରତ୍ୟେକଟି ଦର୍ଶାଇ ଦେଉଛି ଆପଣହିଁ ସବୁଗୁଡ଼କ ଲେଖିଛନ୍ତ । ଧର୍ମର ଅଥର୍ବବେଦ ଦଶପୃଷ୍ଠା, ଉଦ୍ଭିଦବିଦ୍ୟାର ଅଦଳ (କାକ୍ଟସ୍) ଦଶପୃଷ୍ଠା; ଆଇନର ଅଦାଲତ ଏବଂ ଅଦାଲତ ଅବମାନନା ୨° ପୃଷ୍ଠା; ଶଶୀର ବିଦ୍ୟାର ଅନିଦ୍ରା ୨୩ ପୃଷ୍ଠା ସାଙ୍ଗକୁ ଏବଂ ଆଛଡ଼ଆ ବା ଭାବନାର 'ଅଧିକାର' ଉପରେ ପାଞ୍ଚ ସ୍ତମ୍ଭର ପ୍ରବନ୍ଧ ସମ୍ବନ୍ଧରେ ସେମାନେ ଅାଲୋଚନା କରୁଥାଆନ୍ତ । ମୁଁ କେବଳ ଶୁଣୁଥାଏ । ଶେଷରେ ଏତକ କହିଲି— ଏହିସବୁ ଲେଖା ଭଲ ହେଉଛି କ ଖରାପ ହେଉଛି ତାହାର ଶ୍ରେଷ୍ଠ ବିଗ୍ଭରକ ଆପଣମାନେ—କଦାପି ମୁଁ ନୁହେଁ । କନ୍ତୁ କେତେକ ଲୋକଙ୍କର ଆଉ ଯେଉଁ ବିଷୟରେ ଆପତ୍ତି ତାହାର ବିଷୟରେ କିଛି କହିଦେବି । କେତେମାସ ତଳେ ମୋର ଜଣେ ବନ୍ଧୁ ଆସି କହିଲେ—ଜ୍ଞାନମଣ୍ଡଳରେ ଲେଖିଦେଇଛ 'ଲେଖକ—ବିନୋଦ କାନୁନ୍‌ଗୋ' । ଏମିତ ନଲେଖିଲେ ଭଲ ହୁଅନ୍ତା । ସମ୍ପାଦକ ବା ସଙ୍କଳକ ବୋଲି ଲେଖ । ଏବେ ବୁଝୁଛି ଅନେକ ଲୋକଙ୍କ ମତ ସେ କହୁଥିଲେ ଆସି । ସମସ୍ତ ନମ୍ରତାର ସହିତ ଗୋଟିଏ କଥା କହିବିଏ । ଏ ପର୍ଯ୍ୟନ୍ତ ପ୍ରକାଶିତ ହୋଇଥିବା ସବୁଗୁଡ଼କ ଗ୍ରୋଟ ବଡ଼ ବିଷୟ ମୁଁ ନିଜେ ଲେଖିଛି । ତେଣୁ 'ଲେଖକ' ବୋଲି ଉଲ୍ଲେଖ କରିଛି । ଅନ୍ୟମାନଙ୍କ ଲେଖା ଯଦି ହିଅାଯିବ ସେମାନଙ୍କ ନାମର ଉଲ୍ଲେଖ କରାଯିବ ଓ ମୁଁ ସମ୍ପାଦକ ବା ସଙ୍କଳକ—ଏହାହିଁ ରହିବ । ଏକଥା କ'ଣ ମୁଁ ଜାଣିପାରୁ ନାହିଁ ଯେ ମୋ ମୃତ୍ୟୁପରେ ବା ଆଜିକ ପଚାଶ ପଚିଶ ବର୍ଷ ପରେ ଯେତେବେଳେ ଜ୍ଞାନମଣ୍ଡଳର ସଂଶୋଧିତ ତଥା ପରିବର୍ଦ୍ଧିତ ସଂସ୍କରଣ ସବୁ ବାହାରୁଥିବ ସେତେବେଳେ ବହୁ ପ୍ରବନ୍ଧ ଅନ୍ୟମାନେ ଲେଖୁଥିବେ । ସେମାନଙ୍କର ସ୍ୱାକ୍ଷର ରହିବ । ଯେଉଁଗୁଡ଼କର କିଛି ପରିବର୍ତ୍ତନ ହେବ ନାହିଁ ସେଗୁଡ଼କ ତଳେ ମୋ ନାଁ ରହିବ । ଅଥର୍ବବେଦ, ଅଧିକାର, ଅନୁବାଦ, ଅଦା, ପ୍ରଭୃତି ପ୍ରବନ୍ଧରେ କୌଣସି ପରିବର୍ତ୍ତନର ଆବଶ୍ୟକତା ନଥିବ । କିଛି ଯୋଗକର ହିଆଯାଇପାରେ ଶେଷରେ ।

ସେମାନେ ଗଲେ । ଗୋଟିଏ କଥା ଭାବ ନେଲଣି । ମୁଁ ବଞ୍ଚି ଥାଉ ଥାଉ ଯଦି ଲୋକେ କହିଲେଣି ଯେ ମୁଁ ଏସବୁକୁ ଲେଖିନାହିଁ— ମୋ ପରେ ତ ଆହୁରି ଜୋର୍‌ରେ ସେସବୁ କଥାକୁହାଯିବ । ତେଣୁ କିଛି ରେକର୍ଡ଼ ରଖିଦେଇଯିବ । ଯେଉଁ କାଗଜରେ ପାଣ୍ଡୁଲିପି ଲେଖାଯାଉଛି ଓ ପ୍ରେସକୁ ଯାଉଛି ଛପାହେଲା ପରେ ସେତକ ପ୍ରେସରୁ ଆଣି ବନ୍ଧାଇ ରଖିଦେବ । ସେଥିରେ ଲେଖିଦେବ—ଏହି ଖଣ୍ଡରେ ଥିବା ସମସ୍ତ ବିଷୟ ମୁଁ ନିଜେ ଲେଖିଛି' । ଏଭଳି ଲେଖିଲେ ମଧ୍ୟ ଆହୁରି କିଛି ସନ୍ଦେହ ହୁଏତ ରହିଯିବ । କାରଣ ନିଜ ହାତରେ ଲେଖିବା ସାଙ୍ଗକୁ କେତେକ ବିଷୟ ଡାକଦେଇଛି—ଅନ୍ୟ କେହି ଲେଖି ଯାଇଛନ୍ତି । ସେହିସବୁ ପୃଷ୍ଠାରେ ମୁଁ ଦସ୍ତଖତ କରିଦେବ—ତା'ହେଲେ ଜଣାପଡ଼ିବ ସବୁତକ ଜଣକର ଲେଖା । ସେତେବେଳକୁ କିନ୍ତୁ ପ୍ରଥମଖଣ୍ଡର ପାଣ୍ଡୁଲିପି ନଥିଲା । ପୂରା ଗୋଟିଏ ଫୁଲ୍‌ସ୍କେପ କାଗଜ ପୃଷ୍ଠାରେ ପାଣ୍ଡୁଲିପି ଲେଖିବାର ପ୍ରଶ୍ନ ନଥିଲା । କାଗଜ କିଣାଯାଇ ପାରୁନଥିଲା । ରୁଷ ଆମେରିକା ପ୍ରଭୃତି ଦେଶର ଦୂତାବାସଗୁଡ଼ିକରୁ ଯେଉଁ ପ୍ରଚାରପତ୍ର ଆସୁଥିଲା ସେଗୁଡ଼ିକର ପଛପଟ ଖାଲିଥାଏ । ସେଇଥିରେ ବା ଆବଶ୍ୟକ ପଡ଼ିଲେ ଛୋଟ ବଡ଼ ସ୍ଲିପ୍ ଆକାରର କାଗଜରେ ଲେଖି ପ୍ରେସକୁ ପଠାଇ ଦେଉଥିଲି । ସେସବୁ ଫୋପଡ଼ା ହୋଇ ଯାଇଛି । ଦ୍ୱିତୀୟଖଣ୍ଡ ବେଳେ ସେହି ବ୍ୟବସ୍ଥା ଥିଲେ ମଧ୍ୟ କିଛି ସାଇତା ହୋଇ ରହିଥିଲା । ସେଗୁଡ଼ିକୁ ଫୁଲ୍‌ସ୍କେପ ସାଇଜ କାଗଜରେ ମଡ଼ାଇ ବନ୍ଧାଇ ଦେଲି ଦୁଇ ଖଣ୍ଡରେ । ଉପରର ସବୁତକ ଥିଲା । ତାହାପରେ ୪୦ ଖଣ୍ଡ ପର୍ଯ୍ୟନ୍ତ ଯେତକ ପାଣ୍ଡୁଲିପି ସବୁତକ ବନ୍ଧାହୋଇ ରହିଛି । ବହୁ ଲୋକ ତାକୁ ଦେଖୁଛନ୍ତି ଓ କାହିଁକି କେଜାଣି କହୁଛନ୍ତି ତାହାର ଆବଶ୍ୟକତା ରହିଛି । ଏମିତି ତ ନିଶ୍ଚୟ ହେବ ଯେ ପଚାଶ ଶହେ ବର୍ଷ ପରେ ଜ୍ଞାନମଣ୍ଡଳ ସମ୍ପୂର୍ଣ୍ଣ ନୂଆବେଶ ପିନ୍ଧି ଠିଆ ହୋଇଥିବ—ପ୍ରଥମେ ବିଷୟବସ୍ତୁ ସବୁ କେମିତି ଥିଲା ଜାଣିବା ପାଇଁ ଏହି ସୁରକ୍ଷିତ ପାଣ୍ଡୁଲିପି ସାହାଯ୍ୟ କରିବ ।

୧୯୬୨ରେ ଯେଉଁ ପରିକଳ୍ପନାଟି ମନ ଭିତରେ ଗଜାମାଣ ଥିଲା ଦଶବର୍ଷ ପରେ ତାହା ଗୋଟିଏ ଦ୍ରୁମରେ ପରିଣତ ହୋଇଗଲାଣି । ପିଲାଙ୍କ ଉଦ୍ଦେଶ୍ୟରେ ଖଣ୍ଡେ ଖଣ୍ଡେ ଲେଖାପାଉ—ଏହିଥିଲା ବିଚାର । ୧୯୫୪ରେ

'ଚଳନ୍ତା ଘରଜର ଅମୁହାଁ ନଈ' ଲେଖିଥିଲି । ଯଦି ବିଜ୍ଞାନ ଉପରେ କେତେଗୁଡ଼ିଏ ବହି ଲେଖାଯିବ ସେଗୁଡ଼ିକ ପିଲାମାନେ ଭଲ ଭାବରେ ବୁଝିବା ଦରକାର । ତାହା ସମ୍ଭବ ହେବ ଯଦି ସେମାନେ କେତୋଟି ନୂଆ କଥା ଜାଣିପିବେ । ପରମାଣୁ-ଅଣୁ ହେଉଛନ୍ତି ସେହିଭଳି ମୂଳ ଜ୍ଞାନ । ତାକୁ ବୁଝାଇବାକୁ ଗଲେ ଇଲେକ୍‌ଟ୍ରନ, ପ୍ରୋଟନ ନିଉଟ୍ରନ କଥା ଭଲ ଭାବରେ କହିବାକୁ ପଡ଼ିବ । କେଜାଣି କେମିତି ଭଲ ନାଁଟିଏ ଜୁଟିଗଲା— "ତିନଖଣ୍ଡି କାଉଁରି ହାଡ଼" । ଗାଁରେ କେଳାମାନେ ଯେତେବେଳେ ମେଜିକ୍ ଦେଖାନ୍ତି ତିନଖଣ୍ଡି ସରୁ ସରୁ ହାଡ଼ ଥୋଇ ଦଅନ୍ତି । କୁହନ୍ତି କୁମାରୀ ବା ଅବିବାହିତା ଝିଅଙ୍କର ଏହି କହଉଛି ହାଡ଼ । ଏହାକୁ ଛୁଆଁଇ ଦେଲେ କେତେ ବିଚିତ୍ର କଥା ହୋଇଯିବ ଦେଖ— ସବୁ ହେଉଛି ଏହି ତିନଖଣ୍ଡି କାଉଁରି ହାଡ଼ର ବାହାଦୁରି । ତାହାର ତୁଳନା ଇଲେକ୍‌ଟ୍ରନ ପ୍ରୋଟନ ନିଉଟ୍ରନ ସଙ୍ଗରେ କରାଯାଇ ପାରେ । ଭଗବାନ ଏହି ତିନୋଟିକୁ ଏପାଖ ସେପାଖ ଖଞ୍ଜି—କୌଶଳର ଚରମ ସଫଳତା ଦେଖାଇ ବିଶ୍ୱର ସବୁକିଛି ଗଢ଼ିଦେଇଛନ୍ତି । ବହିଟିକୁ ଲେଖିବା ପାଇଁ ବେଶି କିଛି ପରିଶ୍ରମ ପଡ଼ିଲା ନାହିଁ । ଅଣୁ ପରମାଣୁ ପ୍ରବନ୍ଧଟି ଥିଲା ଜ୍ଞାନମଣ୍ଡଳର ଦ୍ୱିତୀୟ ଖଣ୍ଡରେ । ତାକୁ ଭଲକରି ପଢ଼ିଦେଲି । ୧୯୭୨ ବେଳକୁ ତା' ଉପରେ ଗୋଟିଏ ବଡ଼ ଫାଇଲ ହୋଇଗଲାଣି । ପୃଷ୍ଠା ଓଲଟାଇ ଯାଉଥାଏ ଗୋଟାଏ ଗୋଟାଏ ପଏଣ୍ଟ ଟିପି ପକାଉଥାଏ । ପ୍ରସ୍ତୁତି ଶେଷପରେ ସକାଳ ଆଠଟା ବେଳେ କଲମ ଧରିଲି । ରାତି ଦଶଟା ବେଳକୁ ପାଣ୍ଡୁଲିପି ପ୍ରସ୍ତୁତ । ପିଲାକୁ ବୁଝାଉ ବୁଝାଉ ଆଇସୋଟୋପ୍ କଅଣ ବୁଝାଇ ହୋଇଗଲା । ଗୁଡ଼ିଏ ଚିତ୍ର ଥାଇ ଯେତେବେଳେ ବହିଟି ବାହାରି ଗଲା ସମସ୍ତେ ପ୍ରଶଂସା କଲେ—ପିଲାମାନେ ଆଗ୍ରହରେ ପଢ଼ିଲେ । ତାହାପରେ ବହିଟି ହଜମକ୍ରିୟା ଉପରେ । ଏମିତି ଏମିତି ଗୁରିଖଣ୍ଡି ବହି ବାହାରି ପଡ଼ିଲା ଅଳ୍ପ କେତେଦିନ ଭିତରେ । ସେ ଦିନରେ ଆଉ ଏତେ ସମୟ ଦେବା ଠିକ୍ ହେବନାହିଁ ବୋଲି ବିଚାରି ଟିକିଏ ସଂଯମ ଆଚରଣ କରିଗଲି । କାରଣ ଜ୍ଞାନମଣ୍ଡଳ ପାଇଁ ପ୍ରସ୍ତୁତି କାମରେ ବାଧା ପଡ଼ୁଥିଲା ।

ହେଲା କିନା, ଆଉ ଗୋଟିଏ କଥା ମୁଣ୍ଡରେ ପଶିଗଲା । ସ୍ୱାଧୀନତା ମିଳିଲାଣି ୧୯୪୭ରୁ । ଯେଉଁମାନଙ୍କୁ ଆଜି ଚବିଶ ପଚିଶବର୍ଷ ଓ

ଯେଉଁମାନେ ଅଧ୍ୟାପକ ହେଲେଣି ବା ହାକିମ ହୁକୁମା ହେଲେଣି ସେମାନେ ସେତେବେଳକୁ ହୁଏତ ଜନ୍ମ ହୋଇ ନ ଥିଲେ ବା ସେମାନେ ସ୍ୱାଧୀନତା ସଂଗ୍ରାମ ବିଷୟରେ ବିଶେଷ କିଛି ଜାଣୁ ନାହାନ୍ତି । ନ ଜାଣିବା ଫଳରେ ସଂଗ୍ରାମ ଯୁଗରେ ଲୋକଙ୍କୁ କଅଣ ସବୁ କୁହାଯାଇ-ଥିଲା, ସେମାନଙ୍କ ମନରେ କି ଆଶା ଜାଗ୍ରତ ହୋଇଥିଲା, ସ୍ୱାଧୀନତା ପରେ ଦେଶଟାକୁ କିଭଳି ନୂଆ ଗ୍ଛଂଚରେ ପକାଇ ଦିଆହେବ ବୋଲି ଆମେ ସବୁ ସ୍ୱପ୍ନ ଦେଖିଥିଲୁ ସେ ସବୁ ବିଷୟରେ ଏହି ଶିକ୍ଷିତ ଲୋକମାନେ ମଧ୍ୟ କିଛି ଜାଣି ପାରୁନଥାନ୍ତି । ଲକ୍ଷ ଲକ୍ଷ ଗ୍ରାମ ଜାଣୁ ନଥାନ୍ତି ଏଦେଶର ସାଧାରଣ ଜନତା, ନିରକ୍ଷର ଲୋକେ, ଦରିଦ୍ର ଲୋକେ କିଭଳି ଅସୀମ ତ୍ୟାଗ କରି, ଅସାଧାରଣ ସାହସ ଦେଖାଇ ମୁକ୍ତି ସଂଗ୍ରାମ ବେଳେ ଲଢିଥିଲେ ଓ ଲାଠିଗୁଳିକୁ ଖାତିର ନକରି ପ୍ରାଣବଳୀ ପର୍ଯ୍ୟନ୍ତ ଦେଇଥିଲେ । ଏ ସଂପର୍କରେ ଯାହା ବା କିଛି ଲେଖା ଯାଇଥାଏ ସେ ସବୁ ବିଖଣ୍ଡିତ । ସେଗୁଡ଼ିକୁ ପଢିଦେଲେ ମନେହେବ ଭାରତରେ ଶହେ ଜଣ ପର୍ଯ୍ୟନ୍ତ ନେତୃସ୍ଥାନୀୟ ଲୋକେ ସଂଗ୍ରାମ କରି ସ୍ୱାଧୀନତା ଆଣିଛନ୍ତି । ଅନ୍ୟମାନେ ନାମକୁ ମାତ୍ର ଜେଲ ବରଣ କରିଥିଲେ ବା ସେହିଭଳି କିଛିକଥା । ପ୍ରକୃତ ସ୍ୱାଧୀନତା ସଂଗ୍ରାମୀ ମାନଙ୍କର ଶାସନ କଳ ନିକଟରେ ସେଭଳି କିଛି ଗୁରୁତ୍ୱ ନଥାଏ କି ମର୍ଯ୍ୟାଦା ନଥାଏ । ସ୍ୱାଧୀନତା ପରେ ଯେଉଁମାନେ ଶାସନ ଗାଦିକୁ ଆସିଲେ ସେମାନଙ୍କ ଭିତରୁ କେତେକ ଏଭଳି ଆଚରଣ ଦେଖାଇଲେ ଯେ ଅନ୍ୟମାନଙ୍କର ସେମାନଙ୍କ ପ୍ରତି ସମ୍ମାନ ରହିଲା ନାହିଁ —ଫଳରେ ସ୍ୱାଧୀନତା ସଂଗ୍ରାମର ଗୁରୁତ୍ୱ ଉପଲବ୍ଧି କରିବାକୁ ବହୁଲୋକ ଆଗ୍ରହ ପ୍ରକାଶ କଲେ ନାହିଁ । ଆମେ ଯେଉଁମାନେ ପନ୍ଦର ବର୍ଷରୁ ଅଧିକ କାଳ ଧରି ମୁକ୍ତି ସଂଗ୍ରାମ ସହିତ ଓତଃ ପ୍ରୋତ ଭାବରେ ଜଡ଼ିତ ଥିଲୁ ସେମାନେ ଆଶା କରିଥିଲୁ ଯେ ଯେତେବେଳେ କଂଗ୍ରେସର ନେତାମାନେ ଶାସନ ଗାଦିରେ ବସିଛନ୍ତି ସେମାନେ ନିଶ୍ଚୟ ସ୍ୱାଧୀନତା ସଂଗ୍ରାମର ଇତିହାସ ଲେଖାଇବେ । କିନ୍ତୁ ତା’ ହେଲା ନାହିଁ । ଓଡ଼ିଶାର ସ୍ୱାଧୀନତା ସଂଗ୍ରାମର ଇତିହାସ ବୋଲି ଇଂରାଜୀରେ ଯେଉଁ ଦୁଇଖଣ୍ଡ ପୁସ୍ତକ ପ୍ରକାଶ ପାଇଲା ତାକୁ ପଢିଦେଇ ଆମମାନଙ୍କର ମୁଣ୍ଡ ଲଜ୍ଜାରେ ତଳକୁ ହୋଇଗଲା । ଏଭଳି ବିକୃତ ହାସ୍ୟାସ୍ପଦ ଏବଂ ଅପମାନଜନକ ଇତିହାସ ଯେ ସ୍ୱାଧୀନତା ସଂଗ୍ରାମ ଉପରେ ଲେଖା ଯାଇ ପାରେ ଏକଥା

ଆମେ କେବେ କଳ୍ପନା କରି ନ ଥିଲୁ । ଯେଉଁ ସରକାରୀ ଅଫିସରେ ସେହି ଇତିହାସ ଲେଖିବାର ମୁଖ୍ୟ ଦାୟିତ୍ୱ ନେଇଥିଲେ ସେ କହିଲେ—ଆମେ କୁଆଡ଼ୁ କିଛି ନପାଇଲାରୁ ପୁଲିଶ ଅଫିସରେ ଯେଉଁ ସବୁ ରେକର୍ଡ ଥିଲା ତାକୁହିଁ ମୂଳକରି ଲେଖିଗଲୁ । ସ୍କନ୍ଦଂ ନ ବାଧତେ ରାଜନ୍— ତବ ବାଧିତ ବାଧତେ ଭଲ କଥାହେଲା । ବିଦେଶୀ ସରକାରର ପୁଲିଶ ଯେଉଁସବୁ ରେକର୍ଡ଼ ରଖିଥିଲେ ସବୁତକ ଥିଲା ସରକାରଙ୍କ ଦମନଲୀଳାର ଯଥାର୍ଥତା ପ୍ରମାଣ କରିବା ପାଇଁ । ଲକ୍ଷ୍ମଣ ନାୟକଙ୍କ ଫାଶୀରୁ ଆରମ୍ଭକରି ଇରମ ନରହତ୍ୟା (ଗୁଳିକାଣ୍ଡ) ପର୍ଯ୍ୟନ୍ତ ଯାହାକିଛି ଘଟିଗଲା ସେଥିରୁ କୌଣସି-ଟିରେ ସରକାରଙ୍କର କିଛି ଦୋଷ ନଥିଲା—ଏଇଥିଲା ସବୁ ରେକର୍ଡ଼ର ସାର କଥା । ସେହି ସବୁ ତଥ୍ୟ ଉପରେ ପର୍ଯ୍ୟବେସିତ ଇତିହାସ ଆଉ ଅଧିକ ବା କଅଣ ହୁଅନ୍ତା ?

ଓଡ଼ିଶା ସ୍ୱାଧୀନତା ସଂଗ୍ରାମରେ ପ୍ରଶଂସନୀୟ ଅଂଶ ଗ୍ରହଣ କରିଥିଲା । ତେଣୁ ଇତିହାସରେ ତାହା ଲିପିବଦ୍ଧ ହୋଇ ରହିବା ଉଚିତ । ଆମେ ଯେଉଁମାନେ ସେଥିରେ ପ୍ରତ୍ୟକ୍ଷ ଭାଗ ନେଇଥିଲୁ ସେମାନେ ଯଦି ଲେଖିନଯିବୁ ତାହା ଏହିଭଳି ରହିଯିବ—ଏପରିକି ଭବିଷ୍ୟତରେ ଆହୁରି ବିକୃତ ହୋଇଯିବ । ଏହାଦ୍ୱାରା କିଛି ଦୂରକୁ ଦୁଇଟା କାମ ହୋଇଯିବ । ଓଡ଼ିଶାର ସଂଗ୍ରାମ ତ ଭାରତୀୟ ସଂଗ୍ରାମର ଅଂଶ ବିଶେଷ—ତେଣୁ ଯେଉଁ ବହି ଲେଖାଯିବ ତାହା ଭବିଷ୍ୟତ ବଂଶଧର ମାନଙ୍କ ପାଇଁ ଭାରତର ସ୍ୱାଧୀନତା ସଂଗ୍ରାମର ଗୋଟାଏ ଚିତ୍ର ଆଙ୍କିଦେଇ ପାରିବ । ଭାବିଲି ବହିଟିର ନାମ କଅଣ ରହିବ । ଦି' ଦିନ ଭିତରେ ନାମଟିଏ ବାଛିଦେଲି —"ମୁଠାଏ ଲୁଣ—ଗୋଟାଏ ସାମ୍ରାଜ୍ୟ" । ୧୯୨୧ର ଅସହ ଯୋଗ ଆନ୍ଦୋଳନ ଥିଲା ମୁକ୍ତି ସଂଗ୍ରାମ ପାଇଁ ଜନସାଧାରଣଙ୍କ ମନରେ ଉତ୍ସାହ ସୃଷ୍ଟିକରିବା ପାଇଁ ଉଦ୍ଦିଷ୍ଟ । କିନ୍ତୁ ୧୯୩୦ ରେ ହିଁ ପ୍ରକୃତ ସ୍ୱାଧୀନତା ସଂଗ୍ରାମ ଆରମ୍ଭ ହେଲା । ୧୯୨୯ ଡ଼ିସେମ୍ବର ୩୧ ତାରିଖ ରାତି ବାରଟା ପର୍ଯ୍ୟନ୍ତ କଂଗ୍ରେସ କହୁଥିଲା ଔପନିବେଶିକ ସ୍ୱାଧୀନତା ମିଳିଲେ ଭାରତ ସନ୍ତୁଷ୍ଟ ରହିଯିବ । କାନାଡା ବା ଅଷ୍ଟ୍ରେଲିଆ ଯେଉଁଭଳି ଔପନିବେଶିକ ସ୍ୱାଧୀନତା ପାଇଛନ୍ତି ଭାରତ ସେମିତି ପାଇଗଲେ ମଧ୍ୟ ଦେଶକୁ ନୂତନ ଭାବରେ ଗଢିବାପାଇଁ ସୁଯୋଗ ପାଇବ । ତା' ନହେବାରୁ ଲାହୋର

କଂଗ୍ରେସରେ ଲକ୍ଷ୍ୟ ପୂର୍ଣ୍ଣ ସ୍ୱାଧୀନତା ବୋଲି ଘୋଷଣା କରାଗଲା । ସଂଗ୍ରାମ ଆରମ୍ଭ ହେଲା ୧୯୩୦ ଏପ୍ରିଲ ୬ ତାରିଖ ଦିନ—ଗାନ୍ଧିଜୀ ଯେତେବେଳେ ଗୁଜୁରାଟର ଦାଣ୍ଡୀଠାରେ ଲବଣ ଆଇନ ଅମାନ୍ୟ କଲେ । ଯେଉଁମାନେ ସେହି ଏପ୍ରିଲରେ ହିଁ ମୁକ୍ତି ଆନ୍ଦୋଳନରେ ଝାସ ଦେଇଥିଲେ ସେମାନଙ୍କ ଭିତରେ ମୁଁ ଥିଲି ଜଣେ । ତେଣୁ ଏହି ନାମଟି ମୋ ମୁଣ୍ଡ ଭିତରକୁ ଆସିଗଲା ତେଣିକି ତୃଷ୍ଣା ଉଠିଲା ତଥ୍ୟ ସଂଗ୍ରହ କରାଯିବ କିପରି । ଗୋଟିଏ ଫର୍ମ ଛପାଇ ସ୍ୱାଧୀନତା ସଂଗ୍ରାମୀ ମାନଙ୍କ ପାଇଁ ପଠାଇଲି । ବହୁଲୋକ ଉତ୍ତର ଦେଲେ । ଦେଖିଲି ଯେ ସେସବୁ ଉତ୍ତର ଇତିହାସ ଲେଖିବା ଦୃଷ୍ଟିରୁ ପର୍ଯ୍ୟାପ୍ତ ନୁହେଁ । ଗୋଟିଏ ଗୋଟିଏ ଅଞ୍ଚଳକୁ ଯାଇ ସଂଗ୍ରାମୀ ମାନଙ୍କୁ ଏକଠି କରି ସେମାନଙ୍କ ମୁହଁରୁ ବ୍ୟକ୍ତିଗତ ଅନୁଭୂତିର ବିବରଣୀ ସଂଗ୍ରହ କଲେ ଭଲ ହେବ, ସେମିତି କରାଗଲା । ସଙ୍ଗରେ ଜଣେ ଫଟୋଗ୍ରାଫର ନେଇ ଯାଏ । ମୋର ଗୋଟିଏ ପୁଅ ଫଟୋ ଉଠାଇବା ଶିଖି ଯାଇଥିବାରୁ ସୁବିଧା ହେଲା । ପ୍ରଥମ ସଂଗ୍ରାମୀ ମିଳନରେ ହିଁ ବିବରଣୀ ସଂଗ୍ରହର ଗୋଟାଏ ମତ ସ୍ଥିର ହୋଇଗଲା । ଜଣେ କହିଥିବେ ମୁଁ ଲେଖିଯିବି— ଏଇଟା ଭବିଷ୍ୟତ ପାଇଁ ଗୋଟାଏ ବିଶ୍ୱାସ ଯୋଗ୍ୟ ଦଲିଲ ହୋଇ ରହିବ ନାହିଁ । ସିଏ ଯାହା ଜାଣିଛନ୍ତି, ଅଙ୍ଗେ ନିଭାଇଛନ୍ତି ନିଜେ ଲେଖି ଦିଅନ୍ତୁ ନିଜ ଭାଷାରେ । ତାହାର ଉପରେ ଭିତ୍ତି କରି ମୁଁ ଯାହା ଲେଖିବି । ଯେଉଁମାନେ ଲେଖି ପାରୁ ନାହାନ୍ତି ସେମାନଙ୍କ ମୁହଁରୁ ଶୁଣି ନୋଟ୍ କରିଗଲେ ଭଲ ହେବ । ସେହି ମତ ଭଲ କାମ ଦେଲା । ଓଡ଼ିଶାର ବହୁ ଅଞ୍ଚଳରେ ଏହିଭଳି ବୈଠକ ବସିଲା । ପ୍ରାୟ ୫୦୦ ଜଣ ନିଜ ହାତରେ ଲେଖି ସଂଗ୍ରାମରେ ସେମାନେ କିଭଳି ଭାଗ ନେଇଥିଲେ ଜଣାଇଲେ । ପ୍ରାୟ ୧୫୦୦ ଲୋକଙ୍କ ଫଟୋ ନିଆଗଲା । ଇରମ ଭଳି ସ୍ଥାନରେ ଯେଉଁମାନେ ଗୁଳିରେ ପ୍ରାଣ ଦେଇଥିଲେ ସେମାନଙ୍କ ବିଧବା ପତ୍ନୀ ମାନଙ୍କୁ ବ୍ୟକ୍ତିଗତ ଭାବରେ ପଚାରିଲୁ । ସେମାନଙ୍କ ଫଟୋ ସଂଗ୍ରହ କଲୁ । ସେହିସବୁ ବିବୃତି ଏବଂ ଫଟୋ ପ୍ରାୟ ୨ ହଜାର ଫାଇଲରେ ସଜାଇ ରଖାଯାଇଛି । 'ମୁଠାଏ ଲୁଣ- ଗୋଟାଏ ସାମ୍ରାଜ୍ୟ' ଦୁଇ ଖଣ୍ଡରେ ସମାପ୍ତ ହୋଇଛି । ଏହି ତଥ୍ୟ ସଂଗ୍ରହ ଅଭିଯାନ ମୋତେ ଗୋଟାଏ ନୂଆ ଶିକ୍ଷା ଦେଲା । ଭାରତର ଇତିହାସ ଲେଖିବା, ବିଶେଷ କରି ବିଜ୍ଞାନ ସମ୍ମତ ପ୍ରଣାଳୀରେ ତଥ୍ୟ ସଂଗ୍ରହ କରି ତାହାର ଉପରେ ଭିତ୍ତି କରି ଲେଖିବାର ପରମ୍ପରା ସୃଷ୍ଟି

ହୋଇ ନାହିଁ । ତେଣୁ ବିଖଣ୍ଡିତ ଭାବରେ ଯାହା ସବୁ ଲେଖା ହୋଇ-ଯାଇଛି । ଏହି କଥାଟି ମନରେ ଥିବାରୁ ୧୯୭୫ରୁ୮୫ ଭିତରେ ବହୁବାର ଉଦ୍ୟମ କରିଛି ପ୍ରତି ଦିନର ଘଟଣାକୁ ମୁଁ ଯେପରି ଦେଖୁଛି ସଂକ୍ଷେପରେ ଲିପିବଦ୍ଧ କରିଯିବା ପାଇଁ । ସେଇଟି କେବଳ 'ରେକର୍ଡ଼ର' ନହୋଇ ଚଳନ୍ତା ଇତିହାସ ହେଉ—ଏଇ ହେଲା ମୋର ଇଚ୍ଛା । ସେଭଳି କରିବାଟା ଅନ୍ୟମାନଙ୍କ ତୁଳନାରେ ମୋ ପକ୍ଷରେ ସହଜ । କାରଣ ପ୍ରତିଦିନ ମୁଁ ବହୁ ସଂଖ୍ୟକ ଦୈନିକ କାଗଜ ଓ ପତ୍ର ପତ୍ରିକା ପଢ଼େ । ସେ ସବୁର ସାର ସଂଗ୍ରହ କରାଯାଇ ସାଇତା ଯାଏ । ତେଣୁ ଏଭଳି ଲେଖି ଦେବା ସହଜ । କିନ୍ତୁ ବହୁବାର ଉଦ୍ୟମ କଲାପରେ ବନ୍ଦ ହୋଇଯାଏ—ଏକମାତ୍ର କାରଣ ହେଲା ସମୟର ଅଭାବ । ନିରପେକ୍ଷ ମନ ନେଇ ଚଳନ୍ତା ଇତିହାସ ଲେଖିବା ମଧ୍ୟ ସହଜ ନୁହେଁ । କୌଣସି ଗୋଟିଏ ଘଟଣାର ପୂର୍ବାପର ସମ୍ପର୍କକୁ ଲିପିବଦ୍ଧ ନକଲେ ପାଠକ ସହଜରେ ଜାଣି ପାରିବେ ନାହିଁ । ଯାହା ଉଲ୍ଲେଖ କରାଯାଉଛି ତାହାର ଗୁରୁତ୍ୱ କେତେ । ପୂର୍ବାପର ସଂପର୍କକୁ ଠିକ୍ ଭାବରେ ଲିପିବଦ୍ଧ କରିବା ପାଇଁ କିଛି ସାହସ ମଧ୍ୟ ଲୋଡ଼ା । ମୋର ବ୍ୟକ୍ତିଗତ ମତ ହେଲା ରାଜନୈତିକ ସ୍ୱାଧୀନତା ପ୍ରାପ୍ତିପରେ ମଧ୍ୟ ଭାରତରେ 'ମନର ସ୍ୱାଧୀନତା' ର ପରିଚୟ ମିଳି ନାହିଁ । ଯିଏ ଆମର ବିରୋଧ କରୁଛି ବା ଆମ ମତ ସହିତ ଏକମତ ହୋଇ ପାରୁନାହିଁ ତାହାର ମଧ୍ୟ ଗୁରୁତ୍ୱ ଅଛି, ଏକଥା ସ୍ୱୀକାର କରିବା ପାଇଁ ଭାରତରେ ଅନୁକୂଳ ବାୟୁମଣ୍ଡଳ ସୃଷ୍ଟି ହୋଇନାହିଁ । ତଥାପି ଏ ଦିଗରେ ଉଦ୍ୟମ ହେବା ନିତାନ୍ତ ଜରୁରୀ । ଇତିହାସ ଲେଖିବା ବ୍ୟକ୍ତିଙ୍କର କିଛି ଅଭିଜ୍ଞତା ଥିବା ମଧ୍ୟ ଲୋଡ଼ା । ପାଠ ଏବଂ ଜୀବନ—ଉଭୟର ପ୍ରଶ୍ନ ଏଠି ଉଠୁଛି । ତେବେ ମୋତେ ୧୯୮୭ରେ ୭୫ ବର୍ଷ ପୂରିଗଲା । ସେଥିଭିତରୁ ୧୭ ବର୍ଷ ବାଦ ଦେଲେ ବାକିତକ ସମୟ ସାଧାରଣ ଜୀବନ କଟାଇବାରେ କଟି ଯାଇଛି । ଲୋକଙ୍କୁ, ଘଟଣାବଳୀକୁ ଲକ୍ଷ୍ୟ କରିବାର ଯୋଗ୍ୟତା ହାସଲ ହୋଇଛି ବୋଲି କହିଲେ ଅତିରଞ୍ଜନ ହେବନାହିଁ । ୧୯୮୭ ଜାନୁୟାରୀ ପହିଲାରୁ ରୀତିମତ ଲେଖିବାଟା ଆରମ୍ଭ ହେଲା । ଏହାର ନାମ ରଖିଛି, 'ଇତିହାସର ଡାଏରୀ' । କାଳ ସଂପୂର୍ଣ୍ଣ ନିରପେକ୍ଷ । ଯାହା ଘଟିଯାଉଛି ଇତିହାସ ତାକୁହିଁ ଲିପିବଦ୍ଧ କରିଯିବ । କିଏ ସନ୍ତୁଷ୍ଟ ହେଲା ବା ନ ହେଲା—ସେଇଟା ପ୍ରଶ୍ନ ନୁହେଁ, ବହୁ ଲୋକଙ୍କର ଇଚ୍ଛା ସତ୍ୟ ଘଟଣାର ଉଲ୍ଲେଖ ମରହୁ । କିନ୍ତୁ

ସେମାନେ ବୁଝି ନାହାନ୍ତି ଯେ ସତ୍ୟ କେବେହେଲେ ସବୁଦିନ ପାଇଁ ଲୁଚି ରହିପାରିବ ନାହିଁ। ସ୍ୱାଧୀନତା ସଂଗ୍ରାମ କାଳରେ ଜାଲିଆନାୱାଲାବାଗ ବା ଧର୍ଷଣାରେ ଯେଉଁ ଅତ୍ୟାଚାର ବ୍ରିଟିଶ ସରକାରଙ୍କ ପକ୍ଷରୁ ହେଲା ତାହାର ସ୍ମୃତି ଭାରତର ସୀମା ଭିତରେ ସୀମିତ ହୋଇ ରହୁବୋଲି ବ୍ରିଟିଶ ଜାତି ଇଚ୍ଛା କରୁଥିଲେ ମଧ୍ୟ ତାହା କ'ଣ ସମ୍ଭବ ହେଲା ? ଜଣେ ଆଟେନବର୍ଗ—ସେ ପୁଣି ଇଂରେଜ—ଗୋଟିଏ ଗାନ୍ଧି ଫିଲ୍ମ୍ କରିଦେଇ ପୃଥିବୀକୁ ଜଣାଇଦେଲେ ସେ ଯୁଗରେ ଭାରତରେ କିଭଳି ନିଷ୍ଠୁର ଅତ୍ୟାଚାର ଚାଲୁଥିଲା। ଇଂରେଜ ଜାତି ଆଟେନବର୍ଗଙ୍କ ଉପରେ କ୍ଷୁବ୍ଧ ହେଲେ ସତ, ଇତିହାସ ତ ଆଉ ଲୁଚିରହି ପାରିଲା ନାହିଁ। ଜଣଙ୍କ ଉଦ୍ୟମ ଗାନ୍ଧୀଙ୍କୁ ପୃଥିବୀରେ କେମିତି ପରିଚିତ କରିଦେଲା ତାହା ତ ଆମେ ସମସ୍ତେ ଆଖିରେ ଦେଖିଲେ।

କାଳେ ଭୁଲହୋଇଯିବ—ଗୋଟିଏ ବିଷୟର ଉଲ୍ଲେଖ କରିଦିଏ। ସ୍ୱାଧୀନତା ସଂଗ୍ରାମର ମୁଁ ଯେଉଁ ଇତିହାସ ଲେଖିଛି ତାହା ଶେଷ ହୋଇ ଯାଇଛି ୧୯୪୭ ଅଗଷ୍ଟ ପନ୍ଦର ତାରିଖରେ। ତାହାପରେ ଭାରତରେ ଯାହାସବୁ ଘଟି ଯାଇଛି ସେ ସବୁର ଉଲ୍ଲେଖ ମୋ ବହିରେ ନାହିଁ। କେବଳ ଗୋଟିଏ ଅଧ୍ୟାୟ ରହିଛି ୧୯୪୮ ଜାନୁୟାରୀ ତିରିଶ ତାରିଖ ପର୍ଯ୍ୟନ୍ତ। ସେହିଦିନ ହିଁ ମହାତ୍ମାଗାନ୍ଧୀଙ୍କୁ ହତ୍ୟା କରାଗଲା।

## "ଏନ୍‌ସାଇକ୍ଲୋପିଡିଆ ପ୍ରଣୟନରେ ବିପ୍ଳବ"

ନାନା ଜଞ୍ଜାଳ ଭିତର ଦେଇ ଆଗେଇ ଯିବାକୁ ଚେଷ୍ଟା କରୁଥିବା ବେଳେ ଅକସ୍ମାତ ଗୋଟାଏ ନୂଆ ପରିସ୍ଥିତିର ସୃଷ୍ଟି ହୋଇଗଲା। ଦେଶରେ ଜରୁରୀକାଳୀନ ପରିସ୍ଥିତି ଘୋଷଣା କରିଦିଆଗଲା। ବହୁସଂଖ୍ୟକ ପ୍ରତିଷ୍ଠିତ ନେତା ଓ କର୍ମୀଙ୍କୁ ବନ୍ଦୀଶାଳା ଭିତରେ ଅଟକ ରଖିଦିଆଗଲା। ସେହିମାନେହିଁ ସ୍ୱାଧୀନତା ସଂଗ୍ରାମବେଳେ ଅସୀମ ତ୍ୟାଗ କରିଥିଲେ। କିନ୍ତୁ ସେମାନେ ହୋଇଗଲେ ସ୍ୱାଧୀନ ଭାରତରେ ବନ୍ଦୀ। ମୋ ଭଳି ବହୁ ସ୍ୱାଧୀନତା ସଂଗ୍ରାମୀଙ୍କ ପ୍ରାଣକୁ ବାଧିଲା। ମନର ଅବସ୍ଥା ଏମିତି ହୋଇଗଲା ଯେ କିଛି କରି ହେଲାନାହିଁ। ମନ ସହିତ ଶରୀରର ଘନିଷ୍ଠ ସମ୍ପର୍କ ଥିବାରୁ ମୋ ସ୍ୱାସ୍ଥ୍ୟ ମଧ୍ୟ ଖରାପ ହୋଇଗଲା। ଘରଆଡ଼େ ସରକାରୀ କଟକଣା।

ବ୍ରିଟିଶ ରାଜୁତିବେଳେ ମଧ୍ୟ ଏତେ କଟକଣା ନଥିଲା । ଛପାଖାନାବାଲା କହିଲେ—'ଆମେ ଇଣ୍ଟେଲିଜେନ୍ସ ଲୁଚିପାରିବୁ ନାହିଁ । କାରଣ ପୁଲିସ ଅଫିସର ବରାବର ପ୍ରେସକୁ ଆସି ପଚାରୁଛନ୍ତି କଅଣ ସବୁ ଲୁଚପୂଛ ଆମକୁ ଦେଖାଅ । ଆପଣଙ୍କ ବହିରେ ତ ନାନା ବିଷୟ ରହୁଛି । କେତେବେଳେ ହୁଏତ କୁହାଯିବ ଏଗୁଡ଼ା ଲୁଚିପାରିବ ନାହିଁ । ସନ୍ଦେହ କଲେ ପ୍ରେସ ଜବତ । ସେମିତି ତ ହେଲାଣି ।' ତାହାହେଲେ ବହି ଛପା ବନ୍ଦ ! ଜରୁରୀକାଳୀନ ପରିସ୍ଥିତି ଯେ କେତେବର୍ଷ ରହିବ ତାହାର ଠିକଣା ନାହିଁ । ବହୁବର୍ଷ ପର୍ଯ୍ୟନ୍ତ ରହିପାରେ । ଏମିତି ଭାବୁ ଭାବୁ ନିଜକୁ ପଢ଼ାପଢ଼ି କ୍ଷେତ୍ରରେ କର୍ମରତ ରହିବାର ଗୋଟାଏ ସୁଯୋଗ ଆସିଗଲା ।

ବ୍ରିଟାନିକା ନୂଆ ରୂପରେ ଆସି ପହୁଞ୍ଚିଗଲା । ପୂର୍ବର ଚବିଶ ଖଣ୍ଡ ତିରିଶ ଖଣ୍ଡ ହୋଇ ଯାଇଛି । ୧୯୭୫ ଅକ୍ଟୋବର ୨୨ ତାରିଖ ଦିନ ଟେବୁଲ ଉପରେ ତିରିଶ ଖଣ୍ଡ ଯାକ ଥୁଆ ହୋଇଗଲା । ଏହି ନୂତନ ପଞ୍ଚଦଶ ସଂସ୍କରଣଟି ତିନିଭାଗରେ ବିଭକ୍ତ—ପ୍ରୋ ମାକ୍ରୋ ଏବଂ ମାଇକ୍ରୋ । ପ୍ରୋପିଡିଆ ହେଉଛି ମାତ୍ର ଗୋଟିଏ ଖଣ୍ଡ । ତାକୁ ମେଲାଇ ଫର୍‌ଓ୍ୱାର୍ଡ଼ଟିକୁ ପଢ଼ିବା ଆରମ୍ଭ କଲି । ପ୍ରଥମ ବାକ୍ୟଟି ହେଉଛି—"ଏହି ପଞ୍ଚଦଶ ସଂସ୍କରଣଟି ଏନ୍‌ସାଇକ୍ଲୋପିଡିଆ ପ୍ରଣୟନରେ ବିପ୍ଳବର ସୂଚନା ଦେଇଛି ।" ଏ ପର୍ଯ୍ୟନ୍ତ ମୋଟାମୋଟି ଭାବରେ ବିଶ୍ୱକୋଷ ପ୍ରଣୟନର ପଦ୍ଧତି ବିଷୟରେ ଗୋଟାଏ ଧାରଣା କରି ସାରିଥିଲି । ଏହି ପୁସ୍ତକ ସେଟ୍ ପ୍ରଣୟନର ଇତିହାସକୁ ଦୁଇଶହ ବର୍ଷ ହୋଇଗଲାଣି । ଏତେକାଳ ପରେ ପୁଣି ସେ ଦିଗରେ ଗୋଟାଏ ବୈପ୍ଳବିକ ପଦକ୍ଷେପ ନେବାର ଆବଶ୍ୟକତା କାହିଁକି ଦେଖାଦେଲା ? ଏହି ପ୍ରଶ୍ନର ଉତ୍ତର ଏହିଭଳି ଭାବରେ ଦିଆଯାଇଛି—ଇଂରାଜୀ ଭାଷାରେ ବ୍ରିଟାନିକା ସର୍ବୋତ୍କୃଷ୍ଟ ଏନ୍‌ସାଇକ୍ଲୋପିଡିଆ ବୋଲି ବିବେଚିତ ହେଉଥିଲା । କିନ୍ତୁ ପ୍ରତିବର୍ଷ ଏଥିରେ ଯେଉଁ ସଂଶୋଧନ ବା ପରିବର୍ଦ୍ଧନ କରାଯାଉଥିଲା ତାହା ଆଂଶିକ ବୋଲି କୁହାଯାଇପାରେ । କେତେଗୁଡ଼ିଏ ବିଷୟକୁ ଉଠାଇ ଦିଆଯାଉଥିଲା । ସେହି ସ୍ଥାନରେ ଅନ୍ୟ ବିଷୟ ରଖି ଦିଆଯାଉଥିଲା । କେତେକ ଆର୍ଟିକଲରେ ପରିବର୍ତ୍ତନ କରାଯାଉଥାଏ । କିନ୍ତୁ ସମଗ୍ର ସେଟ୍‌ଟିକୁ ଭଲ କରି ଦେଖି କଅଣ କରାଯିବ ସେ ବିଷୟରେ ସନ୍ତୋଷ ହେଲା ଭଳି କିଛି

କରାଯାଇ ପାରୁନଥିଲା । ଗୋଟାଏ ବିଷୟ ବା ପ୍ରବନ୍ଧରେ ପରିବର୍ତ୍ତନ କରିଦିଆଗଲା । କିନ୍ତୁ ତାହାର ସହିତ ସମ୍ପୃକ୍ତ ବହୁ ପ୍ରବନ୍ଧରେ କ୍ଷେତ୍ର ବିଶେଷରେ ଜରୁରୀ ହୋଇପାରେ—କୌଣସି ପରିବର୍ତ୍ତନ ହେଲା ନାହିଁ । ଫଳରେ ମୂଳ ପ୍ରବନ୍ଧ ସହିତ ଏହିସବୁ ଅପରିବର୍ତ୍ତିତ ବିଷୟର ସେଭଳି କିଛି ସମ୍ପର୍କ ରହିଲାନାହିଁ— ଖାପଛଡ଼ା ହୋଇଗଲା । ପାଠକ ଯେମିତି ଭାବରେ କଥାଟିକୁ ବୁଝିଲେ ସନ୍ତୋଷ ପାଆନ୍ତା ସେମିତି ଆଉ ବୁଝିପାରିଲା ନାହିଁ ।

× × × ସମ୍ପାଦକ ମଣ୍ଡଳୀଙ୍କ ଆଗରେ ଗୋଟାଏ ସ୍ପଷ୍ଟ ଲକ୍ଷ୍ୟ ରହିଗଲା ଯେତେବେଳେ ସେମାନେ ବୁଝିଲେ ଯେ— ବ୍ରିଟାନିକାର ଥିଲା ବା ଏଣିକି ରହିବା ଉଚିତ ଦୁଇଟି କାମ ବା ଉଦ୍ଦେଶ୍ୟ । ଏହାଟି ଗୋଟିଏ ସହାୟକ ପୁସ୍ତକ ଅର୍ଥାତ୍ ଗୋଟାଏ ବିଷୟ ଖୋଜିଲେ ମିଳିବ । ଦ୍ୱିତୀୟଟି ହେଉଛି—ଏଇଟି ଶିକ୍ଷାର ଗୋଟିଏ ସାଧନ । ଯଦିଓ ତଥ୍ୟ ଆହରଣ ବା ଇନ୍‌ଫରମେଶନକୁ ଭୁଲ୍‌ରେ ଶିକ୍ଷା ବୋଲି କହିଦିଆ ଯାଏ ଟିକିଏ ଗମ୍ଭୀର ଭାବରେ ଚିନ୍ତାକଲେ ପାଠକଙ୍କର ହୃଦ୍‌ବୋଧ ହୋଇଯିବ ଯେ ଦୁଇଟି ଯାକ ଏକକଥା ନୁହେଁ । ଶିକ୍ଷା ପାଇଁ ତଥ୍ୟ ନିଶ୍ଚୟ ଅପରିହାର୍ଯ୍ୟ, କିନ୍ତୁ ଜଣେ ଯେତେ ଅଧିକ ସମାଗ୍ରୁର ବା ତଥ୍ୟର ଅଧିକାରୀ ହେଲେ ମଧ୍ୟ ଶିକ୍ଷା ନାମ ପଦ ବାଚ୍ୟ ହେବା ପାଇଁ ଯେଉଁ ପ୍ରକାରର ଧୀଶକ୍ତି ବା ଗ୍ରହଣ ଶକ୍ତିର ଆବଶ୍ୟକତା—ତାହା ସେହିସବୁ ଗଦା ଗଦା ତଥ୍ୟ ଯୋଗାଇ ଦେଇ ପାରିବ ନାହିଁ । ତଥ୍ୟ ଯୋଗାଇବା କାର୍ଯ୍ୟଟି ବ୍ରିଟାନିକା ମୋଟାମୋଟି ଭଲ ଭାବରେ କରୁଛି । Mari (Antoinette) (ମେରି ଆଣ୍ଟୋନେଟ୍) ବା ନିଉଟନଙ୍କ ସଂକ୍ଷିପ୍ତ କାର୍ଯ୍ୟାବଳୀ ବିଷୟରେ ଜଣେ ଜାଣିବାକୁ ଇଚ୍ଛାକଲେ ସେ ନିଶ୍ଚିତ ହୋଇପାରେ ଯେ ବ୍ରିଟାନିକାରେ ଯେଉଁସବୁ ତଥ୍ୟ ଦିଆଯାଇଛି ସେଗୁଡ଼ିକ ସଠିକ ବା ବିଶ୍ୱାସ ଯୋଗ୍ୟ । କିନ୍ତୁ ଇତିହାସରେ ଆଣ୍ଟୋନେଟଙ୍କ ସ୍ଥାନ ବା ନିଉଟନ ବିଜ୍ଞାନ ଜଗତରେ ଯେଉଁ ବିପ୍ଳବ ଆଣିଲେ ତାହାର ପୃଷ୍ଠଭୂମି ବା ପରିଣାମ ବିଷୟରେ ବିଶଦ ଭାବରେ ଜାଣିବା କଷ୍ଟ । ସମ୍ପାଦକ ମାନଙ୍କ ଆଗରେ ସମସ୍ୟା ରହିଲା 'ଖୋଜିବା-ପାଇବା' ବହିଭାବରେ ବ୍ରିଟାନିକାକୁ ନରଖି ଏହାକୁ କିପରି ଶିକ୍ଷାର ସାଧନ କରାଯିବ । ତଥ୍ୟ ଯୋଗାଇବା ପାଇଁ ବ୍ରିଟାନିକା ଯେଉଁ ଉଦ୍ୟମ କରୁଛି ତାହା ନିଶ୍ଚୟ ଅକ୍ଷୁଣ୍ଣ ରହିବ । ସେଭଳି ଧରିରଖିବା ସଙ୍ଗେ ସଙ୍ଗେ ତାକୁ ଜ୍ଞାନ ଅର୍ଜନର ସାଧନ ରୂପରେ

ମଧ୍ୟ ପ୍ରକାଶ ହେବକି ? ବହୁବର୍ଷ ଏ ବିଷୟରେ ଆଲୋଚନା ଏବଂ ତର୍କ ବିତର୍କ ଚାଲିଲା ପରେ ସ୍ଥିରହେଲା ଯେ ବ୍ରିଟାନିକା ଉଭୟ କାର୍ଯ୍ୟ କରିବ —ତଥ୍ୟ ଯୋଗାଇବ ଓ ଶିକ୍ଷା ଦିଗରେ ସାହାଯ୍ୟ କରିବ । ଏହାକୁହିଁ କୁହା ଯାଉଛି "ଏନ୍‌ସାଇକ୍ଲୋପିଡ଼ିଆ ପ୍ରଣୟନରେ ବିପ୍ଳବ ।

ଏତକ ପଢ଼ିସାରିଲା ପରେ ତିରିଶ ଖଣ୍ଡ ଯାକର ପୃଷ୍ଠା ଓଲଟାଇ ଦିବାକୁ ମନହେଲା—ପଢ଼ିବାପାଇଁ ନୁହେଁ, ଦେଖିବା ପାଇଁ । ଦେଖୁଥିଲା ବେଳେ କେତେକଥା ଭାବିଯାଉ ଥାଏ । ମାଇକ୍ରୋ (Micro) ଟି ହେଲା ସଂକ୍ଷିପ୍ତ ପରିଚୟ ପାଇଁ ଶ୍ରେଷ୍ଠ ବିଷୟ ଗୁଡ଼ିକ—କୌଣସିଟି ୭୦୦ ଶବ୍ଦରୁ ଅଧିକ ନୁହେଁ । ପୂର୍ବ ସଂସ୍କରଣରେ ଥିଲା ପ୍ରାୟ ୪୦ ହଜାର ରେଫରେନ୍‌ସ୍, ଏଥର ରହିଛି ଏକଲକ୍ଷ (୧,୦୦୦୦୦) । ଦଶ ଭଲ୍ୟୁମ୍‌ରେ ସମାପ୍ତ ମାଇକ୍ରୋରେ ରହିଛି ୧୦୨୮୩ ପୃଷ୍ଠା । ଏହି ଏକଲକ୍ଷ ବିଷୟ ଭିତରୁ ପ୍ରାୟ ୪୦୦୦କୁ ବାଛି ବୃହତ ବା ମାଇକ୍ରୋର ୧୯ ଭଲ୍ୟୁମରେ ସ୍ଥାନଦିଆ ଯାଇଛି । ସେଗୁଡ଼ିକର ପୃଷ୍ଠା ସଂଖ୍ୟା ହେଲା ୨୧୮୪୪ । ଏକପୃଷ୍ଠାରୁ ଆରମ୍ଭ କରି ୨୮ ପୃଷ୍ଠାର ପ୍ରବନ୍ଧ ସବୁରହିଛି । ଏହି ସବୁ ୪୦୦୦ ବିଷୟ ରହିଲା । ସେତକ ବିଷୟରେ ଯେକୌଣସି ଶିକ୍ଷିତ ଲୋକ ଅଳ୍ପ ବହୁତେ ଜାଣିବା ଦରକାର । ତା' ହେଲେ କୁହାଯିବ ଯେ ସେ ମାନବଜ୍ଞାନର ସବୁ ବିଭାଗ ବିଷୟରେ କିଛି କିଛି ଜାଣିଛନ୍ତି । ଅବଶ୍ୟ ବାକି ଯେଉଁ ୯୬ ହଜାର ବିଷୟ ମାଇକ୍ରୋରେ ଅଛି—ସେଥିରେ ମଧ୍ୟ ଅନେକ ଜାଣିବାର କଥା ଅଛି । ତିନୋଟିଯାକର ମୋଟ ପୃଷ୍ଠା ସଂଖ୍ୟା ୩୩୦୭୦ ବୋଲି ଗଣିବାପରେ ମନେ ମନେ ବିଚାରୁଥାଏ -- ଠିକ୍ ଏତିକ ବିଷୟ ଥାଇ ଯଦି ଗୋଟିଏ ଜ୍ଞାନମଣ୍ଡଳ ସେଟ୍ ଲେଖାଯିବ, ତେବେ ତାହା ହୋଇଯିବ ୬୦୦ ପୃଷ୍ଠିଆ ୫୭୦ ଖଣ୍ଡ । ତାହା ତ କେବେ ସମ୍ଭବ ହେବ ନାହିଁ । ପୁଣି କ୍ଷଣକପାଇଁ ବିଚାର ଦେଉଥାଏ —ତା' ବିନା ସମ୍ଭବ ହେବ ନାହିଁ, ଓଡ଼ିଆ ଭାଷାରେ ୪୦୦୦ ଶ୍ରେଷ୍ଠ ବଡ଼ ପୁସ୍ତକ ରଚନା କରି ଏହିସବୁ ତଥ୍ୟକୁ ସାଇତି ଦିଆ ନ ଯିବ କାହିଁକି ?

ଏହିସବୁ ଅଙ୍କ ନୁହେଁ—ଆଉ ଗୋଟିଏ ଭାବନା ଯେ ମୁଣ୍ଡ ଭିତରେ ପଶି ମନଟାକୁ ଟିକିଏ ଅସ୍ଥିର କଲାଣି । ବ୍ରିଟାନିକାରେ ଯେଉଁ ଗୁଣାତ୍ମକ ପରିବର୍ତ୍ତନ ହେଲା, ତାହା ଭିତରେ କି ନୂତନତ୍ୱ ଅଛି ଜାଣିବାକୁ ହେଲେ

କେତେଗୁଡ଼ିଏ ପ୍ରବନ୍ଧ ପଢ଼ିବାକୁ ହେବ । ପୂର୍ବ ସଂସ୍କରଣରେ ସେ ବିଷୟରେ କଅଣ ଲେଖାଯାଇଥିଲା ଓ ଏଥିରେ କେମିତି ବର୍ଣ୍ଣନା କରାଗଲା ତାହାର ଗୋଟିଏ ତୁଳନାତ୍ମକ ଚିତ୍ର ମନ ଭିତରେ ଆଙ୍କିବାକୁ ପଡ଼ିବ । ତାହାହେଲେ ଜଣାହେବ ଏଇଟି ଶିକ୍ଷାର ସାଧନ କେତେଦୂରକୁ ହୋଇଛି । ନିଗ୍ରୋମାନଙ୍କ ଜୀବନ ପୂର୍ବେ କେମିତି ଥିଲା ଓ ଏବେ କେମିତି ହୋଇଛି ତୁଳନା କରିବାକୁ ପଡ଼ିବ । ସେହିଭଳି ପନ୍ଦର କୋଡ଼ିଏ ଜଣଙ୍କର ବିଷୟରେ କଲେ ଯାଇ ଜଣାହେବ । ପୂର୍ବ ଚବିଶ ଖଣ୍ଡଯାକ ତ ମୋତେ କିଛି ଜ୍ଞାନ ଦେଇଛି, ଏହି ତିରିଶ ଖଣ୍ଡ ଅଧିକ କଅଣ ଦେଲା ଦେଖିବି । ପରିମାଣ ଦୃଷ୍ଟିରୁ ନୁହେଁ—ଗୁଣ ଦୃଷ୍ଟିରୁ କି ପାର୍ଥକ୍ୟ ରହୁଛି ତାହାହିଁ ବଡ଼ କଥା । ଭାବିଲି—ଏବେ ତ ଆଉ କୁଆଡ଼େ ଯିବାକୁ ମନ ହେଉନାହିଁ—ପଡ଼ା ପଢ଼ିରେ ସବୁ ସମୟ ଯିବ । ଭାବିଥିଲି ଛ' ମାସ ଲାଗିଯିବ ଏହି ଦୃଷ୍ଟିରୁ ପଢ଼ିବାପାଇଁ । କିନ୍ତୁ ବର୍ଷକ ପରେ ମଧ୍ୟ ଦେଖିଲି ଆହୁରି ଅନେକ କିଛି ମାନସିକ ପରିଶ୍ରମ କରିବାକୁ ପଡ଼ିବ ପ୍ରକୃତ କଥାଟା ଜାଣିବା ପାଇଁ । ତା' ସଙ୍ଗେ ସଙ୍ଗେ ଫାଇଲ ଗୁଡ଼ିକୁ ସଜାଡ଼ିବା ଦିଗରେ ମନ ଦେଇଥାଏ । ସେତେବେଳକୁ ଫାଇଲ ସଂଖ୍ୟା ହୋଇଗଲାଣି ପନ୍ଦର ହଜାରରୁ ଅଧିକ । କେତେ ଲକ୍ଷ ଖବର କାଗଜ କଟିଙ୍ଗ୍ ବଡ଼ ବଡ଼ା ହୋଇ ରହିଥାଏ । ସେଗୁଡ଼ିକ ଭିତରୁ କେଉଁ ଗୁଡ଼ିକର ସ୍ଥାୟୀ ମୂଲ୍ୟ ଅଛି ଦେଖିଦେଇ ଅନ୍ୟ ଗୁଡ଼ିକ ଫୋପାଡ଼ି ଦେଉଥାଏ । ଫୋପାଡ଼ି ଦେଲାବେଳେ ଭାରି ଦୁଃଖ ହେଉଥାଏ । ପ୍ରତ୍ୟେକଟିର କିଛି ମୂଲ୍ୟ ଅଛି ବୋଲି ତ ଖବର କାଗଜରୁ କାଟି ସଂଗ୍ରହ କରିଥିଲି । ରଖିବାକୁ ସ୍ଥାନ ନାହିଁ ? ସେଗୁଡ଼ିକୁ ମଡ଼ାଇବା ପାଇଁ ଫୁଲସ୍କେପ୍ ସାଇଜର କାଗଜ ନାହିଁ, ମଡ଼ାଇବ ପାଇଁ ଲୋକ ବଳ ନାହିଁ—ସେଇଥି ପାଇଁ ଫୋପାଡ଼ି ଦେଉଛି- ଏଇଟା ଥାଏ ଦୁଃଖ । ୧୯୭୬ ଶେଷ ସୁଦ୍ଧା ବ୍ରିଟାନିକା ପଢ଼ା ସରିଲା । ୧୯୭୭ ଆସିଗଲା—କିନ୍ତୁ ଅଧା ହୋଇନାହିଁ । ସେହି ବର୍ଷଟିରୁ ଅଧେ ସରିଗଲା ସେହି ସେଟ୍‌ଟିର ପ୍ରତ୍ୟେକ ଭଲ୍ୟୁମ୍ ଉପରେ ଆଖି ବୁଲାଇବାରେ । ପାଠକମାନେ ଦୟାକରି ଧରନ୍ତୁନି ନାହିଁ, ଯେ ପ୍ରତ୍ୟେକ ପୃଷ୍ଠାରେ ପ୍ରତ୍ୟେକ ପାରାଗ୍ରାଫ୍‌ଟିକୁ ପଢ଼ୁଥିଲି । ଦେଖି ଯାଉଥାଏ କେମିତି ନୂଆ ଢଙ୍ଗରେ ଲେଖାହୋଇଛି । ସମୟେ ସମୟେ ବିଷୟରେ ବୁଡ଼ିଯାଏ ଚିନ୍ତା କରୁକରୁ ଜ୍ଞାନର ପ୍ରସାର ପାଇଁ

କ ଧରଣର ଉଦ୍ୟମ ହେଉଛି । ଏହି ନୂତନ ସଂସ୍କରଣଟିକୁ ପ୍ରକାଶ କରିବା ପାଇଁ ଖର୍ଚ୍ଚ ହୋଇଛି ୩୨ କୋଟି ଟଙ୍କା ।

୧୯୭୮ ବେଳକୁ ଦେଶର ରାଜନୈତିକ ପରିସ୍ଥିତି ବଦଳିଲାଣି । ଏଥରକ ପୁଣି ଛପାଇବା କାର୍ଯ୍ୟ ଆରମ୍ଭ ହେବ । ଆରମ୍ଭ କଲା ପୂର୍ବରୁ ମୋର ଗୋଟିଏ ନୂତନ ପ୍ରକାରର ସନ୍ତୋଷ ହୋଇଥାଏ । ଜ୍ଞାନମଣ୍ଡଳ ପ୍ରକାଶିତ ହେଲା ୧୯୬୧ ଆରମ୍ଭ ବେଳକୁ । ଯଦି ସବୁଆଡୁ ସାହାଯ୍ୟ ସହାନୁଭୂତି ମିଳି ଷାଠିଏ ଖଣ୍ଡ ଯାକ ଶେଷ ହୋଇ ଯାଇଥାଆନ୍ତା ଆଦୌ ଭଲ ହୋଇ ନଥାନ୍ତା । ସେହି ୧୯୬୧ରେ ହିଁ ବ୍ରିଟାନିକାକୁ ନୂତନ ଢାଞ୍ଚାରେ ପକାଇବା ପାଇଁ ଜୋର୍‌ସୋର୍ କାମ ଆରମ୍ଭ ହେଲା ଓ ତେରବର୍ଷ ପରେ ୧୯୭୪ରେ ଶେଷ ହେଲା । ନୂତନ ସେଟ୍‌ଟିକୁ ପାଇଲା ପୂର୍ବରୁ ଯଦି ଆମେ କାମ ଶେଷକରି ଦେଇଥାଆନ୍ତୁ ତାହା ଗୋଟିଏ ତଥ୍ୟ ପୁସ୍ତକ ହୋଇଥାଆନ୍ତା ସିନା ଶିକ୍ଷାର ସାଧନ ହୋଇ ପାରିନଥାନ୍ତା । ଆଉଥରେ ତାକୁ ନୂଆ ଗୁଞ୍ଚରେ ପକାଇ ନୂତନ ସଂସ୍କରଣ ପ୍ରକାଶ କରିବା ଓଡ଼ିଶା ଭୂଇଁରେ ସମ୍ଭବ ହୋଇ ନଥାନ୍ତା । ସେଇଥିପାଇଁ ବୋଧହୁଏ ଜ୍ଞାନମଣ୍ଡଳ ପ୍ରକାଶନ କ୍ଷେତ୍ରରେ ନାନା ପ୍ରତିବନ୍ଧକ ସୃଷ୍ଟି ହେଉଥିଲା । ଭଗବାନଙ୍କର ବୋଧହୁଏ ସେମିତି ଥିଲା ଇଚ୍ଛା । ଦୁଇବର୍ଷ ନରବ ରହି ଭାବିଲା ଫଳରେ ଭବିଷ୍ୟତ ପାଇଁ ସୁଚିନ୍ତିତ ଯୋଜନା କରିପାରିଲି ଓ ଫାଇଲ ଗୁଡ଼ିକ ଯଦା ନୂତନ କରିବାର ବ୍ୟବସ୍ଥା କରିଦେଲି ।

ଜ୍ଞାନମଣ୍ଡଳରେ କ ପରିବର୍ତ୍ତନ ଆଣିଲେ ଓଡ଼ିଶାର ପାଠକମାନେ ଅପେକ୍ଷାକୃତ ଅଧିକ ଲାଭବାନ ହେବେ, ସେ ବିଷୟରେ ଟିକିଏ ଭାବିବାକୁ ପଡ଼ିଲା । କେତେକ ବନ୍ଧୁ ପରାମର୍ଶ ଦେଲେ—ବ୍ରିଟାନିକା ଯେଉଁ ପଦ୍ଧତି ଅନୁସରଣ କରିଛି ଆମ ପକ୍ଷରେ ସେହିଭଳି କରିବା ଠିକ୍ ହେବ । ଯେଉଁ ସବୁ ବିଷୟ ଆମେ ବାଛିଛୁ, ସେଗୁଡ଼ିକୁ ସଂକ୍ଷିପ୍ତ କରି ଲେଖିଦେଲେ ତିରିଶି ଖଣ୍ଡରେ ଜ୍ଞାନମଣ୍ଡଳକୁ ଶେଷ କରି ଦିଆଯାଉ । ସେଥିରୁ ଭଲ ଭଲ ବିଷୟ ବାଛି ଆଉ ୪୫ଖଣ୍ଡରେ ବିସ୍ତୃତ ଭାବରେ ଲେଖାଯାଉ । ବ୍ରିଟାନିକା ସେହିଭଳି ତ କରିଛି । ଆଉ କେତେକ ବନ୍ଧୁ କହିଲେ ଏ ପର୍ଯ୍ୟନ୍ତ ପ୍ରକାଶିତ ହୋଇଥିବା ୧୭ ଖଣ୍ଡ ଜ୍ଞାନମଣ୍ଡଳକୁ ଯେଉଁମାନେ ପଢ଼ି ଆସିଛନ୍ତି ସେମାନେ ଏହାଦ୍ୱାରା ଅସନ୍ତୁଷ୍ଟ ହେବେ । ପୂର୍ବର ବ୍ୟବସ୍ଥା ଠିକ୍ ଭାବରେ ଚାଲୁ—

ଯେଉଁ ଗୁଡ଼ିକ ଅଧିକ ଗୁରୁତ୍ୱପୂର୍ଣ୍ଣ ବୋଲି ବିଚାର କରାଯାଉଛି ସେଗୁଡ଼ିକରୁ କେତୋଟିକୁ ପ୍ରତ୍ୟେକ ଖଣ୍ଡରେ ଦେଇ ଦିଆଯାଉ । ଶେଷରେ ସେହି ପ୍ରସ୍ତାବ ହିଁ ଗ୍ରହଣ କଲି । ଏଗୁଡ଼ିକୁ ସ୍ୱତନ୍ତ୍ର ପ୍ରବନ୍ଧ ନାମ ଦିଆଗଲା । 'ହୃତ୍‌ପିଣ୍ଡ' ବିଷୟରେ ଲେଖାଯାଉ । ପରେ ଯେତେବେଳେ ହୃତପିଣ୍ଡ ଆସି ଯିବ 'ହ' ଖଣ୍ଡରେ ସେତେବେଳେ ଲେଖି ଦିଆଯିବ "ଦେଖନ୍ତୁ...ଖଣ୍ଡ" ଜ୍ଞାନମଣ୍ଡଳର ଯେତେବେଳେ ନୂଆ ସଂସ୍କରଣ (ପୁନର୍ମୁଦ୍ରଣ ନୁହେଁ) ହେବ ସେତେବେଳେ ଏହି ପ୍ରବନ୍ଧଟି ତା' ନିଜ ସ୍ଥାନକୁ ଚାଲିଯିବ । ଅଷ୍ଟାଦଶ ଖଣ୍ଡରୁ ସେହି ବ୍ୟବସ୍ଥା କାର୍ଯ୍ୟକାରୀ ହେଲା । ପ୍ରଥମ ସ୍ୱତନ୍ତ୍ର ପ୍ରବନ୍ଧଟି ରହିଲା ଏନ୍‌ସାଇକ୍ଲୋପିଡିଆ' ଉପରେ । ଦୀର୍ଘ ସତର ଅଠର ବର୍ଷ ଧରି ଏହି ଜ୍ଞାନମଣ୍ଡଳ ବିଷୟରେ ଆଲୋଚନା ହେଉଥିଲେ ମଧ୍ୟ ଗୋଟିଏ ଭାଷାରେ ଏହି ଧରଣର ବହି ଗ୍ରନ୍ଥର ଆବଶ୍ୟକତା ବା ଉପଯୋଗିତା କଅଣ, ସେ ବିଷୟରେ ଓଡ଼ିଶାର ପାଠକ ମାନଙ୍କ ଭିତରୁ ଶହକେ ନବେ ଜଣଙ୍କର ଆଦୌ ସ୍ପଷ୍ଟ ଧାରଣା ନଥାଏ । ତେଣୁ ସେହି ବିଷୟରେ ଗୋଟିଏ ସ୍ପଷ୍ଟ ଧାରଣ ଦେବା ପାଇଁ କୋଡ଼ିଏ ପୃଷ୍ଠା (ଆଠହଜାର ଶବ୍ଦ) ର ପ୍ରବନ୍ଧଟିଏ ଲେଖିଦେଲି । ପାଠକମାନଙ୍କ ଭିତରୁ କେତେକ ଏହି ସ୍ୱତନ୍ତ୍ର ପ୍ରବନ୍ଧ ଦେବା ବ୍ୟବସ୍ଥାକୁ ପ୍ରଥମେ ପ୍ରଥମେ ପସନ୍ଦ କଲେ ନାହିଁ । ସେମାନଙ୍କୁ ବୁଝାଇବାକୁ ପଡ଼ିଲା—ଯେଉଁ ବିଷୟଟି ଜାଣିଲେ ଅନ୍ୟ ବହୁ ବିଷୟରେ ଜାଣିବା ପାଇଁ ସୁବିଧା ହେବ ସେହିଟିକୁ ହିଁ ସ୍ୱତନ୍ତ୍ର ପ୍ରବନ୍ଧ ଭାବରେ ଦେଇ ଦେଉଛୁ । ଯେଉଁ ମାନଙ୍କ ମନକୁ ଏହି ଯୁକ୍ତି ମଧ୍ୟ ମାନେନାହିଁ ସେମାନଙ୍କୁ କୁହେ—ଆପଣ ଦେଖନ୍ତୁ । ମୋତେ ତ ଏତେ ବର୍ଷ ବୟସ ହେଲାଣି । କିଏ ଜାଣେ କେବେ ମୋର ମୃତ୍ୟୁ ହୋଇଯିବ । ଯେଉଁ ବିଷୟଟି ମୁଁ ଲେଖିଦେଲେ ଭଲ ହେବ ବୋଲି ବିଚାରୁଛି ସେଇଟିକୁ ଲେଖିଦେଉଛି । ଯଦି ଏହିଭଳି ଶହେଟି ଲେଖିଦେଲି ତା' ପରେ ଗ୍ଳେଟ ଗ୍ଳେଟ ଗୁଡ଼ିକ ଅନ୍ୟମାନେ ପୂରଣ କରିଦେଲେ ଜ୍ଞାନମଣ୍ଡଳ ସମ୍ପୂର୍ଣ୍ଣ ହୋଇଯିବ । ମୁଁ ଯେ ପ୍ରତ୍ୟେକ ନଦୀ ପାହାଡ଼ ପର୍ବତ ବା ସମସ୍ତଙ୍କ ଜୀବନୀ ଉପରେ ଲେଖିବି ଏଭଳି କିଛି କଥା ନାହିଁ । ବଞ୍ଚିଛି ବୋଲି ଲେଖି ଦେଉଛି । ମୃତ୍ୟୁ ପରେ ଅନ୍ୟମାନେ ଲେଖିବେ । କ୍ରମେ ଏହି ବ୍ୟବସ୍ଥା ଲୋକପ୍ରିୟ ହେଲା । ସ୍ୱତନ୍ତ୍ର ପ୍ରବନ୍ଧ ଗୁଡ଼ିକ ସୁଖପାଠ୍ୟ ହେବା ସଙ୍ଗେ ତଥ୍ୟ ପୂର୍ଣ୍ଣ ମଧ୍ୟ ହେଲା । ସମସ୍ତେ ଅନୁଭବ କଲେ ଏହି ପ୍ରତ୍ୟେକ ବିଷୟ ଉପରେ ଓଡ଼ିଆ ଭାଷାରେ

ତୋଟିଏ ଗୋଟିଏ ପୁସ୍ତକ ଲେଖିଦେଲେ ଭଲ ହୁଅନ୍ତା । ଏଗୁଡ଼ିକ କିଭଳି ଘର୍ଷି ହୋଇଛି ତାହାର ସୂଚନା ଦେବା ପାଇଁ କେତୋଟି ପ୍ରବନ୍ଧର ନାମ ଦେଇ ଦିଆ ଯାଉଛି । ବ୍ରାକେଟ୍ ଭିତରେ ଯେଉଁ ସଂଖ୍ୟା ଲେଖା ଯାଇଛି ସେଗୁଡ଼ିକ ହେଲା କେତେପୃଷ୍ଠା ବ୍ୟାପୀ ରହିଛି ତାହାର ସୂଚନା । ଏନ୍‌ସାଇକ୍ଲୋପିଡ଼ିଆ (୨୦); ମଦ୍ଧ (୩୦) ଛବି (୨୦); ଜୀବକୋଷ (୨୨); ନିର୍ବାଚନ (୧୨); ମାଂସପେଶୀ (୨୯); ସ୍ନାୟୁ (୨୮); ନିଗ୍ରୋ (୩୩); ହୃତ୍‌ପିଣ୍ଡ ୫୦ ଓ ରକ୍ତ (୩୧);— ଏହିଭଳି (୮୧); ଲୋକଶିକ୍ଷା (୧୫); ମିଉଜିୟମ (୧୮); ସଭ୍ୟତା (୨୫); ପାଣି (୩୨); ପୃଥିବୀ ଆବିଷ୍କାର (୮୪); କସ୍ତୁରବା (୪୫); ବିଂଶଶତାବ୍ଦୀ (୨୮); ନୋବେଲ ପୁରସ୍କାର (୭୫); ସୂର୍ଯ୍ୟ (୨୯) ଭାଷା (୪୬); କାଳ (୧୬); କୀଟପତଙ୍ଗ (୩୦) ଇତ୍ୟାଦି ।

ଏହିସବୁ ପ୍ରବନ୍ଧ ବହୁଲୋକଙ୍କୁ ନାନା ଭାବରେ ସାହାଯ୍ୟ କରୁଛି ବୋଲି ଲକ୍ଷ୍ୟ କରୁଛି । ସେଦିନ ଜଣେ ଆସି କହୁଥିଲେ —କଟକ ରେଡ଼ିଓ ଷ୍ଟେସନରୁ ନୋବେଲ ପୁରସ୍କାର ବିଷୟରେ କୁହାଗଲା । ଜ୍ଞାନମଣ୍ଡଳରେ ଯାହା ସବୁ ଲେଖା ଅଛି ତାକୁହିଁ କହିଦେଇ ଯାଉଥାଆନ୍ତି । ବେଶ୍ ସୁନ୍ଦର ଲାଗୁଥାଏ । ଦିନେ ରେଡିଓ ବାଲାଙ୍କ ସହିତ ଦେଖାହେଲା । ସେମାନେ ହସି ହସି କହିଲେ—-କେତେ ପରିଶ୍ରମ କରିଥିଲେ ଆମେ ଏତିକ ତଥ୍ୟ ସଂଗ୍ରହ କରିପାରି ଥାଆନ୍ତୁ ? କେଉଁ ବହିରେ କେଉଁଠି ଅଛି ବୋଲିତ ଜାଣି ପାରି ନଥାନ୍ତୁ । ଜ୍ଞାନମଣ୍ଡଳକୁ ଉଡାରି ଦେଇଗଲୁ ବିନା ଦ୍ୱିଧାରେ ।

ଆମେ ଗୋଟିଏ କଥା ଜାଣୁଥାଏ । ପ୍ରଥମେ ପ୍ରଥମେ ଯେତେବେଳେ ଶିକ୍ଷିତ ଲୋକେ ଜ୍ଞାନମଣ୍ଡଳ କିଣିଲେ ସେତେବେଳେ କୁହନ୍ତୁ—ହଁ, ଆମେ ସିନା ପଢିବୁ ନାହିଁ --ପିଲାଙ୍କ ପାଇଁ ରଖିଦେବା, ଆପଣଙ୍କୁ ସାହାଯ୍ୟ କରିବା ଆମର କର୍ତ୍ତବ୍ୟ; ସବୁ କଥାତ ଓଡ଼ିଆ ଭାଷାରେ ଲେଖିହେବ ନାହିଁ, ଯେତିକ ପାରନ୍ତି କରିପାଆନ୍ତୁ; ଯେତେବେଳେ ଜଣେ ଲୋକ ସବୁଯାକ ଲେଖିଯାଉଛନ୍ତି ସେତେବେଳେ ସବୁ ବିଷୟ ଯେ ତଥ୍ୟ ପୂର୍ଣ୍ଣ ଓ ସୁଖ ପାଠ୍ୟ ହେବ ଏମିତି କାହିଁକି ବା ଆଶା କରିପିବ; ସୀମିତ ସମ୍ବଳ ଭିତରେ ତ କରୁଛନ୍ତି—ଭଲ କେମିତି ହୁଅନ୍ତା; ଦରକାର ହେଉ ବା ନହେଉ ଜଣେ ଓଡ଼ିଆ ଯେତେବେଳେ କରୁଛନ୍ତି ଆମେ ଉତ୍ସାହ ଦେବାର

କଥା, ଓଡ଼ିଆ ଭାଷା କଣ ବଙ୍ଗଳା ହିନ୍ଦୀ ମରାଠୀ ସହିତ ଏ ବିଗରେ ପ୍ରତିଯୋଗିତା କରି ପାରନ୍ତା ଇତ୍ୟାଦି ଇତ୍ୟାଦି । କିନ୍ତୁ ଆଜି ସେଭଳି କେହି କହୁ ନାହାନ୍ତି । ଶିକ୍ଷିତ ଲୋକଙ୍କ ପାଇଁ ମଧ୍ୟ ଏହାର ଉପଯୋଗିତା ରହିଛି ଏହା ପ୍ରାୟ ସମସ୍ତେ ଅନୁଭବ କଲେଣି ।

## ପ୍ରେରଣାର ଗୋଟିଏ ନୂତନ ରୂପ

ସମ୍ବାଦ ପତ୍ରରେ 'ପୁସ୍ତକ ସମାଲୋଚନା' ସ୍ତମ୍ଭରେ ଟିକିଏ ଦେଖି ଥିଲି ସିନା—କିନ୍ତୁ ସେଟ୍‌ଟିକୁ ଦେଖିବାର ସୁଯୋଗ ପାଇ ନଥିଲି । ଗୋଟିଏ ପୁସ୍ତକ ପ୍ରଦର୍ଶନୀରେ ଦେଖିଲି । ସେଟ୍‌ଟିର ନାମ ହେଉଛି ଗ୍ରେଟ ବୁକ୍‌ସ୍ (Great Books)—ପ୍ରସିଦ୍ଧ ବା ଅତି ଉପାଦେୟ ପୁସ୍ତକମାଳା । ତେଉବନ ଖଣ୍ଡରେ ସେଟ୍‌ଟି ସମାପ୍ତ । ୭୪ ଜଣ ଲେଖକଙ୍କ ୪୪୩ ଖଣ୍ଡ ପୁସ୍ତକକୁ ଏହିଭଳି ୫୪ ଖଣ୍ଡରେ ବାନ୍ଧିଦିଆ ଯାଇଛି । ଗଲା ତିନି ହଜାର ବର୍ଷ ଭିତରେ ପାଶ୍ଚାତ୍ୟ ଜଗତର ଚିନ୍ତା ଭାବନାକୁ ଏହି ସେଟ୍‌ଟି ନିଜ କଳେବର ଭିତରେ ସଜାଇ ସାଇତି ଦେଇଛି ବୋଲି ଦାବୀ କରାଯାଇଛି । ଗୋଟିଏ ଗ୍ରେଟ ଭଲ୍ୟୁମ୍ (୧୩୦ ପୃଷ୍ଠା) ପ୍ରସ୍ତୁତ କରାଯାଇଛି ଏହି ବହି ସେଟ୍‌ଟିରେ କଅଣ, କାହିଁକି କିଭଳି ଭାବରେ ରହିଛି ତାହାର ସୂଚନା ଦେବା ପାଇଁ । ତାହାର ନାମ ରଖା ଯାଇଛି ମହାନ୍-ସଂଳାପ ବା Great Conversation ପୃଷ୍ଠା ଓଲଟାଇ ଦେଲାବେଳକୁ ଚତୁର୍ଥ ପୃଷ୍ଠାଟି ଆଖିରେ ପଡ଼ିଗଲା । ଗୋଟିଏ ପାରାଗ୍ରାଫରେ ଲେଖାଅଛି—" The Liberally educated man has a mind that can operate well in all fields. He may be a specialist in one field But he can understand any thing important that is said in any field and can see and use the light that it sheds upon his own" କେତେବଡ଼ ଗୋଟାଏ ମୌଳିକ ପ୍ରଶ୍ନର ଉତ୍ତର କିଭଳି ଚମତ୍କାର ଭାବରେ ଦିଆଯାଇଛି ! କେଉଁ ଲୋକ ପର୍ଯ୍ୟାପ୍ତ ବା ଲିବରାଲ୍ ଶିକ୍ଷା ପାଇଛି ବୋଲି ଧରି ନଆଯିବ ତାହାର ସୂଚନା ଏହାରି ଭିତରେ ରହିଗଲା । ଜଣେ ବିଦ୍ୟାର ଗୋଟାଏ ବିଭାଗରେ ଚରମ ଦକ୍ଷତା ହାସଲ କରି ବିଶେଷଜ୍ଞ ହୋଇ ଯାଇଛନ୍ତି । କିନ୍ତୁ ତାଙ୍କ ମନଟା ଯଦି ଜ୍ଞାନର ପ୍ରତ୍ୟେକ ବିଭାଗରେ

ବିଚରଣ କରିବ ସେ ଦେଖିବେ କୌଣସି ଗୋଟାଏ ବିଷୟର ଆଲୋକକୁ ଆଣି ସେ ନିଜ ବିଷୟ ଉପରେ ପକାଇଲେ ତାହାର ସାହାଯ୍ୟରେ ସେ ନିଜ ଜ୍ଞାନକୁ ଉଜ୍ଜ୍ୱଳତର ଭାବରେ ଦେଖିପାରୁଛନ୍ତି । ଏମିତିକି ହୋଇଛି ନିଜ ବିଦ୍ୟା ଭିତରେ କିଭଳି ଚମତ୍କାର ସମ୍ଭାବନା ସବୁ ଭରି ରହିଛି ତାହା ସେ ଜାଣି ପାରୁ ନଥିଲେ । ଅନ୍ୟ ବିଦ୍ୟାର ଆଲୋକ ତାଙ୍କୁ ଭଲ ଭାବରେ ତାହା ଦେଖାଇ ଦେଲା । ସବୁ ବିଦ୍ୟାର ଅ ଆ କ ଖ ଯଦି ସେ ଜାଣିବେ ତେବେ ଯାଇ ତାଙ୍କୁ ପର୍ଯ୍ୟାପ୍ତ ବିଦ୍ୟାର ଅଧିକାରୀ ବା ଲିବରାଲି ଶିକ୍ଷିତ ବା ଏଜୁକେଟେଡ଼ ବୋଲି କୁହାଯିବ । କେତେ ଗୁଡ଼ାଏ କଥା ମନ ଭିତରେ ବିଜୁଳି ଭଳି ଖେଳିଗଲା । ଏନ୍‌ସାଇକ୍ଲୋପିଡିଆ ତ ପ୍ରତ୍ୟେକ ଲୋକକୁ ଏହି ସୁଯୋଗ ଦେଉଛି । ସବୁ ବିଦ୍ୟାର ସାର ସାର କଥା ସଂକ୍ଷେପରେ ବା ବିସ୍ତୃତ ଭାବରେ ଏଥିରେ ରହିଛି । ଯେଉଁ ୭୩ ଜଣଙ୍କ ବିଶ୍ୱ ବିଖ୍ୟାତ ବହି ସେଟ୍‌ରେ ସ୍ଥାନପାଇଛି ସେମାନଙ୍କ ଭିତରୁ ଅନେକଙ୍କ ପରିଚୟ ଓ ସେମାନଙ୍କ କୃତି ସଂପର୍କରେ ଧାରଣା ଏନ୍‌ସାଇକ୍ଲୋପିଡିଆରୁ ମିଳିବ । ଲୋକଙ୍କୁ ପର୍ଯ୍ୟାପ୍ତ ଶିକ୍ଷାର ସୁଯୋଗ ଦେବ ଏହି ଜ୍ଞାନମଣ୍ଡଳ—କାରଣ ଜ୍ଞାନ ଦୁର୍ଗ ତୋଳିବା ପାଇଁ ତା' ମନ ଭିତରେ ଗୋଟାଏ ମଜବୁତ ମୂଳଦୁଆ ପଡିଯିବ । ସେଇଠି ବସି ଏହି ଗ୍ରେଟ ବହିଟିକୁ ପଢିବା ଆରମ୍ଭ କଲି । ସେଥିରେ ଏହି ସବୁ କଥାର ଉଲ୍ଲେଖ ରହିଛି—

ପାଶ୍ଚାତ୍ୟ ଜଗତର ଲୋକେ ବୁଝି ସାରିଲେଣି ଶିକ୍ଷାକୁ ଯେଉଁ ପଥ ପଡ଼ୁଛି ତାହା ଉପାଦେୟ ପୁସ୍ତକ ଭିତର ଦେଇ ଯାଇଛି । ନିଜ ସଂସ୍କୃତି ଐତିହ୍ୟ ଇତ୍ୟାଦି ବିଷୟରେ ଯେଉଁ ସବୁ ପୁସ୍ତକ ଅଛି ସେ ଗୁଡିକ ନ ପଢ଼ିଲେ ଜଣେ ନିଜକୁ ଶିକ୍ଷିତ ଲୋକ ବୋଲି କହି ପାରିବ ନାହିଁ । ପାଶ୍ଚାତ୍ୟ ଜଗତର ଚିନ୍ତା ଭାବନା ଉପରେ କେଉଁ ଗୁଡ଼ିକ ଉପାଦେୟ ପୁସ୍ତକ ସମସ୍ତେ ଜାଣନ୍ତି । ପ୍ରତି ଯୁଗରେ ମୂଲ୍ୟବାନ ପୁସ୍ତକ ସବୁ ପ୍ରକାଶିତ ହେଉଛି । ସେଗୁଡ଼ିକ ସ୍ଥାନ ପାଇ ଯାଉଛନ୍ତି ବୃହତ୍ ପୁସ୍ତକ ତାଲିକାରେ । ଅଳ୍ପ କେତେକ ସେହି ତାଲିକାରୁ ବାଦ୍ ପଡି ଯାଉଛନ୍ତି—କାରଣ ସେହି ନିର୍ଦ୍ଦିଷ୍ଟ ବିଷୟ ଉପରେ ଆଜିକାଲି ଭଲ ବହି—ତାହାଠାରୁ ଅଧିକ ଉପାଦେୟ ବାହାରି ପଡ଼ିଲାଣି । ଯେପର୍ଯ୍ୟନ୍ତ ମନୁଷ୍ୟ ଭାବିପାରୁ ଥିବ ଓ ଲେଖୁଥିବ ସେ ପର୍ଯ୍ୟନ୍ତ ଏହି ପ୍ରକ୍ରିୟା ଚାଲିଥିବ । ପ୍ରତ୍ୟେକ ଯୁଗର

ଲୋକେ ନିଜର ଐତିହ୍ୟର ନୂତନ ଭାବରେ ମୂଲ୍ୟାୟନ କରିବା ଦରକାର । ଯେଉଁ ଗୁଡ଼ିକୁ ସେମାନେ ଗ୍ରହଣ କରିପାରିବେ ନାହିଁ ସେ ଗୁଡ଼ିକୁ ଛାଡ଼ି ଦେବେ । ନୂତନ ଯାହା ଆସୁଛି ତାକୁ ଗ୍ରହଣ କରିବେକି ନାହିଁ ମନ ସ୍ଥିର କରିବେ । ଏଭଳି କଲାବେଳେ ସେମାନେ ନିକଟ ଓ ଦୂର ଅତୀତ ପ୍ରତି ବରାବର ଦୃଷ୍ଟି ନିକ୍ଷେପ କରୁଥିବେ । ପାଶ୍ଚାତ୍ୟ ଜଗତର ଐତିହ୍ୟ ସଂପର୍କରେ ନୂତନ ଦୃଷ୍ଟି କୋଣରୁ ବିଜ୍ଞାନ ସମ୍ମତ ପ୍ରଣାଳୀରେ ଚିନ୍ତା କଲା ପରେ ସିଦ୍ଧାନ୍ତ କରାଗଲେ ଯେ ଏହିଭଳି ଗୋଟିଏ ସେଟ୍ ବହି ପ୍ରକାଶ କରାଯିବ ଓ ଏହି ପୁସ୍ତକ ଗୁଡ଼ିକ ଏହି ଯୁଗର ଲୋକଙ୍କ ପାଇଁ ଉପଯୋଗୀ ହେବ । ଗଲା ପଚାଶ ବର୍ଷ ଭିତରେ ଯେଉଁସବୁ ସାମାଜିକ ବା ରାଜନୈତିକ ପରିବର୍ତ୍ତନ ହୋଇଛି ବା ନିକଟରେ ହେବାର ସମ୍ଭାବନା ରହିଛି ସେ ଗୁଡ଼ିକ ଆଧୁନିକ ଯୁଗର ମଣିଷ ପାଇଁ ଐତିହ୍ୟକୁ ଅନାବଶ୍ୟକ କରି ଦେଇଛି ବା କରି ଦେଇପାରେ—ଏ ବିଶ୍ୱାସ ଏହି ପୁସ୍ତକ ସେଟ୍‌ର ସଂପାଦକମାନଙ୍କର ତ ଆଦୌ ନାହିଁ । ବରଂ ତାହାର ବିପରୀତଟି ହିଁ ଅଛି । ସେଇଟି ହେଲା— ପାଶ୍ଚାତ୍ୟ ଜଗତର ପ୍ରସିଦ୍ଧ ଭାବୁକମାନେ ଯାହାସବୁ କହିଯାଇଛନ୍ତି ସେ ଗୁଡ଼ିକୁ ନୂତନ ଦୃଷ୍ଟି କୋଣରୁ ଅଧ୍ୟୟନ କରି ଆଧୁନିକ ଚିନ୍ତା ଧାରା ସହିତ ଗୋଟାଏ ଅପୂର୍ବ ଢଙ୍ଗରେ ଖାପ୍ ଖୁଆଇବାକୁ ପଡ଼ିବ । କେତେ ହଜାର ବର୍ଷଧରି ଭାବୁକମାନେ ଯେଉଁସବୁ ପ୍ରଶ୍ନ ପଚାରୁଛନ୍ତି ଓ ପରେ ଅନ୍ୟମାନେ ତାହାର ଉତ୍ତର ଦେଉଛନ୍ତି ଓ ଏହି ଭଳି କରିବା ଫଳରେ ଗୋଟାଏ ପ୍ରବାହର ସୃଷ୍ଟି ହୋଇଛି ସେହି ପ୍ରବାହର ଗତିପଥକୁ ଉନ୍ମୁକ୍ତ ରଖିବାକୁ ପଡ଼ିବ । ବିଂଶଶତାବ୍ଦୀରେ ପ୍ରାଚୀନ ପୁସ୍ତକଗୁଡ଼ିକ ପ୍ରତି ଅବହେଳା ପ୍ରଦର୍ଶନକୁ ପ୍ରଗତି ବୋଲି ତ କୁହାଯାଇ ପାରିବ ନାହିଁ—ବରଂ ବୁଦ୍ଧି ଭ୍ରଷ୍ଟ ବୋଲିହିଁ କହିବାକୁ ପଡ଼ିବ । ଏହି ସବୁ ପୁସ୍ତକ ଭିତରେ ଯେଉଁସବୁ ଅମୂଲ୍ୟ ଉପଦେଶ ଚିନ୍ତା ଭାବନା ଅଛି ସେଗୁଡ଼ିକୁ ଆମେ ପିଲାବେଳରୁ ବୁଢ଼ା ବୟସ ପର୍ଯ୍ୟନ୍ତ ନିଜ ଜୀବନରେ କାମରେ ଲଗାଇବା ଉପରେ ହିଁ ପ୍ରଗତି, ବିଶେଷ କରି ଶିକ୍ଷାର ପ୍ରଗତି ନିର୍ଭର କରୁଛି । ଶିକ୍ଷା କ୍ଷେତ୍ରରୁ ଓ ବୟସ୍କ ଲୋକଙ୍କ ପଢ଼ା କ୍ଷେତ୍ରରୁ ମଧ୍ୟ ଏହି ପୁସ୍ତକ ଗୁଡ଼ିକ ବିଦାୟ ନେଇଯିବାଟା ନିଶ୍ଚୟ ଗୋଟାଏ ବିପତ୍ତି ବା ଭୟଙ୍କର ସଙ୍କଟ । ଏହି ଦୃଷ୍ଟିରୁ ଯଦି ସମଗ୍ର କଥାଟିକୁ ବିଚାରକୁ ନେବା ତେବେ କହିବା ଯେ ପାଶ୍ଚାତ୍ୟ ଜଗତରେ ଶିକ୍ଷାର ଅଧୋଗତି ହେଉଛି । ପୁସ୍ତକ ସେଟ୍‌ର ସଂପାଦକ ମଣ୍ଡଳୀ ସ୍ପଷ୍ଟ

ଭାଷାରେ କହିଛନ୍ତି—ଏହିସବୁ ବହି ଯେ ଆମର ସବୁ ସମସ୍ୟାର ସମାଧାନ କରିଦେବ ଏକଥା ଆମେ କହୁନାହୁଁ । କେବଳ ସେହି ଗୁଡ଼ିକ ହେଉଛନ୍ତି ପଢ଼ିବା ଯୋଗ୍ୟ ଏକଥା ମଧ୍ୟ ଆମେ କେବେହେଲେ ଦାବୀ କରୁନାହୁଁ । ଆମେ କିନ୍ତୁ ବିଶ୍ୱାସ କରୁଛୁ ଯେ ଆମର ଯେଉଁସବୁ ମୌଳିକ ସମସ୍ୟା ରହିଛି ସେ ଗୁଡ଼ିକ ଉପରେ ଏହି ବହିସେଟ୍ ଆଲୋକପାତ କରୁଛି । ଆମେ ଯେଉଁ ଠିକକ ଆଲୋକ ପାଉଛୁ ତାହାର ସଦୁପଯୋଗ ନ କରିବା ଆମ ପକ୍ଷରେ ନିର୍ବୋଧତା । ଯେଉଁ ପାଠକ ଏହିସବୁ ବହି ପଢ଼ିଦେବେ ସେ ଆହୁରି ଅନେକ ବହିର ବିଷୟ ବସ୍ତୁକୁ ଭଲ ଭାବରେ ବୁଝିପାରିବେ । ଅନ୍ୟ ପୁସ୍ତକ ଗୁଡ଼ିକର ମୂଲ୍ୟାୟନ କରିବାର ସୁଯୋଗ ପାଠକ ପାଇପିବେ ଯଦି ଏହି ପୁସ୍ତକ ଗୁଡ଼ିକ ପଢ଼ି ଦେବେ । ଶିକ୍ଷାର ସାଧନ ଭାବରେ ଏହି ବହି ଗୁଡ଼ିକର ମୂଲ୍ୟ ରହିଛି ।

ବୃହତ୍ ପୁସ୍ତକ ସେଟ୍‌ଟିରେ କି କି ବହି ରହିବ ତାହା ସ୍ଥିର କରାଗଲା ବେଳେ ଯେଉଁ ସବୁ ପ୍ରଶ୍ନ ଉଠିଲା ସେ ବିଷୟରେ ଆଲୋଚନା କରାଯାଇଛି । ତାକୁହିଁ ପଢ଼ିବା ପାଇଁ ଆଗ୍ରହ ହେଲା । ମୋର ଭଲ ବନ୍ଧୁ ଲୋକଙ୍କର ଅଭିଜ୍ଞତା ଅନେକ ସମୟରେ ଏଭଳି ବହିସବୁ ପଢ଼ୁ ଯାହାର ସେଭଳି କିଛି ମୂଲ୍ୟ ନଥାଏ—ତେଣୁ ସମୟ ନଷ୍ଟ ହୁଏ । ସୀମିତ ସମ୍ବଳର ଉପଯୋଗ କରି ଗଲା ଅର୍ଦ୍ଧଶତାବ୍ଦୀ ମଧ୍ୟରେ ଏଭଳି କେତେକ ବହି କିଣିଛି ଯାହାର କୌଣସି ମୂଲ୍ୟ ନାହିଁ ବୋଲି ଜାଣି ପାରିଛି ଓ ସେଗୁଡ଼ିକୁ ବାଣ୍ଟି ଦେଇଛି । ଏମାନେ କି ମତରେ ବହି ବାଛିଲେ ଜାଣିବା ପାଇଁ ସ୍ୱତଃ ଆଗ୍ରହ ହେଲା । ପଚିଶ ଶହ ବର୍ଷ ଭିତରେ ଯେଉଁ ମାନଙ୍କର ପାଶ୍ଚାତ୍ୟ ଚିନ୍ତାଭାବନାକୁ ସ୍ଥାୟୀ ଦାନ ରହିଛି ନିଶ୍ଚୟ ସେହିମାନଙ୍କ ବହି ବଛା ଯାଇଥିବ ।

ଏହି ସେଟ୍‌ରେ ବାଇବଲକୁ ରଖା ଯାଇ ନାହିଁ । ତାହାର କାରଣ ସ୍ୱରୂପ କୁହାଯାଇଛି ପ୍ରାୟ ସମସ୍ତଙ୍କ ଘରେ ବାଇବଲର ଶ୍ରେଷ୍ଠ ବଡ଼ ବଡ଼ ସଂସ୍କରଣ ରହିଛି । କିନ୍ତୁ ବଛା ନ ଯାଇଥିବା ଏଭଳି କେତେଜଣ ଲେଖକଙ୍କ ନାମ ଅଛି—ଯାହାଙ୍କ ମୋତେ ବିସ୍ମିତ କରିଥିଲା । ଇମର୍‌ସନ, ହ୍ୱିଟ୍‌ମାନ, ଥୋରେ ଏବଂ ମାର୍କ ଟ୍ୱେନ୍‌ଙ୍କର କୌଣସି ପୁସ୍ତକ ଏଥିରେ

ସ୍ଥାନ ପାଇନାହାଁନ୍ତି । କାରଣ ସ୍ୱରୂପ ସଂପାଦକ କହିଛନ୍ତି—'ସେମାନେ ଯେ ପ୍ରସିଦ୍ଧ ଲେଖକ ଏଥିରେ ସନ୍ଦେହ ନାହିଁ, କିନ୍ତୁ ଏହି ପୁସ୍ତକ ସେଟ୍‌ରେ ଅନ୍ୟ ଯେଉଁ ସବୁ ବହି ରହିଛି ସେଗୁଡ଼ିକର ସମକକ୍ଷ ହେଲାଭଳି କୌଣସି ପୁସ୍ତକ ସେମାନଙ୍କର ନାହିଁ । ଚିନ୍ତା ଭାବନା ଦର୍ଶନର ଯେଉଁ ସଂଳାପ ଚାଲି ଆସିଛି—ତାକୁ ଏମାନେ ଟିକିଏ ଆଗେଇ ଦେଇଛନ୍ତି ସତ, କିନ୍ତୁ ଏହି ପ୍ରବାହକୁ 'ଜାଗ୍ରତ' ରଖିବା ପାଇଁ ସେମାନଙ୍କ ଦାନ ଯେ ଅପରିହାର୍ଯ୍ୟ ଏଭଳି ମନେ କରାଗଲା ନାହିଁ । (Liebeitz, ) ଭଲ୍‌ଟାୟାର (voltair,) ଏବଂ (Balzae) ମଧ୍ୟ ବାଦ୍ ପଡ଼ି ଯାଇଛନ୍ତି । ସେମାନେ ଯାହାସବୁ ଲେଖିଛନ୍ତି ସେଗୁଡ଼ିକ ମିଳିତ ଭାବରେ ପ୍ରମାଣ କରୁଛନ୍ତି ଯେ ସେମାନେ ସଂଳାପରେ ଅଂଶ ଗ୍ରହଣ କରିବା ପାଇଁ ଯୋଗ୍ୟ । କିନ୍ତୁ କୌଣସି ନିର୍ଦ୍ଦିଷ୍ଟ ପୁସ୍ତକ ସେମାନଙ୍କ ଯୋଗ୍ୟତା—ଏହି ଦୃଷ୍ଟିରୁ ପ୍ରମାଣ କରୁନାହିଁ । ବହୁ ସଂଖ୍ୟକ ବହିକୁ ପୁଣି ସେଗୁଡ଼ିକର ମୂଲ୍ୟ ଅତ୍ୟଧିକ—ସ୍ଥାନଦେବା ସମ୍ଭବ ହେଲା ନାହିଁ । ଏହାକୁ ପଢ଼ିଲା ବେଳେ ବିଶ୍ୱାସ ହୁଏ—କାଳ କିଭଳି ଏକାଧାରରେ ନିରପେକ୍ଷ ତଥା ନିଷ୍ଠୁର । କେତେ ଲେଖକଙ୍କୁ ପଛକୁ ଠେଲି ଦେଉଛି । ଏକ ସମୟରେ ସେମାନଙ୍କୁ ଅତି ଉଚ୍ଚ ସ୍ଥାନରେ ବସାଇ ଦେଇଥିଲା ପାଠକ ଜଗତ । ପୁଣି ଏବେ କହିଲାଣି ଟିକିଏ ତଳ ପାହାଚକୁ ଚାଲି ଆସନ୍ତୁ' । ମଝିରେ ମଝିରେ ଖବର କାଗଜରେ ପ୍ରକାଶପାଏ—'ଅମୁକ ଲେଖକଙ୍କର ସବୁ ପ୍ରକାଶିତ ଏବଂ ଅପ୍ରକାଶିତ ବହିକୁ ଗ୍ରନ୍ଥାବଳୀ କରି ଦିଆଯାଉ' ସେତେବେଳେ ମୁଁ ଭାବୁରେ ସମୟ ଶକ୍ତି ଅର୍ଥର କି ଅପବ୍ୟବହାର । ଆଉରି ଗୋଟିଏ କଥା ମନ ଭିତରକୁ ଆସିଯାଏ । କେବଳ ସରକାର କିଣିବ ବୋଲି ବହୁଲେଖକ ବହି ଲେଖୁଛନ୍ତି ଓ ମୂଲ୍ୟ ଯେତିକି ହେବାର କଥା ତାହାର ତିନି ଚାରିଗୁଣ କରି ଦେଉଛନ୍ତି । ଜଣେ ମନ୍ତ୍ରୀ ବା ଉଚ୍ଚ ପଦସ୍ଥ ଅଫିସରଙ୍କ ଦୁର୍ବଳତାର ସୁଯୋଗ ନେଇ ସେହିସବୁ ବହିକୁ ସରକାରଙ୍କୁ ବିକି ଦେଉଛନ୍ତି କେତେ ଶହ । ସାଧାରଣ ପାଠକ ସେଥିରୁ ଖଣ୍ଡେ ହେଲେ କିଣୁ ନାହିଁ । ସେଗୁଡ଼ିକ ଏବେ 'ସାହିତ୍ୟ ଇତିହାସର ଆଳିଆ ଟୋକାଇ' ଭିତରେ ପଡ଼ିବ—ଏଥିରେ ସନ୍ଦେହ ନାହିଁ । ଗୋଟାଏ ସ୍ତରରେ କିଭଳି ଭାବରେ ପୁସ୍ତକ ନିର୍ବାଚନ କରାଯାଏ ତାହା ଯଦି ସମସ୍ତେ ଜାଣିବେ ତାହା ହେଲେ ଯେ କୌଣସି ବିଷୟ ବସ୍ତୁ

ଉପରେ ମୋଟା ମୋଟା ବହି ଲେଖିବାକୁ ହୁଏତ ସଙ୍କୋଚ ବୋଧ କରିବେ ।

ଯେଉଁ ପ୍ରସିଦ୍ଧ ବ୍ୟକ୍ତିଙ୍କ ପୁସ୍ତକ ସ୍ଥାନ ପାଇବା ଆବଶ୍ୟକ ବୋଲି ସ୍ଥିର କରି ନିଆଗଲା ତାଙ୍କର ସବୁ ବହି ଏହି ସେଟ୍‌ରେ ଅଛି (କେବଳ ତିନିଜଣଙ୍କ ବ୍ୟତୀତ) । ଚଉସ୍ତରି ଜଣ ଲେଖକଙ୍କର ୪୪୩ଟି ବହି ରଖାଗଲା । ମତ ସ୍ଥିର ହେଲା ମହାନ ସ୍ରଷ୍ଟାମାନେ "ନିଜ ଭାଷାରେ ଉଚ୍ଚ ସ୍ୱରରେ" ନିଜର କଥା କୁହନ୍ତୁ । ସେମାନଙ୍କ ପୁସ୍ତକକୁ ସମ୍ପାଦକ ମଣ୍ଡଳୀ ଗ୍ରେଡ୍ କରିଦେଇ ନିଜେ ଯାହାକୁ ଗୁରୁତ୍ୱପୂର୍ଣ୍ଣ ଭାବୁଛନ୍ତି ରଖନ୍ତୁ—ଏଭଳି କରିବା ଠିକ୍ ହେବନାହିଁ । ପାଠକ ନିଜକୁ 'ସମ୍ପାଦକ' ବୋଲି ମନେ କରନ୍ତୁ; ନିଜେ ସ୍ଥିର କରିନିଅନ୍ତୁ କେଉଁ ଅଂଶ ଭଲ ବା ଭଲନୁହେଁ ।

"ପାଶ୍ଚାତ୍ୟ ଜଗତର ଉତ୍କୃଷ୍ଟ ପୁସ୍ତକମାଳା" ବୋଲି ନାମ ଦିଆଯାଇଥିବାରୁ କେହି ଯେପରି ନ ଭାବୁରନ୍ତୁ ଯେ ପ୍ରାଚ୍ୟ ଜଗତରେ ଯେଉଁସବୁ ଅତି ଉଚ୍ଚକୋଟୀର କୃତି ଅଛି ସେଗୁଡ଼ିକ ଏହା ତୁଳନାରେ ସାମାନ୍ୟ ବା ନିକୃଷ୍ଟ—ଏହି କଥା ଅତି ସ୍ପଷ୍ଟ ଭାଷାରେ କହି ସୂଚନା ଦେଇଛନ୍ତି ଯେ ସେ ସବୁ ପୁସ୍ତକରେ ଏହିଭଳି ଗୋଟିଏ ସେଟ୍ ପ୍ରକାଶ କରିବାର କଳ୍ପନା ରହିଛି । ଖାସ୍‌କରି ପାଶ୍ଚାତ୍ୟ ଜଗତକୁ ବୁଝିବା ପାଇଁ ଏହି ଉଦ୍ୟମ ହୋଇଥିବାରୁ ସେହି ଜଗତର ଭାବୁକମାନଙ୍କର ପୁସ୍ତକ ଗୁଡ଼ିକୁ ଏକତ୍ର କରିଦିଆଯାଇଛି ।

ଅଢ଼େଇ ହଜାର ବର୍ଷ ଧରି ପାଶ୍ଚାତ୍ୟ ଜଗତରେ ଚିନ୍ତା ଭାବନା ଇତ୍ୟାଦି ଉପରେ ଯେଉଁ ସଂଳାପ ଚାଲିଛି ତା' ଭିତରକୁ ବିଜ୍ଞାନ ପୁସ୍ତକ ସବୁକୁ ଆଣିବା ଦ୍ୱାରା ପାଠକମାନଙ୍କ ମନକୁ ଅଯଥା ଭାରାକ୍ରାନ୍ତ କରାଯାଉଛି ବୋଲି ଯେଉଁମାନେ ବିଚାରୁଛନ୍ତି ସେମାନଙ୍କୁ ଉତ୍ତର ଦେବା ଛଳରେ ପୁସ୍ତକ ନିର୍ବାଚନ କରିଥିବା ସମ୍ପାଦକ କହିଛନ୍ତି—ବିଜ୍ଞାନ ବହି ଯେଉଁମାନେ ପଢ଼ିନାହାନ୍ତି । ସେମାନେ ଲିବରାଲ୍ (ସମନ୍ୱିତ) ଶିକ୍ଷା ପାଇନାହାନ୍ତି । ବୋଲି କାହିଁକି କୁହାଯାଉଛି ଏହି ଅଭିଯୋଗ । ଯେଉଁମାନେ ସ୍ୱୀକାର କରୁଛନ୍ତି ଆଜିର ଦୁନିଆକୁ ବୁଝିବାକୁ ହେଲେ ବିଜ୍ଞାନ ବହିସବୁ ପଢ଼ିବା ଉଚିତ ସେମାନେ ମଧ୍ୟ ଆପତ୍ତି ଉଠାଇ କହୁଛନ୍ତି— ପୁରୁଣା ବିଜ୍ଞାନ ବହି ପଢ଼ି କି ଲାଭ ହେବ ? ସେମାନେ ଅନୁଭବ କରୁଛନ୍ତି

ଦର୍ଶନ ଇତିହାସ ସାହିତ୍ୟ ବହି ସବୁ କେବେହେଲେ ପୁରୁଣା ନ ହୋଇ ଯାଉଥିବା ସ୍ଥଳେ ଓ ସଦାନୂତନ ବୋଲି ମନେ ହେଉଥିବା ସ୍ଥଳେ ପ୍ରାକୃତିକ ବିଜ୍ଞାନର ଅଗ୍ରଗତି ଏଭଳି ଭାବରେ ହେଉଛି ଯେ ଗୋଟିଏ ବିଜ୍ଞାନ ପୁସ୍ତକ ଅଳ୍ପଦିନ ଭିତରେ ପୁରୁଣା ହୋଇଯାଉଛି । କୋପର-ନିକସ ଏବଂ ଫାରାଡ଼େଙ୍କ ବହି କାହିଁକି ପଢ଼ିବା—ଯେତେବେଳେ ଆଜିର ବୈଜ୍ଞାନିକମାନେ ସେମାନେ ଯାହା ଜାଣିଥିଲେ ସେତିକି ଜାଣିବା ସଙ୍ଗେ ସଙ୍ଗେ ଆହୁରି ଅନେକ କିଛି ଅଧିକା ଜାଣି ଯାଇଛନ୍ତି । କିନ୍ତୁ ବାସ୍ତବସ୍ଥିତି ହେଲା—ସେହି ସବୁ ପୁସ୍ତକ ହେଲେ ବିଜ୍ଞାନର ଇତିହାସ । ଐତିହାସିକ ପୃଷ୍ଠଭୂମି ନ ଜାଣିଲେ ଗୋଟାଏ ବିଷୟରେ ପୂର୍ଣ୍ଣଧାରଣା କରାଗଲା ବୋଲି କିପରି ବା କୁହାଯିବ ? କିନ୍ତୁ ଗୋଟିଏ କଥା ସ୍ପଷ୍ଟ କରିଦେଲେ ଭଲ ହେବ । ପ୍ରସିଦ୍ଧ କବିତା, ଇତିହାସ, ଦର୍ଶନ ପୁସ୍ତକ ଗୁଡ଼ିକର ଶିକ୍ଷାଗତ ଗୁରୁତ୍ୱ ରହିଛି । କିନ୍ତୁ ବିଜ୍ଞାନ ବହି ତ ଆମ ସଂସ୍କୃତିର ଅଙ୍ଗ ବିଶେଷ ନୁହେଁ । ଏଗୁଡ଼ିକୁ ଅଳ୍ପ କେତେ ଜଣ ବିଶେଷଜ୍ଞ ପଢ଼ିବେ—ସମସ୍ତେ ପଢ଼ି ପାରିବେ ନାହିଁ—ଏହିସବୁ ହେଲା ଯୁକ୍ତି । କିନ୍ତୁ ଆମେ ସେମାନଙ୍କ ସହିତ ଏକମତ ହୋଇ ପାରୁନାହୁଁ । କବିତା ବହିଗୁଡ଼ିକୁ ଆମେ ଯେ ସବୁଦିନେ ପଢ଼ୁଥିବା ଓ ଯେଉଁମାନେ ଗଣିତର ସଂଖ୍ୟାର ରହସ୍ୟ ଭେଦ କରିଗଲେ ଓ ପ୍ରକୃତି ସମ୍ପର୍କରେ ପ୍ରତ୍ୟକ୍ଷଜ୍ଞାନ ହାସଲ କରିଗଲେ ସେମାନଙ୍କ ଲେଖାକୁ ସମାନ ଶ୍ରଦ୍ଧା ଓ ଗୁରୁତ୍ୱର ସହିତ ପଢ଼ିବା ନାହିଁ—ଏହା ଠିକ ନୁହେଁ । ଗୋଟାଏ ଅହେତୁକ ଧାରଣା ରହିଛି ଯେ ପ୍ରତ୍ୟେକ ଲୋକ କବିତା ବୁଝିପାରିବ—ବିଜ୍ଞାନ ବୁଝିପାରିବ ନାହିଁ । ଅନେକ ବୈଜ୍ଞାନିକ ଓ ଇଞ୍ଜିନିୟର ଏଭଳି ସବୁ ଲେଖା ପ୍ରକାଶ କରୁଛନ୍ତି ଯାହାକୁ କି ସମସ୍ତେ ପଢ଼ୁଛନ୍ତି ଓ ବୁଝିପାରୁଛନ୍ତି । ଷ୍ଟ୍ରିଙ୍ଗ୍ ଫେଲେ ବାର୍ କହିଲଭଳି—ଦୁନିଆଟା ଦ୍ରୁତବେଗରେ ଦୁଇଭାଗ ହୋଇଯାଉଛି । ଦଳେ କାରିଗରି ବିଦ୍ୟା ଜାଣିଥିବା ଲୋକେ ଭଲ କବିତା ଓ ଭୁଲ କବିତା ଭିତରେ କି ପାର୍ଥକ୍ୟ ରହିଛି କହି ନ ପାରୁଥିବା ବେଳେ ନିଜକୁ 'ପାଠୁଆ' ଲୋକ ବୋଲିଦାବୀ କରୁଥିବା ଲୋକେ ବିଦ୍ୟୁତଶକ୍ତି ବିଷୟରେ କିଛି ଜାଣନ୍ତି ନାହିଁ କେବଳ ଏତିକି ଜାଣନ୍ତି ଯେ ସୁଇଚ୍ ଟିପିଦେଲେ ଆଲୁଅ ଜଳିଉଠେ । କିନ୍ତୁ ଆଜି ଯେତେବେଳେ ସମାଜଟି ବୈଜ୍ଞାନିକମାନେ ହାସଲ କରିଥିବା ସୁଫଳ ଭୋଗ କରିବା ପାଇଁ ଆଗ୍ରହୀ ସେତେବେଳେ ଯେତେଶୀଘ୍ର ନାଗରିକ

ମାନେ ଗଣିତ ତଥା ପ୍ରାକୃତିକ ବିଜ୍ଞାନର ମୂଳତତ୍ତ୍ୱ ବୁଝିପାଆନ୍ତି ସେତିକି ଭଲ । ଉପରଠାଉରିଆ ଭାବରେ ଯେଉଁସବୁ ବିଜ୍ଞାନ ବହି ଲେଖାଯାଉଛି ଓ ଯାହା ଭିତରେ ଗୁଡ଼ାଏ ଶବ୍ଦ-ଆଡ଼ମ୍ବର ରହୁଛି ସେହିସବୁ ବହିପଢ଼ି ଜଣେ ସାଧାରଣ ପାଠକ ହୁଏତ କିଛି ଆନନ୍ଦପାଇବ ନାହିଁ—କିନ୍ତୁ ବୈଜ୍ଞାନିକମାନେ ଏଭଳିସବୁ ବିଜ୍ଞାନ ପୁସ୍ତକ ଲେଖୁଛନ୍ତି ଯେଉଁଗୁଡ଼ିକୁ ପଢ଼ିବାକୁ ନିଶ୍ଚିତ୍ତ ମନ ଡାକିବ ଓ ସେଗୁଡ଼ିକ ଅତି ଚମତ୍କାର ସରଳ ବୋଧଗମ୍ୟ ଭାଷାରେ ଲେଖାଯାଇଛି—ତେଣୁ ସୁଖପାଠ୍ୟ ହୋଇପାରିଛି । ଯେକୌଣସି ସାହିତ୍ୟବହି ପଢ଼ିଲାଭଳି ଆନନ୍ଦ ପାଠକମାନେ ପାଇବେ । ଏହିକଥା ମନ ଭିତରେ ଥିଲେ ପାଠକ ନିଜେ କହିପାରିବେ ବିଜ୍ଞାନ ପୁସ୍ତକ ଗୁଡ଼ିକ ବାଛିବା ଦ୍ୱାରା ଠିକ ହୋଇଛି କି ନାହିଁ ।

ବ୍ୟକ୍ତିଗତ ଭାବରେ ମୁଁ ଆଗ୍ରହୀଥାଏ ଜାଣିବାକୁ ଅତୀତର କେଉଁ ବୈଜ୍ଞାନିକମାନଙ୍କ ପୁସ୍ତକ ବଛାଯାଇଛି ଏହି ସେଟ୍‌ରେ ରହିବା ପାଇଁ । ସେମାନେହେଲେ—କୋପର ନିକସ, କେପ୍‌ଲର, ଗାଲିଲିଓଙ୍କ ସାଙ୍ଗକୁ ଅନ୍ୟ ଉଣେଇଶ ଜଣ—ଆରିଷ୍ଟଟଲ, ହିପୋ କ୍ରିଟସ୍, ଗାଲେନ, ଇଉକ୍ଲିଡ଼, ଆର୍କିମେଡିସ୍ ଆପୋଲୋ ନିଅସ, ନିକୋମାକ୍‌ସ, ଟୋଲେମୀ, ଗିଲ୍‌ବର୍ଟ, ହାର୍‌ଭେ, ଡାକାର୍ଟସ୍ ପାସ୍‌କାଲ, ନିଉଟନ, ହାଇଜେଞ୍ଜ, ଫୋରିଅର, ଫାରାଡ଼େ, ଡାର୍‌ଉଇନ୍, ଜେମ୍‌ସ, ଫ୍ରଏଡ଼୍ । ଏମାନଙ୍କ ଭିତରୁ ଅନେକଙ୍କର କିଛି କିଛି ଲେଖା ପଢ଼ିଥିଲେ ମଧ୍ୟ କେତେକଙ୍କ ସହିତ ଆଦୌ ପରିଚିତ ନଥିଲି । ତାହାପରେ ସେମାନଙ୍କ ବିଷୟରେ ଜାଣିବାକୁ ଉଦ୍ୟମ କଲି ।

ତାହାପରେ ସେହି ସିନୋପ ପୁସ୍ତକରେ ପାଶ୍ଚାତ୍ୟ ଜଗତର ପରମ୍ପରା ବିଷୟରେ ଆଲୋଚନା କରାଯାଇ କେତେଗୁଡ଼ାଏ ମୌଳିକ ପ୍ରଶ୍ନର ଅବତାରଣା କରାଯାଇଛି । ସେମାନଙ୍କର କହିବାର କଥା ପାଶ୍ଚାତ୍ୟ ଜଗତରେ ଅନୁସନ୍ଧାନ କରିବାର ବା କାରଣ ଜାଣିବାର ଯେଉଁ ପ୍ରବଳ ଇଚ୍ଛା ରହିଆସିଛି ତାହା ହିଁ ସେମାନଙ୍କୁ ପ୍ରଗତି ପଥରେ ଆଗେଇ ଯିବାର ସୁଯୋଗ ଦେଇଛି । ଏମିତି କୌଣସି ପ୍ରଶ୍ନ ରହିବନାହିଁ ଯାହା ଉପରେ କି ଆଲୋଚନା ବା ବିତର୍କ ହେବନାହିଁ । ପ୍ରତ୍ୟେକଲୋକ ନିଜର ମନ କଥା କହିବ । ଏଭଳି ହେଲେ ଯାଇ ଜାତିଟାଭିତରେ ଯେଉଁ ଭିନ୍ନ

କରିବାର ଅନ୍ତର୍ନିହିତ ସାମର୍ଥ୍ୟ ରହିଛି ତାହାର ବିକାଶହେବ । ବଛି ଯାଇଥିବା ଏହିସବୁ ପୁସ୍ତକ ଲୋକଙ୍କୁ ସାହାଯ୍ୟ କରିଆସିଛି ଅଧିକରୁ ଅଧିକ ଚିନ୍ତା କରିବାରେ, ପ୍ରଶ୍ନ ପଚାରିବାରେ ଓ ସେହି ସବୁ ପ୍ରଶ୍ନର ଉତ୍ତର ପାଇବାରେ ।

ସମନ୍ୱିତ ବା ଲିବରାଲ ଶିକ୍ଷାର ଲକ୍ଷ୍ୟ ହେଲା ମନୁଷ୍ୟକୁ ସବୁଦିଗରୁ ସର୍ବଗୁଣ ସମ୍ପନ୍ନ କରିବା । ବ୍ୟକ୍ତି ତଥା ସମାଜ—ଉଭୟର ପ୍ରଗତି ହେଉଛି ଲକ୍ଷ୍ୟ—ମନୁଷ୍ୟ ହେଉଛି ଗୋଟିଏ "ରାଜନୈତିକ ଜୀବ" । ସେଇଥିପାଇଁ ସମାଜ ପ୍ରଶ୍ନର ଅବତାରଣା କରାଯାଉଛି । ସମନ୍ୱିତ ଶିକ୍ଷା କଅଣ କରେନା ମୂଳ ସମସ୍ୟାଟି କଅଣ ସେ ବିଷୟରେ ସ୍ପଷ୍ଟ ଧାରଣା ଦେଇଦିଏ । ଗୋଟିଏ ସମସ୍ୟାର ପ୍ରଭାବ ଅନ୍ୟ ଗୋଟିଏ ସମସ୍ୟା ଉପରେ କଭଳି ଭାବରେ ପଡ଼ୁଛି ତାହା ବୁଝିବାରେ ଏହି ଶିକ୍ଷା ସାହାଯ୍ୟକରେ । ଏହା ମଧ୍ୟ ମଣିଷକୁ ପ୍ରକୃତ ମଣିଷ ରୂପରେ ଗଢ଼ିବା ପାଇଁ ଉଦ୍ୟମ କରେ । ମନୁଷ୍ୟ ହେଉଛି ଲକ୍ଷ୍ୟ—କୌଣସି ଲକ୍ଷ୍ୟ ହାସଲ ପାଇଁ ସାଧନା ନୁହେଁ । କୌଣସି ଗୋଟିଏ ସମସ୍ୟା ବିଷୟରେ ବିଚାରିଲା ବେଳେ ତାହାର ଅନ୍ୟସବୁ ସମସ୍ୟା ସହିତ କଭଳି ସମ୍ପର୍କ ରହିଛି ତାହା ବୁଝିବାପାଇଁ ଏହି ଶିକ୍ଷା ସାହାଯ୍ୟ କରିଥାଏ । ସମନ୍ୱିତ ଶିକ୍ଷାପ୍ରାପ୍ତ ବ୍ୟକ୍ତି ଜାଣେ ଆତ୍ମା, ରାଷ୍ଟ୍ର, ଭଗବାନ ଏବଂ ସୌନ୍ଦର୍ଯ୍ୟ ବୋଲିଲେ କଅଣ ବୁଝାଏ । ମନୁଷ୍ୟର ମୌଳିକସମସ୍ୟା ଗୁଡ଼ିକୁ ବୁଝିବାକୁ ହେଲେ ଏହିସବୁ ବିଷୟରେ ସଠିକ ଜ୍ଞାନ ରହିବା ନିତାନ୍ତ ଆବଶ୍ୟକ ।

ଭାରତରେ ଯେଉଁ ମନୋବୃତ୍ତି ଦେଖାଦେଇଥିଲା ଜ୍ଞାନକୁ ଅଳ୍ପ ଲୋକଙ୍କ ଭିତରେ ସୀମିତ କରି ରଖିବା ପାଇଁ ପାଶ୍ଚାତ୍ୟ ଜଗତରେ ସେଭଳି ଉତ୍କଟ ଭାବରେ ନହେଲେ ମଧ୍ୟ ସେହି ଧରଣର ମନୋବୃତ୍ତି ପ୍ରାଧାନ୍ୟ ଦେଖାଇଥିଲା । ସେ ବିଷୟରେ ସେହି 'ମୁଖବନ୍ଧ ପୁସ୍ତକରେ ଉଲ୍ଲେଖ ରହିଛି—ଏହିସବୁ ପୁସ୍ତକ ଯେ ସମନ୍ୱିତ ଶିକ୍ଷାପାଇଁ ଲୋଡ଼ା ଏକଥା ନିକଟ ଅତୀତରେ ମଧ୍ୟ ସ୍ୱୀକାର କରାଯାଇଥିଲା । କିନ୍ତୁ ଯେଉଁମାନେ ଏଲିଟ୍ ବା ସମାଜରେ ଉଚ୍ଚସ୍ତରରେ ଅଛନ୍ତି ସେହି ମାନଙ୍କ ଭିତରେ ସୀମାବଦ୍ଧ ଥିଲା ଏହି ଧରଣର ଶିକ୍ଷା । କେତେକ ଲୋକ ସେହିମାନଙ୍କ

'ନିଷିଦ୍ଧ ଇଲାକା' ଭିତରକୁ ଧସେଇ ପଶିଯାଇଥିଲେ ମଧ୍ୟ ସେମାନଙ୍କୁ କହି ଦିଆଯାଉଥିଲା—କେବଳ ଯେଉଁମାନେ ଅତି ମାତ୍ରାରେ ଧୀସମ୍ପନ୍ନ ଅର୍ଥାତ୍ ବୁଦ୍ଧିମାନ ଏବଂ ଯେଉଁମାନଙ୍କର ସମୟ ଅଛି ଏଗୁଡ଼ିକୁ ପଢ଼ି ବୁଝିବା ପାଇଁ କେବଳ ସେହିମାନେ ଏସବୁ ବହି ପଢ଼ନ୍ତୁ—ଅନ୍ୟମାନେ ସେ ଦିଗରେ ଉଦ୍ୟମ କରି ଅଯଥା ଶକ୍ତି ବ୍ୟୟ ନକରନ୍ତୁ । ସାଧାରଣ ଲୋକେ ଚାଲି ଆସିଲେ ରାଜନୀତିକ କ୍ଷେତ୍ରକୁ । ସେମାନେ ନିଶ୍ଚୟ ଶିକ୍ଷାଲାଭ କରିବେ ବୋଲି ସ୍ୱୀକାର କରାନଆଗଲା । କିନ୍ତୁ ଉଚ୍ଚସ୍ତରରେ ଥିବା ଲୋକେ ଯେଉଁଭଳି ଭାବରେ ଶିକ୍ଷିତ ହେବେ ସେମାନେ ସେଭଳି ହେବା ପାଇଁ ମନ ନ ବଳାନ୍ତୁ । ସେମାନେ ଖବର କାଗଜ ପଢ଼ିବେ, ବାଣିଜ୍ୟ ବ୍ୟବସାୟ ସଂକ୍ରାନ୍ତୀୟ କିଛି ପତ୍ର ଲେଖିବେ ସିନା—ପ୍ଲାଟୋ, ଦାନ୍ତେ ବା ନିଉଟନଙ୍କ ପୁସ୍ତକ ସବୁ ପଢ଼ିବାକୁ କାହିଁକି ଇଚ୍ଛା କରିବେ ? ପଣ୍ଡିତମାନଙ୍କ ଲେଖାର କିଛି ଅଂଶ ଅନୁବାଦ କରିଦେଇ ପାଠ୍ୟ ପୁସ୍ତକରେ ରଖିଦିଆଯିବ । ସେମାନେ ସେତିକି ଜାଣିଦେଲେ ହେଲା । ଲୋକଙ୍କ ହାତକୁ ରାଜନୈତିକ କ୍ଷମତା ଆସିଯାଉଥାଏ । ପଢ଼ିବାକୁ ସମୟ ପାଉଥାଆନ୍ତି । କିନ୍ତୁ ଯେଉଁ ଧରଣର ଶିକ୍ଷା ପାଇବାକଥା ତାହା ସେମାନେ ପାଉ ନଥାନ୍ତି । କିନ୍ତୁ ଯେତେ ପ୍ରକାରର ବୌଦ୍ଧିକ ପ୍ରତିବନ୍ଧକ ସୃଷ୍ଟି କଲେ ମଧ୍ୟ ମନୁଷ୍ୟଟି ମନୁଷ୍ୟ ହୋଇଥିବାରୁ ଅଧିକରୁ ଅଧିକ ଜାଣିବା ପାଇଁ ତାହାର ଇଚ୍ଛା ହେଲା । ସେ ତ ବହୁ ସମସ୍ୟାର ସମ୍ମୁଖୀନ ହେଲା । ସେଗୁଡ଼ିକର ସମାଧାନ କରିବାକୁ ଯାଇ ତା' ମନରେ ନାନା ପ୍ରଶ୍ନ ସ୍ୱତଃ ଉଠିଲା । ଭଲ ଭାବରେ ଜୀବନ କଟାଇବାର ଅର୍ଥ କଅଣ ? କାହାକୁ ଭଲ ସରକାର ବୋଲି କୁହାଯିବ ? ଭଗବାନ କ'ଣ ସତରେ ଅଛନ୍ତି ? ମନୁଷ୍ୟର ପ୍ରକୃତି କେମିତି ? ମନୁଷ୍ୟର ଭାଗ୍ୟ ବୋଲି ଗୋଟାଏ କିଛି ଅଛି କି ? ଏଭଳି ପ୍ରଶ୍ନ ସବୁ ଯେ ତା' ମନ ଭିତରେ ଉଠିଲା ତାହାର ଆଉ କିଛି କାରଣ ନାହିଁ—ଏକମାତ୍ର କାରଣ ହେଲା ସେ ମନୁଷ୍ୟ ।

ବହିଟିର ପ୍ରତ୍ୟେକ ପୃଷ୍ଠାକୁ ଯେ ଆରମ୍ଭରୁ ଶେଷ ପର୍ଯ୍ୟନ୍ତ ପଢ଼ୁଥାଏ ଏଭଳି ନୁହେଁ—ଆଖି ପକାଇ ଯାଉଥାଏ, ଯେଉଁ ପୃଷ୍ଠାଟି ଭଲ ଲାଗୁଥାଏ ସେଇଟିକୁ, ପଢ଼ିଦେଉଥାଏ । ଏମିତି ହେଉ ହେଉ 'ସମସ୍ତଙ୍କ ପାଇଁ ଶିକ୍ଷା' ଅଧ୍ୟାୟଟି ଆସିଗଲା । ମୋର ତ ଏହି ବିଷୟରେ ବେଶୀ ଆଗ୍ରହ । ପଢ଼ୁ ପଢ଼ୁ ଦେଖିଲି ସେମାନେ ଏହି କଥା କହୁଛନ୍ତି ।

ଆମେ ତ ଦେଖିଲେ ଗଣତାନ୍ତ୍ରିକ ମନୋଭାବର ବିକାଶ ପାଇଁ ଏହିଭଳି ଶିକ୍ଷାର ଆବଶ୍ୟକତା କେତେ ଅଧିକ । ତେଣିକି ଦେଖିବାର କଥା ପ୍ରତ୍ୟେକ ଲୋକ କ'ଣ ଏଭଳି ଶିକ୍ଷା ପାଇପାରିବ ? ଯଦି ତା' ନ ହୋଇ ପାରିବ ତେବେ ଗୁଡ଼ାଏ ଦାୟିତ୍ୱହୀନ କଥା କହି ଲାଭ କଅଣ ? ତାହାର ଉତ୍ତର ହେଲା ଶହକେ ଶହେ ସଫଳତା ନ ମିଳିଲେ ମଧ୍ୟ ଯେତିକି ମିଳିବ ତାହାର ଯଥେଷ୍ଟ ମୂଲ୍ୟ ରହିଛି । ପ୍ରତ୍ୟେକ ଲୋକ ସୁଯୋଗ ପାଉ—ଏହି ହେଲା ଲକ୍ଷ୍ୟ । ଆମର କର୍ତ୍ତବ୍ୟ ହେଲା ଯଥା ସମ୍ଭବ ସେହି ସୁଯୋଗ ଯୋଗାଇ ଦେବା ।

ସମ୍ପାଦକମାନଙ୍କର ଆଶା ସବୁ ବୟସ୍କଲୋକେ ଏହି ସେଟ୍‌ରେ ଥିବା ସବୁ ବହିକୁ ଜୀବନତମାମ ପଢ଼ୁଥିବେ । ଗୁଡ଼ିଏ ଅବସ୍ଥାରେ ପଢ଼ିଥିଲେ ମଧ୍ୟ ଜୀବନର ପରବର୍ତ୍ତୀ କାଳରେ ବାରମ୍ବାର ପଢ଼ିଲେ ଜଣେ ଅଧିକରୁ ଅଧିକ ଲାଭବାନ ହେବ । ଜୀବନ ବ୍ୟାପୀ ଶିକ୍ଷାର ସ୍ୱତନ୍ତ୍ର ଗୁରୁତ୍ୱ ରହିଛି ।

ଏହି ଅଧ୍ୟାୟର ଆରମ୍ଭରେ 'ପ୍ରେରଣାର ନୂତନ ରୂପ' ବୋଲି ଏଇଥିପାଇଁ ଲେଖିଥିଲେ ଯେ ଉପରେ ଯାହା ସଂକ୍ଷେପରେ କହିଗଲି ତାକୁ ପଢ଼ିଲାବେଳେ ଶିକ୍ଷାବିଷୟରେ ନୂତନ ଭାବରେ ଚିନ୍ତାକରିବାର ଗୋଟାଏ ଅପୂର୍ବ ସୁଯୋଗ ମିଳିଲା । ମନୁଷ୍ୟ କିଭଳି ଆଗେଇଯିବାକୁ ଇଚ୍ଛାକରୁଛି ଚିନ୍ତା ତଥା ଭାବନାର ରାଜପଥରେ ତାହାହିଁ ଲକ୍ଷ୍ୟ କରୁଥାଏ । ତାହା ସଙ୍ଗେ ସଙ୍ଗେ ଭାବୁଥାଏ ଆମ ଦେଶରେ ଲୋକେ କାହିଁକି ଏହିଭଳି ଭାବରେ ଚିନ୍ତା କରୁନାହାନ୍ତି । ଆମ ଶିକ୍ଷିତ ଲୋକେ ଅଳ୍ପରେ ସନ୍ତୁଷ୍ଟ ହୋଇ ରହିଯାଉଛନ୍ତି—ସମନ୍ୱିତଶିକ୍ଷାର ଗୁରୁତ୍ୱ ବୁଝୁନାହାନ୍ତି । ବିଳମ୍ବରେ ହେଲେ ମଧ୍ୟ କେତେଜଣ ଉଦ୍ୟମକରିବା ଉଚିତ ଏହି ଗୁରୁତ୍ୱପୂର୍ଣ୍ଣ ପ୍ରଶ୍ନ ବିଷୟରେ ସମସ୍ତଙ୍କୁ ସଚେତନ କରିବା ପାଇଁ । ମୋର ସୀମା ବିଷୟରେ ସଚେତନ ଥିଲେ ମଧ୍ୟ ଏ ଦିଗରେ ମୋର ଯାହା କର୍ତ୍ତବ୍ୟ ତାକୁ ସମ୍ପାଦନ କରିବାରେ ମତେ ତ କେହି ବାଧା ଦେଉନାହାନ୍ତି ।

ଶେଷରେ ଦିଆଯାଇଛି ଏହି ବୃହତ୍ ପୁସ୍ତକ ସେଟ୍‌ରେ ଥିବା ବହିଗୁଡ଼ିକୁ କେମିତି ଦଶବର୍ଷରେ ପଢ଼ିବାକୁ ପଡ଼ିବ । କେଉଁ ବର୍ଷ କେଉଁ କେଉଁ ବହି ପଢ଼ିବ ତାହାର ତାଲିକା ଦିଆଯାଇଛି । ଏହି କ୍ରମରେ

ପଢ଼ିଲେ ଅଢ଼େଇ ହଜାର ବର୍ଷ ଧରି ଭାବୁକମାନେ ଯେଉଁସବୁ ପ୍ରଶ୍ନ ପଚାରିଛନ୍ତି ଓ ଅନ୍ୟମାନେ ଉତ୍ତର ଦେଇଛନ୍ତି ସେହି ସଂଳାପକୁ ପାଠକ ଭଲ ଭାବରେ ବୁଝିପାରିବେ । ମନେ ମନେ ଭାବିଲି ଆଉ ଦଶବର୍ଷ ଯେ ବଞ୍ଚିବି ତାହାର ଠିକଣା ନାହିଁ । ତେଣୁ ସବୁ ବହି ଉପରେ ତିନି ଚାରି ବର୍ଷରେ ଆଖି ବୁଲାଇଦେବି । କେତେ ଗୁଡ଼ାଏ ବହି ଆଗରୁ ପଢ଼ିଥିଲି । କିନ୍ତୁ "ପଢ଼ିବା" ତ ପୁଣି ଗୋଟିଏ ଆପେକ୍ଷିକ ଶବ୍ଦ । ଯେତିକି ଅଭିଜ୍ଞତା ଓ ବୁଦ୍ଧି ଥିଲାବେଳେ ଗୋଟିଏ ବିଷୟକୁ ପଢ଼ିଛି, ପରେ ଅଭିଜ୍ଞତା ବୁଦ୍ଧି ବଢ଼ିଗଲା ପରେ ପୁଣି ସେହି ବିଷୟକୁ ପଢ଼ିଲେ ସେଥିରୁ ନୂତନ ଅର୍ଥ ମିଳିଯାଏ । ସେହି ଦୃଷ୍ଟିରୁ ପ୍ଲାଟୋ, ଆରିଷ୍ଟଟଲଙ୍କୁ ମଧ୍ୟ ପଢ଼ିବି ବୋଲି ସ୍ଥିର କଲି । ମୋରତ ପୁଣି ଅନ୍ୟକାମ ଅଛି—ତା' ସହିତ ଖାପଖୁଆଇ ଯେତିକି ପଢ଼ିପାରିବି ସେଥିରେ ସନ୍ତୁଷ୍ଟ ରହିବି । ଗୋଟିଏ ଏନ୍‌ସାଇକ୍ଲୋପିଡ଼ିଆ ଲେଖୁଥିବାରୁ ମଝିରେ ମଝିରେ ଏହି ସେଟ୍‌ରେ ଥିବା ବହିଗୁଡ଼ିକୁ ଓଲଟାଇବାକୁ ତ ପଡ଼ିବ । ତେବେ ଜଣଙ୍କ ବିଷୟରେ ଧାରଣା କରିହେବ ବୋଲି ବାଛିକରି ପ୍ଲାଟୋଙ୍କୁ ବାଛିଲି । ପ୍ରଥମରୁ ଦଶମ ବର୍ଷ ଭିତରେ କେଉଁ ବର୍ଷ ତାଙ୍କର କେଉଁ ଲେଖାଟି ପଢ଼ିବ ତାହାର ସୂଚନା ତ ଦିଆଯାଇଛି । କାହିଁକି ଏଭଳି ପାହାଚ ପାହାଚ ପଢ଼ିବା ପାଇଁ କୁହାଯାଇଛି ତାହା ଜାଣିବା ପାଇଁ ଉଦ୍ୟମ କଲି । ଗୋଟାଏ ମୋଟାମୋଟି ଧାରଣା ହୋଇଗଲା ସେମାନେ ଏଭଳି 'ନିର୍ଦ୍ଦେଶ' କାହିଁକି ଦେଇଛନ୍ତି । ଏକଥା ସ୍ୱୀକାର କରୁଛି ଯେ ୪୭୩ଟି ଯାକ ବହି ଉପରେ ଆଖି ବୁଲାଇ ଦେଇଛି ଓ ଆବଶ୍ୟକ ସ୍ଥଳେ କେଉଁ କେଉଁଟିକୁ ଭଲଭାବରେ ପଢ଼ିଛି ମିନା— ସବୁତକ ବହିକୁ ଭଲ ଭାବରେ ପଢ଼ିବାର ସୁଯୋଗ ପାଇନାହିଁ—ସମୟ ପାଇନାହିଁ ବୋଲି କହିଲେ ଅଧିକ ଠିକ ହେବ ।

କିନ୍ତୁ ଦ୍ୱିତୀୟ—ତୃତୀୟ ଖଣ୍ଡରେ ଥିବା ବିଷୟଗୁଡ଼ିକୁ ଟିକିଏ ଅଧିକ ଯତ୍ନର ସହିତ ପଢ଼ିବାକୁ ଆରମ୍ଭ କଲି ତାହାର ସ୍ୱତନ୍ତ୍ର କାରଣ ଅଛି । ଯେଉଁସବୁ ଚିନ୍ତା ଭାବନା କଳ୍ପନା ବିଷୟରେ ପ୍ରାଚ୍ୟ ଓ ପାଶ୍ଚାତ୍ୟ ଉଭୟ ଜଗତର ଭାବୁକମାନେ ନାନା ଦିଗରୁ ଆଲୋଚନା କରି ଆସିଛନ୍ତି ଓ ଆସୁଛନ୍ତି ସେସବୁ ବିଷୟରେ ପ୍ରତ୍ୟେକ ମନୁଷ୍ୟ ଆଗ୍ରହୀ ହେବା ସ୍ୱାଭାବିକ—ସେ ଯେଉଁ ଧର୍ମ ସଭ୍ୟତା ବା ସଂସ୍କୃତିର ଲୋକ ହୋଇ

ଥାଉନା କାହିଁକି । ଉଦାହରଣ ସ୍ୱରୂପ 'ଭଗବାନ' ବୋଇଲେ କଅଣ ବୁଝାଏ ସେ ସମ୍ବନ୍ଧରେ ନାନା ଦିଗରୁ ନାନା ଦୃଷ୍ଟିକୋଣରୁ ବିଗ୍ଭର କରାଯାଇଛି ଆଲୋଚନା କରାଯାଇଛି । ପାଶ୍ଚାତ୍ୟ ଚନ୍ତାଧାରା ସେ ବିଷୟରେ କଅଣ ଭାବୁଛି ପ୍ରାଚ୍ୟଜଗତର ଲୋକେ ଜାଣିବା ଦରକାର—ତାହାର ବିପରୀତଟି ମଧ୍ୟ ଠିକ୍, ଏହି ଦୁଇଖଣ୍ଡ ବହିରେ ସେହି ଧରଣର ୧୦୨ଟି ବିଷୟରେ ଆଲୋଚନା ରହିଛି ଓ ସେଗୁଡ଼ିକୁ great Ideas ବା ମହାନ୍ ଆଇଡ଼ିଆ (ଭାବନା) ବୋଲି ନାମ ଦିଆଯାଇଛି । ସେଗୁଡିକୁ ମନ ଦେଇ ପଢ଼ିଲି । ଗ୍ରୀଷ୍ମାବକାଶରେ ମୋଟାମୋଟି ଭାବରେ ପଢ଼ିଦେଲି । ଅନୁଭବ କଲି ଏହି କେତୋଟି ବିଷୟରେ ନ ଜାଣିଲେ ଜଣକର 'ସବୁକଥାର ମୂଲ୍ୟାୟନ କରିବାର ସାମର୍ଥ୍ୟ' ରହିବା ନାହିଁ।

ସମ୍ପାଦକମାନେ ଏହି ଦୁଇଖଣ୍ଡ ପାଇଁ ଗୋଟିଏ ସ୍ୱତନ୍ତ୍ର ମୁଖବନ୍ଧ ଲେଖି ପାଠକମାନଙ୍କୁ ଗୋଟିଏ ବିଷୟରେ ସତର୍କ କରିଦେଇଛନ୍ତି । ସମଗ୍ର ସେଟ୍‌ରେ ଥିବା ୪୪୩ ଖଣ୍ଡ ଯାକ ବହି ନପଢ଼ି ମଧ୍ୟ ଏହି ଦୁଇଖଣ୍ଡକୁ ପଢ଼ାଯାଇପାରେ । କିନ୍ତୁ ଯେଉଁଗୁଡ଼ିକୁ ଏହି ସେଟ୍‌ରେ ରଖାଯାଇଛି ସେଗୁଡ଼ିକ ଗୋଟିଏ ଗୋଟିଏ ସ୍ୱତନ୍ତ୍ର ବହି ବୋଲି ବିଗ୍ଭରିଦେବା ଠିକ ନୁହେଁ । ସବୁଗୁଡ଼ିକୁ ଗୋଟିଏ ବୋଲି ଧରି ନେବାକୁ ହେବ, ପାଶ୍ଚାତ୍ୟ ପରମ୍ପରାକୁ ଏହିସବୁ ପୁସ୍ତକ ମିଳିତ ଭାବରେ ଜୀବନ ତଥା ଆଲୋକ ଦେଇଛନ୍ତି । ପ୍ରତ୍ୟେକ ପୁସ୍ତକର କିଛି ନା କିଛି ସମ୍ପର୍କ ରହିଛି ଅନ୍ୟ ପୁସ୍ତକଟି ସହିତ । ତେଣୁ ସମଗ୍ର ସେଟ୍‌ଟି 'ଅଭିନ୍ନ' ବୋଲି ବିଗ୍ଭରିନେଲେ ଭଲ । ସମଗ୍ର ସେଟ୍‌ଟି ଗୋଟିଏ ସେଟ୍ ଏନ୍‌ସାଇକ୍ଲୋପିଡିଆ ବୋଲି ଧରିନେଲେ ଆହୁରି ଭଲ । ସେମିତି ଧରିଲେ ଯାଇ ଏହା ଯେ ଗୋଟିଏ "ବୌଦ୍ଧିକ ସାଧନ" ଏ କଥା ବୁଝିବାରେ ଅସୁବିଧା ହେବନାହିଁ । ଯେଉଁ ୧୦୨ଟି ଆଇଡ଼ିଆ ବିଷୟର ଉଲ୍ଲେଖ ଏହି ଦୁଇଖଣ୍ଡ ବହିରେ ରହିଛି ସେଥିଭିତରୁ ପ୍ରତ୍ୟେକଟି ଉପରେ ରହିଛି ପ୍ରଥମେ ଗୋଟିଏ ଅବତାରଣା ଓ ପରେ ଦୀର୍ଘ ସୂଚୀ ଦିଆଯାଇଁ ସମଗ୍ର ସେଟ୍‌ର କେଉଁଠାରେ ସେ ବିଷୟରେ କଅଣ ଅଛି କହି ଦିଆହୋଇଛି ।

ମୋର ଏହି ବହିର ପାଠକମାନଙ୍କ ଭିତରୁ ସମସ୍ତେ ଏହି ବହି ସେଟ୍‌ଟି ପଢ଼ିବାର ସୁଯୋଗ ପାଇ ନଥିବେ ଓ ନିକଟ ଭବିଷ୍ୟତରେ

ହୁଏତ ପାଇବେନାହିଁ । ସେହିମାନେ ଜାଣିପାଆନ୍ତୁ କେଉଁ କେଉଁ ଆଇଡିଆକୁ ଗୁରୁତ୍ୱ ଦିଆଯାଇଛି—ଏହି ଉଦ୍ଦେଶ୍ୟରେ ଅଳ୍ପ କେତୋଟିକୁ ବାଦ୍ ଦେଇ ବାକି ଗୁଡ଼ିକର ନାମ ଉଲ୍ଲେଖ କରିଦିଆଯାଉଛି । ଏଥିଭିତରୁ ପ୍ରତ୍ୟେକଟି ବିଷୟରେ ସମସ୍ତେ କିଛି କିଛି ଜାଣିଲେ ଭଲ । ସେମିତି ଜାଣିଲେ ମାନବ ସଭ୍ୟତା ଓ ସଂସ୍କୃତିର ଅସଲ ସ୍ୱରୂପ ଜାଣିବାରେ କିଛି ଦୂରକୁ ସାହାଯ୍ୟ ମିଳିବ । ସେହି ଆଇଡ଼ିଆଗୁଡିକ ହେଲେ -- ମାନବ, ଗଣିତ, ବସ୍ତୁ, ଭେଷଜ, ସ୍ମୃତି ଓ କଳ୍ପନା, ଅଧ୍ୟାତ୍ମବିଦ୍ୟା, ମନ, ପ୍ରକୃତି, ଆବଶ୍ୟକତା ଏବଂ ଓ ବହୁତ, ମତ, ବିରୋଧ, ଦର୍ଶନ, ପଦାର୍ଥବିଦ୍ୟା, ଯନ୍ତ୍ରଣା ଏବଂ ଆନନ୍ଦ, କବିତା, ମିତ, ବୃଦ୍ଧି ବା ଉତ୍କର୍ଷ, ଭବିଷ୍ୟତବାଣୀ, ବିଜ୍ଞତା, ଶାସ୍ତି, ଗୁଣ, ପରିମାଣ, ହେତୁବାଦ, ସମ୍ପର୍କ, ଧର୍ମ, ବିପ୍ଳବ, ବାଗ୍ମିତା, ବିଜ୍ଞାନ, ଇନ୍ଦ୍ରିୟ, ପାପ, ଦାସତ୍ୱ, ଆତ୍ମା, ମହାଶୂନ୍ୟ, ରାଷ୍ଟ୍ର, କାଳ, ସତ୍ୟ, ଅତ୍ୟାଚାର, ପାପପୁଣ୍ୟ, ଯୁଦ୍ଧ ଓ ଶାନ୍ତି, ସମ୍ପଦ, ଇଚ୍ଛାଶକ୍ତି, ବିଜ୍ଞତା, ଜଗତ, ଦେବଦୂତ, ପ୍ରାଣୀ, ଅଭିଜାତ ତନ୍ତ୍ର, ଜ୍ୟୋତିର୍ବିଜ୍ଞାନ, ସୌନ୍ଦର୍ଯ୍ୟ, କାରଣ, ସୁଯୋଗ, ପରିବର୍ତ୍ତନ, ନାଗରିକ, ସମ୍ବିଧାନ, ସାହସ, ରୀତିନୀତି, ସଂଜ୍ଞା, ଗଣତନ୍ତ୍ର, କାମନା, କର୍ତ୍ତବ୍ୟ, ଶିକ୍ଷା, ଆବେଗ, ଶାଶ୍ୱତତା, ବିବର୍ତ୍ତନବାଦ, ଅଭିଜ୍ଞତା, ପରିବାର, ଭାଗ୍ୟ, ରୂପ, ଭଗବାନ, ଭଲମନ୍ଦ, ଶାସନ, ଅଭ୍ୟାସ, ସୁଖ, ଇତିହାସ, ସମ୍ମାନ, ଆଇଡ଼ିଆ, ଅମରତ୍ୱ, ଅସୀମତା, ବିଚାର ବୁଦ୍ଧି, ନ୍ୟାୟ, ଜ୍ଞାନ, ଶ୍ରମ, ଭାଷା, ଆଇନ, ମୁକ୍ତି, ଜୀବନ ଏବଂ ମରଣ, ନ୍ୟାୟଶାସ୍ତ୍ର, ପ୍ରେମ ।

ଏଥିଭିତରୁ ଅନେକ ବା ହୁଏତ ପ୍ରତ୍ୟେକ ବିଷୟରେ ଅନ୍ୟମାନଙ୍କ ଭଳି ମୋର ମଧ୍ୟ ଅଳ୍ପ ବହୁତେ ଧାରଣା ଥିଲା । କିନ୍ତୁ ସେଗୁଡ଼ିକୁ ଏଭଳି ଭାବରେ ଆଲୋଚନା କରାଯାଇଛି ଓ ଅଧିକ ଜାଣିବା ପାଇଁ କେଉଁଠାରେ ଖୋଜିବାକୁ ହେବ ତାହାର ଯେଉଁ ସୂଚନା ଦିଆଯାଇଛି ଯେ ସେଗୁଡ଼ିକରୁ କେତୋଟି ସତେ ଯେପରି ନୂଆ ସେହିଭଳି ମନେ ହେଲା । ପ୍ରାୟ ବର୍ଷକ ଭିତରେ ଯେତିକି ଜାଣିଲି ତାହା ମୋର କିଛି ଲେଖା ଭାଷଣ ଏବଂ ଆଲୋଚନାକୁ ସାହାଯ୍ୟ କଲା ।

# "ସବଳର ଅହିଂସା"..... "ଦାରିଦ୍ର୍ୟରେ ସୌନ୍ଦର୍ଯ୍ୟ"

ଆଜି ଗୋଟିଏ ବହି ସେଟ୍‌ରୁ ଯାହା ଶିଖିଲି ତାହାର ଗୁରୁତ୍ୱକୁ ପାଠକମାନଙ୍କୁ ବୁଝାଇବା ପାଇଁ ମୋପାଖରେ ଭାଷା ନାହିଁ । ସେହିଟି ହେଉଛି Collected Works of Mahatma Gandhi—ମହାତ୍ମା ଗାନ୍ଧୀ ଯାହାସବୁ ଲେଖିଛନ୍ତି ଓ କହିଛନ୍ତି ତାହାର ସଂଗୃହୀତ ବିବରଣୀ । ୧୮୯୬ରୁ ୧୯୪୮ ଜାନୁୟାରୀ ୩୦ ତାରିଖ ପର୍ଯ୍ୟନ୍ତ ମହାତ୍ମାଗାନ୍ଧୀ ଯାହା ଲେଖିଛନ୍ତି, ଯେଉଁସବୁ ଚିଠି ଲେଖିଛନ୍ତି ବା ଉତ୍ତର ଦେଇଛନ୍ତି ଭିନ୍ନ ଭିନ୍ନ ସଭାରେ ଭାଷଣ ଦେଇଛନ୍ତି ଇତ୍ୟାଦି ପ୍ରାୟ ସବୁତକ ସଂଗ୍ରହ କରି ୯୦ ଖଣ୍ଡରେ ପ୍ରକାଶ କରି ଦିଆଯାଇଛି । ଭାରତ ସରକାର ଏହି ପ୍ରକାଶନର ସମସ୍ତ ବ୍ୟୟ ବହନ ନ କରିଥିଲେ ଓ ଏହାକୁ ଶସ୍ତାରେ ନଯୋଗାଇ ଥିଲେ ବହୁଲୋକ ଏ ସେଟ୍‌ଟିକୁ କିଣି ପାରିନଥାନ୍ତେ । ଭାରତ ସରକାର ଲେଖିଛନ୍ତି—ଏହି ଗୋଟିକ ହେଉଛି ଜଣେ ବ୍ୟକ୍ତି ବିଶେଷଙ୍କ କଲମରୁ ବା ମୁଖରୁ ବାହାରିଥିବା ବିଷୟ ବସ୍ତୁର ପୃଥିବୀର ସର୍ବବୃହତ୍ ସେଟ୍ । ଇଂରାଜୀ ଏବଂ ହିନ୍ଦୀ ଉଭୟ ଭାଷାରେ ଏହା ପ୍ରକାଶିତ । ସ୍ୱାଧୀନତା ସଂଗ୍ରାମ କାଳରେ ଗାନ୍ଧିଜୀଙ୍କ 'ୟଙ୍ଗ୍ ଇଣ୍ଡିଆ' ଓ 'ହରିଜନ' ପତ୍ରିକାରେ ଏଥିରେ ଥିବା ବହୁ ଲେଖା ଓ ଚିଠି ପ୍ରକାଶ ପାଇଥିଲି ଓ ପ୍ରାୟ ସବୁ ଗୁଡ଼ିକ ପଢ଼ିଥିଲି ବୋଲି କହିଲେ ସେମିତିକଛି ଭୁଲ୍ ହେବନାହିଁ । କିନ୍ତୁ ଏହି ସେଟ୍‌ରୁ ସେଗୁଡ଼ିକ ପୁଣି ପଢ଼ିଲାବେଳେ ମନେହେଲା ମୁଁ ନୂଆ କରି ପଢ଼ୁଛି । ସେହି ସବୁ ଲେଖାରୁ ନୂତନ ଅର୍ଥର ସନ୍ଧାନ ପାଇଲି ।

ସେହି ସବୁକୁ ପଢ଼ି ତୁମ ମନ ଉପରେ କିଭଳି ପ୍ରଭାବ ପଡ଼ିଲା ତାକୁ ପାଞ୍ଚ ଦଶ ଧାଡ଼ିରେ ଲେଖି ଦିଅ, ବୋଲି କହିଲେ ଶହେ ଜଣ

ହୁଏତ ଶହେ ପ୍ରକାରରେ ଲେଖିବେ । ଏମିତି ହୋଇପାରେ ସମସ୍ତଙ୍କ ଲେଖାର ମହତ୍ତ୍ୱ ଅଛି । ଗାନ୍ଧିଜୀଙ୍କ ସବୁ ଲେଖା ବା ଚିଠି ଗୁଡ଼ିକ ପ୍ରକାଶ ପାଇନାହିଁ ବୋଲି ଜଣାପଡ଼ୁଛି । ୧୯୮୬ ଡିସେମ୍ବରରେ ତାଙ୍କର କେତେକ ଚିଠିର ସନ୍ଧାନ ମିଳିଛି । ସେଗୁଡ଼ିକୁ ସେ ଲେଖିଥିଲେ ତାଙ୍କ ଆଦ୍ୟ ସାଧାରଣ ଜୀବନର ସହକର୍ମୀ କାଲେନ୍‌ବାକଙ୍କ ପାଖକୁ । ସେଗୁଡ଼ିକୁ ପୁଣି ଦଶ ବାର ଲକ୍ଷ ଟଙ୍କା ଦେଇ ଲୋକେ କିଣି ନେଉଛନ୍ତି । ଏହା ସାଙ୍ଗକୁ ଗାନ୍ଧୀଙ୍କ ଉପରେ ଯେତେ ଲେଖାଗଲାଣି ସେଗୁଡ଼ିକୁ ଏକତ୍ର କଲେ ହୁଏତ ପାଞ୍ଚଶହ ଭଲ୍ୟୁମ୍ ହୋଇଯିବ । ଲେଖା ସରିନାହିଁ – ଚାଲିଛି ଚାଲିଥିବ । ଗୀତାର ଭାଷା ତ ପୁଣି ନୂତନ ନୂତନ ରୂପ ନେଇ ପ୍ରକାଶ ପାଉଛି । ଗାନ୍ଧୀ ଗୋଟିଏ ଆଇଡ଼ିଆ, ତତ୍ତ୍ୱ ବା ସେହିଭଳି ଆଦର୍ଶ କିଛି ହୋଇ ଯାଇଥିବାରୁ ଶହ ଶହ ବର୍ଷ ପରେ ମଧ୍ୟ ଲୋକେ ତାଙ୍କ କଥାର ଭିନ୍ନ ଭିନ୍ନ ଅର୍ଥ କରୁଥିବେ । ଅଳ୍ପ କେତେଦିନ ତଳେ ତ ଆଟେନ୍‌ବରୋଙ୍କ ଗାନ୍ଧୀ ଫିଲ୍ମ ପ୍ରକାଶ ପାଇଲା । ସେଥିରେ ଏଭଳି କେତେକ ଦୃଶ୍ୟ ଅଛି ଯେଉଁଗୁଡ଼ିକୁ ଦେଖିଲେ ବ୍ରିଟିଶ ଜାତି ଭାରତରେ କିଭଳି ଜଘନ୍ୟ ଆଚରଣ ଦେଖାଉଥିଲେ, କିଭଳି ସବୁ ବର୍ବରକାଣ୍ଡ ଘଟାଉଥିଲେ ତାହା ଜାଣି ହୋଇଯିବ । ଯେଉଁ ସମୟରେ ପାଶ୍ଚାତ୍ୟ ଇଉରୋପର ଲୋକେ ପୂର୍ବ ଇଉରୋପରେ ସୋଭିଏତ୍ ରୁଷ ଚଳାଇଥିବା ନିର୍ମମ ଅତ୍ୟାଚାର ବିଷୟରେ କହୁଛନ୍ତି ଓ ହଙ୍ଗେରୀ ଚେକୋସ୍ଲୋଭାକିଆ ଉଦାହରଣ ଦେଉଛନ୍ତି ସେହି ସମୟରେ ଆଟେନ୍‌ବରୋ ଫିଲ୍ମ ବ୍ରିଟିଶ ଜାତିର "ଭାରତ ଇତିହାସ" ବିଷୟରେ ଅତି ଖରାପ ଧାରଣା ଦେଉଛି । ଜାଲିୟାନାୱାଲା-ବାଗ, ଧର୍ଷଣା ଇତ୍ୟାଦି ଦୃଶ୍ୟ ସମସ୍ତଙ୍କ ମନରେ ବ୍ରିଟିଶ ଜାତି ପ୍ରତି ଗୋଟାଏ ଖରାପ ଧାରଣା ସୃଷ୍ଟିକରୁଛି । ତେଣୁ ସୁଚିନ୍ତିତ ଯୋଜନା କରି ଗାନ୍ଧୀ ସେମିତି କିଛି "ବଡ଼ଲୋକ" ନଥିଲେ, ବାସ୍ତବ ସତ୍ୟ ଓ କଳ୍ପନାର ତଥ୍ୟଠାରୁ ଭିନ୍ନ ବୋଲି ବହି ଲେଖାଯାଉଛି ଇଂରେଜ ଲେଖକଙ୍କ ଦ୍ୱାରା ଓ କେତେ ଜଣ ଭାରତୀୟଙ୍କ ଦ୍ୱାରା ଗାନ୍ଧୀଙ୍କ ଉପରେ ପୃଥିବୀର ଭିନ୍ନ ଭିନ୍ନ ଅଂଶରେ କିଭଳି ସବୁ ଲେଖାଯାଉଛି ଆମେ ଖବର ରଖିନାହୁଁ । ପାଞ୍ଚ ବର୍ଷ ପୂର୍ବେ—୧୯୮୦ରେ ବୋଧହୁଏ—ବ୍ରିଟାନିକା ତରଫରୁ କଲିକତାର ଷ୍ଟାଣ୍ଡାର୍ଡ଼ ଲିଟରେଚର କମ୍ପାନୀର ଜଣେ ଡିରେକ୍ଟର ବୋଷ ମୋତେ ଗୋଟିଏ ଅନୁରୋଧ କଲେ । ସେମାନେ ପୃଥିବୀର କେତେ ଜଣ

ବିଶିଷ୍ଟ ଲେଖକଙ୍କର ଜୀବନୀ ନୂତନ ଢଙ୍ଗରେ ଲେଖିବାକୁ ଯାଉଛନ୍ତି । ଗାନ୍ଧୀଙ୍କ ଉପରେ ଇଟାଲୀରେ ସେ ଦେଶର ଭାଷାରେ ଗୋଟିଏ ପୁସ୍ତକ ଲେଖାଯାଇଛି । ତାହାର ଇଂରାଜୀ ଅନୁବାଦ ହେଲା ଗାନ୍ଧୀଙ୍କ ସପକ୍ଷ ବିପକ୍ଷରେ ବହୁ ବିଶିଷ୍ଟ ଲୋକ ଯାହା'କହିଛନ୍ତି ସେସବୁର ବିସ୍ତୃତ କୋଟେଶନ ବା ଉଦ୍ଧାର ସବୁ ରହିଛି । କାଳେ ସେ ବହିରେ କିଛି ଆପତ୍ତିଜନକ ଲେଖା ରହିଯାଇଥିବ ବୋଲି ବିଚାରି ସେମାନେ ଇଚ୍ଛା କଲେ ଗାନ୍ଧୀ ଯୁଗର ଜଣେ କେହି ଲୋକ ସେଗୁଡ଼ିକୁ ଠିକଏ ଦେଖିଦିଅନ୍ତୁ । ମୋ ପାଖକୁ ଇଂରାଜୀ ଅନୁବାଦର ଟାଇପ କରା ପାଣ୍ଡୁଲିପି ଆସିଥିଲା । ସେଥିରେ ପ୍ରକୃତରେ କେତେଗୁଡ଼ିଏ ଗୁରୁତର ତ୍ରୁଟି ଥିଲା । ସଂଶୋଧନ କରିଦେଲି । ଏହିଭଳି କେତେ ସ୍ଥାନରେ କଅଣସବୁ ବାହାରି ପଡ଼ୁଥିବ । ମୋର କହିବାର କଥା ଯେ 'ଗାନ୍ଧୀ' ଆଉ ଅଟକିବ ନାହିଁ । ତାହା ଏଭଳି ଗୋଟିଏ ପ୍ରବାହ ଯେ—ଚାଲୁଥିବ ।

ମୋତେ ଯଦି କେହି ପଚାରିବ ମୁଁ କହିବି—ଦୁଇଗୋଟି ଶବ୍ଦ ସୂଚାଇଦେବି ଗାନ୍ଧିଜୀଙ୍କ ଲେଖାର ପ୍ରଭାବ ମୋ ଉପରେ କିଭଳି ପଡ଼ିଛି ବା ମୁଁ ସେହିସବୁ ଲେଖାର ସାରତତ୍ତ୍ୱ କିଭଳି ସଂଗ୍ରହ କରିଛି । ସେହି ଦୁଇଟି ଶବ୍ଦ ହେଲା—"ସବଳର ଅହିଂସା" "ଦାରିଦ୍ର୍ୟରେ ସୌନ୍ଦର୍ଯ୍ୟ" । ମାନବ ସମାଜକୁ ଗାନ୍ଧୀଙ୍କର ଦାନ ହେଉଛି 'ସବଳର ଅହିଂସା' । କେବଳ ଅହିଂସା କହିଦେଲେ ଚଳିବ ନାହିଁ । କାରଣ ଗାନ୍ଧିଜୀଙ୍କ ଭାଷାରେ କହିବାକୁ ଗଲେ ଅହିଂସା ଶବ୍ଦ ବା ଭାବନାଟି ଏତେ ପୁରୁଣା ଯେ ପାହାଡ଼ ପର୍ବତର ଆୟୁଷ ସହିତ ତାହାର ତୁଳନା କଲେ କିଛି ଭୁଲ୍ ହେବନାହିଁ । ହଜାର ହଜାର ବର୍ଷ ପୂର୍ବେ ଭାରତର ମୁନିଋଷି ମାନେ ଅହିଂସା ଶବ୍ଦର ପ୍ରୟୋଗ କଲେ । ଗାନ୍ଧୀ ହିଁ ପ୍ରଥମ ଥର ପାଇଁ କହିଲେ ଯେ ଅହିଂସା ଭିତରେ ଅପୂର୍ବ ଶକ୍ତି ଭରି ରହିଛି । ଯଦି ତାହା ସତ୍ୟ, ତେବେ ତାକୁ କାହିଁକି ଅସ୍ତ୍ରରୂପେ ବ୍ୟବହାର କରାନଯିବ । ସମାଜରୁ ଅନ୍ୟାୟ ଅତ୍ୟାଚାର ବିରୁଦ୍ଧରେ ଚାଲିଥିବା ସଂଗ୍ରାମରେ ଭାରତରେ ବିଦେଶୀ ଶାସନ ହେଉଛି ମାନବ ସମାଜ ଉପରେ ଅତ୍ୟାଚାର । ସେହି ଶାସନକୁ ଲୋପ କରିବା ପାଇଁ ଅହିଂସା କାହିଁକି ଗୋଟିଏ ଶକ୍ତିଶାଳୀ ଅସ୍ତ୍ର ନହେବ ? ଦକ୍ଷିଣ ଆଫ୍ରିକାରୁ ଆରମ୍ଭ କରି ଭାରତ ପର୍ଯ୍ୟନ୍ତ ବହୁ

କ୍ଷେତ୍ରରେ ସେ ସଂଗ୍ରାମ ଚଳାଇଲେ । ସାମାଜିକ, ରାଜନୈତିକ, ଧାର୍ମିକ ଅନ୍ୟାୟ ବିରୁଦ୍ଧରେ ଚାଲିଲା ଅହିଂସା ସଂଗ୍ରାମ । ଗୋଟାଏ ସ୍ତରରେ ସେ ନିଜ ଅନୁଭୂତିରୁ ଜାଣିଲେ ଯେ କେବଳ ଅହିଂସା ନୁହେଁ—'ସବଳର ଅହିଂସା' ହିଁ ହେଉଛି ପ୍ରକୃତ ଶକ୍ତିଶାଳୀ ଅସ୍ତ୍ର । ପ୍ରାଣ ଭୟରେ ଜଣେ ଦଉଡ଼ି ପଳାଉଛି । ପଳିବେଳେ କହୁଛି—ସେ ମୋତେ ମାରିବାକୁ ଆସୁଛି । ମୁଁ ଅହିଂସାରେ ବିଶ୍ୱାସୀ, ତେଣୁ ତାକୁ ମାରିବିନାହିଁ । ସେଇଥିପାଇଁ ପଳାଉଛି । ଗାନ୍ଧିଜୀ କହିଲେ—ଏଇଟା ଅହିଂସା ନୁହେଁ - ଏହାର ନାମ ଭୀରୁତା । ସେ ମୁଣ୍ଡଟେକି ସାହସର ସହିତ ଠିଆହୋଇ ରହିବ ଓ ଦୃଢ଼ତା ତଥା ବିନୟର ସହିତ କହିବ—"ତୁମେ ଯାହା କରୁଛ ତାହା ଅନ୍ୟାୟ । ତାହାର ବିରୋଧ ମୁଁ କଲରୁ ମୋତେ ମାରିଦେବ ବୋଲି କହୁଛ । ତାହା କରିପାର—କିନ୍ତୁ ମୁଁ ଯେଉଁଟାକୁ ଠିକ ବୋଲି ବିଶ୍ୱାସ କରୁଛି ତାହା କହିବି । ତୁମେ ମୋ ମୁଣ୍ଡରେ ଆଘାତ କରିପାର—ଧାର ଧାର ରକ୍ତ ବହି ଯାଉଥିଲା ବେଳେ ମଧ୍ୟ ମୁଁ କହୁଥିବି ଦୁଇରେ ଦୁଇ ମିଶିଲେ ଆଠ—ସାତ ପଏଣ୍ଟ ନଅ ପୁନଃପୌନିକ ବା ରେକରିଙ୍ଗ୍ ନୁହେଁ, ଆ.ଠ ପଏଣ୍ଟ, ଏକ ହଜାର ଶୂନ ଏକ ମଧ୍ୟ ନୁହେଁ । ସତ୍ୟହିଁ ସତ୍ୟ - ସେଠାରେ କୌଣସି ପ୍ରକାର ମିଳାମିଶା ବା ରଫାର ପ୍ରଶ୍ନ ଉଠୁନାହିଁ ।" ତାକୁ ହିଁ କୁହାଯିବ ସବଳର ଅହିଂସା । ସେଇକଥା ଗାନ୍ଧୀ କୁହିଥିଲେ ବୋଲି ବ୍ରିଟିଶ ସରକାରଙ୍କୁ କହିଦେଇ ପାରିଲେ—ତୁମ ଅନ୍ୟାୟ ଆଇନକୁ ଅମାନ୍ୟ କରି ମୁଁ ସମୁଦ୍ର କୂଳରୁ ମୁଠାଏ ଲୁଣ ସଂଗ୍ରହ କରିବି । ମୋତେ ତୁମେ ଜେଲ ଦେଇପାର, ମାରି ଦେଇପାର । ତୁମ ସାମ୍ରାଜ୍ୟର ସମସ୍ତ ଶକ୍ତି ମୋତେ ଡରାଇ ପାରିବ ନାହିଁ । ମୋ ହାତ ମୁଠାରେ ଲୁଣ ଥିବ । ତୁମେ ମୋ ହାତ ମୁଠାର ସବୁତକ ହାଡ଼କୁ ଭାଙ୍ଗିଦେଇ ପାରିବ ସିନା ଲୁଣ ଛଡ଼ାଇ ନେଇପାରିବ ନାହିଁ । ଭୀରୁର ଅହିଂସା, ଅସହାୟର ଅହିଂସା ଏବଂ ସବଳର ଅହିଂସା ଭିତରେ ଯେଉଁ ପାର୍ଥକ୍ୟ ଅଛି ତାକୁ ଗାନ୍ଧିଜୀ ଅତି ଚମତ୍କାର ଭାବରେ ସହସ୍ର ଉଦାହରଣ ଦେଇ ବୁଝାଇଛନ୍ତି । ଅହିଂସାରେ ବିଶ୍ୱାସୀ ବୋଲି ଭୀରୁ ଭାବରେ ପଳାଇବା ଅପେକ୍ଷା ଯିଏ ତୁମକୁ ଆକ୍ରମଣ କରୁଛି ତାକୁ ଆଘାତ କଲେ ମଧ୍ୟ ତୁମେ ହିଂସା ଆଚରଣ କଲ ବୋଲି କୁହାଯିବନାହିଁ । ମୂଷାକୁ ବିରାଡ଼ି ଧରି ପକାଇଲେ ନିଜର ଜୀବନ ରକ୍ଷା ପାଇଁ ସେ ତାକୁ ମରଣକାମୁଡ଼ା ଦେଲାବେଳେ ମୂଷା ହିଂସା

ଆଚରଣ କରୁଛୁ ବୋଲି କୁହାଯିବ ନାହିଁ । ବହୁ ବର୍ଷ ପର୍ଯ୍ୟନ୍ତ ମୁଁ ଧରି ନେଇଥିଲି ଯେ ନିରସ୍ତ୍ର ଭାରତବାସୀଙ୍କ ପାଇଁ ଗାନ୍ଧିଜୀ ଅହିଂସା କଥା କହି ଠିକ କରିଛନ୍ତି, ଆମେତ ପାରିବେ ନାହିଁ—ହିଂସା ଆଚରଣ ଦେଖାନ୍ତେ କାହିଁକି ? ଯଦି ଅହିଂସାକୁ ବ୍ରତ ବୋଲି ଗ୍ରହଣ କରିଗଲେ ତା' ସପକ୍ଷରେ ସମସ୍ତ ଯୁକ୍ତି ବାଡ଼ିବା । ଭାରତର ଯେଉଁ କଂଗ୍ରେସ ନେତାମାନେ ଅହିଂସାରେ ବିଶ୍ୱାସୀ ନଥିଲେ ସେମାନେ ମଧ୍ୟ ଏହାକୁ ଗ୍ରହଣ କରିଥିଲେ ଗୋଟାଏ କୌଶଳ ଭାବରେ । ନୀତି ଓ କୌଶଳ ଭିତରେ ପାର୍ଥକ୍ୟ ରହିଛି ନିଶ୍ଚୟ । ଗାନ୍ଧିଜୀ ସେଇଥିପାଇଁ 'ଗାନ୍ଧୀ ସେବା ସଂଘ' ବୋଲି ଗୋଟିଏ ଅନୁଷ୍ଠାନ ଗଢ଼ିଥିଲେ । ଯେଉଁମାନେ ଅହିଂସାକୁ ଜୀବନର ବ୍ରତ ବୋଲି ଗ୍ରହଣ କରି ନେଇଛନ୍ତି ଓ ନୀତି ବୋଲି ସ୍ୱୀକାର କରିଯାଇଛନ୍ତି ସେହିମାନେ ହିଁ ସେଥିର ସଭ୍ୟ ହେଉଥିଲେ । କଂଗ୍ରେସର ବହୁ ପ୍ରତିଷ୍ଠିତ ନେତା ଏଥିର ସଭ୍ୟ ହେବା ପାଇଁ ଇଚ୍ଛା କଲେନାହିଁ ।

କିନ୍ତୁ ବହୁ ବର୍ଷପରେ ବୁଝିଗଲି ଯେ ଅହିଂସା ପଛରେ "ନାସ୍ତି" ଭାବ ନାହିଁ—ଅଛି 'ଅସ୍ତି'ଭାବ । ସ୍ୱାଧୀନତା ସଂଗ୍ରାମ କଥା ବାଦ ଦିଆଯାଉ । ବ୍ୟକ୍ତିଗତ ଜୀବନରେ, ସାମାଜିକ ସ୍ତରରେ ମଧ୍ୟ ଏଭଳି ସମସ୍ୟା ଉପୁଜିଛି ଯାହାକୁ କି ହିଂସା ଦ୍ୱାରା ସମାଧାନ କରି ଦିଆଯାଇ ପାରିଥାଆନ୍ତା । କିନ୍ତୁ ସେଭଳି କରିବାଟା ଠିକ୍ ନୁହେଁ ବୋଲି ଧରିନେଲି । ଏହିକ୍ଷେତ୍ରରେ ଅହିଂସା ପଛରେ ଅସହାୟ ଭାବ ନଥିଲା । ଥିଲା ତା' ଭିତରେ ଥିବା ଅପୂର୍ବ ଶକ୍ତି ବିଷୟରେ ସଚେତନତା । ସବଳର ଅହିଂସା, ବୀରର ଅହିଂସା ନୀତିଟି ମୋ ମନଉପରେ ଗଭୀର ପ୍ରଭାବ ପ୍ରକାଇଛି—ଅନ୍ୟ ବହୁ ଲୋକଙ୍କ ମନଉପରେ ପକାଇଲା ଭଳି । ହିଂସା କରିବାର ସମସ୍ତ ସାମର୍ଥ୍ୟ ଥିଲେ ମଧ୍ୟ ଅହିଂସା ଆଚରଣ କରିବା ହେଉଛି "ସବଳର ଅହିଂସା" । ମୋର ବୟସ ଯେତେ ଅଧିକ ହେଉଛି, ଅଭିଜ୍ଞତା ଯେତିକି ବଢୁଛି—ସେହି ତୁଳନାରେ ବିଶ୍ୱାସ ଅଧିକରୁ ଅଧିକ ଦୃଢ଼ ହୋଇ ଯାଉଛି ଯେ ମହାତ୍ମା ଗାନ୍ଧୀଙ୍କର ଯଦି ମାନବ ସମାଜ, ଆଧୁନିକ ସଭ୍ୟତା ପାଇଁ କିଛି ମହତ୍ତ୍ୱପୂର୍ଣ୍ଣ ଦାନ ରହିଛି ତାହା ହେଉଛି ଏହି ସବଳର ଅହିଂସା—Nonviolence of the strong । ସମୟେ ସମୟେ ବିଶ୍ବରେ କାଳ ଯେତିକି ଆଗେଇ ଯାଉଥିବ ଗାନ୍ଧିଜୀଙ୍କର ଏହି ଦାନ

ବା ବଗ୍ଭରର ମହତ୍ତ୍ୱ ଅଧିକରୁ ଅଧିକ ପ୍ରଭାବ ପକାଉଥିବ । ଆଜିର ମନୁଷ୍ୟ ସଭ୍ୟ ହୋଇଛନ୍ତି ସତ—କିନ୍ତୁ ଯେତିକି ସଭ୍ୟହେଲେ ଗାନ୍ଧୀଙ୍କ ଏହି ନୀତିର ପ୍ରକୃତ ମହତ୍ତ୍ୱ ବୁଝିବ ସେତିକି ସଭ୍ୟ ହୋଇନାହିଁ । ଉପରକୁ ଜଣା ପଡ଼ୁଛି ମନୁଷ୍ୟର ଯେପରିକି ଅଧୋଗତି ହେଉଛି—ତା' ନହେଲେ ସେ ଭୟାବହ ପରମାଣୁ ଅସ୍ତ୍ରର ଉତ୍ପାଦନ ବଢ଼ାଇ ଚାଲିଥାଆନ୍ତା କାହିଁକି ? କିନ୍ତୁ ଗୋଟାଏ କିଛି ଅଦୃଶ୍ୟ ଶକ୍ତି ଏଭଳି ପ୍ରଭାବ ପକାଉଛି ଯେ ମଣିଷ ସଂଯମ ଆଚରଣ କରିବାକୁ ବାଧ୍ୟ ହେଉଛି ।

ଦ୍ୱିତୀୟ ଦୁଇଟି ଶବ୍ଦ ହେଲା "ଦାରିଦ୍ର୍ୟ ଭିତରେ ସୌନ୍ଦର୍ଯ୍ୟ ।" ଏଭଳି ଦେଖିବା କଳ୍ପନା ହେଉଛି ଗାନ୍ଧିଜୀଙ୍କର ମଣିଷ ସମାଜକୁ ଗୋଟିଏ ଅତି ମହତ୍ତ୍ୱପୂର୍ଣ୍ଣ ଦାନ । ସେ ଯେ ଗୋଟିଏ ସଂପୂର୍ଣ୍ଣ ନୂଆ କଥା କହିଲେ ଏଭଳି ଧାରଣା ସୃଷ୍ଟି କରିବା ମୋର ଉଦ୍ଦେଶ୍ୟ ନୁହେଁ—ସରଳ ଜୀବନ ଯାପନ କରିବା ଓ ଉଚ୍ଚ ବା ମହତ୍‌ଚିନ୍ତା କରିବା ଭଳି କଥ ବହୁ ମନୀଷୀ କହିଯାଇଛନ୍ତି । ପ୍ଲେନ୍‌ଲିଭିଙ୍ଗ୍ ହାଇଥିଙ୍କିଙ୍ଗ୍ (Plain living High thinking) ଉପରେ ବହୁତ କିଛି ଆଲୋଚନା ହୋଇଯାଇଛି । କିନ୍ତୁ ଗାନ୍ଧିଜୀ ତାହା ଦେହରେ ଅତି ସରଳ ଭାବରେ ଗୋଟିଏ ନୂତନ ଦିଗନ୍ତ ବା ଡାଇମେନ୍‌ସନ୍ ଯୋଗ କରିଦେଲେ । ଯେଉଁମାନେ ବିଶ୍ୱାସ କରୁଛନ୍ତି ଯେ ଅନ୍ୟ କାରଣ ଥାଉ ବା ନଥାଉ ଜଣେ କେବଳ ମନୁଷ୍ୟ ଜନ୍ମ ପାଇଥିବାରୁ ତାହାର କର୍ତ୍ତବ୍ୟ ବା ନୈତିକ ଦାୟିତ୍ୱ ହେଲା ନିଜ ପାଇଁ ନିଜର ପରିବାର ପାଇଁ ବହୁତ ସମୟ ଦେଲାପରେ ମଧ୍ୟ ଅନ୍ୟପାଇଁ କିଛି ସମୟ ଦେବାକୁ ହେବ—ଅର୍ଥାତ୍ ପରର ମଙ୍ଗଳ ପାଇଁ କିଛି କରିବାକୁ ପଡ଼ିବ । ସେମାନେ କିଛି ତ୍ୟାଗ କରିବା ପାଇଁ ପ୍ରସ୍ତୁତ ହେବେ । ଯେଉଁମାନେ 'ସାଧାରଣ ଜୀବନ କଟାଇବା ପାଇଁ ମନସ୍ଥିର କରିଦେବେ ଅର୍ଥାତ୍ ନିଜ ପାଇଁ ଅଳ୍ପ ସମୟ ଦେଇ ପରର ଉପକାର ପାଇଁ, ମଙ୍ଗଳ ପାଇଁ ଅଧିକ ସମୟ ଦେବେ ସେମାନଙ୍କୁ କୁହାଯିବ ସାଧାରଣ କର୍ମୀ ବା ପବ୍ଲିକ୍ ଓ୍ୱାର୍କର । ଗାନ୍ଧୀ ଆନ୍ଦୋଳନ ଫଳରେ ବହୁ ସଂଖ୍ୟକ ଲୋକ ସାଧାରଣ କ୍ଷେତ୍ରରେ କାମ କରିବାକୁ ବାହାରିପଡ଼ିଲେ । ଯେଉଁମାନେ ବହୁତ ଟଙ୍କା ରୋଜଗାର କରୁଥିଲେ ସେମାନେ ନିଜର ବୃତ୍ତି ଛାଡ଼ିଦେଇ ସରଳ ଜୀବନ କଟାଇବା ପାଇଁ ଦୁଃଖ କଷ୍ଟ ସହିବାପାଇଁ ବାହାରିଆସିଲେ । ଓକିଲ

ଜଣେ ମାସକୁ ସେ କାଳରେ ପଚଶ ତିରଶ ହଜାର ରୋଜଗାର କରୁଥିଲେ ହଠାତ୍ ନିଷ୍ପତ୍ତି ନେଲେ ଓକିଲାତି ଛାଡ଼ି ଦେବାପାଇଁ । ଜଣେ ଅଧ୍ୟାପକ ଚାକିରି ଛାଡ଼ିଦେଲେ । ଜଣେ ବଡ଼ ବ୍ୟବସାୟୀ ନିଜର ବ୍ୟବସାୟ କମାଇ ଦେଇ ଏଣେ ମାତିଗଲେ । କଲେଜ ଛାତ୍ର ଆଉ ବର୍ଷକରେ ବିଏ ପାଶ୍ କରି ବା ଡାକ୍ତରୀ ପାଶ୍ କରି କୌଣସି ଗୋଟାଏ ସରକାରୀ ଚାକିରିରେ ପଶି ଯାଇଥାଆନ୍ତେ । ସେ ଖଣ୍ଡେ ଜାତୀୟ ପତାକା ଧରି ରାସ୍ତାରେ ବୁଲିଲେଣି । ଏହିମାନଙ୍କ ପରିବାରର ଲୋକେ ଗୋଟାଏ ସ୍ତରରେ ରହି ଭଲରେ ଚଳୁଥିଲେ—ସେମାନେ ଅନିଶ୍ଚିତତା ଭିତରକୁ ଠେଲି ହୋଇଗଲେ । ସମସ୍ତଙ୍କ ପକ୍ଷରେ ଦାରିଦ୍ର୍ୟ ଭିତରେ ଅନେକ କାଳ ରହିବା ସହଜନୁହେଁ । 'ଦେଶ ପାଇଁ ଦାରିଦ୍ର୍ୟ ବରଣ କରିବାରେ ଗୌରବ ଅଛି'—ଏଭଳି କଥାଟିଏ କହିଦେବା ସହଜ, କିନ୍ତୁ ତାକୁ ଅନ୍ୟର ଅସ୍ଥିମଜ୍ଜାଗତ କରାଇବା ସେତେ ସହଜନୁହେଁ । ଏହି ସବୁ କଥାକୁ ଦୃଷ୍ଟିରେରଖି ସାଧାରଣ କ୍ଷେତ୍ରକୁ ଆସି ସେବାକାର୍ଯ୍ୟ କରିବା ଓ ସେଥିପାଇଁ ଦାରିଦ୍ର୍ୟ ବରଣକରିବା ପ୍ରଶ୍ନ ଉପରେ ମହାତ୍ମାଜୀ ବରାବର ଆଲୋଚନା ଚଳାଇଲେ । ସମୟେ ସମୟେ ପ୍ରତ୍ୟକ୍ଷ ଭାବରେ ଏବଂ ବହୁ କ୍ଷେତ୍ରରେ ପରୋକ୍ଷ ଭାବରେ ସେ ସେହି ପ୍ରଶ୍ନ ଉଠାନ୍ତି । ଗୋଟିଏ ବିଷୟ କହିଲି କେବଳେ ତାଙ୍କ ମନରେ ଭଲେ ହେଲେ କିନ୍ତୁ କମ୍ପା ନଥାଏ । ଦାରିଦ୍ର୍ୟ ଯଦି ତୁମ ଉପରେ ଆସି ଚାପି ହୋଇଯିବ ତୁମ ଇଚ୍ଛା ବିରୁଦ୍ଧରେ—ତମର ନିଶ୍ଚୟ ଧାରଣା ହେବ ଯେ ଅତ୍ୟାଚାର କରାଯାଉଛି । ଅନ୍ୟ ଭାବରେ କହିବାକୁ ଗଲେ ଜଣକର ଇଚ୍ଛା ଧନ ଅର୍ଜନ କରିବା ପାଇଁ କିନ୍ତୁ କରି ପାରୁନାହିଁ । ମନଟା ଭିତରେ ଅଶାନ୍ତ ଖେଳୁଛି । ସେହି ଅବସ୍ଥାଟିକୁ ସୁଧାରିବା ପାଇଁ ସେ ସମସ୍ତ ସମୟ ଓ ଶକ୍ତି ଲଗାଉଛି । କିନ୍ତୁ ଆଉଜଣେ ଗୋଟାଏ ମହତ ଉଦ୍ଦେଶ୍ୟ ସାଧନ କରିବାକୁ ଯାଉଥିବାରୁ ଦାରିଦ୍ର୍ୟ ବରଣ କରିଛି—ଦାରିଦ୍ର୍ୟ ତା' ଉପରେ ତା'ଇଚ୍ଛା ବିରୋଧରେ ସବାର ହୋଇ ଯାଇ ନାହିଁ । ତେଣୁ ତାକୁ କଷ୍ଟ ଖରାପ ଲାଗୁନାହିଁ । ସେ ଜାଣୁଛି ଇଚ୍ଛାକଲେ ଅଧିକ ଧନ ଅର୍ଜନ କରିପାରିବ—ତେଣୁ ତାକୁ କେହି ଜଣେ ନପାରିବା ଲୋକ ବୋଲି କହିବେନାହିଁ । ଜଣେ ଏହି ଅବସ୍ଥାଟିକୁ ଗ୍ରହଣ କରିଗଲେ ଗାନ୍ଧିଜୀଙ୍କର ସନ୍ତୋଷ ଯେ ସେ ଦେଶ ପାଇଁ ଭଲକାମ ପାଇଁ ତ୍ୟାଗ କରୁଛି । ତେଣୁ ସେ ପ୍ରଶଂସା ପାଇବା ଯୋଗ୍ୟ । ଯିଏ ନିଜର ମନକୁ ଏହି ସ୍ତରକୁ ନେଇ

ଆସିଲା ତାହା ପାଇଁ ଗାନ୍ଧିଜୀଙ୍କର ଉପଦେଶ ହେଲା—ଦାରିଦ୍ର୍ୟକୁ ବରଣ କରିଯିବାରେ ସନ୍ତୁଷ୍ଟ ରହନାହିଁ । ତାହାଭିତରେ ସୌନ୍ଦର୍ଯ୍ୟ ଦେଖିବାକୁ ଚେଷ୍ଟାକର । ସ୍ୱେଚ୍ଛାରେ ଦାରିଦ୍ର୍ୟ ବରଣ କରିଥିବା ଲୋକର ସମ୍ମାନ ଅନ୍ୟ ମାନଙ୍କ ପାଖରେ ଅଛି—ଏହିକଥା ବରାବର ମନରେ ରଖ । କୌଣସି ପରିସ୍ଥିତିରେ ଏହି ଶ୍ରେଣୀର ଜଣେ ଦରିଦ୍ର ଲୋକ ଧନୀଲୋକ ଆଗରେ ଟିକିଏ ସୁଦ୍ଧା ମୁଣ୍ଡନୁଆଁଇ ଠିଆ ହେଉନାହିଁ । ତାହାର ଏହି ଆଚରଣ ଧନୀ ଲୋକକୁ ବାଧ କରୁଛି ସ୍ୱୀକାର କରିବା ପାଇଁ ଯେ ଏହି ଲୋକ ମୋ ଠାରୁ ନିଶ୍ଚୟ ଉଚ୍ଚସ୍ତରରେ ଅଛି ।' ଯେତେବେଳେ ବାୟୁ ମଣ୍ଡଳ ଏହିଭଳି ଅନୁକୂଳ ହୋଇ ଯାଉଛି ସେତେବେଳେ ସ୍ୱଇଚ୍ଛାରେ ଦାରିଦ୍ର୍ୟ ବରଣ କରିଥିବା ଲୋକ ସ୍ୱେଚ୍ଛାକୃତ ଦାରିଦ୍ର୍ୟ ଭିତରେ ଗୋଟାଏ ନୂତନ ପ୍ରକାରର ସୌନ୍ଦର୍ଯ୍ୟ ଦେଖିବାକୁ ଆରମ୍ଭ କରୁଛି । ସେହିପ୍ରକ୍ରିୟା ଯେତେବେଳେ ଆଗେଇଯାଉଛି ସେତେବେଳେ ସେ ଅନୁଭବ କରୁଛି 'ମୁଁ ପ୍ରକୃତ ଅର୍ଥରେ ଧନୀ' — ଅନ୍ୟ ଜଣେ ଗୁଡ଼ାଏ ଧନସଂଚୁଛି ସିନା— ସେ 'ବିଚରା'କୁ ଦୟାକରିବାର କଥା । (That poor man with some money) ଭଳି କଥାଟିଏ ।

ଗାନ୍ଧିଜୀଙ୍କର ଏହି ଉପଦେଶ ଦ୍ୱାରା ମୁଁ ବହୁତ କଛି ଉପକୃତ ହୋଇଛି ଓ ନିଜକୁ ନିଜେ ଶିକ୍ଷା ଦେବା ପଥରେ ଆଗେଇ ଯିବାର ସୁଯୋଗ ପାଇଛି । ଗୋଟିଏ ମାତ୍ର ଟଙ୍କା ପାଖରେ ରଖି ଯେତେବେଳେ ଗୋଟାଏ ଏନ୍‌ସାଇକ୍ଲୋପିଡିଆର କଳ୍ପନା କଲି ସେତେବେଳେ ଜାଣିଶୁଣି— ଯାହାକୁ କୁହନ୍ତି ସ୍ଥିର ବୁଦ୍ଧି ବଳରେ ତ ଦାରିଦ୍ର୍ୟ ଭିତରକୁ ନିଜକୁ ଠେଲି ନେଇଗଲି । କିଛିଦିନ ଆଗେଇ ଗଲାପରେ ମୋ ପାଖରେ ପଇସା ନ ଥିଲା ଦି' ଓଳି ଦି' ବଖତ ଖାଇବା ପାଇଁ । ଗୋଟିଏ ବଖତ ହୋଟେଲରେ ଖାଏ ଆଉକର ମୂଲ୍ୟରେ ୭୨ ପଇସା ଦେଇ— ରାତିରେ ବାର ପଇସାରେ ଯେତିକ ମୁଡ଼ି ଉଖୁଡ଼ା ହେଲା ସେତିକେ ଖାଇ ଚଳଯାଏ । ଏଭଳି ଯେ କେତେଦିନ କେତେମାସ କରିଛି ନୁହେଁ — ଦୀର୍ଘ ସ୍ତୃରବର୍ଷ ସେମିତି କଟାଇଛି । ଅବଶ୍ୟ ମୁଁ ଏମିତି ଚଳୁଛି ବୋଲି ଆମ ଘରେ ବା ବନ୍ଧୁ ବାନ୍ଧବମାନଙ୍କ ଭିତରୁ କେହି ଜାଣିପାରୁ ନ ଥାନ୍ତି । ସେହି ପରିସ୍ଥିତିରେ ମଧ୍ୟ ମୋ ମନଭିତରେ କେବେହେଲେ ପ୍ରଶ୍ନ ଉଠିନାହିଁ ଯେ ମୁଁ ଦରିଦ୍ର—

ଦୁଃଖକଷ୍ଟରେ ଚଳୁଛୁ । ବାହାରେ ହସ ଆନନ୍ଦ ଥଟ୍ଟା, ମଜାର ଗପ ମୁଦ୍ଦ ଭଲ ଚାଲୁଥାଏ । ସେତିକବେଳେ ମୋ ଭିତରୁ ସତେ ଯେପରିକି କେହି ଚେତାଇ ଦେଉଥାଏ 'ମହାତ୍ମାଙ୍କ ଉପଦେଶ ମନେରଖିଥା' । ଦାରିଦ୍ର୍ୟ ଭିତରେ ସୌନ୍ଦର୍ଯ୍ୟ ଦେଖିବାର ପ୍ରତ୍ୟକ୍ଷ ଅନୁଭୂତି ସେତିକ ବେଳେ ହିଁ ହେଲା ।

କେବଳ ସେତିକି ନୁହେଁ—ଗୁଡ଼ିଏ ଖବର କାଗଜ ପତ୍ରପତ୍ରିକା ବନ୍ଦ କଣାହେବ, ସାଦା ଲେଖାକାଗଜ ଦରକାର । ଯେଉଁମାନେ ମୋ ପାଖକୁ ଆସୁଛନ୍ତି ସେମାନଙ୍କୁ ଗୁହା—ସମୟେ ସମୟେ ଜଳଖିଆ ବା ସିଗାରେଟ୍ ଦେବାକୁ ହେବ । ପଇସାର ଉତ୍କଟ ଅଭାବ । କାହାକୁ ମାଗିବି ନାହିଁ—ଏଇ ଭଲକାମ କରୁଛି, ମୋତେ ସାହାଯ୍ୟ କର ବୋଲି ପର ପାଖରେ ହାତ ପତାଇବି ନାହିଁ । କରଜ କରି କାମ ଚଳାଇ ଯିବାକୁ ପଡ଼ିବ । କରଜ ଦେବ କିଏ ? ଯାହାର ସମ୍ବଳ ନାହିଁ ତାକୁ ଆମ ସମାଜ କରଜ ଦିଏ ନାହିଁ । ଦିନେ ମନର କଥା ବୃନ୍ଦାବନ ବଡ଼ାଖି ପାଲିତଙ୍କୁ କହିଲି । ତାଙ୍କର ଘରେ ତ ମୁଁ ଆଶ୍ରୟ ନେଇଥାଏ ଓ କାମ କରୁଥାଏ । ସେ ଜଣେ ସଚ୍ଚା ଜାତୀୟ ବାଦୀ । ସୁଭାଷ ବୋଷଙ୍କ ସହପାଠୀ କଟକର କଲେଜିଏଟ୍ ସ୍କୁଲରେ । ମୋତେ ସାନଭାଇ ଭଳି ଭଲ ପାଆନ୍ତି । କାବୁଲି ଓ୍ୟାଲାଠାରୁ କିଛି ଟଙ୍କା କରାଇ ଦିଅନ୍ତୁ ବୋଲି ତାଙ୍କୁ ଅନୁରୋଧ କଲି । ସେ କିଛିକ୍ଷଣ ପର୍ଯ୍ୟନ୍ତ ଚୁପ୍ ରହିଲେ । ଲୋକେ ଯିନା ବିପଦରେ ପଡ଼ିଥିଲେ ଝିଅ ବାହାଘର କରିବାକୁ ଥିଲେ ବା ଗୋଟାଏ ଲାଭଜନକ ବ୍ୟବସାୟରେ ଖଟାଇବାକୁ ଇଚ୍ଛାକରୁଥିଲେ କାବୁଲିଠାରୁ ଋଣ କରନ୍ତି—ସାହିତ୍ୟ ସେବା ପାଇଁ ଏତେ ସୁଧରେ ଋଣ କାହିଁକି କରିବ ? ତଥାପି ଋଣ କଲି— ସେ କରାଇ ଦେଲେ । ତାଙ୍କ ମଧ୍ୟସ୍ଥିତା ଫଳରେ ଏତିକି ଲାଭ ହେଲା ଯେ 150% (ଶତକଡ଼ା ଶହେ ପଚାଶ) ସୁଧ ବଦଳରେ ମୋତେ ଦେବାକୁ ପଡ଼ିଲା 120%—ଶତକଡ଼ା ଶହେ କୋଡ଼ିଏ ଟଙ୍କା ସୁଧ । ବରାବର ଟଙ୍କା ଆଠଣି—ସୁଧ ଦିଏ । ମୋର କେତେଜଣ ଧନୀ ଆତ୍ମୀୟ ଓ ସ୍ୱାଧୀନତା ସଂଗ୍ରାମର ସହଯାତ୍ରୀ ଶତକଡ଼ା ଷାଠିଏ ଟଙ୍କା ସୁଧରେ ମଝିରେ ମଝିରେ ଟଙ୍କା ଦିଅନ୍ତି । ଏହା ସତ୍ତ୍ୱେ ମୋ ମୁଣ୍ଡ ଠିକ୍ ରଖିଥାଏ । ଗୋଟାଏ ଭଲ କାମ କରିବ କୁହାଉଛି—ଦିନେ ସଫଳତା ମିଳିବ ବୋଲି ଭରସା

ରଖିଥାଏ । ଦାରିଦ୍ର୍ୟ ଭିତରେ ସେହି ସମ୍ପ୍ରତିରେହିଁ ପ୍ରକୃତ ସୌନ୍ଦର୍ଯ୍ୟ ଦେଖିଛି । ସେଭଳି ଦେଖି ପାରି ନଥିଲେ ଆରମ୍ଭ କରିବାର କେତେବର୍ଷ ପରେ ମୋର ସାହିତ୍ୟ ଜୀବନର ଅନ୍ତ ହୋଇଯାଇଥାଆନ୍ତା । ୧୯୮୭ରେ ମଧ୍ୟ ମୋର କରଜ ପରିମାଣ ହେଉଛି ପଚିଶ ହଜାର ଟଙ୍କା—ଅବଶ୍ୟ ସେତକ ସୁଝିଦେବା ଭଳି ଜ୍ଞାନମଣ୍ଡଳ ବହି ମୋ ପାଖରେ ରହିଛି ।

ମୋ ସାଙ୍ଗରେ ଯେଉଁମାନେ ପଢ଼ା ଛାଡ଼ିଥିଲେ ସେମାନଙ୍କ ଭିତରୁ ଅନେକେ ଅଧାରୁ ଦେଶକାମ ଛାଡ଼ିଦେଲେ କାରଣ ଦରିଦ୍ର ହୋଇ ରହିଲେ ମଧ୍ୟ କ୍ଷତିନାହିଁ—ଏହି କଥାଟାକୁ ସେମାନେ ଗ୍ରହଣ କରି ପାରିଲେ ନାହିଁ । ଆଜି କେତେଜଣ ସୁଯୋଗ ପାଇଲମାତ୍ରେ ଧନ ଠୁଳ କଲେ । ଶାସନ କ୍ଷମତା ସହିତ ପ୍ରତ୍ୟକ୍ଷ ବା ପରୋକ୍ଷରେ ସମ୍ପୃକ୍ତ ହୋଇଯିବା ଫଳରେ ଧନ ଏକାଠି କରିବାର ଅପୂର୍ବ ସୁଯୋଗ ସେମାନେ ପାଇଗଲେ । ସେମାନଙ୍କ ପ୍ରତି ମୋର କେବେହେଲେ ଈର୍ଷା ହୋଇନାହିଁ । ସେମିତି ଯେ ହୋଇନାହିଁ ତାହାର ଏକମାତ୍ର କାରଣ ହେଲା ଗାନ୍ଧିଜୀଙ୍କ ଦାରିଦ୍ର୍ୟ ସଂପର୍କୀୟ ବାଣୀର ମହତ୍ତ୍ୱ ମୋ ମନ ଉପରେ ଗଭୀର ପ୍ରଭାବ ପକାଇଛି ।

ମହାତ୍ମା ଗାନ୍ଧୀଙ୍କ ସତ୍ୟର ପ୍ରୟୋଗ (Experiment with Truth) ପଢ଼ିଥିଲି ବହୁବର୍ଷ ପୂର୍ବେ । ସେତ ସେହି ଖଣ୍ଡିକ ଲେଖିଦେଲା ପରେ କହିଦେଲେ—ଏଣିକି ମୋ ଜୀବନଟି ହେଉଛି ଗୋଟିଏ ଖୋଲା ପୋଥି । ମୁଁ ଯାହା କରୁଛି ସମସ୍ତେ ଅତି ନିକଟରୁ ଦେଖୁଛନ୍ତି—ତେଣୁ ଆଉ ଆତ୍ମଜୀବନୀ ଲେଖିବାର ଆବଶ୍ୟକତା ନାହିଁ । ଟେଣ୍ଡୁଲକର କିନ୍ତୁ ଯେଉଁ ଆଠ ଭଲ୍ୟୁମ୍‌ର ଜୀବନୀ ଲେଖିଦେଲେ, ତାହା ହୋଇଗଲା ତଥ୍ୟପୂର୍ଣ୍ଣ । ବହୁ ଲୋକଙ୍କ ଭଳି ସେହି ସେଟ୍‌ଟି ଭଲଭାବରେ ପଢ଼ିଲା ପରେ ୧୯୩୦ ପର୍ଯ୍ୟନ୍ତ ତାଙ୍କ ଜୀବନ ବିଷୟରେ ଜାଣିଗଲି । ତାହାପରେତ ନିଜେ ତାଙ୍କୁ ଲକ୍ଷ୍ୟକରିଛି । ରାଜେନ୍ଦ୍ର ବାବୁ, ସର୍ଦ୍ଦାର ପଟେଲ୍, ପଣ୍ଡିତ ନେହରୁ ଇତ୍ୟାଦିଙ୍କର ଲେଖା ପଢ଼ିଥିବାରୁ ବହୁକଥା ଜାଣିହୋଇ ଯାଉଥାଏ ମହାତ୍ମାଜୀଙ୍କ ବିଷୟରେ । ଲୁଇ ଫିସରଙ୍କ ବହିଟି ପଢ଼ିଲି । ଶହ ଶହ ଲେଖା ସଂଗ୍ରହକରି ପଢ଼ି ସାଇତି ରଖିଦେଇଛି । ଗୋଟିଏ କଥା ଲକ୍ଷ୍ୟ କରିଛି—ଜଣେ ଲୋକ ସମଗ୍ର ଜାତିଟାକୁ

ଉଠାଇବାକୁ କେତେ ଚିନ୍ତା ନକରିଛି ! ସେ ଭାରତକୁ ପୃଥିବୀର ଗୋଟିଏ ଅଙ୍ଗ ବୋଲି ବିଚାରି ଆସିଥିବାରୁ ତାଙ୍କ 'ଦେଶପ୍ରେମ' 'ମାନବ-ଜାତି-ପ୍ରେମ'ର ରୂପ ନେଇପାରିଛି । ଜଣେ ଭାରତୀୟ ତାଙ୍କ ଲେଖା ଗୁଡ଼ିକୁ ପଢ଼ିଲେ—ତା' ମନରୁ ହୀନମନ୍ୟତା ଦୂର ହୋଇଯିବ । ଥରେ ସେଭଳି ହୋଇପାଇ ପାରିଲେ ବହୁତ କିଛି ଭଲ ବଡ଼ କାମ କରିବାପାଇଁ ତାକୁ ବାଟ ଦେଖାଯିବ । ମୋର ଭିତରେ ହେଲେ ଅହଂଭାବ ନାହିଁ ଯେ ମୁଁ ଗୋଟାଏ କିଛି ବଡ଼ କାମ କରୁଛି—କିନ୍ତୁ ଯେତିକି କରୁଛି ସେତିକି ପାଇଁ ଯେ ସାହସ ବାନ୍ଧିଲି ତାହା କେବଳ ଗାନ୍ଧୀଜୀଙ୍କୁ ଲକ୍ଷ୍ୟ କରି, ତାଙ୍କ ଉପଦେଶ ମାନି ଗାଁ ଗହଳରେ କାମକରି ଓ ତାଙ୍କ ଲେଖା ପଢ଼ିବା ଫଳରେହିଁ ସମ୍ଭବ ହେଲା । ଅହଂଭାବ ଶୂନ୍ୟ ହୋଇ; ନିଜ ଶକ୍ତି ଉପରେ ବିଶ୍ୱାସ ରଖି ଜଣେ ଯଦି ଗୋଟାଏ ଭଲ କାମ କରିଯିବ, ସେ କିଛିଦୂରକୁ ସଫଳତା ନିଶ୍ଚୟ ହାସଲ କରିପାରିବ—ଏହି ବିଶ୍ୱାସ ମୋ ଭିତରେ ଗାନ୍ଧୀ ସାହିତ୍ୟହିଁ ଜନ୍ମାଇ ଦେଇପାରିଛି ।

ଗୋଟିଏ ସ୍ଥିର ସିଦ୍ଧାନ୍ତରେ ପହଞ୍ଚିଛି । ସେଭଳି ପହଞ୍ଚିବାକୁ ମୋତେ ସାହାଯ୍ୟ ମିଳିଛି ମୋର ପଚସ୍ତରି ବର୍ଷର ବୟସ, ସତାବନ ବର୍ଷର ସାଧାରଣ ଜୀବନ, ପଇଁତିରିଶ ବର୍ଷର ସବୁ ସମୟ ଦେଇ ପଢ଼ାଲେଖା ଓ ମୋ କାମ ସଂପର୍କରେ ବହୁ ବିଶିଷ୍ଟ ଲୋକଙ୍କ ସୁଚିନ୍ତିତ ପରାମର୍ଶରୁ । ପୃଥିବୀର ଯେ କୌଣସି ଭାଷାଭାଷୀ ଅଂଚଳ ବିଷୟରେ ଯାହା କୁହା-ଯାଇପାରେ ଓଡ଼ିଶା ବିଷୟରେ ମଧ୍ୟ ସେଇଆ କୁହାଯିବ । ଜଣେ ମନୁଷ୍ୟ ଜନ୍ମ ପାଇଛି—ସେ ମଣିଷଭାବରେ ବଞ୍ଚିରହିବାକୁ ହେଲେ ଅତି କମ୍‌ରେ କିଛି ଜାଣିବ । ସେଭଳି ଜାଣିବାକୁ ହେଲେ ସେ ଟିକିଏ ପାଠ ପଢ଼ିବ । ମନର ବିଳାସ ମେଣ୍ଟାଇବାପାଇଁ ନୁହେଁ—ବଞ୍ଚିରହିବା ପାଇଁ ମଧ୍ୟ ପଢ଼ିବାର ଜାଣିବାର ଆବଶ୍ୟକତା ସଂପର୍କରେ ସମସ୍ତେ ଯେତେବେଳେ ଏକମତ ହୋଇଗଲେଣି ସେଥିପାଇଁ ଶିକ୍ଷାର ପ୍ରସାର ଯେ ଅତି ଜରୁରୀ ହୋଇ ଉଠିଲାଣି, ଏ ବିଷୟରେ ଆଉ ଯୁକ୍ତିତର୍କର କୌଣସି କାରଣ ନାହିଁ ବୋଲି ସ୍ୱୀକାର କରି ନିଆଗଲାଣି ।

ଯଦି ଲକ୍ଷ ଲକ୍ଷ ବା କୋଟି କୋଟି ଲୋକଙ୍କୁ ଶିକ୍ଷା ଦିଆଯିବ ତେବେ ତାହା ସମ୍ଭବ ହେବ କେବଳ ମାତୃଭାଷା ମାଧ୍ୟମରେ । ଯେଉଁମାନେ ଏବେ ମଧ୍ୟ କହୁଛନ୍ତି ଯେ ଇଂରାଜୀ ଭାଷା ମାଧ୍ୟମରେ ଭାରତରେ ଶିକ୍ଷା ପ୍ରସାର

ଭଲଭାବରେ, କଣହେବ "ଫଳପ୍ରଦ ଭାବରେ ସେମାନେ ଶହକେ ଦଶ ଜଣଙ୍କୁ ବା ଖୁବ୍ ବେଶୀହେଲେ ପନ୍ଦର ଜଣଙ୍କୁ ଆଖି ଆଗରେ ରଖିଛନ୍ତି । ଆମେ ଭାବୁଛୁ ସବୁ ବୟସର ଲକ୍ଷ ଲକ୍ଷ ଲୋକଙ୍କ କଥା । ଏଇଠି ଏ ବିଷୟର ଉଲ୍ଲେଖ ମଧ୍ୟ କରାଯାଇପାରେ ଯେ ପୃଥିବୀରେ କୌଣସି ଦେଶରେ ଯାହା ସମ୍ଭବ ହୋଇନାହିଁ ତାହା ସମ୍ଭବ ହୋଇଯିବ ଆମର ଏହି ଦେଶରେ । ଇଉରୋପ, ଏସିଆ, ଆମେରିକା ଯେ କୌଣସି ମହାଦେଶକୁ ଗଲେ ଆମେତ ଦେଖିବା ଯେ ସେହି ଦେଶର ଲୋକେ ଯେଉଁ ଭାଷାରେ ଭାବର ଆଦାନ ପ୍ରଦାନ କରୁଛନ୍ତି ସେହି ଭାଷାରେହିଁ ପାଠ ପଢ଼ୁଛନ୍ତି । ପାଠ ହେଉଛି ମଗଜ ଭିତରେ ଗୋଟାଏ ବିଷୟକୁ ଖେଳାଇବା ପ୍ରକ୍ରିୟା । ସେହି ପ୍ରକ୍ରିୟାଟି ମାତୃଭାଷା ମାଧ୍ୟମରେହିଁ ଫଳପ୍ରଦ ଭାବରେ କାମ କରେ । ଅନ୍ୟ ଭାଷାଟି ଯେତେ ଉନ୍ନତ ହେଲେ ମଧ୍ୟ ତାହା ମାଧ୍ୟମରେ ଅନେକ କଥାକୁ ମୁଣ୍ଡ ଭିତରେ ଲଗାଇ ଦେଇ ହେବନାହିଁ । ଏହା ସାଙ୍ଗକୁ ଅନ୍ୟ ପ୍ରଶ୍ନଟିଏ ରହିଛି । ଭାଷା ହେଉଛି ସଂସ୍କୃତିର ଦର୍ପଣ । ସଂସ୍କୃତିର ମରମ କଥା ଅସଲ କଥାକୁ ନିଜ ମାତୃଭାଷା ମାଧ୍ୟମରେ ଯେମିତି ଧରିରଖି ହେବ ଅନ୍ୟ ଭାଷା ମାଧ୍ୟମରେ ସେମିତି କରି ହେବନାହିଁ ।

ସବଳ ଭାଷା—ଦୁର୍ବଳ ଭାଷା, ଉନ୍ନତ ଭାଷା,ଅନୁନ୍ନତ ଭାଷା ବୋଲି ଯେଉଁ କଥା କୁହାଯାଉଥିଲା ତାହାର ଆଜି ପ୍ରାସଙ୍ଗିକତା ନାହିଁ ବୋଲି ସ୍ୱୀକାର କରି ନଆଗଲାଣି । ଭାଷାକୁ ଯଦି ବହୁ ସଂଖ୍ୟକ ଶବ୍ଦର ସମଷ୍ଟି ଓ ସେହିସବୁ ଶବ୍ଦର ବ୍ୟବହାରର ବ୍ୟବସ୍ଥିତ ତଥା ବିଜ୍ଞାନ ସମ୍ମତ ଢଙ୍ଗ ବୋଲି କୁହାଯାଏ ତେବେ ପୃଥିବୀର ବହୁଭାଷା ସମାନ ଭାବରେ ସମର୍ଥ ଭାବ ପ୍ରକାଶ ପାଇଁ । ଦିନେ ସଂସ୍କୃତ ଥିଲା ପୃଥିବୀର ଅତି ଉନ୍ନତ ଭାଷା । ଗ୍ରୀକ୍ ରୋମାନ ଚୀନା ଭାଷା ବିଷୟରେ ମଧ୍ୟ ଏହିଭଳି କୁହାଯାଇପାରେ । ସେତେବେଳେ ଇଂରାଜୀ ଭାଷାର ଜନ୍ମ ମଧ୍ୟ ହୋଇନଥିଲା । କିନ୍ତୁ ସୁଯୋଗ ପାଇଲାରୁ ନିଜର ସାମର୍ଥ୍ୟ ବୃଦ୍ଧି କରିକରି ଆଜି ତାହା ହୋଇଛି ଏଭଳି ଉନ୍ନତ ଯେ ବହୁ ଲୋକଙ୍କର ଧାରଣା ସତେ ଯେପରିକି ସେଇଟି ଅତି ପ୍ରାଚୀନ ଭାଷା । ଏହିସବୁ କଥା ଭିତରେ ଟିକିଏ ହେଲେ ପ୍ରମାଦ ନଥିବାରୁ ଓଡ଼ିଆ ଭାଷା ଯେ ଭାବ ପ୍ରକାଶ ପାଇଁ ସମର୍ଥ ଏ ବିଷୟରେ ମୋ ମନ ଭିତରେ ଟିକିଏ ହେଲେ ସନ୍ଦେହ କେବେହେଲେ ମୁଣ୍ଡ ଟେକି ନାହିଁ ।

ଓଡ଼ିଆରେ ସବୁକଥା ଲେଖିହେବ, ଅର୍ଥାତ୍ ମାନବ ଜ୍ଞାନର ଯେ କୌଣସି ବିଭାଗ ବିଷୟରେ ବୁଝାଇ ଦେଇହେବ—ଏହି ଚୋଟିକ ବିଷୟ ଉପରେତ ମୁଁ ଦୀର୍ଘ ପଚିଶ ବର୍ଷରୁ ଅଧିକ କାଳ ହେଲା ପରୀକ୍ଷା ଚଳାଇଛି । ତାହାର ସାକ୍ଷ୍ୟ ଦେବ ୧୯୮୬ ଶେଷସୁଦ୍ଧା ପ୍ରକାଶିତ ହୋଇଥିବା ଦ୍ୱାଦଶ ଖଣ୍ଡ ଜ୍ଞାନମଣ୍ଡଳ ଏବଂ ପ୍ରକାଶିତ ବା ପାଣ୍ଡୁଲିପି ଭାବରେ ଥିବା ଶତାଧିକ ଶ୍ରେଷ୍ଠ ଶ୍ରେଷ୍ଠ ବହି । କେହି କେହି ଏବେ ମଧ୍ୟ କହିବା ଅଭ୍ୟାସ ଛାଡୁନାହାନ୍ତି ଯେ ବିଜ୍ଞାନର ବହୁ ବିଷୟକୁ ଓଡ଼ିଆରେ ବା କୌଣସି ଭାରତୀୟ ଭାଷାରେ ଲେଖାଯାଇ ପାରିବନାହିଁ । ଯିଏ ଏଭଳି ପ୍ରଶ୍ନ ଉଠାନ୍ତି ସେମାନଙ୍କୁ ମୁଁ କହିଥାଏ—ହୋଇପାରିବ କି ନାହିଁ—ଏ ବିଷୟରେ କିଏ ମତ ଦେଇପାରିବେ ? ଜଣେ ଆସି କହନ୍ତୁ—ଡାକ୍ତରୀ ବହିରେ ଥିବା ହୃତ୍‌ପିଣ୍ଡ ଅଧ୍ୟାୟଟିକୁ ମୁଁ ଓଡ଼ିଆରେ ଲେଖିବାକୁ ଆରମ୍ଭ କଲି—କିନ୍ତୁ ଅନୁଭବ କଲି—ସେଥିରେ ଏଭଳି ସବୁ ଶବ୍ଦ ଅଛି, ବୁଝାଇବାର ଏମିତିକା କୌଶଳ ଅଛି ଯେ ଓଡ଼ିଆରେ ତାକୁ ଲେଖି ହେବନାହିଁ, ଲେଖିଲେ ମଧ୍ୟ ଇଂରାଜୀରେ ପଢ଼ିଲେ ଯେମିତି ଭଲଭାବରେ ବୁଝି ହୋଇଯାଇପାରୁଛି ସେମିତି ବୁଝି ହେବନାହିଁ । ଓଡ଼ିଆରେ ଲେଖିବା ପାଇଁ ଚେଷ୍ଟା କଲି—ହୋଇ ପାରିଲା ନାହିଁ—ତେଣୁ ମତ ଦେଉଛି ଯେ ହୃତ୍‌ପିଣ୍ଡ ଭିତରେ ଯାହାସବୁ କାମ ହେଉଛି ତାକୁ କେବଳ ଇଂରାଜୀରେହିଁ ବୁଝାଇ ହେବ । କିନ୍ତୁ ଯେଉଁ ଲୋକ ସେ ଦିଗରେ କିଛିହେଲେ ଉଦ୍ୟମ କରିନ ହିଁ ସେ କାହିଁକି କହୁଛି—'ଓଡ଼ିଆରେ ହୋଇ ପାରିବ ନାହିଁ—ଭାରତୀୟ ଭାଷାରେ ହୋଇ ପାରିବ ନାହିଁ ? ସେଭଳି କହିବାର ଆଦୌ କିଛି କାରଣତ ନାହିଁ ସେ ଲୋକର ଅଧିକାର ମଧ୍ୟ ନାହିଁ, ଏଭଳି ମତ ପ୍ରକାଶ କରିବାକୁ ।

ଯଦି ବା ଯୁକ୍ତି କରାଯିବ ଯେ ଆଜି ଓଡ଼ିଆ ଭାଷା ଯେଉଁ ଅବସ୍ଥାରେ ଅଛି, ସେଥିରେ ସେଭଳି ହୋଇ ପାରିବ ନାହିଁ, ତାହାର ଉତ୍ତର ହେଉଛି—"ଅବସ୍ଥା"ର ଅର୍ଥ ହେଲା ଓଡ଼ିଆରେ ବହୁ ସଂଖ୍ୟକ ଶବ୍ଦ ନାହିଁ ଇଂରାଜୀ ହୃତ୍‌ପିଣ୍ଡ ପ୍ରବନ୍ଧରେ ଥିବା ଶବ୍ଦ ଗୁଡ଼ିକର ଅର୍ଥ ବୁଝାଇ ଦେବା ପାଇଁ । ତାହା ହୋଇପାରେ । ଯେଉଁସବୁ ଇଂରାଜୀ ଶବ୍ଦ ଆମେ ସେହି ପ୍ରବନ୍ଧରେ ଦେଖୁଛୁ, ସେଗୁଡ଼ିକତ ଇଂରାଜୀ ଭାଷା ଆରମ୍ଭରୁ ସେହି ରୂପରେ ସେହି ଭାଷାରେ ନଥିଲେ । ଗ୍ରୀକ୍, ରୋମାନ୍ ଜର୍ମାନ୍ ବା

ଫରାସୀ ଭାଷାରୁ ସେମାନେ ଶବ୍ଦ ନେଇ ଆସିଲେ ବା ମୂଳସୂତ୍ର ଆଣି ତାହାର ସାହାଯ୍ୟରେ ନୂଆ ଶବ୍ଦ ଗଢ଼ିଦେଲେ । କରୋନା (Corona) ଶବ୍ଦ ତ ଇଂରାଜୀ ନୁହେଁ । ହାଟ୍ ଆଟେଂଶ ନକହି କରୋନାର ଆଟେଂଶ ବୋଲି କହିଲେ । ପଣ୍ଡିତମାନେ ଏହି ସନ୍ଦାନ୍ତରେ ଯେଉଁ ଭାଷା ବ୍ୟବହାର କରନ୍ତି, ତାକୁ ଗୁଡ଼ ଦିଆଯାଉ, ସାଧାରଣ ଭାଷାରେ ଏମିତି କହି ଦିଆଯାଇ ପାରେ —ଭାରତର ପ୍ରତ୍ୟେକ ସ୍ୱୀକୃତ ଭାଷା ଉନ୍ନତ । ସେଗୁଡ଼ିକର ବ୍ୟାକରଣ ଅଛି । ଇଂରାଜୀ ଭାଷାରେ ଯେତେ ସଂଖ୍ୟକ ଶବ୍ଦ ବ୍ୟବହାର କରାଯାଉଛି ଓଡ଼ିଆରେ କରାଯାଉନାହିଁ । ତାହାର କାରଣ ହେଲା ବହୁ ସଂଖ୍ୟକ ବହି ସେ ଭାଷାରେ ଲେଖା ଯାଇନାହିଁ । ଯଦି ଲେଖାଯିବ, ବହୁସଂଖ୍ୟକ ନୂଆ ଶବ୍ଦର ଆବଶ୍ୟକତା ଦେଖାଦେବ ଓ ସେଗୁଡ଼ିକ ପାଇଁ ପ୍ରତିଶବ୍ଦ ସୃଷ୍ଟି କରାଯିବ ବା ପ୍ରତିଶବ୍ଦ ନ ମିଳିଲେ ସେଗୁଡ଼ିକୁ ସିଧା ସଳଖ ନେଇ ଆସିବ ଓ କହି ଦିଆଯିବ ଯେ ଏଗୁଡ଼ିକ ଓଡ଼ିଆ ଶବ୍ଦ । ଇଂରାଜୀ ଭାଷା ଯାହା କରିଥିଲା ଓଡ଼ିଆ ବା ହିନ୍ଦୀ ସେଇଆ କରିବେ । ଆବଶ୍ୟକତା ଦେଖାଦେଲା ବୋଲି ତ ଇଂରାଜୀ ଏତେ ସଂଖ୍ୟକ ଶବ୍ଦକୁ ନିଜ କୋଳରେ ବସାଇଦେଲା । ଆମକୁ କିଏ ମନା କରୁଛି ? କୌଣସି ଶବ୍ଦଟି କୌଣସି ଭାଷାର ଏଭଳି ନିଜସ୍ୱ ନୁହେଁ ଯେ ତା' ଉପରେ ତାହାର କପି ରାଇଟ୍ ବା ସର୍ବସ୍ୱତ୍ୱ ସଂରକ୍ଷିତ ହୋଇଯାଇଛି । ପ୍ରତ୍ୟେକ ଭାଷା ତାକୁ ନେଇ ବିନା ବାଧାରେ ବ୍ୟବହାର କରିପାରେ । ଏଇଟି ଏଭଳି ଗୋଟିଏ ସରଳ ସତ୍ୟ ଯେ ତାହା ବିଷୟରେ ଯୁକ୍ତିତର୍କରେ, ଆଲୋଚନାର ଅବକାଶ ନାହିଁ । କଥାଟିକୁ ଆଉ ଟିକିଏ ସ୍ପଷ୍ଟ କରିଦିଏ । ଇଂରାଜୀ ଭଣ୍ଡାରରେ ପ୍ରାୟ ପାଞ୍ଚଲକ୍ଷ ଶବ୍ଦ ଅଛି । ସେଥିରୁ ପ୍ରାୟ ପଚିଶ ଷାଠିଏ ହଜାର ହେଉଛନ୍ତି 'ବ୍ୟକ୍ତିବାଚକ' ପାହାଡ଼ ପର୍ବତ ନଦୀ ସ୍ଥାନ ମନୁଷ୍ୟଙ୍କ ନାମ । ସେଗୁଡ଼ିକୁ ବାଦ୍‌ଦେଲେ ବାକି ଯେତିକ ରହିଲା ସେଥିଭିତରୁ ପ୍ରାୟ ଦୁଇ ଲକ୍ଷ ଶବ୍ଦର ପ୍ରତିଶବ୍ଦ ଭାରତୀୟ ଭାଷାଗୁଡ଼ିକରେ ଦେଖିବାକୁ ମିଳିବ । ବାକି ଯେତେକ ରହିଲା ସେହି ଗୁଡ଼ିକର ନୂତନ ପ୍ରତିଶବ୍ଦ ସୃଷ୍ଟି କରିବାକୁ ହେବ ବା ଯେମିତି ସେମିତି ରଖିଦେବାକୁ ହେବ । କେହି କେବେହେଲେ କହିବ ନାହିଁ ଯେ ଗିଅର, ଷ୍ଟୋକ୍, ଡଟ୍‌ପେନ୍, ସିରିଂଜ, ଇଂଜନ୍ ବା ବାଟେରୀର ପ୍ରତିଶବ୍ଦ ବାହାର କରିବାକୁ ପଡ଼ିବ । ସେଗୁଡ଼ିକ ଠିକ୍ ସେମିତି—ଅର୍ଥାତ୍ ନିଜ ରୂପରେ ଟିକିଏ ହେଲେ ପରିବର୍ତ୍ତନ ନ କରି

ଭାରତୀୟ ଭାଷା ଭିତରେ ଆସ୍ଥାନ ଜମାଇଦେଇ ସାରିଲେଣି । ଉଦ୍ୟମ କଲେ କଅଣ ମାତ୍ର ପାଞ୍ଚଟା ବର୍ଷ ଭିତରେ ଏହା ସମ୍ଭବ ହୋଇପିବ ନାହିଁ ? ଯଦି କରି ହୁଏ ତେବେ ଶବ୍ଦ ସମ୍ଭାର ଦୃଷ୍ଟିରୁ ଇଂରାଜୀ ବା ଯେ କୌଣସି ପାଶ୍ଚାତ୍ୟ ଭାଷାସମ୍ବଳିତ ଭାରତୀୟ ଭାଷାଗୁଡ଼ିକ ସମକକ୍ଷ ହୋଇଯିବ । ହଁ—ମୁକ୍ତ କଣ୍ଠରେ ସ୍ୱୀକାର କରାଯାଇପାରେ ଯେ ଶବ୍ଦ ଗୁଡ଼ିକୁ ଅଭିଧାନରେ କେବଳ ସ୍ଥାନ ଦେଇଦେଲେ ଭାଷା ସମୃଦ୍ଧ ହୋଇ ଯିବନାହିଁ । ସେଗୁଡ଼ିକର ଉପଯୁକ୍ତ ବ୍ୟବହାର ହେଲେ ଯାଇ ଜଣାଯିବ ଯେ ଓଡ଼ିଆ ଭାଷା ସେ ସବୁକୁ ହଜମ କରି ନିଜ ଶରୀରରେ ମିଶାଇ ଦେଇ ପାରିଛି ଓ ତାହାର 'ସ୍ୱାସ୍ଥ୍ୟ'ରେ ଉନ୍ନତି ସାଧିତ ହୋଇଛି । ତାହା ହୋଇ ପାରିବ କେବଳ ଗୋଟିଏ ଉପାୟରେ । ଯଦି ଠିକ କରାଯିବ ଯେ ଡାକ୍ତରୀ ଶାସ୍ତ୍ରର ସବୁତକ ବହି—ଅର୍ଥାତ୍ ଏମ୍. ଏସ୍., ଏମ୍. ଡ଼ି. ପାଠର ସବୁ ବହି ଓଡ଼ିଆରେ ଲେଖି ହୁଆଯିବ, ତେବେ ସ୍ୱତଃ ପାଞ୍ଚହଜାର ନୂତନ ଶବ୍ଦର ବ୍ୟବହାର ପାଇଁ ସୁଯୋଗ ମିଳିଯିବ । ହିନ୍ଦୀ ଭାଷାରେ ସେ ଦିଗରେ ଉଦ୍ୟମ ହେଲାଣି—କାଲି ଓଡ଼ିଆରେ ହେବ ।

ଥରେ ଆଲୋଚନା ବେଳେ କଥା ପଡ଼ିଲା ଇଂରେଜ ଜାତିର ମନର ବାହାଦୁରୀ ବିଷୟରେ । ସେମାନେ ଦରିଦ୍ର ଥିଲେ । ଦୁନିଆର ସବୁ ଅଞ୍ଚଳକୁ ଜାହାଜରେ ଯାଇ ଧନ ସମ୍ପଦ ସଂଗ୍ରହ କଲେ । ସେସବୁକୁ ଆଣି ନିଜ ଦେଶରେ ନାନା ଭାବରେ କାମରେ ଲଗାଇଲେ । ବାହାରୁ ତୁଳା ଆଣି ଚମତ୍କାର କପଡ଼ା ତିଆରି କଲେ—ସେହି କପଡ଼ାକୁ ନେଇ ଯେଉଁ ଦେଶରୁ ତୁଳା ଆଣିଥିଲେ ସେହି ଦେଶରେ ବିକ୍ରି କଲେ । ସେମିତି ଭିନ୍ନ ଭିନ୍ନ ଦେଶରେ ଯେଉଁସବୁ ଭାଷାର ପ୍ରଚଳନ ଅଛି ସେଗୁଡ଼ିକୁ ଶିଖିଲେ । ଯେଉଁସବୁ ନୂଆ ଶବ୍ଦ ଦେଖିଲେ ସେଗୁଡ଼ିକ ଭିତରୁ ଅନେକ ଗୁଡ଼ିଏ ଇଂରାଜୀ ଭାଷାରେ ନାହିଁ ବୋଲି ଲକ୍ଷ୍ୟ କଲେ । ନଥିବାରୁ ଭାବ ପ୍ରକାଶର କେଉଁଠି ଅସୁବିଧା ହେଉଛି ବୁଝିପାରିଲେ । ବହୁଚେଷ୍ଟା କଲେ ସେ ସବୁର ପ୍ରତିଶବ୍ଦ ସୃଷ୍ଟି କରିବାପାଇଁ । ସେହି ଉଦ୍ୟମରେ ଯେଉଁଠି ସଫଳତା ହାସଲ କରିପାରିଲେ ନାହିଁ ସେଇଠି ସେହିସବୁ ଶବ୍ଦକୁ ସିଧା ସଳଖ ନିଜ ଭାଷାରେ ସ୍ଥାନଦେଇ କହିଦେଲେ—"ଏହି ଗୁଡ଼ିକ ଇଂରାଜୀ ଶବ୍ଦ" । ପରବର୍ତ୍ତୀ କାଳରେ ଇଂଲଣ୍ଡରେ ଯେଉଁ ଇଂରେଜମାନେ ନିଜ ଭାଷାରେ ଲିଖିତ ବହିସବୁ ପଢ଼ିଲେ ସେମାନେ ଆଦୌ ସନ୍ଦେହ କଲେନାହିଁ ଯେ

ସେହିସବୁ ଶବ୍ଦ ଇଂରାଜୀ ନୁହେଁ—ବାହାରୁ ଆସିଛି । ସେହି ପନ୍ଥା ଅବଲମ୍ବନ କରିବା ପାଇଁ ଆମକୁତ କେହି ମନା କରୁନାହିଁ । ସେମାନେ ଦୁଇଶହ ବର୍ଷରେ ଯେତିକ କରିଛନ୍ତି ଆମେ ଦଶ କୋଡ଼ିଏ ବର୍ଷରେ ସେତିକ କରି ଦେଇପାରିବୁ । କାରଣ ସେମାନେ ଆମପାଇଁ ପ୍ରାୟ ସବୁକିଛି କରି ଦେଇଛନ୍ତି । ଏଇଟି ସମ୍ପୂର୍ଣ୍ଣ ସତ୍ୟ—ଓ ଏଥିରେ କାହାରି ଦ୍ୱିମତ ନାହିଁ ଯେ ଜଣକୁ ପ୍ରକୃତ ଅର୍ଥରେ ଶିକ୍ଷିତ କରିଦେବା ପାଇଁ ପ୍ରାୟ ସବୁକିଛି ଉପାଦାନ ଇଂରାଜୀ ଭାଷାରେ ରହିଛି । ସେହିସବୁ ଉପାଦାନକୁ ସଂଗ୍ରହକରି ଓଡ଼ିଆ ବା ଯେ କୌଣସି ଭାରତୀୟ ଭାଷା ଭିତରେ ସ୍ଥାନ ନ ଦିଆଯାଇ ପାରିବ କାହିଁକି ? ଆଚାର୍ଯ୍ୟ ବିନୋବା ତାଙ୍କ ଭାରତ ପଦଯାତ୍ରା ଗସ୍ତବେଳେ ପୁରୀ ଆସିଥିଲେ । ଓଡ଼ିଶାର ସାହିତ୍ୟିକ ମାନଙ୍କର ବୈଠକ ହୋଇଥିଲା ତାଙ୍କଠାରୁ ଶୁଣିବା ପାଇଁ । ସେ ଗୋଟିଏ ଅତି ମହତ୍ତ୍ୱପୂର୍ଣ୍ଣ କଥା କହିଲେ । ଇଂରାଜୀ ଭାଷାରେ ଖୁବ ବେଶୀ ହେଲେ ଏକଲକ୍ଷ ଉପାଦେୟ ବହିଥିବ । ସେଥିରୁ କେତେଶହ ବା ହଜାର ବହି ହୁଏତ ଆମ ଧର୍ମ ଦର୍ଶନ ସଂସ୍କୃତି ଉପରେ ଥିବ । ବାକି ଯେତେକ ରହିଲା ସେଥିର ବିଷୟ ବସ୍ତୁକୁ ଭାରତୀୟ ଭାଷା ଭିତରକୁ ନେଇଆସିବାର ଅସୁବିଧା କଅଣ ? ଗୋଟାଏ ହଜାର ପୃଷ୍ଠା ବହିର ପୂର୍ଣ୍ଣ ଅନୁବାଦ ଯେ କରିବାକୁ ପଡ଼ିବ ଏଭଳି କିଛି କଥାନାହିଁ । ତାକୁ ଦୁଇ ତିନିଶହ ପୃଷ୍ଠାରେ ସଂକ୍ଷିପ୍ତ କରି ଦିଆଯାଇପାରେ—ସବୁତକ ଦରକାରୀ ତଥ୍ୟ ବା ଭାବ ରଖିଦେଇ । ସେମିତି କରିଦେଲେ ମାନବ ଜ୍ଞାନର ଯେତେ ଯେତେ ଦରକାରୀ କଥା ଇଂରେଜମାନେ ସଂଗ୍ରହ କରି ସାରିଛନ୍ତି ସବୁତକ ଆମେ ସହଜରେ ପାଇଗଲେ । ଭାରତର ପ୍ରତ୍ୟେକ ଭାଷାରେ ବହୁସଂଖ୍ୟକ ଭଲ ଇଂରାଜୀ ଜାଣିଥିବା ଲୋକ ଅଛନ୍ତି—ଯେଉଁମାନେ କି ମିଳିତ ଭାବରେ ଉଦ୍ୟମ କଲେ ଏହି କାମଟି କରିଦେଇ ପାରିବେ । ମତେ ସେତେବେଳେ ଏହି କଥାଟି କାହିଁକି କେଜାଣି କେମିତି କେମିତି ଲାଗୁଥିଲା । କିନ୍ତୁ ଯେତେବେଳେ ପାଶ୍ଚାତ୍ୟ ଜଗତର ପ୍ରାୟ ଅଢ଼େଇ ତିନିହଜାର ବର୍ଷର ଚିନ୍ତାଧାରାର ପରିଚୟ ଦେଉଥିବା ମହାନ ସଂଳାପ ବା Great Conversation ପୁସ୍ତକ ସେଟ୍‌ଟି ଦେଖିଲି, ଲକ୍ଷ୍ୟକଲି ଯେ ମାତ୍ର ୪୪୩ଟି ପୁସ୍ତକ ପଢ଼ିଦେଲେ ଜଣେ ସବୁକଥା ଜାଣିଯିବ ସେହି ସଂକ୍ରାନ୍ତରେ । ଯଦି ସେଗୁଡ଼ିକର ଅନୁବାଦ ଓଡ଼ିଆ ଭାଷାରେ କରିଦିଆଯାଏ ତେବେ ଜଣେ ଇଂରାଜୀ ଭାଷା ନଜାଣିଥିବା

ଅଥଚ ଭଲ ଓଡ଼ିଆ ଜାଣିଥିବା ଲୋକ ମଧ୍ୟ ସେ ବିଷୟରେ ଅବହିତ ହୋଇଯିବ । ସେହିଭଳି କାମ ହଲାଣ୍ଡ ବା ଇଉରୋପର ଅନ୍ୟ ଦେଶରେ ହେଉଛି । ସଂସ୍କୃତ ବା କୌଣସି ଭାରତୀୟ ଭାଷା ଜାଣିନଥିବା ଜଣେ ଶିକ୍ଷିତ ଇଂରେଜ ବେଦ ଉପନିଷଦ ରାମାୟଣ ମହାଭାରତ ଆଦି ପୁରାଣ ବିଷୟରେ ବହୁକଥା ଜାଣିପାରୁଛି—ତାହାର କାରଣ ହେଲା ଇଂରେଜୀରେ ସେ ସବୁର ସାର ସଂକ୍ଷେପରେ ବା ବିସ୍ତୃତ ଭାବରେ ଅନୁବାଦ ରୂପରେ ପ୍ରକାଶିତ ହୋଇଯାଇଛି । ଏହି ୪୪୩ଟି ବହିରେ ଅଛି ମାତ୍ର ୩୨,୦୦୦ ପୃଷ୍ଠା । ଆକ୍ଷରିକ ଅନୁବାଦ ସବୁଗୁଡ଼ିକର ନକରି ସଂକ୍ଷେପରେ ଲେଖିଦେଲେ ମଧ୍ୟ ଜଣେ ଓଡ଼ିଆ ଭାଷାର ପଣ୍ଡିତ ପାଶ୍ଚାତ୍ୟ ଚିନ୍ତା ବିଷୟରେ ଯେ କୌଣସି ତର୍କ ସଭାରେ କହିପାରିବେ—ଯେମିତିକି ଜଣେ ଇଂରେଜ ଭାରତରେ ଆସି କହୁଛନ୍ତି ।

ଯେତେବେଳେ ମୋ ମନ ମଧ୍ୟ ଏହି କାର୍ଯ୍ୟଟିର ବିରାଟତ୍ୱ ବିଷୟରେ ଭାବି ଟିକିଏ ଦବିଯାଏ ସେତେବେଳେ କେତେବର୍ଷ ପୂର୍ବେ ପଢ଼ିଥିବା ଗୋଟିଏ ଲେଖା ମୋତେ ସାହସ ଦିଏ । ସେହି ଲେଖାର ଶିରୋନାମା ଥିଲା—"If I had mind......" ମୋର ଯଦି ମନ ଥାଆନ୍ତା । ଜଣେ ଟିକିଏ ଲେଖି ଜାଣନ୍ତି । ସିଏ ତାଙ୍କୁ କୁହନ୍ତି 'ଲେଖ' ବୋଲି ତାଙ୍କୁ ସିଏ କହନ୍ତି If I had time—ମୋର ବେଳ ଥାଆନ୍ତା କି ! ଦିନେ ଭାବିଲେ ପ୍ରତିଦିନ ମାତ୍ର ତିରିଶ ମିନିଟ ସେ ଟାଇପ୍‌ରାଇଟର ପାଖରେ ବସିବେ—ଯେତିକି ହେବ ସେତିକି । ଦଶବର୍ଷ ଭିତରେ କେତେଖଣ୍ଡ ବହି ଲେଖିଦେଲେ ତାହାର ହିସାବ ଦେଇଥିଲେ । ଭାରତର ପ୍ରତି ଭାଷାଭାଷୀ ଅଞ୍ଚଳର ପଚିଶ ଜଣ ଯଦି ସ୍ଥିର କରନ୍ତେ ତେବେ ଏହି କାମଟି କେତେ ସହଜରେ ହୋଇଯାଆନ୍ତା ଟି !

## ସାମର୍ଥ୍ୟ ଭରିବାର ଆବଶ୍ୟକତା

ଓଡ଼ିଆ ଭାଷାରେ ଧୀରେ ଧୀରେ ସାମର୍ଥ୍ୟ ଭରି ତାକୁ ମଜବୁତ ଅର୍ଥାତ୍ ସବୁଜ୍ଞାନକୁ କାନ୍ଧରେ ବହି ନେଇଯିବା ପାଇଁ ଶକ୍ତିଶାଳୀ କରିବାଟା ଆମ ସମସ୍ତଙ୍କର କର୍ତ୍ତବ୍ୟ ବୋଲି ଯେତେବେଳେ ଧରିନେଲି ସେ ଦିଗରେ କାମ ଆରମ୍ଭ କରିଦେଲି ଓ ନିଜ ଉଦ୍ୟମ ମାଧ୍ୟମରେ ନିଜକୁ ଶିକ୍ଷା ଦେବାକୁ ଚେଷ୍ଟିତ ହେଲି । ଏ ଦିଗରେ ପ୍ରତ୍ୟେକ ପଦକ୍ଷେପରେ ମୁଁ କିଛି ନା କିଛି ନୂଆ କଥା ଶିଖିଲି । ସେ ବିଷୟରେ ଅଧିକ କହିଲା ପୂର୍ବରୁ

ଗୋଟିଏ କଥା ସ୍ପଷ୍ଟ କରିଦିଏ । କିଛିବର୍ଷ ପର୍ଯ୍ୟନ୍ତ ସେଭଳି ନକରୁଥିବାରୁ ମୋତେ ବହୁଲୋକ ଭୁଲ୍ ବୁଝିଛନ୍ତି—ଏବେ ଅବଶ୍ୟ ଆଉ ସେଭଳି ବୁଝୁନାହାନ୍ତି । ଦୀର୍ଘ ଦିନ ଧରି ଦେଶରେ ଧାରଣା କରାଯାଇଆସୁଛି ଯେ ଇଂରାଜୀ ଗୋଟିଏ ବିଦେଶୀ ଭାଷା—ତାହା ମାଧ୍ୟମରେ ଆମେ ଆମ ପିଲାଙ୍କୁ ପ୍ରକୃତ ଶିକ୍ଷା ଦେଇ ପାରିବୁନାହିଁ । ସେହି ଭାଷାକୁ, ବିଦେଶୀ ଭାଷାକୁ ଆମ ଉପରେ ଲଦିଦେଇ ଇଂରେଜ ଜାତି ଆମର ଅପୂରଣୀୟ କ୍ଷତି କରିଛି—ଆମ ଭାଷାର ପ୍ରଗତିର ପଥରୁଦ୍ଧ ହୋଇଯାଉଛି । ଗାନ୍ଧୀ ରବୀନ୍ଦ୍ରଙ୍କ ଭଳି ମନୀଷୀ ମାନଙ୍କର ଉକ୍ତିକୁ ଏ ସମ୍ପର୍କରେ ଉଦ୍ଧାର କରି ବହୁସଂଖ୍ୟକ ଭାଷଣ ଦେଇଛନ୍ତି ଓ ହଜାରେ ଦି' ହଜାର ଆଲୋଚନା ଚକ୍ରରେ ମତପ୍ରକାଶ କରିଛନ୍ତି । ତେଣୁ ମୁଁ ନିଶ୍ଚୟ ଜଣେ ଇଂରାଜୀ ଭାଷା ବିରୋଧୀ ବୋଲି ଅନେକ ଲୋକ ଧରି ନେଇଥିଲେ । ମୋ ବିରୁଦ୍ଧରେ ମତାନ୍ଧତା ଦୋଷ ମଧ୍ୟ ଆରୋପ କରିଥିଲେ । ଏହିଭଳି ଚାଲିଲା ପ୍ରାୟ ୧୯୮୪ ଆରମ୍ଭ ପର୍ଯ୍ୟନ୍ତ । ନାନା କାରଣରୁ ମୁଁ ଯାହାକିଛି କରୁଛି ତା' ପ୍ରତି ଅନ୍ୟମାନଙ୍କ ଦୃଷ୍ଟି ଆକୃଷ୍ଟ ହେଲା । ଚଉତିରିଶ ଖଣ୍ଡ ଜ୍ଞାନମଣ୍ଡଳ ପ୍ରକାଶିତ ହୋଇଯିବା ପରେ ବହୁ ଶିକ୍ଷିତ ଲୋକେ ସେଗୁଡ଼ିକୁ ପଢ଼ିଲେ । ମାନବ ବିଜ୍ଞାନର ପ୍ରତ୍ୟେକ ବିଭାଗ ଉପରେ ବହୁସଂଖ୍ୟକ ଦୀର୍ଘ ପ୍ରବନ୍ଧ ରହିଗଲାଣି ସେସବୁ ନଅଲକ୍ଷରେ । ପାଠକ ମାନଙ୍କର ହୃଦ୍‌ବୋଧ ହୋଇଗଲାଣି ଯେ ଓଡ଼ିଆରେ ସବୁକିଛି ଲେଖାଯାଇ ପାରିବ ସରଳଭାଷାରେ, ସୁଖପାଠ୍ୟ ଶୈଳୀରେ । ଇଂରାଜୀ ଭାଷାରେ ପଢ଼ି ଯେଉଁମାନେ ଗୋଟାଏ କଠିନ ବୈଜ୍ଞାନିକ ବିଷୟକୁ ଭଲଭାବରେ ବୁଝିପାରୁ ନଥିଲେ—ଯଦିଓ ଇଂରାଜୀ ଭାଷା ଉପରେ ସେମାନଙ୍କର ଭଲ ଦଖଲ ଅଛି ବୋଲି ସେମାନେ ବିଶ୍ବାସ କରୁଥିଲେ ଓ ଅନ୍ୟମାନେ ବିଶ୍ବାସ କରୁଥିଲେ—ସେମାନେ ଓଡ଼ିଆରେ ଲେଖା ହୋଇଥିବା ସେହି ବିଷୟଟିକୁ ଭଲ ଭାବରେ ବୁଝିଗଲେ । ତାହାପରେ ସେମାନେ ଯେତେବେଳେ ଆଉଥରେ ତାକୁ ଇଂରାଜୀରେ ପଢ଼ିଲେ ବୁଝିବା ପାଇଁ ସହଜ ହେଲା । କାରଣ ଯେଉଁସବୁ ବୈଜ୍ଞାନିକ ଶବ୍ଦ ସେମାନେ ବୁଝିପାରୁନଥିଲେ ସେଗୁଡ଼ିକର ଅର୍ଥ ଜ୍ଞାନମଣ୍ଡଳରେ ଥିବା ପ୍ରବନ୍ଧରେ ଭଲଭାବରେ ବୁଝାଇ ଦିଆଯାଇଥିଲା ।

ଏହିଭଳି ମନନେଇ ସେମାନେ ଯେତେବେଳେ ମୋ ପାଖକୁ ଆସିଲେ ସେମାନଙ୍କୁ କହିଲି—"ଆପଣମାନେ ଯଦି ମାତ୍ର ପନ୍ଦର ମିନିଟ

ପର୍ଯ୍ୟନ୍ତ ଧୈର୍ଯ୍ୟର ସହିତ ଶୁଣିବେ ଇଂରାଜୀ ଭାଷା ଭାରତରେ ଚଳିବା ବିଷୟରେ ମୋର ସୁଚିନ୍ତିତ ମତ ଜଣାଇଦେବି । ପ୍ରଥମରୁ କହିରଖେ ଯେ ଭାରତର ଶିକ୍ଷିତ ଲୋକମାନେ ସମସ୍ତେ ଇଂରାଜୀ ପଢନ୍ତୁ—ଶିଖନ୍ତୁ । ଅନ୍ତତଃ ଅନ୍ୟମାନଙ୍କ ସହିତ ସମ୍ପର୍କ ରଖିବା ପାଇଁ ଯେତିକି ଶବ୍ଦ ବା ବାକ୍ୟର ଆବଶ୍ୟକତା ରହିଛି ସେତିକି ନିର୍ଭୁଲ ଭାବରେ ଜାଣନ୍ତୁ । ମୁଁ ଆଉ ପାହାଚେ ଆଗେଇ ଯାଉଛି । ମଣିଷ ଜାତି ଗତ କେତେଲକ୍ଷ ବର୍ଷରେ ଯାହାକିଛି ଜ୍ଞାନ ହାସଲ କରିଛି ସବୁର ସାରତିକ ସଂଗ୍ରହ କରି ଇଂରାଜୀ ଭାଷା ନିଜ ଗର୍ଭରେ ବା କୋଳରେ ସ୍ଥାନଦେଇ ସାରିଛି । ଯଦି ଇଂରାଜୀ ନଜାଣିବା ଆମେ ସେହିସବୁ ଜ୍ଞାନରୁ ବଞ୍ଚିତ ହେବା । ଅନ୍ୟ ଭାବରେ କହିବାକୁ ଗଲେ ଆମେ ଗୋଟାଏ ଅର୍ଥରେ ମୂର୍ଖ ହୋଇ ରହିଯିବା । ଭାରତବର୍ଷରେ ଶହ ଶହ ଖବରକାଗଜ ପତ୍ରପତ୍ରିକା ଇଂରାଜୀ ଭାଷାରେ ପ୍ରକାଶିତ ହେଉଛି ସେଗୁଡିକ ନପଢିଲେ ଆମେ ଦେଶ ବିଦେଶ ବିଷୟରେ ଅଜ୍ଞ ହୋଇ ରହିଯିବା । ଦ୍ୱିତୀୟରେ ନିଜ ଦେଶ ଭିତରେ ମଧ୍ୟ ବିଭିନ୍ନ ଅଞ୍ଚଳ ସହିତ ପ୍ରକୃତ ଅର୍ଥରେ ସମ୍ପର୍କ ସ୍ଥାପନ କରିପାରିବା ନାହିଁ । ଇଂରାଜୀ ଭାଷାଟି ହେଲା "ଜ୍ଞାନର ମାଲଗୋଦାମ" । ସେଠାକୁ ଗଲେ ଆମେ ଯେ କୌଣସି ପଦାର୍ଥ କିଣିପାରିବା—ବିକି ମଧ୍ୟ ପାରିବା । ବର୍ତ୍ତମାନ ପାଇଁ କୌଣସି ଭାରତୀୟ ଭାଷା ମାଧ୍ୟମରେ ଆମେ ସେଭଳି କରିପାରିବା ନାହିଁ । ଇଂରାଜୀଟି ଆନ୍ତର୍ଜାତିକ ଭାଷା ହୋଇସାରିଲାଣି । ଫରାସୀ, ଜର୍ମାନ, ସ୍ପେନୀୟ, ରୁଷୀୟ, ଚୀନା ଭାଷାଗୁଡିକ ଖୁବ୍ ସମୃଦ୍ଧ ହେଲେ ମଧ୍ୟ ସେସବୁ ଭାଷାକୁ ଆୟତ୍ତ କରି ଆମେ ଜ୍ଞାନ ଅର୍ଜନ କରିପାରିବା ନାହିଁ । ତାହା ସାଙ୍ଗକୁ ଆମେ ଅଭିଜ୍ଞତାରୁ ଦେଖୁଛୁ ସେସବୁ ଭାଷାରେ ଯାହାସବୁ ନୂଆ ନୂଆ କଥା ଅଛି ଇଂରାଜୀ ସେଗୁଡିକୁ ସଂଗ୍ରହ କରି ନିଜ ଗଣ୍ଡି ଭିତରେ ସାଇତି ଦେଇଛି । ଏହିସବୁ କାରଣରୁ ଜଣେ ଯଦି ଇଂରାଜୀ ଭାଷା ନଶିଖେ ସେ ନିଜର ଘୋର କ୍ଷତି କରିବ । ସେଇଥିପାଇଁ ମୁଁ ବରାବର ଚେଷ୍ଟା କରୁଛି ସେହି ଭାଷାକୁ ଶିଖିବା ପାଇଁ । ସେଭଳି ନ କରିଥିଲେ ମୁଁ ଏକା ଏକା ଗୋଟିଏ ସେଟ୍ ଜ୍ଞାନମଣ୍ଡଳ ବା ଏନ୍‌ସାଇକ୍ଲୋପିଡିଆ ଲେଖି ଦେଇ ପାରିଥାଆନ୍ତି କିପରି ? ତେଣୁ ଆପଣମାନେ ଜାଣି ରଖନ୍ତୁ ଯେ ମୁଁ ଇଂରାଜୀ ଭାଷା ବିରୋଧୀ ନୁହେଁ—ବରଂ ସେ ଭାଷାର ଜଣେ ସ୍ତାବକ । ସେ ଭାଷାର ସାମର୍ଥ୍ୟ ଆଗରେ ମୁଣ୍ଡ ନୁଆଁଇବାକୁ ମୁଁ କୁଣ୍ଠାବୋଧ କରିବି ନାହିଁ ।

"ତାହା ସଙ୍ଗେ ସଙ୍ଗେ ଆଉ ଗୋଟିଏ ପ୍ରଶ୍ନ ଉପରେ ମୋର ସ୍ପଷ୍ଟ ତଥା ଦୃଢ଼ମତ ରହିଛି । ଇଂରାଜୀଭାଷା ମାଧ୍ୟମରେ କେବେହେଲେ ଲକ୍ଷ ଲକ୍ଷ ଲୋକଙ୍କ ଭିତରେ ଶିକ୍ଷାର ବିସ୍ତାର ହୋଇପାରିବ ନାହିଁ । ବ୍ୟାପକ ଭାବରେ ଶିକ୍ଷାର ବିସ୍ତାର ନହେଲେ କୌଣସି ଜାତି ଆଧୁନିକ ଯୁଗରେ ଆଗେଇ ପାରିବନାହିଁ । ଇଂରେଜମାନେ ଏ ଦେଶରେ ଶହେ ଅଶୀ ବର୍ଷ ପର୍ଯ୍ୟନ୍ତ ଶାସନ ଚଳାଇଲେ । ଇଂରାଜୀ ଭାଷାର ପ୍ରସାର ପାଇଁ ସବୁ ପ୍ରକାରର ଉଦ୍ୟମ କଲେ । ସେହି ଭାଷା ସହିତ ସମ୍ମାନ, ସମାଜରେ ମର୍ଯ୍ୟାଦା, ଚାକିରି ବାକିରି, ଅନ୍ୟ ଆର୍ଥିକ ଲାଭ, ସୁବିଧା ସୁଯୋଗକୁ ଯେତେପ୍ରକାରେ ଯୋଡ଼ିଲେ ମଧ୍ୟ ସେମାନେ ବିଦାୟ ନେଲାବେଳକୁ ଶହକେ ଦୁଇ ତିନିଜଣ ମଧ୍ୟ ଇଂରାଜୀ ଭାଷା ଶିଖିପାରିଲେ ନାହିଁ । ଏବେମଧ୍ୟ ସେହି ଭାଷାକୁ ଶିଖାଇବାପାଇଁ ଅଧିକ ଉଦ୍ୟମ ହେଉଛି—ସେମାନେ ରାଜୁତି ଚଳାଇଥିଲା ଯୁଗ ତୁଳନାରେ । କିନ୍ତୁ ସମସ୍ତେତ ସ୍ୱୀକାର କରୁଛନ୍ତି ଇଂରାଜୀ ଭାଷା ଶିକ୍ଷାର ମାନ କମି କମି ଯାଉଛି । ଜଣେ ଗ୍ରାଜୁଏଟ ଆଜି ଭଲଭାବରେ ନିର୍ଭୁଲ ଭାବରେ ଦି'ପଦ ଇଂରାଜୀ କହିପାରୁ ନାହାନ୍ତି କି ଲେଖିପାରୁ ନାହାନ୍ତି । ଜଣେ ମାଟ୍ରିକ ପାଶ ବାଲକ କିଛିହେଲେ ଇଂରାଜୀ ଜାଣିନାହିଁ ବୋଲି କହିଲେ ଚଳେ । ଶହକେ ଦଶଜଣ ଏହାର ନିଶ୍ଚୟ ବ୍ୟତିକ୍ରମ । ସେଥିରେ ଇଂରାଜୀ ଭାଷାର ଭବିଷ୍ୟତ ଏ ଦେଶ ପାଇଁ କଅଣ ? ଏଭଳି ହେବାରେ ବିଚିତ୍ରତା କିଛିନାହିଁ । କାହିଁକି ନାହିଁ ମୋ ନିଜ ଉଦାହରଣ ଦେଇ ବୁଝାଇ ଦେବି । ବିଂଶ ଶତାବ୍ଦୀର ଆରମ୍ଭ ଦଶନ୍ଧିରେ ଓଡ଼ିଶାରେ ପ୍ରାୟ କେହି ଦଶବର୍ଷ ବୟସ ହେଲା ପୂର୍ବରୁ ଇଂରାଜୀ ଶିଖୁନଥିଲେ । ମୋର ସୁଯୋଗ ହୋଇଥିଲା ଛ'ବର୍ଷ ପୂରିଗଲା ବେଳକୁ ଇଂରାଜୀ ଶିଖିବା । ବହୁସଂଖ୍ୟକ ଇଂରାଜୀ ପଢ଼ୁଆ ଲୋକ ଥିବା ଗୋଟିଏ ପରିବାରରେ ମୁଁ ରହିଗଲି । ୧୯୧୮ ଆରମ୍ଭରୁ ୧୯୮୪ ଆରମ୍ଭ ପର୍ଯ୍ୟନ୍ତ ମୁଁ ଇଂରାଜୀ ଚଢ଼ିଆସୁଛି । ଆଜି ୧୯୮୭ ହେଲେ ମଧ୍ୟ ଏହି ଆଲୋଚନାଟି ହେଉଥିଲା ତିନିବର୍ଷ ପୂର୍ବେ) । ବିଳାସ ପାଇଁ ନୁହେଁ—ଆବଶ୍ୟକତା ମେଣ୍ଟାଇବା ପାଇଁ ପଢ଼ୁଛି । ଏଭଳି ପଢ଼ିବାଟା ମୋର ବୃତ୍ତି ବୋଲି କହିଲେ ମଧ୍ୟ ଭୁଲ୍ ହେବନାହିଁ । ଜେଲ ଭିତରେ ପ୍ରାୟ ପାଞ୍ଚବର୍ଷ ଓ ଜେଲ୍ ବାହାରେ ତେତିଶବର୍ଷ ଦିନରାତି ସେହି ଭାଷା ପଢ଼ୁଛି ବୁଝୁଛି । ଦିନକୁ ପନ୍ଦରଟି ରୁ ଅଧିକ ଇଂରାଜୀ ଦୈନିକ ଖବରକାଗଜ, ଶହ ଶହ ଦେଶୀ ବିଦେଶୀ ପତ୍ରପତ୍ରିକା

ମାଗାଜିନ୍, ଭଡ଼ା ଭଡ଼ା ଅନ୍ୟ ରିପୋର୍ଟ ଓ ଦୂତାବାସ ଗୁଡ଼ିକରୁ ଆସୁଥିବା କାଗଜପତ୍ର ପଢ଼ିବା ପାଇଁ ମୁଁ ବାଧ୍ୟ । ମାନବ ଜ୍ଞାନର ପ୍ରତ୍ୟେକ ବିଭାଗର ବହୁକଥା ଜାଣିବା ହେଲା ମୋ ପାଇଁ ଅପରିହାର୍ଯ୍ୟ । ସେହିସବୁ ବିଭାଗରେ ବ୍ୟବହୃତ ହେଉଥିବା ବହୁ ଶବ୍ଦ ସହିତ ପରିଚିତ ହୋଇଯାଇଛି । ଏହାସତ୍ତ୍ୱେ ମୋ ସୀମା ବିଷୟରେ ମୁଁ ସଚେତନ ରହିଛି । ଯେଉଁମାନେ ମୋ ତୁଳନାରେ ବହୁତ ଭଲ ଇଂରାଜୀ ଜାଣନ୍ତି ସେମାନଙ୍କ କଥା କହୁନାହିଁ । ମୋ'ର ଭଳି ଯେଉଁମାନେ ଜାଣନ୍ତି ସେମାନଙ୍କର ଏହି ଭାଷାରେ ଯେଉଁ ସୀମିତ ଜ୍ଞାନ ଅଛି ମୋର ସେତିକି ଅଛି ବୋଲି କହିଲେ କେହି ଆପତ୍ତି କରିବେନାହିଁ । କୌଣସି ସଭା ସମିତିରେ ମୁଁ ଅବଲୀଳା କ୍ରମେ ଇଂରାଜୀରେ କହିପାଇ ପାରେନାହିଁ—ଭାବିଚିନ୍ତି କହିଥାଏ । ଲକ୍ଷ୍ୟ କରିଛି ଯେଉଁଠା ଯାହାଙ୍କର ସ୍ୱତନ୍ତ୍ର ପାଠ ସେହି ବିଷୟରେ ସେ ହୁଏତ ଅବଲୀଳା କ୍ରମେ ଇଂରାଜୀରେ କହିଯାଆନ୍ତି । କିନ୍ତୁ ଅନ୍ୟ ପାଠ କଥା ଆସିଗଲା ବେଳକୁ ଧିମେଇ ଯାଆନ୍ତି । ତାହାର କାରଣ ହେଲା ବହୁ ନୂତନ ଶବ୍ଦର ଅର୍ଥ ସେମାନେ ଯେତିକି ଜାଣିବା କଥା ସେତିକି ଜାଣନ୍ତି ନାହିଁ । ଏହିଟି ବିଦେଶୀ ଭାଷା ହୋଇଥିବାରୁ ଶବ୍ଦ ଗୁଡ଼ିକର ଅର୍ଥକୁ ଆମେ ଯେତିକି ସଠିକ ବା ଭଲ ଭାବରେ ଜାଣିବାର କଥା ସେତିକି ଜାଣିପାରୁନାହିଁ—ଯଦିଓ ମୋଟାମୋଟି ବୁଝିଯାଉ । ସେ ଭାଷାରେ ରହିଗଲାଣି ପ୍ରାୟ ପାଞ୍ଚଲକ୍ଷ ଶବ୍ଦ । ସେଥିଭିତରୁ ଏକ ଚତୁର୍ଥାଂଶକୁ ଆୟତ୍ତ କରିବା ମଧ୍ୟ ସହଜ ନୁହେଁ । ପରିସ୍ଥିତି ଏହିଭଳି ହୋଇଥିବାରୁ ଇଂରାଜୀ ମାଧ୍ୟମରେ ଲୋକଙ୍କୁ ଶିକ୍ଷିତ କରିବା କଳ୍ପନାଟି ପାଗଳାମି ବୋଲି କହିଲେ କେହି ପ୍ରତିବାଦ କରିବାର କୌଣସି କାରଣ ନାହିଁ । ଯଦି ତା' ନହୋଇ ପାରିବ ଆମ ମାତୃଭାଷାରେ ଲୋକଙ୍କୁ ଶିକ୍ଷିତ କରିବା ପାଇଁ ହେବ—ଜ୍ଞାନର ପ୍ରସାର କରିବାପାଇଁ ହେବ । ମୋ ସହିତ କେହି ଏକମତ ହୁଅନ୍ତୁ ବା ନହୁଅନ୍ତୁ ଏହା'ଯେ ସର୍ବୋତ୍କୃଷ୍ଟ ପନ୍ଥା ଏ ବିଷୟରେ ମୋ ମନରେ କୌଣସି ସନ୍ଦେହ ରହିନାହିଁ ।" ସେମାନେ ମୋ ସହିତ ସମ୍ପୂର୍ଣ୍ଣ ଏକମତ ହେଲେ କି ନାହିଁ ଜାଣିନାହିଁ । କିନ୍ତୁ ଏହା ବ୍ୟକ୍ତିଗତ ଅନ୍ୟକିଛି କହିବା ମୋ ପକ୍ଷରେ ସମ୍ଭବ ନଥିଲା ।

ଯେତେବେଳେ ଠିକ୍ କଲି ଯେ ଜୀବନର ଅବଶିଷ୍ଟ ଅଂଶରେ ଏହି କାମ କରିବି ସେତେବେଳେ ମୋର ମୁଖ୍ୟ କାମ ହେଲା ଓଡ଼ିଆ ଭାଷା ଭିତରେ ଅଧିକରୁ ଅଧିକ ସାମର୍ଥ୍ୟ ଭରିବା । ଶରୀରରେ ଆବଶ୍ୟକୀୟ

ସାମର୍ଥ୍ୟ ନଥିଲେ ଜଣେ ଓଜନିଆ ବୋଝଟିଏ ଉଠାଇ ପାରିବ ନାହିଁ । ଭାଷା ଭିତରେ ସାମର୍ଥ୍ୟ ନଥିଲେ ଜ୍ଞାନର ବୋଝ ସେ ସମ୍ଭାଳି ପାରିବ ନାହିଁ । ମୋର ବ୍ୟକ୍ତିଗତ ସୁଯୋଗ ହୋଇଛି ଓଡ଼ିଆ ଭାଷା ଭିତରେ କେତେ ସାମର୍ଥ୍ୟ ଅଛି ଜାଣିବାପାଇଁ । ସମସ୍ତେ ମୁକ୍ତକଣ୍ଠରେ ସ୍ୱୀକାର କରିଯିବା ଉଚିତ ଯେ ଭାରତୀୟ ଭାଷାଗୁଡ଼ିକ ସବୁଜ୍ଞାନକୁ ଗ୍ରହଣ କରିବାର ଓ ପ୍ରସାର କରିବାର ସାମର୍ଥ୍ୟ ହାସଲ କରିନାହାନ୍ତି । ସେଭଳି କରିବା ପାଇଁ ବଙ୍ଗଳା ତାମିଲ ପ୍ରଭୃତି ପ୍ରାଣମୂର୍ଚ୍ଛା ଉଦ୍ୟମ ଚଳାଇଛନ୍ତି । ଓଡ଼ିଆ ଯେ ସେ ଦିଗରେ କିଛି କରୁନାହିଁ—ତା' ନୁହେଁ । କିନ୍ତୁ ଯେତିକି ସଫଳତା ହାସଲ କରିଛି ତାହା ଆବଶ୍ୟକତା ମେଣ୍ଟାଇ ପାରୁନାହିଁ । ଏଭଳି ଯେ ହେଉଛି ତାହା ମୁଁ ଅଙ୍ଗେ ନିଭାଉଛି । ଅନ୍ୟ କୌଣସି ଓଡ଼ିଆ ଲେଖକ ଉଦ୍ୟମ କରୁନାହାନ୍ତି ଜ୍ଞାନବିଜ୍ଞାନର ସବୁ ବିଭାଗ ଉପରେ ଲେଖିବା ପାଇଁ । ଓଡ଼ିଆ ସାହିତ୍ୟରେ ଯେଉଁମାନେ ରଥୀ ସେମାନଙ୍କ ଭିତରୁ ଅନେକଙ୍କୁ ବ୍ୟକ୍ତିଗତ ଭାବରେ ଭଲକରି ଜାଣିବାର ସୁଯୋଗ ମୋର ହୋଇଛି—ଅନ୍ୟ କୌଣସି କାରଣରୁ ନହେଉ ପଛକେ ପଚସ୍ତରି ବର୍ଷ ବୟସ ହୋଇଯିବାରୁ । ସେମାନେ ନିଜ ବିଦ୍ୟା ବିଷୟରେ ଲେଖୁଛନ୍ତି କହୁଛନ୍ତି । ଯଦି କୌଣସି କ୍ଷେତ୍ରରେ ଶବ୍ଦର ଅଭାବ ଅନୁଭବ କରୁଛନ୍ତି ଅଳ୍ପ ଚେଷ୍ଟାରେ ସେହି ଅଭାବ ମେଣ୍ଟାଇ ଦେଉଛନ୍ତି । କିନ୍ତୁ ମୁଁ ବିଚିତ୍ର ଗୋଟାଏ ବଡ଼ ଅଡୁଆ ପରିସ୍ଥିତିରେ ପଡ଼ିଯାଇଛି । ସବୁ ବିଷୟରେ ଲେଖିଲା ବେଳକୁ ଶବ୍ଦର ଉତ୍କଟ ଅଭାବ ମୋତେ ସମୟେ ସମୟେ ବ୍ୟଥିତ କରିଦେଉଛି—ମନଟାକୁ ଦବାଇ ଦେଉଛି । ସେତିକିବେଳେ ଭାଷାର ସାମର୍ଥ୍ୟ ବିଷୟରେ ମୁଁ ଅଧିକରୁ ଅଧିକ ସଚେତନ ହୋଇଉଠୁଛି ।

'ଭାଷା ଭିତରେ ସାମର୍ଥ୍ୟ ଭରିବା' ପ୍ରଶ୍ନର ଆଲୋଚନା ପୂର୍ବରୁ ଭାଷା ବୋଇଲେ ସାଧାରଣ ଭାବରେ କଅଣ ବୁଝାଉଛି ତାହାର ଆଲୋଚନା ନିଶ୍ଚୟ ପ୍ରାସଙ୍ଗିକ । ଏ ବିଷୟରେ ଅଧିକରୁ ଅଧିକ ଜାଣିବା ପାଇଁ ଗଲା ସ୍ତରି ବରିଷ ଧରି ଉଦ୍ୟମ କରିଆସୁଛି । ଏହାଉପରେ ଲେଖା ଯାଇଥିବା ବହୁସଂଖ୍ୟକ ପୁସ୍ତକ ପ୍ରବନ୍ଧ ପଢ଼ିଛି । ବିଶେଷ କରି ଜ୍ଞାନମଣ୍ଡଳର ୩୧ ଖଣ୍ଡରେ ଯେତେବେଳେ ଭାଷା ଉପରେ ଛ' ଫର୍ମାର (ପ୍ରାୟ ୧୯୦୦୦ ଶବ୍ଦ ବିଶିଷ୍ଟ) ପ୍ରବନ୍ଧ ଲେଖିବା ଆରମ୍ଭ କଲି ସେତେବେଳେ ବହୁତ କିଛି ପଢ଼ିବାକୁ ପଡ଼ିଲା । ସେହି ପ୍ରବନ୍ଧଟି କେବଳ

ଉଚ୍ଚଶିକ୍ଷିତ ଲୋକଙ୍କ ପାଇଁ ଉଦ୍ଦିଷ୍ଟ ନଥିଲା । ଜଣେ ଅଳ୍ପ ପଢ଼ୁଆ ଲୋକ ମଧ୍ୟ ଭାଷା କଅଣ ଜାଣିପାରୁ—ଏହାଥିଲା ମୋର ଲକ୍ଷ୍ୟ । ଜ୍ଞାନମଣ୍ଡଳରେ ବର୍ଣ୍ଣମାଳାନୁକ୍ରମେ ତାହାର ସ୍ଥାନ ପରେ ଆସିବାର କଥା । କିନ୍ତୁ କେତେକଜଣ କହିଲେ—ଏ ବିଷୟରେ ଏବେ ଲେଖିଦିଆଯାଉ । ଭାଷା କଅଣ ଜାଣିଲେ ସିନା ଲୋକେ ନିଜ ମାତୃଭାଷାର ଉନ୍ନତି ପାଇଁ ଆଗ୍ରହୀ ହେବ—ନ ଜାଣିଲେ ହେବେ କାହିଁକି ? ସେ ବିଷୟରେ ମୋର ଧାରଣା ଏହିପରି—

ଆଦ୍ୟ ମାନବ ନିଜର ମନର ଭାବ ପ୍ରକାଶ ପାଇଁ, କିଛି ଗୋଟାଏ କରିବା ପାଇଁ ଯେତେବେଳେ ଉଦ୍ୟମ କଲା ଓ ସେହି ଉଦ୍ୟମ କିଛି ଦୂରକୁ ଆଗେଇ ଗଲା ସେତେବେଳେ ଗୋଟିଏ ଗୋଟିଏ ଶବ୍ଦର ସୃଷ୍ଟି ହୋଇଗଲା । ସେହି ଶବ୍ଦ ଗୁଡ଼ିକ ସାହାଯ୍ୟରେ ବା ସେଗୁଡ଼ିକୁ ଏକାଠି କରି ବାକ୍ୟଟିଏ ଲେଖାଁ କହିଲା । ସେହି ବାକ୍ୟ ଗୁଡିକ, ଶବ୍ଦ ଗୁଡ଼ିକ ଯେତେବେଳେ ଗୋଟାଏ ନିୟମରେ ବାନ୍ଧି ହୋଇଗଲେ ସେତେବେଳେ ଜନ୍ମନେଲା ଭାଷା । ସବୁ ଲୋକତ ଗୋଟିଏ ସ୍ଥାନରେ ନଥିଲେ—ପୃଥିବୀର ଭିନ୍ନ ଭିନ୍ନ ଅଞ୍ଚଳରେ ରହୁଥିଲେ । ପାହାଡ଼ ପର୍ବତ ନଦୀ ସମୁଦ୍ର ସେମାନଙ୍କୁ ପରସ୍ପର ଠାରୁ ବିଚ୍ଛିନ୍ନ କରି ରଖି ଦେଇଥିଲା । ଫଳରେ ଗୋଟିଏ ନିର୍ଦ୍ଦିଷ୍ଟ ପଦାର୍ଥ ବା ଜୀବକୁ ବୁଝାଇବା ପାଇଁ ଭିନ୍ନ ଭିନ୍ନ ଶବ୍ଦ ସୃଷ୍ଟି ହୋଇଯିବା ସ୍ୱାଭାବିକ ପାଣି, ଜଳ, ନିରୁ, ଓ୍ୱାଟର, ଆକୁଆ—ଗୋଟିଏ ପଦାର୍ଥର ଭିନ୍ନ ଭିନ୍ନ ନାମ । ପୃଥିବୀରେ ସୃଷ୍ଟି ହୋଇଗଲା ବହୁ ସଂଖ୍ୟକ ଭାଷା । ଯେଉଁ ଭାଷାରେ ଅଧିକରୁ ଅଧିକ ଶବ୍ଦ ରହିଲା ସେ ଭାଷା ଅଧିକ ଉନ୍ନତ ବୋଲି କୁହାଗଲା । ଅଧିକ ଶବ୍ଦର ସୃଷ୍ଟି ହେଲା ସେତିକିବେଳେ ଯେତେବେଳେ ଗୋଟିଏ ଭାଷା ଭାଷୀ ଲୋକେ ନାନା ରକମର କାମକଲେ, ନୂତନ ଧରଣର ଚିନ୍ତା କଲେ, ଧର୍ମ ଦର୍ଶନ ଇତ୍ୟାଦି ବିଷୟରେ ଆଲୋଚନା କଲେ । ଯେଉଁମାନେ ସେଭଳି ନକରି କେବଳ ଖାଇପିଇ ଚଳିଯିବାରେ ଓ ସେହି ସମ୍ପର୍କରେ ଭାବର ଆଦାନ ପ୍ରଦାନରେ ସନ୍ତୁଷ୍ଟ ରହିଗଲେ ସେମାନେ ଅଳ୍ପ ଶବ୍ଦରେ କାମ ଚଳାଇ ନେଲେ । ସେମାନେ ଗୋଟିଏ ସ୍ୱତନ୍ତ୍ର ଭାଷା କହୁଥିଲେ ମଧ୍ୟ ସେହି ଭାଷାରେ ରହିଗଲା ମାତ୍ର ହଜାରେ ଦି’ ହଜାର ଶବ୍ଦ ବା ସ୍ଥଳ ବିଶେଷରେ ତାହାଠାରୁ କମ୍ । ବହୁ ଗୋଷ୍ଠୀର ଲୋକ ଭିନ୍ନ ଭିନ୍ନ ଭାଷା କହୁଛନ୍ତି—କିନ୍ତୁ ଅଳ୍ପ ସଂଖ୍ୟକ ଶବ୍ଦରେ ସେମାନଙ୍କ କାମ ଚଳିଯାଉଥିବାରୁ ସେଗୁଡ଼ିକୁ ଉନ୍ନତ ଭାଷା ତାଲିକା ଭିତରେ ରଖାଯାଉ

ନାହିଁ । ପୃଥିବୀରେ କେତେ ହଜାର ଭାଷା ଥିଲେ ମଧ୍ୟ ମାତ୍ର ପ୍ରାୟ ଦୁଇ ଶହଟିକୁ ଉନ୍ନତ ଭାଷା ବୋଲି କୁହାଯାଉଛି । କେଉଁ ଭାଷାରେ କେତେ ଶବ୍ଦ ଅଛି ତାକୁ ଗଣିଦେଇ ଲୋକେ ଧାରଣା କରୁଛନ୍ତି ସେହି ସବୁ ଭାଷା କେତେ ଉନ୍ନତ, ସେହି ଭାଷା ଭାଷୀ ଲୋକେ ଚିନ୍ତା ଭାବନା ଜ୍ଞାନରେ କେତେ ଆଗେଇ ଯାଇଛନ୍ତି । ଏହାସତ୍ତ୍ୱେ ଆଜି ଗୋଟିଏ ପ୍ରଶ୍ନ ଉଠୁଛି ଅଛି ।

ଯେଉଁମାନେ ଅଳ୍ପରେ ସନ୍ତୁଷ୍ଟ, ଜ୍ଞାନ ବିଜ୍ଞାନର ସବୁ ବିଭାଗ ବିଷୟରେ ଜାଣିବାକୁ ଲେଖିବାକୁ କହିବାକୁ ଆଲୋଚନା କରିବା ପାଇଁ ଆଗ୍ରହୀ ନୁହନ୍ତି ବା ଆବଶ୍ୟକତା ଅନୁଭବ କରୁନାହାନ୍ତି ସେମାନେ ନିଜ ଭାଷା ଭିତରକୁ ଗୁଡ଼ାଏ ଶବ୍ଦ ବୋହି ଆଣିବେ କାହିଁକି ? ଆଣିଲେ ବି ସେଗୁଡିକ ହିନେ ଅଲଗା ବୋଲି ମନେହେବ । ଯାହାର କିଛି ବ୍ୟବହାର ନହେଉଛି ତାହା ଆମ ଘରେ ରହିଲେ ଅଦରକାରୀ ବା ଅଲଗା ଭାବରେ ରହିଯାଉଛି । ଆମେ ଯଦି ସ୍ୱୀକାର କରିଯିବା ଯେ ଓଡ଼ିଆ ଭାଷାରେ ଉାକ୍ତରୀ ବହିସବୁ ଲେଖା ଯାଇ ପାରିବ ନାହିଁ, ପ୍ରାୟ ଷୁରିହଜାର ନୂତନ ବା ନୂତନ ଅର୍ଥ ଧରିଥିବା ପୁରୁଣା ଶବ୍ଦକୁ ଅଭିଧାନରେ ରଖି ତାହାର କଳେବର ବୃଦ୍ଧି କରିବା କାହିଁକି ? ମହାକାଶ ବିଦ୍ୟା, କ୍ୱାଣ୍ଟମ ଥିଓରୀ, ସେମି କଣ୍ଡକ୍ଟର, ପଲିମର ପ୍ରଭୃତି ବିଷୟରେ ଆମ ଭାଷାରେ କିଛିହେଲେ ଲେଖାଯିବ ନାହିଁ ବା ଯାଇ ପାରିବ ନାହିଁ ବୋଲି ସ୍ଥିର ହୋଇଗଲା ପରେ ବହୁ ସହସ୍ର ଶବ୍ଦ ସହିତ ପରିଚିତ ହେବାର କୌଣସି ହେଲେ ଆବଶ୍ୟକତା ନାହିଁ । କିନ୍ତୁ ଯଦି ସ୍ଥିର କରିଦେଲେ ଯେ ସେହି ଗୁଡ଼ିକ ଅତି ଦରକାରୀ ବିଷୟ ତେବେ ନୂତନ ନୂତନ ଶବ୍ଦକୁ ଆମ ଭାଷା ଭିତରକୁ ଆଣିବାକୁ ହେବ ଓ ସେଗୁଡ଼ିକର ବ୍ୟବହାର ଶିଖିବାକୁ ପଡିବ ।

ଯେଉଁ ଓଡ଼ିଆ ଭାବୁଛନ୍ତି ଯେ ଓଡ଼ିଆ ଲୋକେ ନିଶ୍ଚୟ ସବୁଜ୍ଞାନର ଅଧିକାରୀ ହେବେ ଓ ତାହା ପୁଣି ନିଜର ମାତୃଭାଷା ଓଡ଼ିଆ ମାଧ୍ୟମରେ ପାଇବେ, ସେମାନେ ନିଶ୍ଚୟ ବ୍ୟଗ୍ର ହେବେ ଯଥା ଶୀଘ୍ର ସମ୍ଭବ ଓଡ଼ିଆ ଭାଷାକୁ ଶବ୍ଦ ସମୃଦ୍ଧ କରିବା ପାଇଁ । ତାହା କରାଯାଇ ପାରିବ ଯଦି ଓଡ଼ିଆ ଭାଷାରେ ବହୁ ସଂଖ୍ୟକ ପୁସ୍ତକ ଲେଖା ହେବ । ସେ ଦିଗରେ ମନ ଦିବ ଯଦି ସ୍ଥିର ହେବ ସମଗ୍ର ଜାତିଟାକୁ ଶିକ୍ଷିତ କରିବାକୁ ପଡ଼ିବ—ଅଳ୍ପ କେତେ

ଲୋକଙ୍କୁ ନୁହେଁ । ଯେତେ ପ୍ରକାର ଯେତେଥର କହିଲେ ମଧ୍ୟ ଯେଉଁ କଥାଟି କେବେହେଲେ ପୁରୁଣା ହେଉନାହିଁ କି ହେବନାହିଁ ତାହା ହେଲା ଆଇନଷ୍ଟାଇନଙ୍କର ସେହି ଉକ୍ତି ଜ୍ଞାନକୁ ସୀମିତ କରି ରଖିଦେଲେ ଜାତିଟା ଆଧ୍ୟାତ୍ମିକ ଦାରିଦ୍ର୍ୟ ଭିତରକୁ ଠେଲି ହୋଇଯାଏ ।

ଓଡ଼ିଆ ଭାଷା ଭିତରକୁ କିଭଳି ନୂଆଶବ୍ଦ ଆସିବ ଓ ସେହିସବୁ ଶବ୍ଦର ବ୍ୟବହାର ଏଭଳି ଭାବରେ କରାଯିବ ଯେ ପାଠକ ମାନଙ୍କୁ ସୁଖ ଲାଗିବ ସେହି ଦିଗରେ ପ୍ରତିବିଧାନ କଳ୍ପନା କିଛି କରୁଛି । କରିବାକୁ ବାଧ ହେଉଛି ବୋଲି କହିଲେ ବରଂ ଠିକ୍ ହେବ । ଜ୍ଞାନମଣ୍ଡଳର ପୃଷ୍ଠା ଗୁଡ଼ିକ ଓଲଟାଇ ଗଲେ ସ୍ପଷ୍ଟ ହୋଇଯିବ ସବୁ ଜ୍ଞାନ ଉପରେ କିଭଳି ଲେଖାଯାଉଛି । ଓଡ଼ିଆ ଅଭିଧାନରେ ଯେଉଁସବୁ ଶବ୍ଦଥିଲା--ଯାହାର ବ୍ୟବହାର ପାଇଁ ସୁଯୋଗ ନଥିଲା ସେଗୁଡ଼ିକ ଭିତରେ କିପ୍ରକାରର ସୌନ୍ଦର୍ଯ୍ୟ ରହିଛି ତାହା ବେଶ୍ ଜଣା ପଡ଼ିଯିବ । 'ପିଙ୍ଗାରୁଣ'ଟି କିଛି ନୂଆ ଶବ୍ଦ ନୁହେଁ ଓଡ଼ିଆ ଭାଷା ପାଇଁ । ପିଙ୍ଗ ଓ ଅରୁଣର ସନ୍ଧି ହୋଇ ଏହି "ନୂତନ" ଶବ୍ଦର ସୃଷ୍ଟି । କିନ୍ତୁ ଏହାର ବ୍ୟବହାର ଯେଉଁ ଅର୍ଥରେ ହୋଇଛି ସେହି ଅର୍ଥ ବୁଝିବାର ଆବଶ୍ୟକତା ନଥିଲା । ରକ୍ତ ସହିତ ବିଜ୍ଞାନ ଦୃଷ୍ଟିରୁ ଆମର ପରିଚୟ ନଥିଲା କି ହାର୍ଭେଙ୍କ ପୂର୍ବରୁ ରକ୍ତଚଳନା ବିଷୟରେ କିଛି ଜଣା ନଥିଲା । ଯକୃତ ବିଷୟରେ ଆୟୁର୍ବେଦ ଶାସ୍ତ୍ର ଯେଉଁ ଜ୍ଞାନ ଲିପିବଦ୍ଧ କରିଥିଲା ତାହାର ଦଶଗୁଣ ଜ୍ଞାନ ଏବେ ମିଳିଗଲାଣି । ସେହି ବିଷୟରେ ଇଂରାଜୀ ଭାଷାରେ ଲେଖିବାର ଆବଶ୍ୟକତା ଦେଖା ଦେଲାରୁ ଗ୍ରୀକ୍‌ରୁ 'ରୁବର' ଶବ୍ଦଟିକୁ ଆଣି 'ବାଇଲ୍' ଶବ୍ଦ ସହିତ ମିଶାଇ 'ବିଲି ରୁବିନ' ବୋଲି ଗୋଟିଏ ଶବ୍ଦ ସୃଷ୍ଟି କରି ଦିଆଗଲା । ବାଇଲ୍ ଅର୍ଥ ପିତ୍ତ । ରୁବର ଅର୍ଥ ଲାଲ । ଡାକ୍ତରୀ ବିଦ୍ୟାଟି ଇଂରାଜୀରେ ପଢ଼ାଗଲା— ତେଣୁ ବିଲିରୁବିନର ଓଡ଼ିଆ ପ୍ରତିଶବ୍ଦ କଅଣ ହେବ ସେ ବିଷୟରେ ଚିନ୍ତା କରିବାର ଆବଶ୍ୟକତା ଦେଖା ଦେଲାନାହିଁ । ଜ୍ଞାନମଣ୍ଡଳରେ ଯେତେବେଳେ ରକ୍ତ ଉପରେ ଦୀର୍ଘ ପ୍ରବନ୍ଧ ଲେଖାଗଲା ସେତେବେଳେ ଏହି ଶବ୍ଦର ବ୍ୟବହାର ଓଡ଼ିଆ ଭାଷାରେ ହେଲା । ଭାରତ ସରକାରଙ୍କ ତରଫରୁ ଯେଉଁ ଟେକ୍‌ନିକାଲ ଅଭିଧାନ କରାଯାଇଛି ସେଥିରେ ଏହି ଶବ୍ଦଟି ଅଛି । କିନ୍ତୁ ତାହାର ବ୍ୟବହାରର ଆବଶ୍ୟକତା ପଡ଼ିନଥିଲା ।

ଉକ୍ତ ପ୍ରବନ୍ଧ ଓ ବିଜ୍ଞାନ ଉପରେ ଅନ୍ୟ ପ୍ରବନ୍ଧ ସବୁ ଲେଖିଲା ବେଳେ ଗୋଟିଏ ଅଭାବ ରହିଯାଇଛି ବୋଲି ଅନୁଭବ କଲି । 'ପିତ୍ତରୁଣ' ବୋଲି ଲେଖିଦେଲେ ଯେ ପାଠକ ଠିକ୍ ଭାବରେ ଅର୍ଥ ବୁଝିଯିବେ ଏଭଳି ବସୃରବାର କାରଣ ନାହିଁ । ଧରନ୍ତୁ ଜଣେ ପାଠକ ଉକ୍ତ ପ୍ରବନ୍ଧ ପଢ଼ିଲ୍‌ବେଳେ ଏହି ଶବ୍ଦଟିକୁ ଦେଖିଲେ । ତାହାର ଠିକ୍ ଅର୍ଥ ବୁଝିବା ପାଇଁ ଓଡ଼ିଆ ଅଭିଧାନ ଖୋଲିଲେ । ସେଥିରେ ଏହି ଶବ୍ଦଟି ନାହିଁ । ସେ କଅଣ କରିବେ ? ସେଥିପାଇଁ ଉକ୍ତ ପ୍ରବନ୍ଧ ଶେଷରେ ଉଲ୍ଲେଖ କରି ଦିଆଯାଇଛି ଯେଉଁ ସବୁ ଓଡ଼ିଆ ବିଜ୍ଞାନ ଶବ୍ଦ ଦିଆଯାଇଛି ସେଗୁଡ଼ିକର ସୃଷ୍ଟି କିଭଳି ହୋଇଛି ଓ ପ୍ରକୃତ ଅର୍ଥ କଅଣ । ଓଡ଼ିଆ ବୋଲି ଜଣା ପଡ଼ୁଥିବା ବହୁ ଶବ୍ଦର ପ୍ରକୃତ ଅର୍ଥ ବୁଝି ମନେରଖିବାକୁ ହେଲେ ଏହିସବୁ ଶବ୍ଦର ଉତ୍ପତ୍ତି ସଂପର୍କରେ ବୁଝାଇ ଦେବାକୁ ପଡ଼ିବ । ସେଗୁଡ଼ିକ ସଂଖ୍ୟା ହେଲା ପ୍ରାୟ ଦୁଇଲକ୍ଷ । ଏଗୁଡ଼ିକୁ ବିଜ୍ଞାନ—ଶବ୍ଦ ବା ଟେକ୍‌ନିକାଲ ଶବ୍ଦବୋଲି କୁହାଯାଉଛି ।

ଓଡ଼ିଆରେ ଦୁଇଟି ଅଭିଧାନ ପ୍ରଣୟନର ଆବଶ୍ୟକତା ରହିଛି । ଗୋଟିଏ ହେଲା ଇଂରାଜୀରୁ ଓଡ଼ିଆ । ସେଥିରେ ଲେଖାଯିବ—'BILIRUBIN —ପିତ୍ତରୁଣ' । ଆଉ ଗୋଟିଏ ହେବ ଓଡ଼ିଆରୁ ଓଡ଼ିଆ ଏବଂ ଇଂରାଜୀ । ସେଥିରେ ଲେଖାଯିବ—"ପିତ୍ତରୁଣ—ପିତ୍ତ ଏବଂ ଅରୁଣ ଶବ୍ଦର ମିଶ୍ରଣରେ ଏହାର ସୃଷ୍ଟି । ଇଂରାଜୀ Bilirubin ରୁ ଏହା ଆସିଛି । ବାଇଲ୍ ଅର୍ଥ ପିତ୍ତ ଓ ଗ୍ରୀକ୍ ଭାଷାରେ ଥିବା ରୁବର ଅର୍ଥ ଲାଲ । ତେଣୁ ପିତ୍ତରୁଣ ।" ଏହାକୁହିଁ ମୁଁ ନାମ ଦେଇଛି Explanatory Dictionary ବା ଅର୍ଥକୁ ବୁଝାଇ ଦେବା ଉଦ୍ଦେଶ୍ୟରେ ଅଭିଧାନ । ଆସନ୍ତା ପଚାଶ ବର୍ଷ ପର୍ଯ୍ୟନ୍ତ ଏହାର ଉପଯୋଗିତା ବା ଆବଶ୍ୟକତା ରହିବ । ତାହାପରେ ଯେତେବେଳେ ପିତ୍ତରୁଣ ଶବ୍ଦଟିର ଅର୍ଥ ସହିତ ସମସ୍ତେ ପରିଚିତ ହୋଇଯିବେ ଓ ବହୁସଂଖ୍ୟକ ଓଡ଼ିଆ ଡାକ୍ତରଙ୍କ ବହିରେ ସେଇଟି ବାରମ୍ବାର ଆସିଯିବ ସେତେବେଳେ ଆଉ ଏଭଳି ବୁଝାଇ ଲେଖିବା ଅଭିଧାନର ଆବଶ୍ୟକତା ହୁଏତ ରହିବ ନାହିଁ ।

ସମସ୍ୟାଟିର ସମାଧାନ ସେଇଠି ହୋଇ ଯାଉ ନାହିଁ । ଏହି ନୂତନ ବା ନୂତନ ଭାବରେ ସୃଷ୍ଟି କରାଯାଇଥିବା ଶବ୍ଦ ଗୁଡ଼ିକ କେବଳ ଓଡ଼ିଆରୁ ଓଡ଼ିଆ ଅର୍ଥ ଜାଣିବା ପାଇଁ ଉଦ୍ଦିଷ୍ଟ ଅଭିଧାନର ପୃଷ୍ଠାରେ ସ୍ଥାନ

ପାଇବା ଆବଶ୍ୟକ । ଜଣେ ଯେତେବେଳେ ଗୋଟିଏ ଡ଼ାକ୍ତରୀ ବହିକୁ ଓଡ଼ିଆରେ ପଢ଼ି ଦେଇପାରୁଛି ଓ 'ପିତ୍ତରୁଣ' ବା 'ଲୋହିତାଣୁଜନକ' ଭଳି ଶବ୍ଦ ଦେଖୁଛି ସେତେବେଳେ ସେ ଓଡ଼ିଆ ଅଭିଧାନଟି ମେଲାଇବ । ସେଥିରେ ଯଦି ଏହି ଶବ୍ଦ ନଥିବ ସେ ଅସୁବିଧାରେ ପଡ଼ିବ । ଏହି ଆଲୋଚନା ସ୍ପଷ୍ଟ କରିଦେଉଛି ଓଡ଼ିଆ ଭାଷାରେ ଗୁଡ଼ାଏ ଅଭିଧାନ ଦରକାର—ଓଡ଼ିଆରୁ ଓଡ଼ିଆ, ଇଂରାଜୀରୁ ଓଡ଼ିଆ, ବିଜ୍ଞାନ ଇଂରାଜୀ ଶବ୍ଦ ଗୁଡ଼ିକର ଇଂରାଜୀରୁ ଓଡ଼ିଆ, ବିଜ୍ଞାନ—ଓଡ଼ିଆ ଶବ୍ଦ ଗୁଡ଼ିକର ଓଡ଼ିଆରୁ ଓଡ଼ିଆ ଇଂରାଜୀ ଓ ସେହିଗୁଡ଼ିକ ଇଂରାଜୀ ଭାଷାକୁ କେମିତି ଆସିଲେ ତାହାର ବର୍ଣ୍ଣନା । ଅନତିକମ୍‌ରେ ଏହି ଗୁଡ଼ାଏ ଅଭିଧାନ ପ୍ରଣୟନ ନ ହେଲେ ଓଡ଼ିଆ ଭାଷା "ସମୃଦ୍ଧିର ରାଜପଥ"ରେ ଆଗେଇ ଯାଇପାରିବ ନାହିଁ ।

ମୋର ଏହିଭଳି ଚିନ୍ତା ଭିତରେ ଆଦୌ ପ୍ରମାଦ ନାହିଁ ବୋଲି ଧରି ନେଉଥିବାବେଳେ ଦିନେ ଏଭଳି ଗୋଟିଏ ଘଟଣା ଘଟିଗଲା ଯେ ଟିକିଏ ବିସ୍ମିତ ହୋଇଗଲି । କାରଣ ସେଭଳି କଥା ଶୁଣିବି ବୋଲି ବୌଦ୍ଧିକ ସ୍ତରରେ ପ୍ରସ୍ତୁତ ନଥିଲି । ଆମ ଦେଶରେ ତ ବରାବର କୁହାଯାଏ—ବିଜ୍ଞାନ ବିଷୟକୁ ଯେ ଭାରତୀୟ ଭାଷାରେ ଲେଖାଯାଇ ପାରୁନାହିଁ ତାହାର ପ୍ରଧାନ କାରଣ ହେଲା ଯେଉଁସବୁ ଟେକ୍‌ନିକାଲ ଶବ୍ଦ ବିଜ୍ଞାନରେ ବ୍ୟବହାର କରାଯାଏ ସେଗୁଡ଼ିକର ପ୍ରତିଶବ୍ଦ ଆମ ଭାଷାରେ ନାହିଁ । ଏହା ସାଙ୍ଗକୁ ଇଂରାଜୀର ସେହିସବୁ ହେଲେ ଆନ୍ତର୍ଜାତିକ ସ୍ତରରେ ଗୃହୀତ ବା ସ୍ୱୀକୃତ ଶବ୍ଦ । ସେଗୁଡ଼ିକ ସହିତ ପରିଚିତ ହୋଇଗଲେ ଇଉରୋପୀୟ ଭାଷାରେ ଲେଖାଯାଇଥିବା ବିଜ୍ଞାନ ବହି ସବୁ ପଢ଼ିବାରେ ସହାୟତା ମିଳିବ । କାରଣ ଯେ କୌଣସି ଇଉରୋପୀୟ ଭାଷାରେ ଲେଖା ଯାଇଥାଉ ପଛକେ ଏହିସବୁ ଶବ୍ଦର ଅର୍ଥ ବୁଝିଯାଇ ହେବ । ଏହି କଥା ଶୁଣି ଶୁଣି ମୋର ମଧ୍ୟ ବିଶ୍ୱାସ ହୋଇଯାଇଥିଲା । ସେହି ଶବ୍ଦ ଗୁଡ଼ିକର ଗୁରୁତ୍ୱ ଆମ ପାଇଁ ଖୁବ୍ ବେଶୀ ବୋଲି ଧରିନେବାରେ କିଛି ଅସ୍ୱାଭାବିକତା ନଥିଲା । ଦିନେ ସୋଭିଏତ ଇଉନିୟନର ଜଣେ ପ୍ରସିଦ୍ଧ ଏକାଡେମିସିଆନ ସିତ୍‌ସିନ୍ (Tsitsin) ମୋ ଅଫିସକୁ ଆସିଲେ । ସେ ଜଣେ ଆନ୍ତର୍ଜାତିକ ଖ୍ୟାତି ସମ୍ପନ୍ନ ଉଦ୍ଭିଦବିଦ୍ୟାବିତ୍ । ଉଦ୍ଭିଦ ବିଜ୍ଞାନକୁ ତାଙ୍କର ଦାନ ରହିଛି । ମୌଳିକ ଗବେଷଣାରେ ସେ ନିଜକୁ ନିୟୋଜିତ କରି

ଦେଇଛନ୍ତି । ଭାରତ ଗସ୍ତରେ ଆସିଥିବା ଅବସରରେ ଓଡ଼ିଶା ଆସିଲେ । କଟକରେ ଥିବା ରାଇସ ରିସର୍ଚ୍ଚ ଇନ୍‌ଷ୍ଟିଚିଉଟରେ ସେ ଭାଷଣ ଦେବେ— ରେଭେନସା କଲେଜର ଉଦ୍ଭିଦ ବିଜ୍ଞାନ ବିଭାଗରେ ମଧ୍ୟ । ଉଦ୍ଭିଦ ବିଦ୍ୟାବିତ୍ ଡକ୍ଟର ପରିଜା ତାଙ୍କ ସାଙ୍ଗରେ ଆସିଥାଆନ୍ତି । ଏକାଡେମି-ସିଆନ ସିତ୍‌ସିନଙ୍କ ସହିତ ଜଣେ ତରୁଣୀ ଆସିଥାନ୍ତି ଦ୍ୱିଭାଷୀ ଭାବରେ । ବିଜ୍ଞାନକୁ ସର୍ବଜନ ଆଦୃତ କରିବା ପାଇଁ ମୁଁ କପରି କାମ କରୁଛି ସେ ବିଷୟରେ ପରିଜା ତାଙ୍କୁ ବୁଝାଇଲେ । ସୋଭିଏତ ରୁଷରେ ପ୍ରକାଶିତ ହେଉଥିବା ବିଜ୍ଞାନ ବହିଗୁଡ଼ିକୁ ପଢ଼ି ମୁଁ କଭଳି ଉପକୃତ ହୋଇଛି ତାହା ବୁଝାଇଲି—ସେ ସବୁ ବହିରୁ କେତେ ଗୁଡ଼ାଏ ଶବ୍ଦ ଦେବା ଫଳରେ ଲୋକେ ବିଜ୍ଞାନର କେତେକ ଜଟିଳ ତତ୍ତ୍ୱକୁ ସହଜରେ ବୁଝି ଯାଉଛନ୍ତି ବୋଲି କହିଲି ଫଳରେ ସେ ସନ୍ତୋଷ ପ୍ରକାଶ କଲେ । କହୁ କହୁ କହିଦେଲି— କେତେ ଗୁଡ଼ାଏ ଆନ୍ତର୍ଜାତିକ ବିଜ୍ଞାନ ଶବ୍ଦକୁ ସିଧାସଳଖ ନେଇ ଯାଇ ଆମେ ଠିକ କରୁଛୁ ବୋଲି ବିଶ୍ୱରୁଛି । ସେହି ଦ୍ୱିଭାଷୀ—ତରୁଣୀ ଯେତେବେଳେ ଇଣ୍ଟରନେଶନାଲ ଟର୍ମିନୋଲଜି ବୋଲି ଶୁଣିଦେଲେ ଚମକି ପଡ଼ିଲା ଭଳି ହୋଇ କହିପକାଇଲେ—ଆପଣ କହିବାକୁ ଚାହୁଁଛନ୍ତି ଇଂଲିଶ ଟରମିନୋଲଜି ? ମୁଁ ହଠାତ୍ ଧରି ପାରିଲି ନାହିଁ । ପୁଣି ସେହି କଥା କହିଲି । ସେ ବୁଝାଇବାକୁ ଲାଗିଲେ ଇଂରାଜୀ ଭାଷାରେ—ଯେଉଁ ସବୁ ବିଜ୍ଞାନ ଶବ୍ଦ ଅଛି ଆମେ ଯେ ସେଗୁଡ଼ିକୁ ଗ୍ରହଣ କରିଯାଇଛୁ ଏଭଳି କାହିଁକି ଆପଣ ବିଶ୍ୱରୁଛନ୍ତି ? ଆମ ଭାଷାରେ ସେଥିପାଇଁ ଭିନ୍ନ ଶବ୍ଦଅଛି । ଜର୍ମାନମାନେ ମଧ୍ୟ ସେମିତି କହିବେ । ଇଣ୍ଟରନେଶନାଲ ଟରମିନୋଲୋଜି ବୋଲି ସେମିତି କିଛି ନାହିଁ । ଡକ୍ଟର ପରିଜାଙ୍କ ମୁହଁକୁ ଚାହିଁଲି । ସେ କିଛି କହୁ ନଥାନ୍ତି । ଅନ୍ୟ କଥା ପଡ଼ିଲା । ପଣ୍ଡିତ ସିତ୍‌ସିନଙ୍କର ଟାଇଟ ପ୍ରୋଗ୍ରାମ । ସେ ତରୁଣୀ ଦି ତିନୋଟା ଶବ୍ଦ କହିଦେଇ ତୁଳନା କରିଦେଲେ କେମିତି ଇଂରାଜୀ ଭାଷାରେ ପ୍ରଚଳିତ ସେହିସବୁ ବିଜ୍ଞାନ ଶବ୍ଦ ରୁଷୀୟ ଭାଷାରେ ଏକାବେଳକେ ଭିନ୍ନ । ମୋର ମନେ ରହିଲା ନାହିଁ—ଏତେ ତରତରରେ ଥିଲି ଯେ ମନେ ନରହିବା ସ୍ୱାଭାବିକ । ଦିଲ୍ଲୀପୁରରେ ସେ ଯେଉଁ ରୁଷୀୟ ଶବ୍ଦ କହିଲେ ତାକୁ ମନେ ରଖିବା ମୋ ପକ୍ଷରେ ଏକରକମ ଅସମ୍ଭବ ଥିଲା ।

ପରେ ଯେତେବେଳେ ବ୍ରିଟାନିକା ପୃଥିବୀ ଭାଷା ଅଭିଧାନ' Britannica world Language Dictionary) ର ପୃଷ୍ଠା ଓଲଟାଇ ଗଲି ମୋ ଆଖି ଖୋଲିଗଲା । ଉଏବ୍‌ଷ୍ଟାର ର Webster's third New International Dictionaryର 1976 ସଂସ୍କରଣ ସହିତ ଗୋଟିଏ ପୃଥିବୀ ଭାଷା ଅଭିଧାନ ଯୋଗକରି ଦିଆଯାଇଛି । ସେଥିରେ ଅଛି ମାତ୍ର ଛ' ହଜାର ଶବ୍ଦ । ପାଶ୍ଚାତ୍ୟ ଜଗତର ସାତଟି ଭାଷାର ଏହି ଛଅ ହଜାର ଶବ୍ଦ ଗୁଡ଼ିକ ସହିତ ଠିକଏ ପରିଚିତ ହୋଇଗଲେ ଅନୁବାଦ ପାଇଁ ସହଜ ହେବ ଓ ସେହି ସବୁ ଭାଷାର ବହି ପଢ଼ିଲାବେଳେ ଏଗୁଡ଼ିକ ସହାୟକ ଶବ୍ଦ ଭାବରେ କାମ କରିବେ । ଇଂରାଜୀ ଶବ୍ଦର ଡାହାଣରେ ଆଉ ଛଟି ଭାଷାର ପ୍ରତିଶବ୍ଦ ଲେଖି ଦିଆ ଯାଇଛି । ସେଗୁଡ଼ିକ ହେଲେ—ଫରାସୀ, ଜର୍ମାନ, ଇଟାଲୀୟ, ସ୍ପେନିଶ୍, ସୁଇଡ଼ିସ ଏବଂ ଡଚ୍ । ଇଂରାଜୀ ଶବ୍ଦକୁ ଆରମ୍ଭରେ ରଖି ତାହା ଡ଼ାହାଣରେ ଅନ୍ୟ ଛଅଟିର ପ୍ରତିଶବ୍ଦ ରହିଲା ଭଳି ଜର୍ମାନ ଶବ୍ଦକୁ ପ୍ରଥମେ ରଖି ତା' ଡ଼ାହାଣରେ ଇଂରାଜୀ ଓ ଅନ୍ୟ ପାଞ୍ଚଟି ଭାଷାର ଶବ୍ଦକୁ ଲେଖି ଦିଆ ଯାଇଛି । ତାହାହେଲେ ଜଣେ ଜର୍ମାନ ତା ଭାଷାର ଇଂରାଜୀ ବା ସୁଇଡସ ପ୍ରତିଶବ୍ଦ କଅଣ ହେବ ଜାଣିପାରିବ । ଏଭଳି ଗୋଟିଏ ଉଦ୍ୟମ ବା ଅଭିଧାନ ପ୍ରଣୟନର ଉଦ୍ଦେଶ୍ୟ ବିଷୟରେ ଲେଖା ଯାଇଛି - "ସମସ୍ତଙ୍କ ଭିତରେ, ବିଶେଷକରି ଯୁବକମାନଙ୍କ ଭିତରେ ଆଧୁନିକ ଭାଷା ବିଷୟରେ ଆଗ୍ରହ ସୃଷ୍ଟି କରିବା; ଜଣେ ଯିଏ ଗୋଟିଏ ବହି ପଢ଼ି ଯାଉଛି ସେ ହୁଏତ ଗୋଟିଏ ଶବ୍ଦର ପ୍ରତିଶବ୍ଦ ଅନ୍ୟ ପାଶ୍ଚାତ୍ୟ ଜଗତ ଭାଷାରେ କଅଣ ହୋଇଥିବ ହଠାତ୍ ଜାଣିବା ପାଇଁ ଇଚ୍ଛା କରିବ, ଗୋଟାଏ ନିର୍ଦ୍ଦିଷ୍ଟ ଶବ୍ଦର ଉଚ୍ଚାରଣ ଜାଣିପିବ, ଯେଉଁମାନେ ନିଜ ଭାଷା ବାହାରେ ଅନ୍ୟ କୌଣସି ଭାଷା ଜାଣି ନାହାନ୍ତି ସେମାନଙ୍କ ଭିତରେ ଆଗ୍ରହ ସୃଷ୍ଟି କରିବ । ହିସାବ କରି ଦେଖା ଯାଇଛି ପ୍ରାୟ ୭୦ କୋଟି ଲୋକ (୧୯୭୬ରେ) ଏହି ଛଟି ଭାଷାରେ ଭାବର ଆଦାନ ପ୍ରଦାନ କରନ୍ତି । ପୃଥିବୀ ଲୋକ ସଂଖ୍ୟାର ଏମାନେ ହେଉଛନ୍ତି ପାଞ୍ଚଭାଗରୁ ଭାଗେ । କେବଳ ପାଶ୍ଚାତ୍ୟ ଜଗତକୁ ହିସାବକୁ ନେଲେ ଏହି ୭୦ କୋଟି ହେଉଛନ୍ତି ତିନି ଚତୁର୍ଥାଂଶ । ତେଣୁ ପାଶ୍ଚାତ୍ୟ ଜଗତର ବହୁ ଅଂଶର ଲୋକେ ଏହି ଅଭିଧାନ ଦ୍ୱାରା ଉପକୃତ ହୋଇପାରିବେ । ଆଜିର ମୁକ୍ତ ଜଗତର ଅତି ବେଶୀ ଅଂଶ ହେଉଛି ଏହି ଅଞ୍ଚଳ । ଇଡ୍‌ସ ଭାଷାକୁ କାହିଁକି ବଛାଗଲା

ତାହାର କାରଣ ସ୍ୱରୂପ କୁହାଯାଇଛି, ପ୍ରଥମଥର ପାଇଁ ଏହି ଭାଷାର ଶବ୍ଦ ଗୁଡ଼ିକୁ ଇଂରାଜୀ ଭାଷାର ଅକ୍ଷରରେ ଅଭିଧାନ ରୂପରେ ରଖା ଯାଇଛି । ତେଣୁ ଇଂରେଜମାନେ ସେ ଭାଷାର ଶବ୍ଦ ସହିତ ପରିଚିତ ହୋଇପାରି ପାରିବେ । ପ୍ରତିଶବ୍ଦର ଯେଉଁଟି କମନ ବା ଅତି ସାଧାରଣ ଅର୍ଥ ତାହାହିଁ ଦିଆଯାଇଛି—ନହେଲେ କଳେବର ବଡ଼ ହୋଇ ଯାଇଥାଆନ୍ତା । 'Run' ଦୌଡ଼ିବା ଶବ୍ଦର ୭ ଶହେଟି ଅର୍ଥ ଇଂରାଜୀ ଅଭିଧାନରେ ରହିଗଲାଣି ।"

ସେ ଭଉଣୀ ଯାହା କହିଥିଲେ ତାହାତ ମୋ ମନଭିତରେ ଥିଲା । ସେଇଟି କେତେଦୂରକୁ ସତ ଜାଣିବାପାଇଁ ପ୍ରଥମେ ଦେଖିଦେଲି ସାଇନ୍‌ସ୍ (Science) ଶବ୍ଦ । ଧରି ନେଇଥାଏ ଯେ ସବୁ ଇଉରୋପୀୟ ଭାଷାରେ ଏହି ଆନ୍ତର୍ଜାତିକ ଶବ୍ଦଟି ରୂପ ନବଦଳାଇ ନିଶ୍ଚୟ ଥିବ । କିନ୍ତୁ ଦେଖିଲି ବେଳକୁ ବିଜ୍ଞାନ ଅର୍ଥାତ ସାଇନସ୍ କେବଳ ଇଂରାଜୀ ଓ ଫରାସୀ ଭାଷାରେ ଏକାଭଳି—ଅନ୍ୟ ପାଞ୍ଚଟି ଭାଷାରେ ନୁହେଁ । ଜର୍ମାନୀରେ WISSENSCHAFT ଇଟାଲିରେ Scienza, ସ୍ପେନିଶ୍‌ରେ CIENGCIA, ସୁଇଡସରେ Vetenskap, ଇଡସରେ visnashaft । ଯେତେବେଳେ ମୂଳ ଅଭିଧାନରୁ ଜାଣିଲି ଇଂରାଜୀ ଭାଷାକୁ ଏହି ଶବ୍ଦଟି ହେଉଛି ଫରାସୀ ଭାଷାର ଦାନ ଓ ଲାଟିନରୁ ଫରାସୀ ଭାଷାକୁ ଆସି ତାହାପରେ ଇଂରାଜୀକୁ ଆସିଛି, ସେତେବେଳେ ମୋର ଆଖି ଆହୁରି ଖୋଲିଗଲା । ଲାଟିନ ହେଉଛି Scientia—ଅର୍ଥାତ ନଲେଜ ବା ପରୀକ୍ଷିତଜ୍ଞାନ । ଇଂରେଜମାନେ ଫରାସୀରୁ ଏହି ଶବ୍ଦଟିକୁ ଆଣିଲେ ଓ ତାକୁ ଏହିମାନେ ଏଭଳି ଭାବରେ ଆଦର ଚଲେ ଓ ଆମ ପାଖରେ ରଖିଲେ ଯେ କେହି କେବେ ସନ୍ଦେହ କରିନାହିଁ—ଏଇଟି ମୂଳ ଇଂରାଜୀ ଶବ୍ଦ ନୁହେଁ କି ଏଥିରେ ଆଜ କୌଣସି ପରିବର୍ତ୍ତନ କରି ନୂତନରୂପ ଦେଇ ହେଲା ନାହିଁ ।

ତାହାପରେ କେବଳ ବ୍ୟଞ୍ଜନ ଶବ୍ଦଗୁଡ଼ିକୁ ବାଛି ବାଛି ଦେଖିଗଲି । ସେତେବେଳେ ଯାଇ ବୁଝିଲି ଯେ ସେହି ଭଉଣୀ ଯାହା କହୁଥିଲେ ତାହା ଠିକ୍ । ଏହି ଅଭିଧାନରେ ରୁଷୀୟ ଶବ୍ଦ ସବୁ ଦିଆ ନଯାଇଥିଲେ ମଧ୍ୟ ଅତି ବହୁ ସଂଖ୍ୟକ ଶବ୍ଦ ନିଶ୍ଚୟ ଭିନ୍ନ ହୋଇଥିବ ବୋଲି ଧରିନେଲି । ତାହା ନହୋଇଥିଲେ ସେ ଏତେ ଦୃଢ଼ତାର ସହିତ ଏଭଳି କଥା କହି ନଥାନ୍ତେ । ଏଠାରେ ଗୋଟିଏ ଦୀର୍ଘ ତାଲିକା ଦେବାକୁ ଇଚ୍ଛା କରୁନାହିଁ ।

ସହଜ ଦେଇଦେଲେ ଭଲ ହୁଅନ୍ତା । ଗ୍ରେଟ ତାଲିକାଟିଏ ଦେଇଛୁ ଓ ଏଥିରେ ଥିବା ଇଂରାଜୀ ଶବ୍ଦ ଗୁଡ଼ିକ ସହିତ ପାଶ୍ଚାତ୍ୟ ଜଗତର ଭାଷା ଗୁଡ଼ିକର ସମଅର୍ଥ ବାଚକ ଶବ୍ଦ ଭିତରେ ଯେ କୌଣସି ଭେଦ ମେଳ ନାହିଁ ତାହା ସେହି ଓ୍ୟାର୍ଲଡ୍ ଲ୍ୟାଙ୍ଗୁଏଜ ଅଭିଧାନର ପୃଷ୍ଠାଗୁଡ଼ିକ ଓଲଟାଇ ଗଲେ ଯେ କୌଣସି ପାଠକ ଜାଣି ପାରିବେ । ସର୍ଜନ, ସ୍କ୍ରୁଡ୍ରାଇଭର, ସଲଫର, ଏସିଡ୍, ସବ୍‌ମାରିନ, ସ୍କୁଲ୍, ସାଇଜ, ଷ୍ଟମାକ, ଟେଲିଫୋନ, ଟଙ୍ଗ, ଟାଇପ ରାଇଟର, ଭିନେଗାର, ଭାକୁଅମ କ୍ଲିନର, ଜିମ୍, ଶବ୍ଦ ଗୁଡ଼ିକ ମଧ୍ୟ ଆନ୍ତର୍ଜାତିକ ଶବ୍ଦ ନୁହେଁ । ବଙ୍କାନ ବାହାରେ ଇଂରାଜୀ ଭାଷାରେ ବହୁ ଶବ୍ଦ ଅଛି ଯେଉଁଗୁଡ଼ିକର ଓଡ଼ିଆ ଅନୁବାଦ ହୋଇ ପାରିବ ନାହିଁ ବୋଲି ଆମେ ଦୁଃଖ କରୁ ଓ ଆମ ଦାରିଦ୍ର୍ୟ କଥା କହୁ, ସେ ସବୁ ମଧ୍ୟ ପାଶ୍ଚାତ୍ୟ ଜଗତର ଭାଷା ଦରବାରରେ ପରିଚିତ ନୁହନ୍ତି । ଓଡ଼ିଶାରେ ନିଶ୍ଚୟ ଏଭଳି ଲୋକ ବାହାରିବେ ଯେଉଁମାନେ କି ଭବିଷ୍ୟତରେ ଟେକନିକାଲ ଅଭିଧାନ ପ୍ରଣୟନବେଳେ ଇଂରାଜୀ ଶବ୍ଦ ଗୁଡ଼ିକର ଜର୍ମାନ ଫରାସୀ ଇଟାଲୀୟ ସୁଇଡ଼ିସ ପ୍ରତିଶବ୍ଦ ଦେଖି ସେଗୁଡ଼ିକର ମୂଳ କେଉଁଠି ତାହାର ଅନୁସନ୍ଧାନ କରିବେ ଓ କେତେକ ନୂତନ ସହଜ ବୋଧଗମ୍ୟ ଶବ୍ଦ ସୃଷ୍ଟି କରିବେ । ସେତିକିବେଳେ ଭାବୁଥାଏ ଭାରତରେ ଏହିଭଳି ଗୋଟିଏ ଗୋଟିଏ ଅଭିଧାନ ବଙ୍କାନ ସମ୍ମତ ପ୍ରଣାଳୀରେ କରିଦେଲେ କେତେ ସୁବିଧା ନହୁଅନ୍ତା ! ଓଡ଼ିଆରୁ ହିନ୍ଦୀ ବା ହିନ୍ଦୀରୁ ଓଡ଼ିଆ ଅଭିଧାନର ଉଦାହରଣ ଦିଆ ଯାଇପାରେ । ଏହାର ଯଥାର୍ଥତା ପ୍ରମାଣ କରିବା ପାଇଁ ଗୋଟିଏ 'ପ୍ରମାଣ ପତ୍ର' ଛାପିଦେଇଛୁ । ଜ୍ଞାନମଣ୍ଡଳର ପ୍ରଥମ ପାରାଗ୍ରାଫଟି ସେଥିରେ ଦେବ ନାଗରୀ ଅକ୍ଷରରେ ଅଛି ଏମିତି—ମୁଁ ମନୁଷ୍ୟ-ଅନ୍ୟ ପ୍ରାଣୀମାନଙ୍କ ତୁଳନାରେ ମୋର ଗୋଟିଏ ଉନ୍ନତ ମସ୍ତିଷ୍କ ଅଛି (ମୈଁ ମନୁଷ୍ୟ ହୁଁ—ଅନ୍ୟ ପ୍ରାଣିୟୋଂ କୀ ତୁଲନା ମେଁ ମେରା ଏକ ଉନ୍ନତ ମସ୍ତିଷ୍କ ହୈ) । ତେଣୁ ଜଗତର ଯେ କୌଣସି କଥା ଜାଣିବା ପାଇଁ ଇଚ୍ଛା ହେବ । ( ଇସ୍‌ଲିଏ ଜଗତ୍ କୀ କୋଇଭୀ ବାତ୍ ଜାନ୍‌ନେ କୀ ଇଚ୍ଛା ହୋଗୀ ) । ମୁଁ ସହଜରେ ଜାଣିବ—ଜାଣିବାର ସୁଯୋଗ ପାଇବ । (ମୈଁ ସହଜ ମେଁ ଜାନୂଁଗା—ଜାନ୍‌ନେକା ସୁଯୋଗ ପାଉଁଗା) । ମୁଁ ମନୁଷ୍ୟ ହୋଇଥିବାରୁ ଜ୍ଞାନହାସଲ କରିବାଟା ମୋର ଜନ୍ମଗତ ଅଧିକାର । (ମେରେ ମନୁଷ୍ୟ ହୋନେ କେ କାରଣ ଜ୍ଞାନ ହାସିଲ୍ କର୍‌ନା ମେରା ଜନ୍ମଗତ ଅଧିକାର

ହୋ)। ସେ ଅଧିକାରରୁ ମୋତେ କେହିହେଲେ ବଞ୍ଚିତ କରିପାରିବ ନାହିଁ। (ଉସ୍ ଅଧିକାର୍ ସେ ମୁଝେ କୋଇଭି ବଞ୍ଚିତ ନହିଁ କର୍ ସକେଗା······। ଏତିକ ଭିତରେ ପଦ ପ୍ରାୟ କୋଡ଼ିଏଟି ଶବ୍ଦ ଭିତରେ ସମ୍ପୂର୍ଣ୍ଣ ମେଳ ରହିଛି ତେବେ ହିନ୍ଦୀ-ଓଡ଼ିଆ ବା ଓଡ଼ିଆହିନ୍ଦୀ ଅଭିଧାନ କରି ଦେବାରେ ଅସୁବିଧା କଅଣ ? କ୍ରିୟାରୂପ ଓ କ୍ରିୟା ଶେଷକୁ ମିଶାଇଲେ ତ ଏହି ସଂଖ୍ୟା ଆହୁରି ବଢିଯିବ। ଏବେବି ମୋର ବିଶ୍ୱାସ ଅଛି ସଫଳତାର ସହିତ ଏହି ଉଦ୍ୟମ ହେବ। ସଂସ୍କୃତର କନ୍ୟା ଭାବରେ ପରିଚିତ ବା ସ୍ୱୀକୃତ ଯେ କୌଣସି ଭାରତୀୟ ଭାଷା ସମ୍ପର୍କରେ ଠିକ୍ ଏହିଭଳି କୁହାଯାଇପାରେ। ଏହି ଅଧ୍ୟାୟର ଶିରୋନାମା ରଖିଛି 'ସାମର୍ଥ୍ୟ ଭରିବାର ଆବଶ୍ୟକତା'। ଯେତିକ କହିଗଲି ସେଥିରୁ ପାଠକମାନେ ଜାଣିପାରିବେ।

ଏଠାରେ ଗୋଟିଏ କଥା ସ୍ପଷ୍ଟ ନକରି ଦେଲେ ପାଠକମାନଙ୍କ ମନ ଗୋଟାଏ ଗୋଳମାଳିଆ ପରିସ୍ଥିତିରେ ରହିଯିବ। କୌଣସି ବ୍ୟକ୍ତି ବିଶେଷ ବା ଗୋଷ୍ଠୀ ଓଡ଼ିଆଭାଷାର ସାମର୍ଥ୍ୟ ବଢ଼ାଇବା ପାଇଁ ଏତିକକାମ କରିପାରିବେ ନାହିଁ—ଯେତିକ ନିତାନ୍ତ ଆବଶ୍ୟକ। ତେଣୁ ଏଦିଗରେ ମିଳିତ ଭାବରେ ସୁଚିନ୍ତିତ ଯୋଜନାକରି ଆଗେଇଗଲେ ଯାଇ ହେବ।

ଓଡ଼ିଆ ଭାଷା ବିଷୟରେ ଯାହା କହିଲି ଭାରତର ଯେ କୌଣସି ଭାଷା ବିଷୟରେ ସେହିଭଳି କୁହାଯାଇପାରେ। କାରଣ ସମସ୍ତଙ୍କର ସମଦଶା ଥିଲି ବ୍ରିଟିଶ ଶାସନ ଅମଳରେ। ବଙ୍ଗଳା ତାମିଲ୍ ମରହଟ୍ଟୀ ଭାଷୀଙ୍କର ଟିକିଏ ଅବଶ୍ୟ ଅଧିକ ସୁଯୋଗ ଥିଲା—ବମ୍ବେ ମାନ୍ଦ୍ରାଜ ଓ କଲିକତାରେ ଇଂରେଜମାନେ ଆସ୍ଥାନ ଜମାଇବାରୁ ଓ ଶିକ୍ଷାର ପ୍ରସାର କରାଇବାରୁ। କଲିକତାରେ ଛାପାଖାନା ବସିବାର ଶହେ ବର୍ଷପରେ ଓଡ଼ିଶାରେ ବସିଲା। ଯେତେ ଯାହାହେଲେ ମଧ୍ୟ ସ୍ୱାଧୀନତାର ଚାଳିଶ ବର୍ଷ ପରେ ମଧ୍ୟ ସେହି ଭିନୋଟି ଭାଷାରେ ବିଶ୍ୱବିଦ୍ୟାଳୟ ସ୍ତର ଶେଷ ପର୍ଯ୍ୟନ୍ତ ମାତୃଭାଷା ମାଧ୍ୟମରେ ଶିକ୍ଷା ଦିଆଯାଇ ପାରୁନାହିଁ। ଉଦ୍ୟମ ହେଲେ ମଧ୍ୟ ମଝିରୁ ଧିମେଇ ଯାଉଛି। ବହୁସଂଖ୍ୟକ ଉଚ୍ଚକୋଟୀର ତଥ୍ୟପୂର୍ଣ୍ଣ ପତ୍ରପତ୍ରିକା ସେହିସବୁ ଭାଷାରେ ପ୍ରକାଶ ପାଉନଥିବାରୁ ଛାତ୍ରମାନେ ଅସୁବିଧାରେ ପଡ଼ୁଛନ୍ତି ଓ ବିଶ୍ୱରୁଛନ୍ତି ଯେ ଇଂରାଜୀ ମାଧ୍ୟମରେ ଶିକ୍ଷା ପାଇବା ସେମାନଙ୍କ ପକ୍ଷରେ ଅଧିକ ସହଜ।



# କହିବା ପାଇଁ ସାହସ ବାନ୍ଧିଲି·····

ମୋର ଯାହା ବହୁ ଲୋକଙ୍କର ସେଇଆ ହୋଇଥିବ – ଗୋଟିଏ କଥା କହିବାକୁ ମନ ହେଉଥିବ, କିନ୍ତୁ କହିପାରୁ ନଥିବ । ଅନେକ କାରଣରୁ ସେମିତି ହୁଏ । ଗୋଟିଏ ହେଲା ତୁମ କଥାର ଓଜନ ଅଛି ବୋଲି ଅନ୍ୟମାନେ ଭାବୁନାହାନ୍ତି । ତେଣୁ କହି କିଛି ଲାଭ ନାହିଁ । ଦ୍ୱିତୀୟରେ କହିବା ଲୋକ ସେଭଳି କହିବା ପାଇଁ ଅଧିକାରୀ କି ? ଏହି ଦୁଇ କାରଣରୁ ଚୁପ୍ ରହିଥିଲି । ପରିସ୍ଥିତି ବଦଳିଗଲା ଧୀରେ ଧୀରେ । ଯେଉଁ କାମଟି ଯାହା କେତେବର୍ଷ ହେଲା କରି ଆସୁଛି ତା’ ବିଷୟରେ ଓଡ଼ିଶାର ବାହାର ଜାତୀୟ କାଗଜ ପତ୍ରପତ୍ରିକା ଆଗ୍ରହ ପ୍ରକାଶ କଲେ । ଗୋଟିକ ପରେ ଗୋଟିଏ ଲେଖାଁ ଲେଖା ପ୍ରକାଶ ପାଇଲା । ଭାରତ ସରକାରଙ୍କ ଫିଲମ୍ ଡ଼ିଭିଜନ ଗୋଟିଏ ଡ଼କୁମେଣ୍ଟାରୀ ତିଆରି କଲେ ଓ ତାହା ନାମ ରଖିଲେ “ବିନୋଦ କାନୁନ୍‌ଗୋ ? ସେଇଟି ଇଂରାଜୀ ଏବଂ ଚଉଦଟି ଭାରତୀୟ ଭାଷାରେ ପ୍ରସ୍ତୁତ ହେଲା । କଟକରେ ପ୍ରସ୍ତୁତ ହୋଇ ଜାତୀୟ ସ୍ତରରେ ଦିଲ୍ଲୀରୁ ‘ଏକ୍ ମୁଲାକାତ୍’ ସାକ୍ଷାତକାର ପ୍ରଚାର କରାଗଲା । ଲକ୍ଷ ଲକ୍ଷ ଲୋକ ଦେଖିଲେ । ଶେଷରେ ୧୯୮୭ ଜାନୁୟାରୀ ୨୬ ତାରିଖରେ ପଦ୍ମଶ୍ରୀଟିଏ ମିଳିଲା । ଓଡ଼ିଶାର ଖବର କାଗଜ ପତ୍ରପତ୍ରିକା ଭଲ ଭାବରେ ଲେଖିଲେ । ଯାହା ପଚାଶ ବର୍ଷ ଭିତରେ ଯେତିକି ପ୍ରଚାର ହୋଇନଥିଲା ପ୍ରାୟ ବର୍ଷକ ଭିତରେ ତା’ଠାରୁ ଅଧିକ ହୋଇଗଲା । ତେଣୁ ମୁଁ ଗୋଟାଏ କଥା କହିଲେ ଅନ୍ୟମାନେ ଶୁଣିବେ ବୋଲି ଜାଣିଲି—କାର୍ଯ୍ୟରେ ଦେଖିଲି ।

ଏତିକି ବେଳକୁ ଆଉ ଗୋଟିଏ କଥା ହୋଇଯାଉଥାଏ । ଭାରତରେ ନୂତନ ଶିକ୍ଷାନୀତିର ପ୍ରଚଳନ ହେବାର ପ୍ରସ୍ତାବ । ଏକବିଂଶ ଶତାବ୍ଦୀ ପାଇଁ ଜାତିଟାକୁ ବିଶେଷ କରି ପିଲାମାନଙ୍କୁ ଉପଯୁକ୍ତ ନାଗରିକ କରି ନେଇଯିବାକୁ ହେଲେ ଶିକ୍ଷାନୀତିରେ ବୈପ୍ଳବିକ ପରିବର୍ତ୍ତନ ଆଣିବାକୁ

ହେବ । ମାତୃଭାଷା ମାଧ୍ୟମରେ ଶିକ୍ଷା ଦିଆଯିବ କି ଇଂରାଜୀ ରହିବ କଲେଜ ବିଶ୍ୱବିଦ୍ୟାଳୟର ଭାଷା ଭାବରେ, ସେ ବିଷୟରେ ଜାତୀୟ ସ୍ତରରେ ଖୋଲାଖୋଲି ଆଲୋଚନା ହେଉ ବୋଲି ଭାରତ ସରକାରଙ୍କ ଇଚ୍ଛା । ତାହା ସାଙ୍ଗକୁ କିଭଳି ଉପାଦେୟ ପୁସ୍ତକ ସବୁ ପ୍ରକାଶିତ ହେବ ସେଇଟି ଗୁରୁତ୍ୱପୂର୍ଣ୍ଣ ପ୍ରଶ୍ନ । ସ୍କୁଲ କଲେଜ ପାଇଁ, ପିଲାଙ୍କ ପାଇଁ, ବଡ଼ମାନଙ୍କ ପାଇଁ ପୁସ୍ତକ ଲେଖାଯିବା ଆବଶ୍ୟକ । ପ୍ରଚଳିତ ପୁସ୍ତକଗୁଡ଼ିକ ବାଞ୍ଛିତ ଫଳ ଦେଇ ପାରୁନାହାନ୍ତି । ଜାତୀୟ ସ୍ତରରେ ଦୁଇଟି ଆଲୋଚନା ଚକ୍ର କରାଇଲେ ସରକାରଙ୍କ ଶିକ୍ଷାବିଭାଗ । ଦୁଇଟିଯାକକୁ ମୋତେ ନିମନ୍ତ୍ରଣ କରାଯାଇଥିଲା । ସରକାରଙ୍କ ନିର୍ଦ୍ଦେଶରେ ନେସନାଲ ବୁକ୍‌ଟ୍ରଷ୍ଟ ତରଫରୁ ଗୋଟିଏ ଓ୍ୱାର୍କିଙ୍ଗ୍ ଗ୍ରୁପ ଗଢ଼ାଯାଇଥିଲା । ସେହି ଗ୍ରୁପରେ ଶ୍ରୀଯୁକ୍ତ କାନ୍ତି ଚୌଧୁରୀ, ଡକ୍ଟର ଦେବୀପ୍ରସନ୍ନ ପଟ୍ଟନାୟକଙ୍କ ଭଳି ଶିକ୍ଷାବିତ ଭାଷାବିତ୍ ଥିଲେ । ନିଖିଳ ଭାରତ ହିନ୍ଦୀ ପ୍ରକାଶକ ସଙ୍ଘର ସଭାପତି ମଧ୍ୟ ଥିଲେ ଜଣେ ସଭ୍ୟ । ଶ୍ରୀମତୀ କାଳି ଥିଆମା ଥିଲେ ସେକ୍ରେଟାରୀ । ସେମାନେ ସମଗ୍ର ଭାରତରେ ସାତଆଠ ମାସ ବୁଲି ତଥ୍ୟ ସଂଗ୍ରହ କରିଥିଲେ ଓ ବହୁ ଲୋକଙ୍କ ସହିତ ଆଲୋଚନା କରିଥିଲେ । ସେହି ଗ୍ରୁପ୍ ଆସିଥିଲେ ଜ୍ଞାନମଣ୍ଡଳ ଅଫିସକୁ । ଦୁଇଘଣ୍ଟା ରହି ସବୁକଥା ଦେଖିଲେ । ଦୀର୍ଘ ଆଲୋଚନା ହେଲା । ପିଲାମାନଙ୍କ ପାଇଁ ୫୦୦ ଖଣ୍ଡ ବହି ଲେଖିବାର କଳ୍ପନା ସେମାନଙ୍କୁ ବିସ୍ମିତ କରିବା ସଙ୍ଗେ ସଙ୍ଗେ କିଛି ସନ୍ତୋଷ ମଧ୍ୟ ଦେଲା । ଆକସ୍ମିକ ଭାବରେ ସେଦିନ ଗୋଟିଏ ଯୋଗ ଜୁଟିଗଲା । ପିଲାଙ୍କପାଇଁ ଚାଳିଶ ଖଣ୍ଡ ବହି ଛପାଇ ସାରିଥାଏ । ସେଗୁଡ଼ିକ ହିନ୍ଦୀ ଜଗତରେ ମଧ୍ୟ ଆଦୃତ ହେବ ବୋଲି କେହି କେହି ମତପ୍ରକାଶ କରିବାରୁ ସେଗୁଡ଼ିକୁ ହିନ୍ଦୀରେ ଅନୁବାଦ କରାଇ ଦେଇଥାଏ । ଜଣେ ହିନ୍ଦୀ ଭାଷାଭାଷୀ ବନ୍ଧୁ ଓଡ଼ିଶାରେ ପ୍ରାୟ ପଚିଶ ବର୍ଷ କେନ୍ଦ୍ର ସରକାରଙ୍କ ଅଣହିନ୍ଦୀ କର୍ମଚାରୀମାନଙ୍କୁ ହିନ୍ଦୀ ଶିଖାଇବା କାର୍ଯ୍ୟରେ ନିଯୁକ୍ତ ଥିଲାବେଳେ ଭଲ ଓଡ଼ିଆ ଶିଖିଯାଇଥିଲେ । ସେ ଏହିଗୁଡ଼ିକୁ ଅନୁବାଦ କରି ଦେଇଥିଲେ । ମନହେଲା ସେଥିରୁ ଦୁଇଟି ଛପାଇ ଦିଆଯିବ ଓ ଭାରତର କେତେଜଣ ବିଶିଷ୍ଟ ଲୋକଙ୍କ ପାଖକୁ ପଠାଇ ଦିଆଯିବ । ଯେଉଁଦିନ ସେମାନେ ଆସିଥିଲେ ଠିକ୍ ସେହିଦିନ ହିଁ ଏହି ଦୁଇଟି ଛପା ହୋଇ ଆସିଥାଏ । ଗୋଟିଏ ଥାଏ ସୌରକିରଣ ଓ ସୂର୍ଯ୍ୟଙ୍କ ଉପରେ

ଅନ୍ୟଟି ଆଲୋକ ସଂଶ୍ଳେଷଣ ବା ଫଟୋସିନ୍ଥେସିସ୍ ଉପରେ । ଓଡ଼ିଆ ବହିର ନାମ 'ସେ ଚୂଲ କେଉଁ ଲଭିବନାହିଁ—ହିନ୍ଦୀ ନାମ ହେଉଛି 'କଖି ନ ବୁଝନେ ଓ୍ୱାଲା ଚୂଲ୍ହା' । ଅନ୍ୟଟିର ନାମ 'ଅଲିକେ କଳ ଲୁଟିଗଲି'— ହିନ୍ଦୀ ହେଲା 'ବାତ୍‌କା ବାତ୍ ମେଁ ମିଠା ସ୍ୱବାଦ' । ସେମାନେ ଦୁଇଟିଯାକ ବହି ଦେଖିଲେ ଓ ଦୃଢ଼ମତ ପ୍ରକାଶ କଲେ ଯେ ଏଗୁଡ଼ିକ ହିନ୍ଦୀ ଭାଷାରେ ଓ ଅନ୍ୟ ଭାରତୀୟ ଭାଷାରେ ମଧ୍ୟ ପ୍ରକାଶିତ ହେବା ଉଚିତ । ଦିଲ୍ଲୀ ଆଲୋଚନା ଚକ୍ରରେ ପେଶ୍ କରିବା ପାଇଁ ସେମାନେ ଗୋଟିଏ ଦୀର୍ଘ ଚଠା ବା ଡ୍ରାଫ୍‌ଟ୍ ରିପୋର୍ଟ ଛାପି ଆମମାନଙ୍କ ପାଖକୁ ପଠାଇ ଦେଇଥିଲେ । ସେହି ରିପୋର୍ଟ ଭିତରେ ତିନୋଟି ସ୍ଥାନରେ ପିଲାଙ୍କ ପାଇଁ ମୁଁ ଲେଖିଥିବା ବହି ବିଷୟରେ ଉଲ୍ଲେଖ କରିଥାଆନ୍ତି । ଏହି ଧରଣର କାମ ଭାରତର କେବଳ ଦୁଇଟି ସ୍ଥାନରେ ହେଉଛି—ସେଥିଭିତରୁ ଜ୍ଞାନମଣ୍ଡଳ ଫାଉଣ୍ଡେସନ ଗୋଟିଏ । ଆଲୋଚନା ଚକ୍ରରେ ଭାରତର ସବୁ ଅଞ୍ଚଳର ପ୍ରାୟ ନବେ ଜଣ ଯୋଗ ଦେଇଥିଲେ । ଶିକ୍ଷା ବିଭାଗର ଉଚ୍ଚପଦସ୍ଥ ଅଫିସର, ଶିକ୍ଷାବିତ୍, ଅବସରପ୍ରାପ୍ତ କୁଳପତି, ଲେଖକ, ପ୍ରସିଦ୍ଧ ପ୍ରକାଶକ—ସବୁଶ୍ରେଣୀର ଲୋକ ଥିଲେ । ଦିନଦିନ ପର୍ଯ୍ୟନ୍ତ ଦଶଟାରୁ ପାଞ୍ଚଟା ପର୍ଯ୍ୟନ୍ତ ଆଲୋଚନା ଚାଲୁଥାଏ । ପ୍ରକାଶିତ ହିନ୍ଦୀ ବହିରୁ କେତେଟିଏ କପିନେଇ ଯାଇଥାଏ—ପ୍ରତିନିଧିମାନଙ୍କୁ ଦେବା ପାଇଁ । ସାତଖଣ୍ଡିଯାକ ପ୍ରକାଶିତ ଓଡ଼ିଆ ବହି ମଧ୍ୟ ଅନ୍ୟମାନେ ଦେଖିବେ ବୋଲି ଟେବୁଲ୍ ଉପରେ ଥାଏ । ଆଗରୁ ଠିକ୍ କରି ଯାଇଥାଏ ଯେ ମୁଁ କେବଳ ଶିଶୁ ସାହିତ୍ୟ ଲୋକ ସାହିତ୍ୟ ଉପରେ କହିବି—ହାଇସ୍କୁଲ କଲେଜ ବିଶ୍ୱବିଦ୍ୟାଳୟର ପୁସ୍ତକ ବିଷୟରେ କିଛି କହିବି ନାହିଁ—କାରଣ ସେହି ଆଲୋଚନାରେ ଭାଗ ନେବାଟା ମୋ ପକ୍ଷରେ ଉଚିତ ହେବନାହିଁ—ମୁଁ ମୋର ସୀମା ଜାଣେ ।

ତାହାହିଁ କଲି । ଯାହା କହିବି ତାକୁ ଛପାଇ ନେଇଯାଇଥିଲି । ମୋ ପେପରର ଶିରୋନାମା ଥିଲା A Scheme of : Education of Every child in Every Home—ପ୍ରତ୍ୟେକ ଘରେ ପ୍ରତ୍ୟେକ ପିଲାର ଶିକ୍ଷା ପାଇଁ ଗୋଟିଏ ଯୋଜନା । ସେଥିରେ ଲେଖାଥିଲା—ଜ୍ଞାନର ପ୍ରତ୍ୟେକ ବିଭାଗର ଅ ଆ କ ଖ ପିଲାମାନଙ୍କୁ ଶିକ୍ଷା ଦେବା ଆମର ଇଚ୍ଛା ।

ନକାଟରେ ଶିକ୍ଷାର ଅର୍ଥ ସହିତ ଗୋଟିଏ ନୂତନ ଦିଗନ୍ତ ଯୋଡ଼ ହୋଇ ଯାଇଛି । ଜଣେ ଯଦି ଜ୍ଞାନର ସବୁ ବିଭାଗର ମୌଳିକ ତଥ୍ୟର ଅଧିକାରୀ ନ ହୋଇ ପାରିବେ ତାଙ୍କୁ ପ୍ରକୃତ ଅର୍ଥରେ ଜଣେ ଶିକ୍ଷିତ ଲୋକ ବୋଲି କୁହାଯାଇ ପାରିବ ନାହିଁ । ଆମେ ଯଦି ଚାହିଁବା ଯେ ଆମ ପିଲା ପ୍ରକୃତ ଅର୍ଥରେ ଶିକ୍ଷିତ ହୁଅନ୍ତୁ, ଆମକୁ ସେଥିପାଇଁ କ୍ଷେତ୍ର ପ୍ରସ୍ତୁତ କରିବାକୁ ପଡ଼ିବ । ତାହା ଫଳପ୍ରଦ ଭାବରେ କାର୍ଯ୍ୟକାରୀ ହୋଇ ପାରିବ ଯଦି ଆମେ ପିଲାମାନଙ୍କୁ ପାଞ୍ଚ ଶହଟି ଶ୍ରେଷ୍ଠ ଶ୍ରେଷ୍ଠ ସଚିତ୍ର ବହି ଶସ୍ତାରେ ଯୋଗାଇ ଦେଇ ପାରିବା । ଏ ଦିଗରେ ଆମେ ଉଦ୍ୟମ କରିଛୁ ଓ କିଛି ଦୂରକୁ ସଫଳତା ହାସଲ କରିଛୁ । ୧୫୫ଟି ବହି ଲେଖା ସରିଗଲାଣି ଓ ସେଥିରୁ ଚାଳିଶଟି ପ୍ରକାଶିତ ହୋଇସାରିଛି । ଏଗୁଡ଼ିକ ଅତି ସରଳ ଭାଷାରେ ଲେଖାଯାଇଛି । ଏଭଳି ଶୈଳୀରେ ଲେଖାଯାଇଛି ଜଣେ ନବ ସାକ୍ଷର ଲୋକ ମଧ୍ୟ ବିଷୟ ବସ୍ତୁରୁ କିଛି କିଛି ବୁଝିଯିବ । ଶିକ୍ଷକ ଏବଂ ଅଭିଭାବକମାନେ ସ୍ୱୀକାର କରିଛନ୍ତି ଯେ ଆଠରୁ ଷୋହଳ ବର୍ଷର ପିଲାମାନେ ଏହିସବୁ ବହିପଢ଼ି ଖୁସୀ ହେଉଛନ୍ତି । ଯେଉଁ ବିଷୟରେ ଲେଖା ଯାଇଛି ତାକୁ ବୁଝିବା ପାଇଁ ସେମାନଙ୍କର କୌଣସି ଅସୁବିଧା ହେଉନାହିଁ ବହିଗୁଡ଼ିକରେ ବହୁସଂଖ୍ୟକ ଚିତ୍ର ରହିଛି । ପ୍ରତ୍ୟେକ ବହିଟି ଗୋଟିଏ ଗଳ୍ପ । ଶୈଳୀ ହେଉଛି—ପିଲାମାନଙ୍କ ସହିତ କଥାବାର୍ତ୍ତା ଚାଲିଛି । ବହୁସଂଖ୍ୟକ ପ୍ରଶ୍ନ ପଚରାଯାଇଛି ଓ ଉତ୍ତର ମଧ୍ୟ ଦିଆଯାଇଛି । କେତେଗୁଡ଼ିଏ ପ୍ରକାଶିତ ହୋଇଗଲା ପରେ ଦେଖାଗଲା ଯେ ଏଗୁଡ଼ିକ ବହୁ ବା ଏକାଧିକ ଉଦ୍ଦେଶ୍ୟ ସାଧନ କରିପାରୁଛି । ମନଖୁସୀ ପାଇଁ ଓ ଅଧିକ ଜ୍ଞାନ ହାସଲ କରିବା ପାଇଁ ପିଲାଟି ଏହି ବହି ପଢ଼ୁଛି । ସେ ଦେଖୁଛି ଯେ ତାହାର ପାଠ୍ୟ ପୁସ୍ତକରେ ଯେଉଁ ବିଷୟବସ୍ତୁ ଅଛି ତାକୁ ଆହୁରି ଭଲ ଭାବରେ ବୁଝିବା ପାଇଁ ଏହିବହି ସାହାଯ୍ୟ କରୁଛି । ଶିକ୍ଷକ ଏହାକୁ ବ୍ୟବହାର କରୁଛନ୍ତି ଗୋଟିଏ ସହାୟକ ବା ରେଫରେନ୍ସ ବହି ଭାବରେ । ପିଲାର ପିତାମାତା ପଢ଼ୁଛନ୍ତି କୌଣସି ଗୋଟାଏ ତଥ୍ୟ ବା ତତ୍ତ୍ୱ ବିଷୟରେ ଅଧିକ ଜାଣିବା ପାଇଁ । ଏହି ବହିଗୁଡ଼ିକ ସାହାଯ୍ୟରେ ପିତାମାତା ନିଜ ଘରେ ପିଲାକୁ ପଢ଼ାଇ ପାରୁଛନ୍ତି । ଯେଉଁମାନେ କୌଣସି କାରଣରୁ ଅଳ୍ପ ପାଠ ପଢ଼ି ସ୍କୁଲରୁ ବିଦାୟ ନେବାକୁ ବାଧ୍ୟ ହୋଇଛନ୍ତି ଓ ଯେଉଁମାନଙ୍କୁ ଡ୍ରପ୍ ଆଉଟ ବୋଲି କୁହା ଯାଉଛି, ସେମାନେ ଆଉ ଶିକ୍ଷା ଲାଭ କରିବାର ସମସ୍ତ ଆଶା ଛାଡ଼

ଦେଇଥିଲେ । ସେମାନେ ଏହିସବୁ ବହିଭିତରେ ନୂତନ ଆଶାର ଆଲୋକର ସନ୍ଧାନ ପାଉଛନ୍ତି । ତିନି ବର୍ଷ ପୂର୍ବେ ଗୋଟିଏ ପିଲା ବାଧହୋଇ ପଢ଼ା ଛାଡ଼ି ଦେଇଥିଲା ନବମ ଶ୍ରେଣୀରୁ । ସେ କହିଲା—"ଯଦି ମୁଁ ପାଞ୍ଚ ଶହ ବହି ପଢ଼ିବାର ସୁଯୋଗ ପାଇବି କେବେହେଲେ ଭାବିବି ନାହିଁ ଯେ ମୁଁ ଜଣେ ଅପାଠୁଆ ବା ଅଶିକ୍ଷିତ ଲୋକ"—ପ୍ରକାଶିତ ପଚାଶଟି ବହି ପଢିଲା ପରେ ସେ ଏହିଭଳି ମତ ପ୍ରକାଶ କଲା । ଏପର୍ଯ୍ୟନ୍ତ ଯେଉଁସବୁ ବହି ପ୍ରକାଶିତ ହୋଇସାରିଛି ସେଗୁଡିକ—ପରମାଣୁ, ଆଲୋକ ସଂଶ୍ଳେଷଣ, ରକ୍ତସଞ୍ଚଳନ ମସ୍ତିଷ୍କ, ସୂର୍ଯ୍ୟ ଏବଂ ସୌର ଊର୍ଜା, ମାଂସପେଶୀ, ଅସ୍ଥି, ଜୀବକୋଷ, ବ୍ୟାକରଣ, ବିବର୍ତ୍ତନବାଦ, ଭୂମି, ହଜମକ୍ରିୟା, ଊର୍ଜା, ନୈତିକ ଶିକ୍ଷା ପୁଷ୍ଟିକର ଖାଦ୍ୟ, ମୁଦ୍ରା ଏବଂ ଅଦଳ ବଦଳ ପ୍ରଥା, କୃଷି ମୁକ୍ତିସଂଗ୍ରାମ, ଜଳଚକ୍ର, ପ୍ରସ୍ତର ଯୁଗ ଏବଂ ଅଗ୍ନି, ମହୁ-ମହୁମାଛି, ମହାକାଶ ଯାତ୍ରା, ବର୍ଣ୍ଣମାଳା ଉପରେ ।

ଆମେ ଏହି ବହି ସେଟ୍‌ର ନାମ ରଖିଛୁ—'ଜ୍ଞାନର ବର୍ଣ୍ଣମାଳା' । ଇଂରାଜୀ ଭାଷା ଲେଖିବାପାଇଁ ଛବିଶଟି ଅକ୍ଷର ଲୋଡ଼ା—ଓଡ଼ିଆରେ ଅଛି ୪୮ଟି ଅକ୍ଷର । କିନ୍ତୁ 'ଜ୍ଞାନଭାଷା' ପଢ଼ିବାକୁ ହେଲେ ୫୦୦ଟି ଅକ୍ଷର ଚିହ୍ନିବାକୁ ପଡ଼ିବ । ଏହି ପ୍ରତ୍ୟେକଟି ଅକ୍ଷର ହେଉଛି ମୌଳିକ ଜ୍ଞାନର ବିଚାର ବା କନ୍‌ସେପ୍ଟ । ଜ୍ଞାନ ତ ପରସ୍ପରଠାରୁ କାନ୍ଥଦ୍ୱାରା ଅଲଗା ଅଲଗା ହୋଇଥିବା ଗୋଟିଏ ଗୋଟିଏ ବଖରାର ସୃଷ୍ଟି ନୁହେଁ । ପରସ୍ପର ସହିତ ସଂପୃକ୍ତ ହୋଇ ରହିବା ଓ ପରସ୍ପର ଉପରେ ନିର୍ଭର କରିବା ପ୍ରଶ୍ନ ଏଥି ସହିତ ଜଡିତ । ତେଣୁ ଯଦି ୫୦୦ଟି ବିଚାର (Concept) ସହିତ ଆପଣ ପରିଚିତ ନ ହେବେ ଜ୍ଞାନର ଭାଷାକୁ ପଢ଼ି ପାରିବେ ନାହିଁ କି ବୁଝିପାରିବେ ନାହିଁ । ( ସିରିଜଟିର ଓଡ଼ିଆ ନାମ ଆଉ ପ୍ରକାରେ ରଖିଛୁ ''ମୋ ବର୍ଣ୍ଣବୋଧରେ ୫୦୦ ଅକ୍ଷର)'' । ବହି ସେଟ୍‌ର ପରିକଳ୍ପନା ଏଭଳି ଭାବରେ କରାଯାଇଛି ଯେ ପିଲାଟି ସବୁତକ ବହି ପଢ଼ି ସାରିଲା ବେଳକୁ ୩୦୦ଟି ଭୌଗୋଳିକ ସ୍ଥାନ, ୩୦୦ଟି ବିଭିନ୍ନ ଜୀବ ଓ ପକ୍ଷୀଙ୍କ ବିଷୟରେ ଜାଣିଯାଇଥିବ । ପୃଥିବୀର ତିନିଶହଜଣ ବିଖ୍ୟାତ ଲୋକଙ୍କ ପରିଚୟ ପାଇଯାଇଥିବ । ସେ ଯେତେବେଳେ ସ୍ପୁତ୍‌ନିକ ବହିଟି ପଢ଼ିବ ସେତେବେଳେ ଜାଣିବ ଯେ ପୃଥିବୀର ମାଧ୍ୟାକର୍ଷଣ କ୍ଷେତ୍ର ବାହାରକୁ ଯେଉଁ ପଦାର୍ଥଟିକୁ ଛଡ଼ାଯାଇଥିଲା ତାହା ସୋଭିଏତ ଭୂମିରୁ ହିଁ

ହୋଇଥିଲା । ସୋଭିଏତ ଇଉନିୟନ ବିଷୟରେ ସେ ଯାହା ଜାଣିବାର କଥା ତାହା ତିନି ପୃଷ୍ଠାରେ ଲେଖିଦିଆ ହୋଇଛି । ଯେତେବେଳେ ବିବର୍ତ୍ତନବାଦ ଉପରେ ସେ ଗୋଟିଏ ଗଳ୍ପ ବହି ପଢ଼ୁଥିବ ସେତେବେଳେ ୭ ପୃଷ୍ଠାରେ ତାକୁ କପରି ଡାରଉଇନ କଏ ବୋଲି ଜଣାଇ ଦିଆଯାଇଛି ତାହା ଲକ୍ଷ୍ୟ କରୁଥିବ । ଆଉ ଗୋଟିଏ ବହିରେ ସେ ଦେଖିବ ଗଛଲର ସାତଟି ଋତୁ । ସେହି ଚିତ୍ରଗୁଡ଼ିକ ସାହାଯ୍ୟରେ ବୁଝାଇ ଦିଆଯାଇଛି ଯେତେବେଳେ ପ୍ରକୃତି ଗଛଲକୁ ସୃଷ୍ଟି କରିଦେଲା ସେତେବେଳେ ଅନ୍ୟ ଜୀବ ସୃଷ୍ଟି ଆଡ଼େ ମନ ନ ଦେଇ ମଣିଷ ଗଢ଼ିବାକୁ ସୃଷ୍ଟି କଲା ।

ଯେତେବେଳେ ସବୁତକ ବହି ପ୍ରକାଶିତ ହୋଇଯିବ ସେତେବେଳେ ଦଶଟି ଲେଖାଁ ବନ୍ଧାଇ ଦେଇ ଗୋଟିଏ ଗୋଟିଏ ବହି କରି ଦିଆଯିବ ଓ ୫୦ ଖଣ୍ଡରେ ବିଭକ୍ତ ଗୋଟିଏ କିଶୋର ଜ୍ଞାନମଣ୍ଡଳ ବା ଚିଲ୍ଡ୍ରେନ୍ସ୍ ଏନ୍ସାଇକ୍ଲୋପିଡିଆ ବାହାରି ପଡ଼ିଥିବ । ବିଷୟବସ୍ତୁର ପରିମାଣ ଦୃଷ୍ଟିରୁ ବିଚାର କଲେ ଦେଖାଯିବ ଇଂଲଣ୍ଡର ଜଣେ ପିଲା ୨୦ ଭଲ୍ୟୁମ୍‌ରେ ପ୍ରକାଶିତ ଚିଲ୍ଡ୍ରେନ୍ସ୍ ବ୍ରିଟାନିକାରୁ ଯେତିକି ତଥ୍ୟ ପାଉଛି ଜଣେ ଭାରତୀୟ ପିଲା ଏହି ସେଟ୍‌ରୁ ତାହାଠାରୁ ଅଧିକ ତଥ୍ୟ ପାଇଯିବ । ବହିଗୁଡ଼ିକର ମୂଲ୍ୟ ରଖାଯାଇଛି ୨୫୦ ପଇସା (ଖଣ୍ଡକୁ) । ଜଣେ ଯେଉଁଟିକି ଇଚ୍ଛା କରିବ କିଣି ପାରିବ । ଆମେ ସ୍ୱପ୍ନ ଦେଖୁଛୁ ଯେ ଦିନେ ପ୍ରତ୍ୟେକ ଗାଁରେ ଏହି ୫୦୦ ଖଣ୍ଡ ଯାକ ବହି ରହିଯିବ ଓ ପିଲାମାନେ ଅଦଳ ବଦଳ କରି ସବୁତକ ପଢ଼ି ପାରିବେ । ପ୍ରସ୍ତାବିତ ପାଞ୍ଚଶହ ଖଣ୍ଡ ଭିତରୁ ତିନିଶହ ରହିବ ବିଜ୍ଞାନ ଉପରେ । ଯେଉଁମାନେ ଠିକ୍ ଭାବରେ ଚିନ୍ତା କରୁଛନ୍ତି, ବିଶେଷ କରି ବୈଜ୍ଞାନିକମାନେ ମତ ପ୍ରକାଶ କରୁଛନ୍ତି—ମାତୃଭାଷା ମାଧ୍ୟମରେ ବିଜ୍ଞାନକୁ ଭଲ ଭାବରେ ପିଲାଏ ଶିଖି ପାରିବେ । ଉକ୍ତର ନାର୍ଲିକାରଙ୍କ ସହିତ ଆମେ ସମସ୍ତେ ଏକମତ ହେବା ଯେତେବେଳେ ସେ କହୁଛନ୍ତି 'ଇତିହାସ ବା ଭୂଗୋଳ ପିନା ମୁଖସ୍ତ କରିବା ଦ୍ୱାରା ମନେରଖି ହୋଇଯିବ ଓ ଏଇଟା ଠିକ୍ କି ସେଇଟା ଠିକ୍ ଏଭଳି ଭାବିବାକୁ ପଡ଼ିବ ନାହିଁ ବିଜ୍ଞାନ ପାଇଁ ଆବଶ୍ୟକ ଭାବିବା, ମନ ଭିତରେ ଯୁକ୍ତିତର୍କ କରିବା ଏବଂ ତା' ସାଙ୍ଗକୁ ଜାଣିବା ପାଇଁ ମନ ଭିତରେ ବ୍ୟଗ୍ରତା ସୃଷ୍ଟି କରିବା । ଯିଏ ସେ ବିଷୟରେ ଜାଣିବାକୁ ଇଚ୍ଛା କରୁଛି ତାହାର

ମସ୍ତିଷ୍କ ଭିତରେ କଥାଟା ଖେଳୁଛି । ପ୍ରତ୍ୟେକ ଲୋକର ବିଚାରିବା ଶକ୍ତି ଭିନ୍ନ ପ୍ରକାରର । ଏହି ଦିଗରେ ସଫଳତା ମିଳୁ ବୋଲି ଇଚ୍ଛା କରୁଥିଲେ ଆମେ ନିଜକୁ ପଚାରିବା ଦରକାର—ମାତୃଭାଷା ମାଧ୍ୟମରେ ଏହା ହୋଇପାରିବ ନା ଅନ୍ୟ ଗୋଟିଏ ଭାଷାରେ ? ଗୋଟିଏ ପିଲା ଯଦି ବିଜ୍ଞାନ ଉପରେ ଛତିଶହ ଖଣ୍ଡ ବହି ପଢ଼ିଦେବ ସେ ଭାବିବାପାଇଁ ତର୍କ କରିବା ପାଇଁ ଓ ଜାଣିବା ଲାଗି ବ୍ୟଗ୍ରତା ପ୍ରକାଶ କରିବାପାଇଁ ସାମର୍ଥ୍ୟ ଅର୍ଜନ କରିପାରି ଥିବ ।

ଶେଷରେ ଏକଥା କୁହାଯାଇ ପାରେ—ଯଦି ସମଗ୍ର ଜାତିଟା ଶିକ୍ଷିତ ନହେବ ଲୋକଙ୍କ ଭିତରେ ଚିନ୍ତା କରିବା କ୍ଷେତ୍ରରେ ଦାରିଦ୍ର ଦେଖା ଦେବ ଓ ଜାତିର ପ୍ରଗତି ପାଇଁ ସେହି ଦାରିଦ୍ର୍ୟ ହେବ ପ୍ରଧାନ ପ୍ରତିବନ୍ଧକ । (ଏହିଠାରେ ଆଇନଷ୍ଟାଇନଙ୍କର ଉକ୍ତି ଉଦ୍ଧାର କରାଯାଇଥିଲା, ମାତୃଭାଷା ମାଧ୍ୟମରେ ଜ୍ଞାନର ପ୍ରସାର ପାଇଁ ଯଦି ଆନ୍ତରିକ ଉଦ୍ୟମ ନ କରାଯାଏ ଓ ସମସ୍ତଙ୍କୁ ଜ୍ଞାନ ଅର୍ଜନର ସୁଯୋଗ ନ ଦିଆଯାଏ ଜ୍ଞାନ ନିଶ୍ଚୟ ସଙ୍କୁଚିତ ସୀମା ଭିତରେ ରହିଯିବ । )



# ଦଶପଇସିଟି ବିପ୍ଳବର ସଙ୍କେତ

ଏହି ପେପର ବା ଯୋଜନାଟିକୁ ସେଠାରେ ପଢ଼ି ଦେଲି ପରେ ଯେଉଁ ଆଲୋଚନା ହେଲା ତାହା ମୋ ପାଇଁ ଥିଲା ଅତି ଗୁରୁତ୍ୱପୂର୍ଣ୍ଣ । ସମଗ୍ର ପରିକଳ୍ପନାଟିକୁ ନୂଆ ଭାବରେ ଦେଖିବା ପାଇଁ ମୋତେ ଗୋଟାଏ ଅପୂର୍ବ ସୁଯୋଗ ଦେଲା । ମୁଁ କେବେ ଆଶା କରିନଥିଲି ଯେ ବିଜ୍ଞ ପ୍ରତିନିଧିମାନେ ଏହା ବିଷୟରେ ଏତେ ଆଗ୍ରହୀ ହୋଇଉଠିବେ । ଯଦି ଏହି ପରିକଳ୍ପନାକୁ କାର୍ଯ୍ୟକାରୀ କରାଯାଇ ପାରେ ତେବେ ଶିଶୁ ଶିକ୍ଷା ତଥା ଲୋକ ଶିକ୍ଷା କ୍ଷେତ୍ରରେ ନିଶ୍ଚୟ ଗୋଟାଏ ବିପ୍ଳବ ଦେଖା ଦେବ ବୋଲି କେହି କେହି ମତ ପ୍ରକାଶ କଲେ । ଡକ୍ଟର କେଶବନ୍ ତ କହି ପକାଇଲେ—ପାଞ୍ଚଶହତ ଦୂରର କଥା, ଯଦି କେବଳ ଶହେଟି ବହି ବାହାରି ପଡ଼େ ଓ ପ୍ରତି ଗ୍ରାମର ସମସ୍ତେ ପଢ଼ିଦିଅନ୍ତି ବା ଶୁଣି ଦିଅନ୍ତି ଗୋଟାଏ ବଡ଼କଥା ହୋଇଯିବ । ଆଜି ପର୍ଯ୍ୟନ୍ତ ଗାଁ ଲୋକେ ଶହେଟା ବହି ପଢ଼ିବାର ତ ସୁଯୋଗ ପାଇ ନାହାନ୍ତି । ନାନା ଦିଗରୁ ଆଲୋଚନା ହେଲା । ଶିକ୍ଷା ବିଭାଗର ଯେଉଁ ଉଚ୍ଚ ପଦସ୍ଥ ଅଫିସରମାନେ ଥିଲେ ସେମାନେ ସେହି ଆଲୋଚନାରେ ଆଗ୍ରହର ସହିତ ଭାଗନେଲେ । ବହି ସିନା ଛପାଯିବ—ପ୍ରତି ଗାଁରେ ପ୍ରତି ଘରେ ପହଞ୍ଚିବ କିପରି ? ଜଣେ କହିଲେ—ସରକାର ହୁଏତ ଏତେ ଖର୍ଚ୍ଚ କରିବା ପାଇଁ ପ୍ରସ୍ତୁତ ହୋଇ ପାରିବେ ନାହିଁ । ହିସାବ କରାଗଲା । ଓଡ଼ିଶାରେ ୫୦ ହଜାର ଗାଁ ଅଛି । ପ୍ରତି ଗାଁକୁ ଖଣ୍ଡେ ଲେଖାଁ ବହି ଦେଲେ ୬ କୋଟି ୨୫ ଲକ୍ଷ ଟଙ୍କା ଲାଗିବ । ପାଞ୍ଚବର୍ଷରେ ବିଭକ୍ତ ହେଲେ ବର୍ଷକୁ ପଡ଼ୁଛି କେବଳ ୧ କୋଟି ପଚିଶଲକ୍ଷ ଟଙ୍କା । ଏତେ ଟଙ୍କା ସରକାର କ'ଣ ଦେଇ ପାରିବେ ବୋଲି ପ୍ରଶ୍ନ ଉଠିବାରୁ କାମର ଗୁରୁତ୍ୱ ତୁଳନାରେ ଏତେକ ଟଙ୍କା କିଛି ନୁହେଁ ବୋଲି କୁହାଗଲା । ମୁଁ କିଛି ନକହି କେବଳ ଶୁଣୁଥାଏ । ମୋତେ ଯେତେବେଳେ ପଚରା ଗଲା ମୁଁ ଅତି ବିନୟର ସହିତ କହିଲି—"ଆପଣମାନେ ଯେମିତି

ଭାବୁଛନ୍ତି ସେଥିରେ ଏହି କାମଟି ହୋଇ ପାରିବ ନାହିଁ । ସରକାର ଏତେ ଟଙ୍କା ଖର୍ଚ୍ଚ କରି ମୋ ବହି କିଣିବେ ନାହିଁ । କିଣିଥିବାରେ କିଣିଲେ କଅଣ ହେବ ? ସରକାରୀ କଳରେ ଏଭଳି କୌଣସି ବ୍ୟବସ୍ଥା ନାହିଁ ଯାହାଦ୍ୱାରା କି ଗାଁର ସମସ୍ତଙ୍କ ଘରେ ଏହି ବହି ସବୁ ପହଞ୍ଚାଇ ଦେଇ ହେବ । ଜଣେ ପ୍ରାଇମେରୀ ସ୍କୁଲ ଶିକ୍ଷକଙ୍କୁ ପଠାଇଲେ ସେ ହୁଏତ କ୍ଲାସରେ ପଢ଼ି ଶୁଣାଇ ଦେଇ ସନ୍ତୁଷ୍ଟ ରହିବେ । ଗ୍ରାମ ପଞ୍ଚାୟତ ସେକ୍ରେଟାରୀ ତାଙ୍କ ଘରେ ରଖିଦେବେ । କିନ୍ତୁ ମୁଁ ଯେଉଁ ଉପାୟ ଚିନ୍ତା କରୁଛି—ଏଇଠି ବସି ବସି ସରକାରଙ୍କ ଠାରୁ ଗୋଟିଏ ସୁଦ୍ଧା ଟଙ୍କା ନଆଣି, ବା କୌଣସି ଦାତବ୍ୟ ସଂସ୍ଥା ବା ଧନୀ ଲୋକଙ୍କ ସାହାଯ୍ୟ ନ ନେଇ, ଆମେ ସମଗ୍ର ଜାତିଟାକୁ ଏତିକ ଦୂରକୁ ଶିକ୍ଷିତ କରିଦେବା—ଯେତିକ ସମ୍ଭବ ଏହି ପାଞ୍ଚଶହ ବହି ପଢ଼ିବା ଦ୍ୱାରା । ସମସ୍ତେ ମୋ ମୁହଁକୁ ଚାହିଁଥିଲା ବେଳେ ପକେଟରୁ ଗୋଟିଏ ଦଶପଇସି କାଢ଼ିଲି ଏବଂ ଦୃଢ଼ତାର ସହିତ କହିଲି—ମୁଁ ବିଶ୍ୱାସ କରୁଛି ଏହି ଦଶପଇସି ମୁଦ୍ରାଟି ସାହାଯ୍ୟରେ ଆମେ ସବୁ ଘରର ସବୁ ପିଲାଙ୍କ ପାଖରେ ଶିକ୍ଷା ପହଞ୍ଚାଇ ଦେଇ ପାରିବା । ଗୋଟିଏ ଗାଁକୁ ଯାଇ କହିବା ପ୍ରତି ପରିବାର ମାତ୍ର ଦଶପଇସା ଆଣନ୍ତୁ । ଜଣେ ଯେତେ ଧନୀ ହୋଇଥାଆନ୍ତୁ ନା କାହିଁକି ତାଙ୍କ ପାଖରୁ ମାତ୍ର ଦଶପଇସା ଅଣାଯିବ—ପନ୍ଦର ପଇସା ମଧ୍ୟ ନୁହେଁ । କେବଳ ପଚଶଟି ପରିବାର ଦଶପଇସା ଲେଖାଏଁ ଆଣିଲେ ୨୫୦ ପଇସା ମୂଲ୍ୟର ବହି ଖଣ୍ଡିଏ କିଣି ନେବେ । ବହିଟି ହେବ ସମଗ୍ର ଗାଁର—ସମସ୍ତେ ହେବେ ମାଲିକ । ପ୍ରତ୍ୟେକ ପରିବାରରେ ଦୁଇଦିନ ଦିନଲେଖାଏଁ ରହିବା ପରେ ଯେତେବେଳେ ମନେହେବ ଆଉ ଦଶପଇସା ଲେଖାଁ ଏକାଠି କରି ଆଉ ଖଣ୍ଡେ ବହି କିଣିବେ । ପାଞ୍ଚବର୍ଷ ଭିତରେ ପାଞ୍ଚଶହ ଯାକ ବହି ରହିଯିବ ପ୍ରତି ଗାଁରେ । ବହୁ ଗ୍ରାମରେ ଶହେ ଦୁଇଶହ ସନ୍ତୁରୀ ଅଶୀ ପରିବାର ଅଛନ୍ତି । ସେଠାରେ ତ ଶୀଘ୍ର ଶୀଘ୍ର ବହି ପହଞ୍ଚି ଯିବ । ଏହାଦ୍ୱାରା ଦୁଇଟି କାମ ହେବ—ଗୋଟିଏ ଜାତି ନିଜକୁ ଶିକ୍ଷିତ କରି ଦେବ ନିଜ ଉଦ୍ୟମରେ । ତାକୁ କେହି କିଛି ଦାନକରି ଦେଉଛି ବୋଲି ଭାବ ତା' ମନକୁ ହୀନତା ଭାବ ଗ୍ରାସିବ ନାହିଁ । ବିନୋବାଜୀଙ୍କ ଭୂଦାନ ଆନ୍ଦୋଳନ ବେଳେ ଓଡ଼ିଶାର ଜଣେ ପଣ୍ଡିତ ଓ ସ୍ୱାଧୀନତା ସଂଗ୍ରାମର ଯୋଦ୍ଧା କହିଥିଲେ—ହଁ, ବିନୋବା ଯାହା କହୁଛନ୍ତି ତାହା କିଛି ମନ୍ଦ ନୁହେଁ । କିନ୍ତୁ ଗୋଟିଏ ପ୍ରଶ୍ନ ମୋ ମନରେ ଉଠୁଛି । ଦାତାର ଦର୍ପ

ଗଣ୍ଡାଙ୍କର ଦୈନ୍ୟ ଭିତରୁ ବିପ୍ଳବ ଜନ୍ମ ନେଇ ପାରିବ ନାହିଁ । ଜମି ଦେଲବାଲାର ଗର୍ବ ଯେ ସେ ଦାତା—ନେଲବାଲା ବର୍ତ୍ତୁରୁଛି ମୁଁ ଗରିବ, ମୋତେ ଦିଆଗଲା । ତା' ମନରେ ଦୈନ୍ୟ ଭାବ ଖେଳି ଯାଉଛି । ସେମିତି ସରକାର ଦୁଇଶହ ପଚିଶ ପଇସାର ଖଣ୍ଡେ ବହି ଦେଇ କାହିଁକି ଦାତା ହୋଇବେ ଓ ଲୋକେ ଧନ୍ୟବାଦ ପ୍ରକାଶ କରିବେ । ଲୋକଙ୍କର ତ ପୁଣି ଗୋଟାଏ ଆତ୍ମସମ୍ମାନ ଜ୍ଞାନ ଅଛି । ସେମାନେ ହାତ ପତାଇବେ କାହିଁକି ? ଏହି ଦଶପଇସି ମୁଦ୍ରାଟିରେ ଆଜିକାଲି କିଛି ହେଲେ କିଣି ହେଉନାହିଁ । ଯାହାର କିଛି ହେଲେ ଧନ୍ୟମୂଲ୍ୟ ନାହିଁ ତାହାର ସାହାଯ୍ୟରେ ଯଦି ଗୋଟାଏ ଜାତିର ପିଲାଙ୍କୁ ଶିକ୍ଷିତ କରିଦେଇ ହେଲା ତେବେ ଟଙ୍କେବଡ଼ କଥାଟାଏ ନହେବ !"

ଏହାର ଉପରେ କିଛି ସମୟ ଧରି ଆଲୋଚନା ଚାଲିଲା । ଜଣେ କହିଲେ—'ଆପଣ ତାହାହେଲେ କହୁଛନ୍ତି ସରକାରଙ୍କଠାରୁ କୌଣସି ସାହାଯ୍ୟ ନନେଇ ଶିଶୁ ପୁସ୍ତକ ସବୁ ପ୍ରକାଶିତ ହୋଇଯିବ ଓ ସେଗୁଡ଼ିକ ଲୋକଙ୍କ ପାଖରେ ପହଞ୍ଚାଇ ଦେଇ ହେବ ?' ମୋର ଉତ୍ତର—ମୁଁ ତ ଠିକ୍ ସେହି କଥା କହୁଛି । ମୋ କଥା ଭିତରେ ମଜାଁଧୁଳି ନାହିଁ, କିନ୍ତୁ—ସରକାରୀ କଳ କେବେହେଲେ ଏଭଳି ଗୋଟାଏ ବିରାଟ କଳ୍ପନାକୁ କାର୍ଯ୍ୟକାରୀ କରି ପାରିବନାହିଁ । ଉଚ୍ଚଶିକ୍ଷିତ ପ୍ରତିନିଧିମାନେ ଯାହା କହିଲେ ତାହାର ଉଲ୍ଲେଖ ଏଠାରେ କରୁନାହିଁ—ନିଜର ଗୁଡ଼ାଏ ପ୍ରଶଂସା ହୋଇଯିବ । ସେଠାରେ ଥିବା ଲୋକଙ୍କ ଭିତରୁ କେହି କେହି ଏବେ ମଧ୍ୟ ଭାରତର ଭିନ୍ନ ଭିନ୍ନ ଅଞ୍ଚଳରେ କହୁଛନ୍ତି ବୋଲି ଜାଣୁଛି ଚିଠିପତ୍ରରୁ ଓ ଲୋକ ମୁଖରୁ, ଓଡ଼ିଶାର ଡକ୍ଟର ଦେବୀପ୍ରସନ୍ନ ପଟ୍ଟନାୟକ ସେଠାରେ ଉପସ୍ଥିତ ଥିଲେ – ସବୁ ଆଲୋଚନା ଶୁଣିଛନ୍ତି ।

ଦିଲ୍ଲୀରୁ ଫେରିଲା ପରେ ମୋ ମୁଣ୍ଡରେ ଏହି ଦଶପଇସି ଯୋଜନା ବରାବର ଖେଳୁଥାଏ । ଏହା କେମିତି କାର୍ଯ୍ୟକାରୀ ହେଉଛି ନ ଜାଣିବା ପର୍ଯ୍ୟନ୍ତ କିଛି କହି ହେଉନାହିଁ । ପ୍ରଥମେ ଆମ ଗାଁରେ ଏକଥା କହିଲି । ଚାଲିଶଘର ଅନ୍ୟ ଜାତି ଓ କୋଡ଼ିଏ ଘର ହରିଜନଙ୍କୁ ନେଇ ଏହି ଛୋଟ ଗାଁଟିର ଲୋକେ ଉତ୍ସାହ ଦେଖାଇଲେ । ପଇସା ଆଦାୟ ହୋଇଗଲା । ହରିଜନ ପିଲାଏ କହିଲେ 'ଆମେ କୋଡ଼ିଏ ଘର— ଭିନେ ନେବୁ' । ସେଇଆ

ହେଲା । ଦୁଇଖଣ୍ଡ ବହି ଗଲା । ଜାଣିଲି ଯେ ଏହାର ଭବିଷ୍ୟତ ଅଛି । ଭୁବନେଶ୍ୱରରେ ଗୋଟିଏ ପ୍ରାଇମେରୀ ସ୍କୁଲ । ଦୁଇଶହ ଅଶୀ ପିଲା । ଦିନ ସ୍ଥିର ହେଲା – ପିଲାମାନଙ୍କ ଭିତରୁ ୨୬୦ ଆସିଥିଲେ । ସମସ୍ତଙ୍କ ହାତରେ ଦଶପଇସି ରହିଛି । ମନ୍ତ୍ରୀ ଶେଖ ମତଲୁବ ଅଲ୍ଲୀଙ୍କ ହାତରେ ପିଲାଏ ପଇସା ଦେଉଥାଆନ୍ତି । ଅବସର ପ୍ରାପ୍ତ ଆଇ ଜି ଶ୍ରୀଯୁକ୍ତ ଦାମୋଦର ସ୍ୱୋଇଁ ଦଶଟି ଲେଖାଁ ରଖି ଥାକ ମାରୁଥାଆନ୍ତି । ସମସ୍ତଙ୍କ ତାଳି । ପ୍ରଧାନ ଶିକ୍ଷୟିତ୍ରୀ ସଙ୍ଗୀତା ଦାସଙ୍କର ଆନନ୍ଦ ଦେଖେ କିଏ ! ମୁଁ କହିଲି—'ଦୀର୍ଘ ତେତିଶ ବର୍ଷ ହେଲା ଯେଉଁ ଉଦ୍ୟମ କରୁଥିଲି ତାହା ଆଜି ପ୍ରକୃତ ଅର୍ଥରେ ସଫଳ ହେଲା । ଏଣିକି ମୋର ଭରସା ହେଲାଣି ପ୍ରତ୍ୟେକ ଘରେ ପିଲାମାନେ ଏହିସବୁ ବହି ପଢ଼ିବେ' । ମୁଖ୍ୟ ଅତିଥି ଅଲ୍ଲୀଙ୍କ ମତରେ—ଆଜି ଓଡ଼ିଆ ଭାଷାର ଗୋଟିଏ ଉଲ୍ଲେଖଯୋଗ୍ୟ ଦିବସ । କାହାରି ପାଖରେ ହାତ ନ ପତାଇ ଯେ ଜନସାଧାରଣ, ଦରିଦ୍ର ଜନସାଧାରଣ ନିଜ ପିଲାଙ୍କୁ ଶିକ୍ଷାଦେଇ ପାରିବେ ତାହାର ପ୍ରମାଣ ଆଜି ମିଳିଲା । ପିଲାମାନଙ୍କୁ ବାରଖଣ୍ଡି ବହି ଦେଇଦିଆ ହେଲା । ଯୋଜନା ଥିଲା—ପିଲାମାନେ ବହିଗୁଡ଼ିକ ନିଜ ନିଜ ଘରକୁ ନେଇଯିବେ – ଦି' ଦିନ ରଖି ଫେରାଇ ଆଣିବେ । ଅନ୍ୟମାନେ ନେବେ । ଏମିତି ଦୁଇଶହ ଷାଠିଏ ପରିବାରରେ ବହି ବୁଲିବ । ଡିସେମ୍ବର ମଧ୍ୟଭାଗ (୧୯୮୬) ଦିନ ଜଣେ ଅଭିଭାବକ କହିଲେ—ଘରେ ଆମେ ତିରିଶଟଙ୍କା ମୂଲ୍ୟର ବାରଖଣ୍ଡ ବହି ପଢ଼ିଲୁଣି । ଦେଇଛୁ ମାତ୍ର ଦଶଟି ପଇସା । ସ୍ୱୋଇଁ କହିଲେ – ମୁଁ ଯେଉଁ ଝାରପଡ଼ା ଗାଁରେ ଅଛି ସେ ଗାଁର ସବୁ ଘରୁ ଦଶ ପଇସା ଲେଖାଁ ସଂଗ୍ରହ କରିବ । ତାହାହେଲେ ଯାଇ ଗୋଟାଏ ସ୍ଥାୟୀ କାମ ବା ବ୍ୟବସ୍ଥା ହେଲା ବୋଲିବୁଝାଯିବ ।

ସେଠାରୁ ଫେରି ଗୋଟିଏ ଚିଠି ଛାପିଦେଲି । ଶିରୋନାମା ହେଉଛି 'ମୋର ଗୋଟିଏ ବ୍ୟକ୍ତିଗତ ନିବେଦନ ।' ଏହି ଯୋଜନାଟି ବୁଝାଇ ଦେଇଛି । ସେଥିରେ ଏହାର ସଫଳତା ପାଇଁ ସମସ୍ତଙ୍କ ସହାନୁଭୂତି ତଥା ସମର୍ଥନ ଭିକ୍ଷା କରିଛି—ଆର୍ଥିକ ସାହାଯ୍ୟ ନୁହେଁ । ଏହି ନିବେଦନଟି ନେଇ ଜଷ୍ଟିସ ରାଜକିଶୋର ଦାସଙ୍କୁ ଦେଲି । ତାଙ୍କୁ ବହୁ ଦିନରୁ ଜାଣେ । ସେ ଖୁସୀ ହୋଇ ଯାଇ କହିଲେ—ଏହାର ସଫଳତା ପାଇଁ ମୁଁ ସଙ୍ଗେ ସଙ୍ଗେ ଶହେ ଟଙ୍କା ଦେବି—ପରେ ଆଉ ଦେବି' । ମୋର ଉତ୍ତର—ମୁଁ ଆପଣଙ୍କଠାରୁ ମାତ୍ର ଦଶଟି ପଇସା ନେବି । ଏମିତି ପଚିଶ ଜଣଙ୍କଠାରୁ ନେଲେ ଖଣ୍ଡିଏ

ବନ୍ଧୁ ଓ ଏହି ନିବେଦନ ଗୋଟିଏ ଗାଁକୁ ପଠାଇବ । ସେମାନେ ଯଦି ପଚାଶଟି ଦଶପଇସି ସଂଗ୍ରହ କରିବେ ବନ୍ଧୁଟି ରଖିବେ ନ ହେଲେ ଅନ୍ୟ ଗାଁକୁ ପଠାଇ ଦେବେ । ସେ ଘର ଭିତରକୁ ଯାଇ ଗୋଟିଏ ଦଶପଇସି ଆଣିଲେ । ତାଙ୍କ ପାଖରେ ଜଣେ ଜିଲା ଜଜ୍ ବସିଥିଲେ । ସେ ମଧ୍ୟ ଦଶ ପଇସା ଦେଲେ । ସେହିଦିନଠାରୁ ମୋ ଅଫିସକୁ ଯିଏ ଆସୁଛନ୍ତି ତାଙ୍କୁ କହୁଛି ମାତ୍ର ଦଶପଇସା ଦେବପାଇଁ । ଟଙ୍କାଏ ଦି’ ଟଙ୍କା—ଏଭଳିକି ଦଶଟଙ୍କା ଦେଇ ଦେବା ପାଇଁ ବହୁ ଲୋକ ବାହାରୁଛନ୍ତି, ମାତ୍ର କେବଳ ଦଶପଇସା ନେଉଛି । ଗୋଟିଏ ସଭାରେ ଘୋଷଣା କରି କହିଲି—୧୯୮୭ ଶେଷ ପୂର୍ବରୁ ଅନ୍ତତଃ ଏକଲକ୍ଷ ପରିବାରକୁ ଯିବି ଏହି ଯୋଜନାର ସଫଳତା ପାଇଁ ସମର୍ଥନ ଭିକ୍ଷା କରିବା ଉଦ୍ଦେଶ୍ୟରେ ।



# ମୋ ବିଫଳତା ପାଇଁ ଦୁଃଖ···

ସେ ଦିନ ଜଣେ ଉଚ୍ଚଶିକ୍ଷିତ ଯୁବକ ଆସିଲେ । ନିଜ ବିଶ୍ୱବିଦ୍ୟାଳୟ ପାଠ ବାହାରେ ଫଟୋଗ୍ରାଫୀ, ନାଟକ, ଟେଲିଭିଜନ ଓ ଫିଲ୍ମ୍ ଡିଆରେ ଅଭିଜ୍ଞତା ତାଙ୍କର ଅଛି । ସେ ମୋ ଲିଖିତ ଅନେକ ବହି ପଢ଼ିଛନ୍ତି । ସେ କହିବେ କି ନାହିଁ ଭାବି ଦେଖାଉ ଥିଲି ବେଳେ ତାଙ୍କୁ ଅଭୟ ଦେଇ କହିବା ପାଇଁ, କାରଣ ସେଭଳି ନକୁହାଯାଉ ଥିବାରୁ ମୋର କ୍ଷତି ହେଉଛି ବୋଲି ବୁଝାଇଲି । ସେ ଆରମ୍ଭ କଲେ ଆଠଦିନ ତଳେ ଆମେ କେତେଜଣ ଏକାଠି ବସିଥିଲୁ । ଆପଣଙ୍କ ଉଦ୍ୟମ ବିଷୟରେ କଥା ପଡ଼ିଥିଲା । ମୁଁ କହିଲି—କାନୁନ୍‌ଗୋ ଆଜି କିଛି କରି ପାଆନ୍ତୁ ବା ନାହିଁ ସେ ପ୍ରମାଣ କରି ଦେଇଛନ୍ତି ତାଙ୍କର ଦୂର ଦୃଷ୍ଟି ଅଛି । ତାଙ୍କୁ ପ୍ରକୃତ ସ୍ୱୀକୃତି ମିଳିଲା ୧୯୮୫ରେ । ୧୯୫୪ରୁ ସେ ଦୂର ଦୃଷ୍ଟି ନିକ୍ଷେପ କରି ଜାଣି ପାରିଲେ ସେ ଯାହା କରୁଛନ୍ତି ତାହା ଦିନେ ନିଶ୍ଚୟ ପୂର୍ଣ୍ଣରୂପ ନେବ ଓ ତାହାର ଗୁରୁତ୍ୱ ସ୍ୱୀକୃତ ହେବ । ଏହା କିଛି କମ୍ କଥା ନୁହେଁ ! ଅନ୍ୟ ଯେ କୌଣସି ଲୋକ ମଝିରୁ ଛାଡ଼ିଦେଇ ଥାଆନ୍ତା ହତାଶ ହୋଇ ଯାଇ । ମୋ ସହିତ ଅନ୍ୟମାନେ ଏକ ମତ ହେଲେ ମଧ୍ୟ ଜଣେ ଦୁଃଖ କରି କହିଲେ—କାନୁନ୍‌ଗୋ ହୋଇଗଲେ ଜାକ୍ ଅଫ୍ ଅଲ୍ ଟ୍ରେଡ୍‌ସ୍ (Jack of all trades) । ସବୁଥିରୁ କିଛି କିଛି ଲେଖିଲେ । କିନ୍ତୁ ଶେଷରେ ଲୋକେ କହିବେ ସେ ମାଷ୍ଟର ଅଫ୍ ନନ୍ (Master of None) କୌଣସି ଗୋଟିକରେ ହେଲେ ପୂର୍ଣ୍ଣ ସଫଳତା ହାସଲ କରି ପାରିଲେ ନାହିଁ ।

ମୁଁ ଟିକିଏ ହସିଲି ଓ ବୁଝାଇଲି - ତମେ ଏହିକଥା ଜଣାଇ ଦେଇ ଖୁବ୍ ଭଲ କଲ । ମୋତେ କେହି କବି, ଔପନ୍ୟାସିକ, ପ୍ରାବନ୍ଧିକ ବା ସେହିଭଳି କିଛି କହିବେ ନାହିଁ—ଏକଥା ସତ । କିନ୍ତୁ ଗୋଟିଏ କଥା ତ

ନିଶ୍ଚୟ କରିବେ । 'କାନୁନ୍‌ଗୋ ଏଭଳି ଗୋଟିଏ କାମ କଲେ ଯାହା ପ୍ରମାଣ କରିଦେଇ ପାରିଲା—ତଥ୍ୟଟି ଯେତେ ସାମାନ୍ୟ ହୋଇ ଥାଉ ପଛକେ ତାକୁ, ସାହିତ୍ୟରେ ରୂପାନ୍ତରିତ କରିଦେଇ ହେବ । ଜ୍ଞାନମଣ୍ଡଳର 'ଓଟ' ବିଷୟଟି ଦେଖ । ଜଣେ ପ୍ରାଣିବିଦ୍ୟାବିତ୍ ତା' ବିଷୟରେ ସୁନ୍ଦର କରି ଲେଖି ଦେଇ ପାରିବେ । କିନ୍ତୁ ସେ କେବେ ଭାବିପାରିବେ ନାହିଁ ଯେ 'ଆରବୀ ସାହିତ୍ୟକୁ ଓଟର ଦାନ' ବୋଲି ଗୋଟିଏ କଥାର ଅବତାରଣା ଏହି ପ୍ରବନ୍ଧରେ କରି ଯାଇପାରେ । ମରୁଭୂମିରେ ଓଟ ଚାଲିଛି—ପ୍ରଚଣ୍ଡ ଖରା । ଆରବଜାତିର ଆରୋହୀ ତା' ପିଠିରେ ବସିଛି । ମନଖୁସିରେ ବଡ଼ ପାଟିରେ ଗୀତ ବୋଲୁଛି—ଓଟ ଶୁଣୁଛି । ଟିକିଏ ପଛକୁ ଚାହୁଁଛି—ତା' ଗୁରୁକୁ ଦେଖୁଛି । ଗୀତ ବନ୍ଦ ହୋଇଗଲେ ତା' ଚାଲି ଧିମେଇ ଯାଉଛି । ଆରୋହୀ ସେକଥା ଜାଣିପାରି ପୁଣି ବଡ଼ ପାଟିରେ ଗୀତ ବୋଲୁଛି । ସେହି ଗୀତ ସେହି ସ୍ୱରର ଆରବୀ ସାହିତ୍ୟ ପାଇଁ ରହିଛି ଗୋଟାଏ ପ୍ରକାରର ଦାନ । ସେମିତି 'ଓକ୍' ଗଛ ବିଷୟରେ ବନ ବିଶେଷଜ୍ଞ ନହୋଇ ମଧ୍ୟ ତୁମେ ଲେଖି ଦେଇ ପାରିବ, ଯେ କୌଣସି ଏନ୍‌ସାଇକ୍ଲୋପିଡିଆ ପଢ଼ି, ବୃକ୍ଷଲତା ବହିଟିଏ ପଢ଼ି । କିନ୍ତୁ ଓକ୍ ଗଛପ୍ରତି ବ୍ରିଟିଶ ଜାତି କାହିଁକି କୃତଜ୍ଞ ଓ ତାହାର ଗୁଣ ଗାନ କରିବା ପାଇଁ ଜଣେ ଇଂରେଜ କବି କିପରି କଲମ ଚଳାଇଛନ୍ତି ତାହା ଏହି ପ୍ରବନ୍ଧରେ ସ୍ଥାନ ପାଉ ବୋଲି ତମେ ତ ଭାବିପାରିବ ନାହିଁ । ସେହି ଗଛର କାଠରେ ଜାହାଜ ତିଆରି କରି ଇଂରେଜମାନେ ସମୁଦ୍ର ଜୟ କଲେ । ପୃଥିବୀର ଭିନ୍ନ ଭିନ୍ନ ଅଞ୍ଚଳକୁ ଗଲେ, ଧନ ଠୁଳ କଲେ ନିଜ ଦେଶରେ ଓ ସାମ୍ରାଜ୍ୟର ଅଧିକାରୀ ହେଲେ ବୋଲି ବିଚାରି ଦେଇବେଳେ କବି ତା' ଉପରେ କବିତା ରଚନା କରି ଦେଇଛନ୍ତି—ଏହି କଥାର ଉଲ୍ଲେଖ କରିବାର ଆବଶ୍ୟକତା ତୁମେ ତ ଅନୁଭବ କରିବ ନାହିଁ । ଏଇତକ ଲେଖିଦେଲେ ଯାଇ ଜଣେ ସାଧାରଣ ପାଠକ ଓକ୍ ପ୍ରବନ୍ଧଟି ପଢ଼ିବ—ନହେଲେ ଗଛଟା ବିଷୟରେ କଅଣ ଥିବ ବୋଲି ଭାବି ତାକୁ ଛାଡ଼ି ଦେବ ପଢ଼ିବ ନାହିଁ । ସେତିକି ତ ମୁଁ କରି ପାରୁଛି । ଜ୍ଞାନମଣ୍ଡଳର ପ୍ରତ୍ୟେକ ଖଣ୍ଡ ଆଦୃତ ହୋଇ ପାରୁଛି ବୋଲି ତୁମେ ଯେ କହୁଛ, ତାହାରତ ଏଇ ହେଲା କାରଣ । ଗୋଟିଏ ବାହାଦୁରୀତ ତୁମେମାନେ ମୋତେ ନିଶ୍ଚୟ ଦେବ । ଗୋଟାଏ ଜଟିଳ ବିଷୟକୁ ମୁଁ ଯଦି ବୁଝିଗଲି ଅନ୍ୟ ମାନଙ୍କୁ ସରଳ ଭାଷାରେ ନାନା ଉଦାହରଣ ଦେଇ

ଯେ ବୁଝାଇ ଦେଇ ପାରିବ—ଏକଥାତ ପ୍ରମାଣିତ । ଏହି ସବୁକଥାକୁ ବିଚାରକୁ ନେଇ ତୁମେମାନେ କଅଣ ସ୍ୱୀକାର କରିବ ନାହିଁ ଯେ 'ବିନୋଦ କାନୁନ୍‌ଗୋ ଜଣେ ସଫଳ ଶିକ୍ଷକ' ? ମୁଁ ତ ସବୁବେଳେ ଭଗବାନଙ୍କୁ ପ୍ରାର୍ଥନା କରୁଛି ଯେ ଲୋକମାନଙ୍କ ନିକଟରେ ମୁଁ କେମିତି ଜଣେ ଶିକ୍ଷକ ଭାବରେ ପରିଚିତ ହୋଇ ଯିବି ସେଇ ସାମର୍ଥ୍ୟ ମୋତେ ଦିଅନ୍ତୁ । ଏହି ଗୋଟିଏ ପ୍ରଶ୍ନ ଉପରେ ମୋତେ କେହି ହେଲେ ଈର୍ଷା କରିବେ ନାହିଁ । ମାନବବିଜ୍ଞାନର ସବୁ ବିଭାଗର ଅଆ କଖ ଜାଣିବାକୁ ଉଦ୍ୟମ କରିଛି ଓ କିଛି ଦୂରକୁ ସଫଳତା ମଧ୍ୟ ହାସଲ କରିଛି । ଈର୍ଷା କେତେବେଳେ ହୁଏ ? ଦୁଇଜଣ ଠିକ୍ ଏକାଭଳି କାମ କରୁଛନ୍ତି—ଜଣେ ଟିକିଏ ଆଗେଇ ଗଲା—ଅନ୍ୟ ଜଣକ ଈର୍ଷାନ୍ୱିତ ହେଲା । ମୁଁ ଯେଉଁ ସାମାନ୍ୟ କାମଟି କରୁଛି ତାକୁ କରିବା ପାଇଁ ଅନ୍ୟ କେହିତ ବାହାରୁ ନାହାନ୍ତି—ସେମାନେ ଈର୍ଷାନ୍ୱିତ ହେବେ କାହିଁକି ? ମୁଁ ଜାଣେ— ନାମ କହିବି ନାହିଁ । ଓଡ଼ିଶାର ଜଣେ ମୁଖ୍ୟମନ୍ତ୍ରୀ କୌଣସି କାରଣରୁ ମୋ ଉପରେ ଅସନ୍ତୁଷ୍ଟ ହୋଇ ଗଲେ । ସେ ବିଚାରିଲେ ମୋତେ ଯେ ଲୋକେ ଟିକିଏ ପ୍ରଶଂସା କରୁଛନ୍ତି ତାହାର କାରଣ ହେଲା ଗୋଟିଏ ସେଟ୍ ଏନ୍‌ସାଇକ୍ଲୋପିଡିଆ ଲେଖି ଦେଉଛି । ସେ ଦୁଇଜଣ ଲକ୍ଷପତି ପ୍ରକାଶକଙ୍କୁ ଡାକି କହିଲେ—ଆପଣ ମାନେ ଆଜି ଗୋଟିଏ ଏନ୍‌ସାଇକ୍ଲୋପିଡିଆ ସେଟ୍ ପ୍ରକାଶ କରନ୍ତୁ । ସରକାର ଓଡ଼ିଆ ଭାଷା ସାହିତ୍ୟର ଉନ୍ନତି ନାମରେ ଆପଣମାନଙ୍କୁ ସବୁ ମନେ ସାହାଯ୍ୟ କରିବ—ବହୁତ ଟଙ୍କା ଦେବ । ସେମାନେ ପରେ ଯାଇ ତାଙ୍କୁ କହିଲେ—ଆମ ଦ୍ୱାରା ହେବନାହିଁ । ତାହାର କାରଣ ହେଲା ଶହେ ଦୁଇଶହ ଲୋକଙ୍କଠାରୁ ଲେଖା ସଂଗ୍ରହ କରିବା ଆମ ପକ୍ଷରେ ସମ୍ଭବ ନୁହେଁ । ସେମାନଙ୍କୁ ପୁଣି ପଇସା ଦେବାକୁ ପଡ଼ିବ । ଯେଉଁ ଲେଖା ସବୁ ମିଳିବ ସେ ଗୁଡ଼ିକ ଯେ ଆମ ଚାହିଦା ପୂରଣ କରିଲା ଭଳି ହେବ ଏଭଳି କିଛି ଭରସା ନାହିଁ । ସବୁ କଲେ ମଧ୍ୟ ଜ୍ଞାନମଣ୍ଡଳ ଭଳି ଆମେ ଆମ ବହିକୁ ଶସ୍ତା କରି ପାରିବୁ ନାହିଁ । ତେଣୁ ସେ ଦିଗରେ ଉଦ୍ୟମ କରି ଲାଭ ନାହିଁ । ପ୍ରଥମ ଅବସ୍ଥାରେ ସେହି ପ୍ରକାଶକମାନେ ମୋତେ ଈର୍ଷା କରୁଥିଲେ । ପରେ ଯେତେବେଳେ ପ୍ରକୃତ ସ୍ଥିତି ଜାଣିଗଲେ ଆଉ ସେଭଳି କଲେ ନାହିଁ । ତେଣୁ ଯେଉଁମାନେ କହୁଛନ୍ତି ଯେ ମୋର କୌଣସି ଖାସ୍ ସଫଳତା ନଥିବାରୁ ଲୋକେ ମୋ ମୃତ୍ୟୁପରେ ମୋତେ ଆଉ ମନେ ରଖିବେ ନାହିଁ,

ତେଣୁ ମୁଁ ଦୟାର ପାତ୍ର—ସେମାନଙ୍କୁ ଦୋଷ ନଦେଇ କହିପାରେ ଯେ ମୋ ମୃତ୍ୟୁ ପରେ ପ୍ରଥମ ଶୋକସଭାରେ ଯଦି କୁହାଯିବ 'ଜଣେ ସଫଳ ଶିକ୍ଷକ ଚାଲିଗଲେ' ମୋ ପ୍ରତି ଯଥେଷ୍ଟ ସମ୍ମାନ ପ୍ରଦର୍ଶନ କରାଯିବ ।

ମୁଁ କହି ଚାଲିଥାଏ--ସେହି ଯୁବକ ମୋ ଆଡ଼କୁ ବିସ୍ମାରିତ ନେତ୍ରରେ ଚାହିଁ ଥାଆନ୍ତି ଓ ଶୁଣୁଥାଆନ୍ତି । ହଠାତ୍ ଟିକିଏ ରହିଗଲେ—ତାହାପରେ ଆରମ୍ଭ କଲି—ମୋ ବିଷୟରେ ଟିକିଏ ଅତିରଞ୍ଜିତ ଧାରଣା ଦେଇ ଦେଲି ବୋଲି ଦୁଃଖିତ । ମୋତେ ଶିକ୍ଷକ ବୋଲି ନକହି 'ମାଟିବଂଶ ଅବଧାନ' ବୋଲି କୁହାଯାଉ । ସେ ଅବଧାନଙ୍କର କାମ ହେଲା ପିଲାଙ୍କୁ ଅକ୍ଷର ଚିହ୍ନାଇ ଦେବେ, ଅକ୍ଷର ଲେଖାଇ ଦେବେ । ମାତ୍ରାସବୁ ଲେଖାଇବେ, ବହି ପଢ଼ା ଶିଖାଇବେ, ମିଶାଣ ଫେଡ଼ାଣ ଗୁଣନ ହରଣ ଶିଖାଇବେ, ପଣକିଆ ମୁଖସ୍ତ କରାଇ ଦେବେ । କଳା କଳେବର କହ୍ନାଇ ଭଳି କେତୋଟି ଗୀତ ବୋଲାଇ ଦେବେ । ସେଇଠି ତାଙ୍କ କାମ ସରିଲା ଯିଏ ଅକ୍ଷର ଚିହ୍ନିଲେ ସେ ଭବିଷ୍ୟତରେ କ'ଣ ପଢ଼ିବେ ସେହି ବିଷୟରେ ସେ ଆଗ୍ରହୀ ନୁହନ୍ତି । ମୁଁ ସେହିଭଳି କାମଟିଏ କରିବାକୁ ଯାଉଛି । ପାଞ୍ଚଶହ ଶ୍ରେଷ୍ଠ ଶ୍ରେଷ୍ଠ ବହି ଯିଏ ପଢ଼ିବ ସେ ନିଶ୍ଚିତ ଆଗ୍ରହୀ ହେବ କୌଣସି ଖାସ୍ ବିଷୟରେ ଅଧିକ ଜାଣିବା ପାଇଁ । ସେତେବେଳେ ସେ ଜ୍ଞାନମଣ୍ଡଳ ସେଠି ପଢ଼ିବ । ସେତିକି ହୋଇଗଲେ ସେ ନିଜକୁ ଜଣେ ଶିକ୍ଷିତ ଲୋକ ବୋଲି ବିଚାରିବ । ସେହି ଜ୍ଞାନ ତାକୁ ଚାକିରି ଦେଇ ପାରିବ ନାହିଁ ସିନା—ସଂସାର ବିଷୟରେ ଜାଣିବା ପାଇଁ ଆବଶ୍ୟକୀୟ ବୌଦ୍ଧିକ ସାମର୍ଥ୍ୟ ଯୋଗାଇ ଦେବ । ସଫଳତା ବା ବିଫଳତା ତ ଆପେକ୍ଷିକ ଶବ୍ଦ । ମୁଁ ବିଚାରୁଛି ଯଦି ଓଡ଼ିଶାର ପ୍ରତିଗାଁରେ ଏହିସବୁ ଶ୍ରେଷ୍ଠ ଶ୍ରେଷ୍ଠ ବହି ରହିଯାଏ ତେବେ ସେଇଟି ହେବ ଗୋଟାଏ ଚରମ ସଫଳତା ।



# ମୋର ଦୁଇ ଗୁରୁ...

ମୋ କାହାଣୀ ପ୍ରାୟ ଶେଷ ହୋଇ ଆସୁଛି । ପାଠକମାନଙ୍କ ସହିତ ମୋର ଦୁଇ ଗୁରୁଙ୍କୁ ପରିଚିତ କରିଦେବା'ଟା ମୋର ପବିତ୍ର କର୍ତ୍ତବ୍ୟ । ଜଣଙ୍କର ନାମ 'ପୁସ୍ତକ' ଅନ୍ୟ ଜଣଙ୍କୁ ମୁଁ ନାମ ଦେଇଛି 'ଫାଇଲ୍' ଯିଏ ଜ୍ଞାନମଣ୍ଡଳ ଅଫିସ ଭିତରକୁ ପଶି ଆସୁଛନ୍ତି ସେ ଦେଖୁଛନ୍ତି ଯେ ବହୁ ସଂଖ୍ୟକ ଫାଇଲ ଭିନ୍ନ ଭିନ୍ନ ର୍ୟାକ୍ ବା ଆଲମାରୀରେ ସଜ୍ଜିତ ହୋଇ ରହିଛି । କେତେ ଗୁଡ଼ିଏ ଚଟାଣ ମଧ୍ୟ ରହିଛି । ଯେତେବେଳେ ଜ୍ଞାନମଣ୍ଡଳ କାମ ୧୯୫୪ରେ ଆରମ୍ଭ କରିଥିଲି ସେତେବେଳେ କଟକ ସହରରେ ଗୋଟିଏ ଗ୍ରେଟଘରେ ରହୁଥିଲି । ତାହାର ଭିତରଟି ଦୁଇଶହ ବର୍ଗଫୁଟ । ମାତ୍ର ଗୋଟିଏ ଆଲମାରୀ ଓ ଗୋଟିଏ କାଠ ର୍ୟାକ୍ ତାକୁ ଦୁ'ଭାଗ କରି ଦେଇଥିଲି । ଗୋଟିଏ ଅଂଶ ଅଫିସ—ଅନ୍ୟ ଅଂଶଟି ରହିବା ସ୍ଥଳ । ରାତିରେ ଅଫିସ ଭିତରେ ମୁଁ ଶୋଇପଡ଼େ । ପିଲାମାନେ ରହିବା ସ୍ଥଳ ଅଂଶରେ ରହନ୍ତି । ଅନେକ ଲୋକଙ୍କୁ କୁହେ ଜାପାନୀ ମାନଙ୍କୁ ମୁଁ ଆଦର୍ଶ ବୋଲି ଧରିଛି । ଦେଓ୍ୱାନ ଚମନଲାଲ କହିଲି ଭଳି ବହୁ ଜାପାନୀ ପରିବାରରେ ଗୋଟିଏ ବଖରା ଦିନବେଳେ ଫାକ୍‌ଟ'ରୀ, ରାତିରେ ବେଡ୍‌ରୁମ । ସେମିତି ମୋର ଏହି ଅଫିସଟି ଦିନ ବେଳେ ଅଫିସ ବା ଷ୍ଟଡ଼ିରୁମ୍— ରାତିରେ ଶୋଇବା ଘର ।' ଏହିଭଳି ଭାବରେ ୧୯୬୭ ପର୍ଯ୍ୟନ୍ତ ତେର ବର୍ଷ ରହିଲା ପରେ ବାରବାଟୀ ଷ୍ଟାଡ଼ିୟମରେ ଗୋଟିଏ ବଟେ ଭଡ଼ା ନେଇ ରହିଲି । ସେଇଟି ୬୦୦ ବର୍ଗଫୁଟ । ତାକୁ ଚାରିଭାଗ କରିଦିଆଯାଇଛି—ପରିକଳ୍ପନା, ଅଫିସ୍‌କାମ ଛପାବହି ବ୍ଲକ ପ୍ରଭୃତି ରଖିବା ପାଇଁ ଚାରିଶହ ବର୍ଗ ଫୁଟ ଗଲାପରେ ମୁଁ ବସି ରହିଛି ମାତ୍ର ଦୁଇଶହ ବର୍ଗ ଫୁଟ ସ୍ଥାନରେ । ସେଥିର ଗୋଟାଏ ବଡ଼ ଅଂଶରେ କେତୋଟି ଆଲମାରି ଓ ର୍‌ୟାକ୍‌ରେ ଫାଇଲ ଭର୍ତ୍ତି । ଡକୁମେଣ୍ଟାରୀ ଓ ଟେଲିଭିଜନରେ ସେହି ଅଂଶଟିକୁ ବହୁଲୋକ ଦେଖିଲେଣି । ଭାରତ ଓ ଭାରତର ବହୁ ଶ୍ରେଷ୍ଠ ଲୋକ ଆସି ସେଗୁଡ଼ିକୁ ଦେଖୁଛନ୍ତି ।

ଶତକର ନବେଭାଗ ବିଷୟ ବସ୍ତୁ ଇଂରାଜୀ, ହିନ୍ଦୀ ବା ବଙ୍ଗଳା ଥିବାରୁ ସେମାନେ ଦେଖିପାରୁଛନ୍ତି କଅଣ ସବୁ ସାଇତାଯାଉଛି । ପୂର୍ବରୁ ତ ସୂଚନା ଦେଇ ସାରିଛି—ତଥାପି ଆଉ ଟିକିଏ କହି ଦିଏ । ଖବର କାଗଜଟିଏ ପଢ଼ିଲା ବେଳେ ଦାଗ ଦେଇଦିଏ କଅଣ ସବୁ ରହିବ । ସେ ବିଷୟରେ ମୋ ମୁଣ୍ଡ ଭିତରେ ତ ସବୁକଥା ଅଛି—ଅର୍ଥାତ୍ କେଉଁଟି କାମରେ ଲାଗିବ ଜାଣେ । ପରେ ସେହି ଅଂଶଟି କାଟି ଫୁଲସ୍‌କେପ୍ ସାଇଜରେ ମଡ଼ାଇ ଦିଆଯାଏ । ତା' ଉପରେ ଲେଖିଦିଆଯାଏ କେଉଁ ଫାଇଲ୍‌କୁ ଯିବ । ପରେ ସେଇଥିରେ ରଖିଦିଆଯାଏ । କ୍ରମେ କ୍ରମେ ସେ ଫାଇଲ ଗୁଡ଼ିକର କଳେବର ବୃଦ୍ଧି ହେଉଥାଏ ତା' ସଙ୍ଗେ ସଙ୍ଗେ ସେଗୁଡ଼ିକ ଭିତରେ ନୂତନତ୍ୱ ଭରି ଯାଉଥାଏ । ଗୋଟାଏ ନିର୍ଦ୍ଦିଷ୍ଟ ବିଷୟର 'ସର୍ବଶେଷ' ତଥ୍ୟ ରହିଯାଉଛି ଏହି ସବୁ ଫାଇଲରେ । ଏଗୁଡ଼ିକର ଦୁଇଟି ଦିଗ ଅଛି । ମହାକାଶ ଫାଇଲ୍‌ଟି ଲେଖିବେ—ଲକ୍ଷ୍ୟ କରିବେ ସେଥିରେ ଆଠଶହଟି ଭିନ୍ନ ଭିନ୍ନ ଖବର ବା ଆଇଟେମ୍ ରହିଗଲାଣି । ତାହା ଉପରେ ୧୨୭ ଜଣ ପ୍ରସିଦ୍ଧ ଲେଖକଙ୍କ ଲେଖା ସଂଗୃହୀତ ହୋଇ ସାଇତା ହୋଇଛି । କେବଳ ପରମାଣୁ ଉପରେ ୨୨୫ଟି ରେଫରେନ୍‌ସ୍ ସାଙ୍ଗକୁ ୭୫ ଜଣଙ୍କ ଲେଖା । ଗୋଟିଏ ଗୋଟିଏ ଲେଖା ଏକାଧିକ ପୃଷ୍ଠାରେ ଥିବାରୁ ୩୦୦ ପୃଷ୍ଠାର ପରମାଣୁ ଫାଇଲ ବେଶ୍ ମୂଲ୍ୟବାନ ହୋଇଯାଇଛି । ସୂର୍ଯ୍ୟ ଫାଇଲରେ ଅଛି ୯୭ ଜଣଙ୍କ ଲେଖା ଓ ପ୍ରାୟ ୩୦୦ ବିଷୟ ୪୦୦ ପୃଷ୍ଠାରେ । ପାଠକମାନେ ଭାବିପାରନ୍ତି ଏହିସବୁ ବିଷୟ ଉପରେ ଅନେକ ଉପାଦେୟ ପୁସ୍ତକ ଥିଲାବେଳେ ଏହିସବୁ ଫାଇଲ୍‌ର ଆବଶ୍ୟକତା ବା ଉପଯୋଗିତା କଅଣ ? ବହିରେ ଜଣେ ଲେଖକ ନିଜ ଦୃଷ୍ଟିକୋଣରୁ ଲେଖିଛନ୍ତି ବା ଯେଉଁସବୁ ତଥ୍ୟ ଆବଶ୍ୟକ ବୋଲି ଭାବିଛନ୍ତି ସେଗୁଡ଼ିକ ସନ୍ନିବେଶିତ କରିଛନ୍ତି । କିନ୍ତୁ ଉପରେ ଯେଉଁସବୁ ଫାଇଲ୍‌ଗୁଡ଼ିକର ନାମ ଉଲ୍ଲେଖ କଲି ସେଥିରେ ରହିଛି ଆସିମୋଭ୍, ଗାଗାରିନ୍, କାଲ୍‌ଡ଼ର, ପର୍ଲବକ୍, ବି.ଡ଼ି.ନାଗ ଚୌଧୁରୀଙ୍କ ଲେଖା । ଓପେନହିମରଙ୍କ ଲେଖା ସବୁ ମିଳିଯିବ । ତେଣୁ ଗୋଟିଏ ଗୋଟିଏ ଫାଇଲ ହେଉଛି ମୂଲ୍ୟବାନ ପୁସ୍ତକ—ପ୍ରାୟ ଶହେ ଜଣଙ୍କ ଦ୍ୱାରା ଲିଖିତ ବୋଲି ଧରି ନିଆଯାଇ ପାରେ । କୌଣସି ପୁସ୍ତକ ଏଗୁଡ଼ିକର ସ୍ଥାନ ପୂରଣ କରି ପାରିବ ନାହିଁ । ପାଠକ ଦେଖିବେ

ମହାକାଶ ଯାତ୍ରା ଉପରେ ଫାଇଲ୍ ଖୋଲାଗଲା ୧୯୫୭ ଅକ୍ଟୋବର ୬ ତାରିଖ ଦିନ— କାରଣ ୪ ତାରିଖରେ ସ୍ପୁଟ୍ନିକ ବୁଲିଲା ପୃଥିବୀ ଚାରିପଟେ ବ୍ଲିପ୍ ବ୍ଲିପ ସଙ୍କେତ ପଠାଇ । ତାହାପରେ ସେ ବିଷୟରେ ବହୁ ବିଶିଷ୍ଟ ବୈଜ୍ଞାନିକ ଶହ ଶହ ଲେଖା ଲେଖିଲେ । ସେଗୁଡ଼ିକରୁ କେତୋଟି ଆମ ଫାଇଲ୍‌ରେ ଦେଖି ପାରିବେ । ପରେ ପରେ ଯେତେବେଳେ ସେଦିଗରେ ଅଗ୍ରଗତି ହେଲା, ଭିନ୍ନ ଭିନ୍ନ ମହାକାଶଯାନ ପଠାଗଲା ନିର୍ଦ୍ଦିଷ୍ଟ ଉଦ୍ଦେଶ୍ୟ ସବୁ ସାଧନ ପାଇଁ, ସେତେବେଳେ ମହାକାଶ ଉପରେ ଥିବା ଗୋଟିଏ ଫାଇଲ୍ ନିଅଣ୍ଟ ପଡ଼ିଲା । କେତେଗୁଡ଼ିଏ ନୂଆ ଫାଇଲ୍ ଖୋଲୁ ଖୋଲୁ ସଂଖ୍ୟା ଆସି ପହଞ୍ଚିଗଲାଣି ଦୁଇଶହରେ । ଆପୋଲୋ ସୋୟୁଜ ପ୍ରଭୃତି ବିଭିନ୍ନ ପ୍ରକାରର ମହାକାଶଯାନ ଉପରେ ସ୍ୱତନ୍ତ୍ର ଫାଇଲ୍ । ଯେଉଁ ମହାକାଶଚାରୀମାନେ ନିଜ ଜୀବନକୁ ବିପନ୍ନ କରି ମହାକାଶ ଯାତ୍ରାରେ ବାହାରି ଅସାଧ୍ୟ ସାଧନ କଲେ ବା ମୃତ୍ୟୁ ବରଣ କଲେ ସେମାନଙ୍କ ଉପରେ ସ୍ୱତନ୍ତ୍ର ଫାଇଲ୍ । ସେଭଳି ଥିବାରୁ ଜ୍ଞାନମଣ୍ଡଳରେ ଯେତେବେଳେ ଆର୍ମଷ୍ଟ୍ରଙ୍ଗ ବା ଗାଗାରିନ୍‌ଙ୍କ ଉପରେ ଲେଖାଯାଉଛି ସେହିସବୁ ପ୍ରବନ୍ଧ ଭଲ ହୋଇଯାଇ ପାରୁଛି ।

ଅଳ୍ପଦିନ ପୂର୍ବେ (୧୯୮୬ ଡିସେମ୍ବର) ଜଣେ ଯୁବକ ଡାକ୍ତର ଧୀରେନ୍ ଦାସ ଆମ ଅଫିସକୁ ଆସି ଗଲେ । ସେ ଜଣେ ହୃଦ୍‌ରୋଗ ବିଶେଷଜ୍ଞ । ଆମେରିକାର ନିଉୟର୍କ ସହରରେ ଘରୋଇ ଚିକିତ୍ସା କରୁଛନ୍ତି । ତାଙ୍କୁ କହିଲି ମନୁଷ୍ୟ ଶରୀରର ପ୍ରତ୍ୟେକ ଅଂଶ ଉପରେ ଆମର ଗୋଟିଏ ବଡ଼ ଫାଇଲ ରହିଛି । ହୃତପିଣ୍ଡ ଫାଇଲ୍‌ଟି ଖୁବ୍ ମୋଟାହୋଇ ଗଲାଣି । ସେଇଟିକୁ ପରେ ଦେଖାଇବି । ପ୍ରଥମେ ଦେଖ ହୃତପିଣ୍ଡ ରୋପଣ' ବା ହାର୍ଟ୍ ଟ୍ରାନ୍‌ସ୍‌ପ୍ଲାଣ୍ଟେସନ ଉପରେ କେତେ ବିଷୟ ସଂଗ୍ରହ କରାଯାଇଛି । ୧୯୬୭ ଡିସେମ୍ବର ୩ ତାରିଖରେ ପ୍ରଥମେ ହାର୍ଟ୍ ରୋପଣ ହେଲା । ସେହି ଫାଇଲର ପ୍ରଥମ ପୃଷ୍ଠାରେ ଲେଖାଅଛି — ହୃତ୍‌ପିଣ୍ଡ ଉପରେ ଗୋଟିଏ ବଡ଼ ଫାଇଲ୍ ଥିଲେ ମଧ୍ୟ ଏଇଟି ଗୋଟିଏ ନୂଆ ଘଟଣା ଚିକିତ୍ସା ସମ୍ପର୍କରେ । ଦିନେ ହୁଏତ ଏହି ପରୀକ୍ଷା ସଫଳ ହେବ ବା ବିଫଳ ହେବ । କି କି ସତର୍କତା ଅବଲମ୍ବନ କଲାରୁ ସଫଳ ହେଲା ବା କାହିଁକି ବିଫଳ ହେଲା ତାହାର କାରଣ ଜାଣିବା ପାଇଁ ସମସ୍ତେ ଆଗ୍ରହୀ ହେବେ । ସେଭଳି ଜାଣିବାର ଗୁରୁତ୍ୱ ରହିଛି ।' ସେ ଦେଖିଲେ ତାହାପରେ କେଉଁ ତାରିଖରେ

କଅଣ ସବୁ ପ୍ରକାଶ ପାଇଛି । ଗୋଟିଏ ସ୍ଲେଟ ଫାଇଲ୍ ହୋଇ ଗଲାଣି । ଜୀବ ଜନ୍ତୁଙ୍କ ଉପରେ କେତେଶହ ଫାଇଲ ଅଛି କହିଲି ଓ ମୂଷା ବୁଢିଆଣୀ ଏହି ଦୁଇଟି ଫାଇଲର ଉଦାହରଣ ଦେଲି । ମୂଷା ଫାଇଲର କେତୋଟି ଚିତ୍ର ଟେଲିଭିଜନରେ ଦେଖାହୋଇ ସାରିଛି । ସବୁଗୁଡ଼ିକୁ ଯଥା ସମ୍ଭବ ସଦ୍ୟ ନୂତନ କରି ରଖିବା କେଡ଼େ କଷ୍ଟ ବୁଝାଇଲି । ଯେଉଁ ପ୍ରାୟ ୨୦ ହଜାର ଫାଇଲ୍ ରହିଲାଣି ସେଥିରେ ଅଛି ପ୍ରାୟ ଏକ ଲକ୍ଷ ଲେଖକଙ୍କ ଲେଖା । ଜଣେ ଜଣେ ଲେଖକ ବହୁ ବିଷୟ ଉପରେ ଲେଖିଛନ୍ତି । ହାଲ୍‌ଡେନ୍ ସମୁଦ୍ର ଉପରେ ଯାହା ଲେଖିଛନ୍ତି ତାହା ଅତି ଉପାଦେୟ । ମସ୍ତିଷ୍କ ଉପରେ ବହୁ ସଂଖ୍ୟକ ବହି ଓ ପ୍ରବନ୍ଧ ପଢିଛି । Neuro Anatomy ରୁ ବହୁତ କିଛି ଶିଖିଲି । କିନ୍ତୁ ବିଜ୍ଞାନ କାହାଣୀ, ଇତିହାସ, ସାହିତ୍ୟ ଧର୍ମ ଏବଂ ଭୂଗୋଳ ପ୍ରଭୃତି ଉପରେ ୧୨୦ ରୁ ଅଧିକ ବହି ଲେଖିଥିବା ଆଇଜାକ୍ ଆସିମୋଭଙ୍କ The Switch Boar 'Inside (ଭିତରେ ଥିବା ସୁଇଚ୍ ବୋର୍ଡ଼) ପ୍ରବନ୍ଧଟିକୁ ଯେତେବେଳେ ପଢ଼ିଦେଲି ମସ୍ତିଷ୍କର ଗୋଟାଏ ବଡ଼ ବିଷୟରେ ଏଭଳି ଜାଣିଗଲି ଯେ ମନଟା ଖୁସି ହୋଇଗଲା । ସେଇଟି ମସ୍ତିଷ୍କ ଫାଇଲର ପ୍ରଥମ ପୃଷ୍ଠାରେ ରହିଛି ଓ ତାହାପରେ ରହିଛି John E Pfeifherଙ୍କ 'ସ୍ମୃତିର ରହସ୍ୟ' ପ୍ରବନ୍ଧଟି । ମସ୍ତିଷ୍କ ଉପରେ ଏତେ ବିଷୟ ସଂଗୃହୀତ ହୋଇଛି ଯେ ସେଗୁଡ଼ିକ ସାହାଯ୍ୟରେ ଓଡ଼ିଆ ଭାଷାରେ ୫୦୦ ପୃଷ୍ଠାର ଗୋଟିଏ ଚମତ୍କାର ବହି ମସ୍ତିଷ୍କ ଉପରେ ଲେଖା ଯାଇ ପାରିବ । ସେହି ଫାଇଲର ପୃଷ୍ଠା ଗୁଡ଼ିକ ଓଲଟାଇ ଯାଉ ଯାଉ ଯେତିକ ନୋଟ୍ କରି ଦେଇଥିଲି ତାହାର ସାହାଯ୍ୟରେ ପିଲାଙ୍କ ପାଇଁ ଗୋଟିଏ ବହି ଦଶଘଣ୍ଟା ଭିତରେ ଲେଖିଦେଇ ପାରିଲି । ତାହାର ନାମ ରଖିଦେଲି 'ସବୁଟିକ ଗୃହ ଧରାଇଦେଲା' ସେହି ବହିଟିକୁ ଟେଲିଭିଜନରେ ପନ୍ଦର ମିନିଟିଆ ପ୍ରୋଗ୍ରାମରେ ଦେଖାଇ ପିଲାଙ୍କୁ ଗଳ୍ପ ଛଳରେ ମସ୍ତିଷ୍କ ବିଷୟରେ ବୁଝାଇ ଦେଇଛି । ପୃଥିବୀର ବହୁ ଯୋଗଜନ୍ମା ପୁରୁଷଙ୍କ ଉପରେ ଗୋଟିଏ ଗୋଟିଏ ଫାଇଲ୍ ଥିବାରୁ ସେମାନଙ୍କ ବିଷୟରେ କିଛି ଲେଖିଲା ବେଳେ କେଉଁଠାକୁ ଯିବାକୁ ପଡ଼ୁ ନାହିଁ । ଟେଲିଭିଜନରେ ରାଧାକୃଷ୍ଣନ, ରାଜେନ୍ଦ୍ର ପ୍ରସାଦ, ଜାକର୍ ହୁସେନ୍, ତିଳକଙ୍କ ବିଷୟରେ କହିବାକୁ ମୋତେ ଡ଼ାକ ଯାଏ । ଆଜି କାହାକୁ ଡାକ କାମ ଚଳାଇ ଦିଅ ବୋଲି କହିଲେ ଉତ୍ତର ମିଳେ—"ଅନ୍ୟମାନେ

ହୃଏତ ଭଲ ଭାବରେ କହି ଦେବେ । ରେଡ଼ିଓରେ କହିଲେ କିଛି ଅସୁବିଧା ନାହିଁ । କିନ୍ତୁ ଟେଲିଭିଜନ ପାଇଁ ଛବି ଦରକାର । ଆପଣଙ୍କ ପାଖରେ ଜଣ ଜଣଙ୍କ ବିଷୟରେ ଏତେ ଏତେ ଫଟୋଚିତ୍ର ବା ଚିତ୍ର ରହିଛି ଯେ ପିଲ-ମାନଙ୍କ ମନଉପରେ ଗଭୀର ରେଖାପାତ କରୁଛି—ବିଶେଷତଃ ରଙ୍ଗୀନ ଛବି ଗୁଡ଼ିକ । ପିକାସୋ ବା ଟଏେନ୍‌ବି ଫାଇଲରେ ଯେଉଁସବୁ ଚିତ୍ର ରହିଛି ସେଗୁଡ଼ିକ ଅନ୍ୟସ୍ଥାନରେ ସହଜରେ ମିଳିବ ନାହିଁ । ଜୀବଜଂତୁ ବ୍ୟକ୍ତିବିଶେଷ ସ୍ଥାନ ଇତ୍ୟାଦି ଉପରେ ଆମ ଅଫିସରେ ଯେତିକି ଛବି ଅଛି ତାହାର ସଂଖ୍ୟା ହୋଇପିବ ଏକ ଲକ୍ଷ । ବେଳେ ବେଳେ ବିଚାରେ ଏଥି ଭିତରୁ ହଜାରଟି ବାଛି ଯଦି ଗୋଟିଏ କହି କରି ଦିଆଯାଏ ଓ ତାହାର ନାମ ରଖାଯାଏ 'ଚିତ୍ରରେ ବିଶ୍ୱ' ତେବେ ସମସ୍ତଙ୍କର ଉପକାର ହେବ । କ୍ରମ ହିସାବରେ ରହିପିବ ବିଶ୍ୱ ତଥା ମାନବ ସମାଜର ଇତିହାସ । ବର୍ଣ୍ଣନା ମୂଳକ ଏହି ବହିଟି ହେବ ଗୋଟିଏ ବିରାଟ ଗଳ୍ପ ପୁସ୍ତକ । ତାକୁ ଲୋକେ ଉପନ୍ୟାସ ପଢ଼ିଲା ଭଳି ପଢ଼ିପିବେ ।

ଖୁବ୍ ସମ୍ଭବ ୧୯୭୦ ରେ ହେବ—ଜଣେ ଭଦ୍ରଲୋକ ମୋ ଅଫିସ ବାରଣ୍ଡାରେ ବୁଲୁଥିଲେ । ମୁଁ ଖଣ୍ଡେ ଅଣ ଓସାରିଆ ଲୁଙ୍ଗି ପିନ୍ଧିଦେଇ ଖାଲି ଦେହରେ ବାରଣ୍ଡାଟିକୁ ଓଳାଉଥିଲି—ଘର ଭିତରଟା ଓଳାଇବା ପରେ । ବାରଣ୍ଡାରେ 'ଜ୍ଞାନମଣ୍ଡଳ—ଓଡ଼ିଆ ଏନ୍‌ସାଇକ୍ଲୋପିଡିଆ' ବୋଲି ଥିବା ସାଇନ୍ ବୋର୍ଡ଼ଟି ଦେଖି ଟିକିଏ ଠିଆ ହୋଇଗଲେ—ଘର ଭିତରକୁ ଚାହିଁ ଦେଖିଲେ କେହି ନାହାନ୍ତି । ମୋତେ ପଚାରିଲେ ଏଇଟା କି ଅଫିସ ? କହିଲି ଏଠାରେ ଗୋଟିଏ ସେଟ୍ ଏନ୍‌ସାଇକ୍ଲୋପିଡିଆ ଲେଖା ହେଉଛି ଓଡ଼ିଆ ଭାଷାରେ । ସେ ଟିକିଏ ବିସ୍ମିତ ହୋଇ ଠିଆ ହେଲେ ଏବଂ କହିଲେ—ଏଠି ଅଫିସର କିଏ ? ମୁଁ ତରତରରେ ଓଳାଇବାଟା ସାରିଦେଇ କହିଲି—'ଆପଣ ଏଇ ଭିତରେ ଚଉକିରେ ବସନ୍ତୁ ।' ଏହା କହିଦେଇ ବ୍ୟାକ୍ ସେପଟକୁ ଚାଲିଗଲି ଓ ଲୁଗା ବଦଳି ପଞ୍ଜାବୀଟି ପିନ୍ଧି ଚାଲି ଆସି କହିଲି—'କ୍ଷମା କରିବେ, ଆପଣଙ୍କର ଟିକିଏ ଅସୁବିଧା ହେଲା । ଏଠାରେ ଓଡ଼ିଆ ବିଶ୍ୱକୋଷ ଲେଖା ହେଉଛି—ତାକୁ ମୁଁ ଲେଖୁଛି ।' ଏତିକି ଇଂରାଜୀରେ ତରତରରେ କହିଦେଇ ତାଙ୍କ ସହିତ ବଙ୍ଗଳାରେ କଥାବାର୍ତ୍ତା କଲି ଯେତେବେଳେ ସେ ତାଙ୍କ ନାମ କହିଦେଲେ ଓ ସେ ବଙ୍ଗାଳୀ ବୋଲି ଜାଣିଲି । ତାଙ୍କର ଖୁବ୍ କିଛି ଆଗ୍ରହ ଲକ୍ଷ୍ୟ କଲି । ସେ କେତେକ ଫାଇଲ୍

ଦେଖିଲେ । ହଠାତ୍ କହି ଉଠିଲେ—ସାର୍, ଆପଣ ବହି ଛପାଇ ବହିକରି ପଇସା ହେବେ ପାଇବେ ବୋଲି ଭାବୁଛନ୍ତି । ମୁଁ ଭାବୁଛି ଆପଣ ସେ ସବୁ ଆଦୌ ନ କରି ହଜାର ହଜାର ଟଙ୍କା ପାଇପିବେ ଏହିସବୁ ଫାଇଲ୍‌ରୁ । ମୁଁ—ଟିକଏ ବିସ୍ମିତ ହେବା ସ୍ୱାଭାବିକ । ତାହା ଲକ୍ଷ୍ୟ କରି ସେ ଆରମ୍ଭ କଲେ—ମୁଁ ଏବେ ଛ' ମାସ ପାଇଁ ବିଦେଶ ଗସ୍ତରେ ଯାଇଥିଲି ମୋ କାମରେ । ଜଣେ ଭଦ୍ରଲୋକ ଗୋଟିଏ ବିଷୟ ଉପରେ ବହୁ ଲୋକଙ୍କ ପ୍ରକାଶିତ ଲେଖା ଗୁଡିକ ସଂଗ୍ରହ କରି ଯତ୍ନରେ ସାଇତି ଦେଇଛନ୍ତି । ସେହି ମାନଙ୍କ ତାଲିକା କରି ପ୍ରବନ୍ଧ ଗୁଡ଼ିକର ଶିରୋନାମା ଦେଇ ଖଣ୍ଡେ ପୁସ୍ତିକା ଛପାଇ ଦେଇଛନ୍ତି । ବିଭିନ୍ନ ବିଶ୍ୱ ବିଦ୍ୟାଳୟ ଓ ଗବେଷଣା ଅନୁଷ୍ଠାନ ବା ସେହି ସଂପର୍କରେ କାମ କରୁଥିବା କେତେ ଲୋକଙ୍କ ପାଖକୁ ପଠାଇ ଦେଇଥିବାର ଜାଣିଲି । ଯିଏ ଗୋଟିଏ କୌଣସି ଲେଖା ଦରକାର କରୁଛନ୍ତି ଚିଠି ଲେଖୁଛନ୍ତି । କେତେପଇସା ପଡ଼ିବ ଜାଣିଲା ପରେ ବିଶ୍ୱାଦ ଦେଉଛନ୍ତି—ଲେଖା ଚାଲି ଯାଉଛି । ଆପଣତ ହଜାର ହଜାର ଲୋକଙ୍କ ଲେଖା ସାଇତିଲେଣି । ସେଗୁଡ଼ିକର ତାଲିକା କରି ଖଣ୍ଡେ ବହି ଛପାଇ ଦେଲେ ଘରେଆଡୁ ଚାହିଦା ଆସିବ । ଏ ସବୁତ ପୁଣି ମୁଖ୍ୟତଃ ଇଂରାଜୀରେ—ସେଇଟା ଆହୁରି ସୁବିଧା ।' ସେତେବେଳେ ତାଙ୍କ ଆଗରେ 'ମାଛ' ଫାଇଲ୍‌ଟି ଥୁଆ ହୋଇଥାଏ । ସେ ସେଥିରେ ଥିବା ମାନଚିତ୍ରଟି ଦେହରେ ହାତମାରି କହିଲେ—ଆପଣ ଏହି ଓ୍ୱାର୍ଲ୍ଡ଼ ଫିସରିଜ ମାନଚିତ୍ରଟି ଦେଖନ୍ତୁ । ପୃଥିବୀରେ ମାଛ ପାଇଁ ଦେଶ ଦେଶ ଭିତରେ କେତେ ଯୁଦ୍ଧ ହୋଇ ଯାଇଛି ତାହାର ଉଲ୍ଲେଖ କେଡ଼େ ସୁନ୍ଦର ଭାବରେ ହୋଇଛି । ଜଣେ କେଉଁଠି ପଢ଼ିବ ମାଛ ପାଇଁ ଯୁଦ୍ଧ ହୋଇଛି । କେଉଁ କେଉଁ ଦେଶ ଭିତରେ କେଉଁଠି ହୋଇଥିଲା ତାହା ଜାଣିବ କେମିତି । ଟାଇମ୍ କାଗଜର ଅମୁକ ସଂଖ୍ୟାରେ ବାହାରିଥିଲା ବୋଲି ଜାଣିଲେ ମଧ୍ୟ ସେ ସେହିସଂଖ୍ୟାଟି ସହଜରେ ପାଇବ କେଉଁଠୁ ? ଆପଣ ଏହାର ଷ୍ଟେଟମ୍ୟାପ କରି ପଠାଇ ଦେଲେ ସେ ଆପଣଙ୍କୁ କେତେ ଟଙ୍କା ଦେବାକୁ କୁଣ୍ଠାବୋଧ କରିବ ନାହିଁ । ଏହି ମାନ ଚିତ୍ରରେ ମାଛ ସଂକ୍ରାନ୍ତରେ କେତେଦିଗରୁ କେତେତଥ୍ୟ ଦିଆ ଯାଇଛି ଲକ୍ଷ୍ୟ କରନ୍ତୁ ।

ଅଳ୍ପ ଦିନ ପରେ ତାଙ୍କ କଥାର ଗୁରୁତ୍ୱ ବୁଝିଲି । ବୋମ୍ବେରୁ ଗୋଟିଏ ମତ୍ସ୍ୟ ବିଭାଗ ଅଫିସର ଦଳ ଆସି ଆମ ବାରବାଟୀ ଷ୍ଟେଡ଼ିୟମ୍

ହତାରେ ଥାଆନ୍ତି—ମାଛ ଯାଆଁଳ ଉତାରିବା ଓ ମତ୍ସ୍ୟଗୁଷ ବିଷୟରେ ପ୍ରତ୍ୟକ୍ଷ ଜ୍ଞାନ ହାସଲ କରିବା ପାଇଁ—କଟକ ମତ୍ସ୍ୟ ଗବେଷଣା କେନ୍ଦ୍ରରୁ । ସେମାନଙ୍କ ସହିତ ଜଣେ ଉଚ୍ଚପଦସ୍ଥ ଅଫିସର ଥିଲେ ଭାରତ ସରକାରଙ୍କର । ସେ ହେଉଛନ୍ତି ମାଛ ଗୁଷର ଅର୍ଥନୈତିକ ଦିଗ ବିଷୟରେ ପରାମର୍ଶ ଦାତା । ସେ ଯେତେବେଳେ ମାଛ ଫାଇଲଟି ଦେଖିଲେ ଏହି ମାନଚିତ୍ରଟି ଦେଖି ଏକା ବେଳକେ ଖୁସୀ ହୋଇଗଲେ । ଏହି ଗୋଟିକୁ ସେ ଖୋଜୁଥିଲେ । ଯଦି ଅନୁମତି ଦେବି ସେ ଗୋଟିଏ ସ୍କେଚ୍ କରିଦେବେ ବୋଲି ଇଚ୍ଛା ପ୍ରକାଶ କଲେ । କିଛି ଟଙ୍କା ଦେବା ପାଇଁ ମଧ୍ୟ ରାଜିଥିଲେ । ମୁଁ ଟଙ୍କା ନେଲି ନାହିଁ—ସେ ସ୍କେଚ୍ କରିଦେଲେ । ଯୁକ୍ତରାଷ୍ଟ୍ର ଆମେରିକା ନିକଟରେ ସାଲମନ ମାଛଯୁଦ୍ଧ, ଜାପାନ ଆମେରିକା ମଧ୍ୟରେ ସେହି ମାଛ ଧରା ପାଇଁ ଯୁଦ୍ଧ, କଡ଼ପାଇଁ ଆଇସ୍‌ଲାଣ୍ଡ ଏବଂ ବ୍ରିଟେନ, ମେକ୍ସିକୋ ଯୁକ୍ତରାଷ୍ଟ୍ର ଆମେରିକା, ଚୁନାମାଛ ପାଇଁ ଗୋଟିଏ ପଟେ ଇକୁଏଡ଼ର ପେରୁ ଅନ୍ୟ ପକ୍ଷରେ ଯୁକ୍ତରାଷ୍ଟ୍ର ଆମେରିକା ଭିତରେ ଯୁଦ୍ଧ ହୋଇଛି ବୋଲି ଦର୍ଶାଇ ଦିଆ ଯାଇଛି । ଗଲା କେତେବର୍ଷ ହେଲା ସ୍ୱତନ୍ତ୍ର ଭାବରେ ଖାତାରେ ଲେଖାଯାଇଛି କେଉଁ ବ୍ୟକ୍ତି କେଉଁ ବିଷୟରେ ଲେଖିଛନ୍ତି ଓ ତାହା କେଉଁ ଫାଇଲ୍‌ରେ ଅଛି । ୧୯୮୭ ଶେଷସୁଦ୍ଧା ସେ କାମ ଶେଷ ହୋଇଗଲେ ଜଣେ ଆସି ଦେଖିବେ ସୂର୍ଯ୍ୟ କାଳ ମସ୍ତିଷ୍କ ଉପରେ ଆସିମୋଭ୍, ସୂର୍ଯ୍ୟ କାଯାର ପାଇଁ ସତ୍ୟେନ ବସୁ, ସମୁଦ୍ର ଶିକ୍ଷା ପ ଇଁ ଜେବିଏସ୍ ହାଲ୍‌ଡ଼େନ୍, ଗାନ୍ଧୀଙ୍କ ଉପରେ କାକା କାଲେ ଲକରି ରାଜେନ୍ଦ୍ର ପ୍ରସାଦ, ଭାଷା ଉପରେ ହୁମାୟୁନ କବିର ବିନୋବା, ଶିକ୍ଷା ଉପରେ ପଣ୍ଡିତ କାର୍ଭେ ରବୀନ୍ଦ୍ରନାଥ ଉକ୍କୁର କଳଭଦ୍ର ପ୍ରସାଦ, ଭାଷା ଉପରେ ଡକ୍ଟର ଦେବୀ ପ୍ରସନ୍ନ ପଟ୍ଟନାୟକ, ମହାକାଶ ବିଷୟରେ ନିଓନଭ ଗାଗାରିନ୍ ଆର୍ମଷ୍ଟ୍ରଙ୍ଗ, ମାଛ ଦାରିଦ୍ର୍ୟ ଉପରେ ଡକ୍ଟର ବି.ଡି ନାଗଚଉଧୁରୀ, 'ଲେଖକ' ଉପରେ ଡକ୍ଟର ରାଧା କୃଷ୍ଣନ, କାଳ ବିଦ୍ୟୁତ ପରିବେଶ ଡାୟେବେଟିସ୍ ଉପରେ ନର୍ତ୍ତେଲ୍, ପରମାଣୁ ଉପରେ ଓପେନହିମର, ଡକ୍ଟର ଓ୍ୱାର୍‌ଦେକର କୁଷ୍ଠ ଉପରେ କହୁଳ ଉପାଦେୟ ତଥ୍ୟ ପୂର୍ଣ୍ଣ ପ୍ରବନ୍ଧ ସବୁ ଲେଖି ଯାଇଛନ୍ତି । ପାଠକ ମାନେ ଜାଣିରଖନ୍ତୁ ସେମାନଙ୍କ ଭିତରେ କେବଳ ଆଗ୍ରହ ସୃଷ୍ଟି ପାଇଁ ନମୂନା ନାମ ଗୁଡ଼ିଏ ଦେଇଦେଲି । ନିଶ୍ଚୟ ଦିନେ ଆମ ଫାଇଲ୍‌ରେ ଥିବା ପ୍ରବନ୍ଧ ଗୁଡ଼ିକର ଲେଖକମାନଙ୍କର ନାମ ବର୍ଣ୍ଣମାଳାନୁକ୍ରମେ ମୁଦ୍ରିତ ହୋଇ

ପ୍ରକାଶ ପାଇପାରିବ ଓ ସମସ୍ତେ ଜାଣିବେ କେଉଁ କେଉଁ ବିଷୟ ଉପରେ ସେମାନେ ଲେଖିଛନ୍ତି ।

ଏହି ତଥ୍ୟ ସଂଗ୍ରହ ପ୍ରକ୍ରିୟା—ଯାହାକୁ କୁହାଯାଇଛି "ଫାଇଲରେ ସାଇତିକା"—ତାହାର ଆଉ ଗୁଡିଏ ଦିଗ ବିଷୟରେ କହି ନ ଦେଲେ ମୁଁ ନିଜକୁ କେମିତି ପଢ଼ାଇଲି ବା ଶିଖାଇଲି ସେ ସମ୍ପର୍କରେ ପୂର୍ଣ୍ଣ ଧାରଣା କରି ହେବ ନାହିଁ । ପ୍ରଥମଟି ହେଲା—

ଜ୍ଞାନକୁ ଶୃଙ୍ଖଳିତ ସଂଗଠିତ ବିଜ୍ଞାନ ସମ୍ମତ ପ୍ରଣାଳୀରେ ଗୋଟିଏ ସ୍ଥାନରେ ରଖିଦିଆ ଯାଉଛି—ଯାହାକୁ ଜଣେ ନାମ ଦେଇଛନ୍ତି, "ଅର୍ଗାନାଇଜିଙ୍ଗ୍ ନଲେଜ୍ ।" ପ୍ରଜାପତି ବିଷୟରେ ଜାଣିବାକୁ ଇଚ୍ଛା କରିବେ ପାଠକ । ର୍ୟାକ୍ ବା ଆଲମାରୀରେ ଫାଇଲ ଗୁଡ଼ିଏ ଅଛି—ଲେଖିଦିଆ ଯାଇଛି 'ପ' । ସେଇଥିକରେ ପ୍ରଜାପତି ଫାଇଲ୍‌ଟି ଅଛି । ମିନିଟିଏ ଦି' ମିନିଟ ଭିତରେ ଆପଣ ସେଇଟିକୁ କାଢ଼ି ଆଣିପାରିବେ । ଜଣେ ଆମ ପରିଦର୍ଶନ ଖାତାରେ ଲେଖି ଦେଇଛନ୍ତି—ଏଇଟି ହେଉଛି ତଥ୍ୟର ଭଣ୍ଡାର ବା ଗନ୍ତାଘର—ଷ୍ଟୋର୍ ହାଉସ୍ ଅଫ୍ ଇନ୍‌ଫର୍‌ମେସନସ୍' । ଏହି ଗନ୍ତାଘରେ ପ୍ରତିଦିନ କିଛି କିଛି ନୂଆ ତଥ୍ୟ ସାଇତି ଦିଆ ହେଉଛି । ସେଦିନ ଜଣେ ଇତିହାସ ବିଦ୍ୟାର ପ୍ରଫେସର ଆସିଥିଲେ । ମୁଁ କଅଣ କେମିତି କରୁଛି ସେ ବିଷୟଟିକୁ ଅଧିକ ଜାଣିବା ଥିଲା ତାଙ୍କର ଇଚ୍ଛା ସେ ମୋଠାରୁ ଶୁଣିଲେ —'ମୁଁ ଇତିହାସ ହିଁ ଲେଖୁଛି' । ତାଙ୍କ ଦୁଇଟି ଯାକ ଆଖି କହିଦେଲା ସେ ମୋ କଥାର ମରମ ବୁଝି ପାରୁନାହାନ୍ତି । ବୁଝାଇଲି —ଏନ୍‌ସାଇକ୍ଲୋପିଡ଼ିଆରେ କଅଣ ଅଛି ? ଜ୍ଞାନର ଇତିହାସ ହିଁ ହେଉଛି ବିଶ୍ୱକୋଷ । ମନୁଷ୍ୟ କେମିତି ଥିଲା କେମିତି ହେଲା ଠାରୁ ଆରମ୍ଭ କରି ବିଶ୍ୱରେ କି ପରିବର୍ତ୍ତନ ହେଲା ତାହାର ଧାରାବାହିକ ଇତିହାସ ପାଇବେ କେବଳ ଜ୍ଞାନମଣ୍ଡଳରୁ । ୧୭୭୧ରୁ ୧୯୮୫ ଭିତରେ ପ୍ରତ୍ୟେକ କ୍ଷେତ୍ରରେ କିଭଳି ଅଗ୍ରଗତି ହୋଇଛି ତାହା ଆପଣ ଜାଣିପାରିବେ ଯଦି ଯେଉଁ ପନ୍ଦରଟି ସଂସ୍କରଣ ଏଥି ଭିତରେ ବାହାରିଲାଣି ସେଗୁଡ଼ିକ ପଢ଼ିପାରିବେ । ରାଜା ରାଣୀଙ୍କ ଇତିହାସ ତ ସେହି ଗୁଡ଼ିକର କଳେବର ଭିତରେ ରହିଛି । ଆମେ ଯେ ଏତେ ସଂଖ୍ୟକ ଫାଇଲ ରଖୁଛୁ ତାହାର ପ୍ରଧାନ ଉଦ୍ଦେଶ୍ୟ ପ୍ରତି ବିଷୟର ସବୁ ନୂତନ କଥା ଲିପିବଦ୍ଧ ହୋଇଯାଉ । ସେଗୁଡ଼ିକୁ ନିତ୍ୟ ନୂତନ କରିବାର ପ୍ରୟାସର ଅର୍ଥ ତ ଆପଣ ବୁଝୁଥିବେ ।

ଲୋକଙ୍କର ଚିନ୍ତାଧାରାର ଇତିହାସ ଆପଣ ପାଇବେ ବିଶ୍ୱକୋଷରୁ । ପ୍ରଥମେ ସମାଜ ବିଷୟରେ ଲୋକଙ୍କର କିଭଳି ଧାରଣା ଥିଲା ଓ ପରେ ତାହା କାହିଁକି ବଦଳିଲା ତାହାର ଇତିହାସ ଆପଣଙ୍କ ଇତିହାସ ବହିରେ ଥିବ ଓ ଅଛି ବୋଧହୁଏ । କିନ୍ତୁ ତାହାତ କାଳର ନିୟମ ଅନୁସାରେ ଟିକିଏ ଟିକିଏ ପୁରୁଣା ହୋଇ ଯାଉଛି । ବିଶେଷରେ ଇତିହାସ ବୋଲି ଯେଉଁ ପାଠ୍ୟ ପୁସ୍ତକ ଲେଖା ଯାଉଛି ସେଥିରେ ସବୁକଥା ବିଷୟରେ ସଠିକ ଭାବରେ ଲେଖାଯାଇ ପାରିବ ନାହିଁ । ତାହାର ସ୍ପଷ୍ଟ କାରଣ ରହିଛି । କିନ୍ତୁ ଆମ ଫାଇଲ ଗୁଡ଼ିକର ବିଭିନ୍ନ ସ୍ଥାନରେ ଏତେ କଥା ରହିଯାଇଛି ଯେ ଭବିଷ୍ୟତରେ ସେଗୁଡ଼ିକ ଖେଳାଇ ଗଲେ ଜଣେ ପ୍ରକୃତ ଇତିହାସ ଜାଣିଯିବ । ତାଙ୍କୁ କେତେ ଗୁଡ଼ିଏ ଉଦାହରଣ ଦେଇ ଦେବାରୁ ସେ ବୁଝିଗଲେ । ୧୯୮୭ ଜାନୁୟାରୀ ମାସରେ ଦୂର ଦର୍ଶନ ମୋ ସହିତ ଯେଉଁ ମୁଲାକାତ କଲେ ତାହାକୁ ଦେଖାଇଲି ବେଳେ କହିଦେଲେ—'ଐତିହାସିକ ବିନୋଦ କାନୁନ୍‌ଗୋ' । ସେମାନେ ଏହି ଅର୍ଥକୁ ମନରେ ରଖି ଏଭଳି କହିଥିଲେ । 'ଇତିହାସର ଅର୍ଥ ତ ହେଲା ଯାହା ଅବଶ୍ୟ ଘଟିଛି' । ଅବଶ୍ୟ ସେଥି ସହିତ ନୂଆ କରି ଯୋଗ କରାଗଲା ଯାହା ଅବଶ୍ୟ ଘଟିଛି ଓ ସେଭଳି ଘଟିଛି ବୋଲି ଅନୁସନ୍ଧାନରୁ ପ୍ରମାଣିତ ହୋଇଛି । ସେହି ଅନୁସନ୍ଧାନ କାର୍ଯ୍ୟରେ ସାହାଯ୍ୟ କରିବ ଏହି ସବୁଫାଇଲ୍ । "ଗରିବ ଲୋକଙ୍କୁ ବ୍ୟାଙ୍କ ଋଣଦେବା ଦ୍ୱାରା ସେମାନେ ନିଜର ଆର୍ଥିକ ଉନ୍ନତି କରିବା ପାଇଁ ସୁଯୋଗ ପାଇଲେ ଓ ନେଇଥିବା ଋଣର ସଦୁପଯୋଗ କଲେ" ବୋଲି ଯେତେବେଳେ ସରକାରୀ ବିବୃତି ପ୍ରକାଶ ପାଇଲା ସେତେବେଳେ ତାହା "ଘଟିଛି" ବୋଲି ଲିପିବଦ୍ଧ ହୋଇଗଲା । କିନ୍ତୁ ଆଜ କେତୋଟି ବିବୃତି କହୁଛି—'ଏଗୁଡ଼ା ମିଥ୍ୟା ଦାବୀ । ଲୋକେ ଯେତିକି ଟଙ୍କା ପାଇଲେ ବୋଲି କୁହାଯାଉଛି ସେଥିର ଗୋଟାଏ ଅଂଶ ବାଟମାରଣା ହୋଇ ଯାଇଛି ଓ ଯେଉଁମାନେ ବି ଟଙ୍କା ନେଲେ ସେମାନେ ତାକୁ ଅନ୍ୟ କାମରେ ଲଗାଇ ଦେଇ ବଣିଜ ବେପାର ନାମ ଧରିଲେ ନାହିଁ' । ଅନୁସନ୍ଧାନ କଲେ ଏହାର ସତ୍ୟତା ଜଣା ପଡ଼ିବ । ସେହି ଅନୁସନ୍ଧାନରେ ସାହାଯ୍ୟ କରିବ ଆମ ଫାଇଲ—କାରଣ ଉଭୟ ପକ୍ଷର କଥା ସେଥିରେ ରହିଛି ।

ଏ ଗୁଡ଼ିକର ଉପଯୋଗ କିଭଳି ଭାବରେ ହେବ ଆମ ଦ୍ୱାରା ବା ଅନ୍ୟ ମାନଙ୍କ ଦ୍ୱାରା ତାହା ହେଉଛି ବିଶେଷ ପ୍ରଶ୍ନ ବା ବିଗ । ମୁଁ ବରୁ

ବରାବର କହି ଆସିଛି ଓ ଏବେ ଆହୁରି ଜୋରରେ କହୁଛି ଯେ ଯେତିକି 'ଉପାଦାନ' ସଂଗ୍ରହ କରାଗଲାଣି ଅର୍ଥାତ୍ ଫାଇଲ ଗୁଡ଼ିକରେ ଯେତିକି ବିଷୟ ରହିଗଲାଣି, ମୋ ମୃତ୍ୟୁ ପୂର୍ବରୁ ତାହାର କୋଡ଼ିଏ ଭାଗରୁ ଭାଗେକୁ ମଧ୍ୟ କାମରେ ଲଗାଇ ପାରିବି ନାହିଁ । ପ୍ରତିଦିନ ପୁଣି ନୂଆ ନୂଆ ତଥ୍ୟ ଯୋଗ ହୋଇ ଯାଉଛି । ତାହା ହେଲେ ଏ ଗୁଡ଼ିକ କି କାମରେ ଆସିବ ? ଏହି କୋଡ଼ିଏ ହଜାର ଫାଇଲ ଭିତରୁ ଅନ୍ତତଃ ତିନି ହଜାର ହେଉଛି ଗୁରୁତ୍ୱ ପୂର୍ଣ୍ଣ । ସେହି ୩୦୦୦ ସାହାଯ୍ୟରେ ହଜେ ଫଲମାନଙ୍କ ପାଇଁ ସେତିକି ଖଣ୍ଡ ବହି ଲେଖା ନ ଯିବ କାହିଁକି ? ସେତିକି ତ ଆବଶ୍ୟକତା । ମୋର ବୟସ ହୋଇ ଯାଇଛି ବୋଲି ମୁଁ କହୁଛି ୫୦୦ ବହି ଲେଖି ଦେବି । ସେତିକି ତ ୧୯୯୦ ଜାନୁୟାରି ପୂର୍ବରୁ ଶେଷ ହୋଇଯିବ । ତାହ ପରେ ଯଦି ଦୁର୍ଭାଗ୍ୟ ବଶତଃ ମୁଁ କିଛି ଦିନ ବଞ୍ଚିଯିବି ପ୍ରତିସନ୍ଧ୍ୟା ବା ପ୍ରତି ଦ୍ୱିତୀୟ ସନ୍ଧ୍ୟାରେ ତ ଖଣ୍ଡିଏ ଖଣ୍ଡିଏ ବହି ଲେଖି ହୋଇଯିବ । ଗୋଟିଏ ଉଦାହରଣ ଦିଏ । ପିଲାଏତ ଜାଣି ସାରିଲେଣି ଆଲୋକ ସଂଶ୍ଳେଷଣ କଅଣ ଓ ପ୍ରତ୍ୟେକ ପତ୍ର କେମିତି ଗୋଟିଏ ଗୋଟିଏ ଚୂଲି । ସେଇଠି ପବନର କାର୍ବନଡ଼ାଇଅକ୍‌ସାଇଡ୍ ରନ୍ଧା ହେଉଛି ସୂର୍ଯ୍ୟ କିରଣ ସାହାଯ୍ୟରେ, ଭୂଇଁ ତଳ ଯୋଗାଇ ଦେଉଛି ପାଣି । "ଅଳ୍ପକେ କଳ ଲୁଟିଗଲା" ବହିରେ ସେଇଆ ଅଛି । ଉଦ୍ଭିଦ ବିଷୟରେ ବହିଟିଏ ରହିବ ବୋଲି ନ ହଉଣ ଭିନ୍ନ ଭିନ୍ନ ଉଦ୍ଭିଦ ବିଷୟରେ ଗୋଟିଏ ଲେଖାଁ ଗଛ ବହି ଚେର, ଗଣ୍ଡି, ବକଳ, ଫୁଲ, ଫଳ ଉପରେ ନିଶ୍ଚୟ ବହି ବାହାରିବ । ତାହାପରେ ଆସିବ ଅରଣ୍ୟ କାହାକୁ କହନ୍ତି । 'ବୃକ୍ଷକୁ ଦେଖୁଛ—ଅରଣ୍ୟକୁ ଦେଖୁନାହିଁ' ବୋଲି ଯେଉଁ ବହି ଲେଖା ହେବ ସେଥିରେ ରହିବ ୫୮୧୯ଟି ହଜାର ହଜାର ଗଛର କେବଳ ଗୋଟିଏ ସମଷ୍ଟି ନୁହେଁ—ତାହାଠାରୁ ଢ଼େର୍ କିଛି ବେଶୀ । ଏହି ସବୁ ଗୁଡ଼ିକ ଉପରେ ସ୍ୱତନ୍ତ୍ର ଭାବରେ ତଥ୍ୟ ସଂଗ୍ରହ କରି ସାଇତା ଯାଇଛି ଓ ଯାଉଛି । ଓଡ଼ିଆ ପିଲା କଅଣ ପୃଥିବୀର ଅନ୍ତତଃ ତିନିଶହ ଜଣଙ୍କ ସହିତ ପରିଚିତ ହେବେନାହିଁ ? ପ୍ରତ୍ୟେକଙ୍କ ଉପରେ ଗୋଟିଏ ଗୋଟିଏ ଛୋଟ ବହି । ଆମ ଅଫିସରେ ସେହିଭଳି ତିନି ଶହ ଜଣଙ୍କ ଉପରେ ତଥ୍ୟ ସାଇତା ଯାଇଥିବା ଫାଇଲ୍ ଅଛି । ସମୟ ନଥିଲା ବୋଲି ଦଶଥର ଉଦ୍ୟମ କରି ମଧ୍ୟ କିଛି ଦିନ ପରେ ଛାଡ଼ ଦେଇଥିଲି— ତାହା ହେଉଛି ପ୍ରତିଦିନ ଯାହା ସବୁ ଘଟି ଯାଉଛି ସେ ଗୁଡ଼ିକୁ ଲିପିବଦ୍ଧ

କରଯିବା ପାଇଁ । ତାକୁ ନାଁ ଦେଇଥିଲି "ଇତିହାସର ଡାଇେରୀ ।" କାଳ ନିରପେକ୍ଷ, କାଳ ନିଷ୍ଠୁର । କାଳର ଧ୍ୱନି ବହୁକାଳ ପର୍ଯ୍ୟନ୍ତ ସାଇତା ହୋଇ ରହିବ ନାନା ଭାବରେ । ଇତିହାସ ଲିପିବଦ୍ଧ କରି ଯାଉଛି ପ୍ରତିଦିନ ଯାହାସବୁ ଘଟୁଛି । ଏଇଟି ବଳିତର 'ରେକର୍ଡ଼ର' (Recorder) ଭଳି ହେବ ନାହିଁ—ଘଟଣାର ପୃଷ୍ଠଭୂମିର ଉଲ୍ଲେଖ ରହିଥିବ । ସେଇଟି ହେବ 'ଚଳନ୍ତି ଇତିହାସ' 'ଜୀବନ୍ତଇତିହାସ' । ପ୍ରତିଦିନ ବହୁସଂଖ୍ୟକ ଖବରକାଗଜ ପତ୍ର ପତ୍ରିକା ପଢ଼ିଲାପରେ ଦୁନିଆ ବିଷୟରେ ମୋ ମନରେ ଯେଉଁ ଧାରଣା ହେଉଛି, ଯେଉଁସବୁ ମହତ୍ତ୍ୱପୂର୍ଣ୍ଣ ଘଟଣା ଘଟିଯାଉଛି ସେ ଗୁଡିକର ଉଲ୍ଲେଖ ନିରପେକ୍ଷ ମନ ନେଇ କରିଗଲେ ଭବିଷ୍ୟତ ବଂଶଧର ନିଶ୍ଚୟ ଉପକୃତ ହେବେ । କେବଳ ରାଜନୈତିକ ନୁହେଁ—ସାମାଜିକ ଅର୍ଥନୈତିକ ବିଜ୍ଞାନ ସମ୍ବନ୍ଧୀୟ ଖବର ରହିବ । ଆମ ଫାଇଲ ଗଦା ଭିତରେ ସେ ସବୁ ରହୁଛି । କିନ୍ତୁ ସ୍ୱତନ୍ତ୍ର ଭାବରେ ଲେଖି ନ ଦେଲେ ସମସ୍ତେ ଖୋଜି ବାହାର କରି ପାରିବେ ନାହିଁ । ଏମିତି ଯେ ଅନ୍ୟମାନେ କରି ପାରୁନାହାନ୍ତି ତାହାର କାରଣ ହେଲା ସେମାନଙ୍କର ସମୟ ନାହିଁ କି ତଥ୍ୟ ସଂଗ୍ରହ କରିବା ପାଇଁ ମାସକୁ ପନ୍ଦର ଶହ ଟଙ୍କା ଖର୍ଚ୍ଚ କରିବା ପାଇଁ ଆର୍ଥିକ ସମ୍ବଳ ନାହିଁ । ତାହା ସହିତ ଆଉ ଗୋଟିଏ ଅସୁବିଧା ରହିଛି । ବହୁ ଅତୀତର ଇତିହାସ ଲେଖିବା ସହଜ—କାରଣ ସେଥିରେ ବିପଦ ନାହିଁ । ଆକବରଙ୍କ ବିଷୟରେ ଯାହା ଲେଖିଲେ ମଧ୍ୟ ତାଙ୍କର କେହି ଆପତ୍ତି କରିବ ନାହିଁ । କିନ୍ତୁ ଆଜି ଯେଉଁମାନେ ଶାସନରେ ଅଛନ୍ତି ସେମାନଙ୍କ ବିଷୟରେ ବା ସେମାନଙ୍କ ନିକଟ ପୂର୍ବ ପୁରୁଷମାନଙ୍କ ବିଷୟରେ ସତକଥା ଲେଖିବା ସହଜ ନୁହେଁ । ସେଥିପାଇଁ ସାହସ ଲୋଡ଼ା । ଚଳନ୍ତି ଇତିହାସ ଲେଖକର କେବଳ ବିରୋଧୀକୁ ଯେ ଡର ତା' ନୁହେଁ—ମିତ୍ରକୁ ମଧ୍ୟ ଡରିବାର କାରଣ ଅଛି । କାରଣ ସତ ଲେଖିଲେ ମିତ୍ରର ମନ କଷ୍ଟ ହେବ । ତେଣୁ ପ୍ରତିଦିନ ସନ୍ଧ୍ୟାରେ ଚଳନ୍ତି ଇତିହାସ ଲେଖିବାକୁ କଲମ ଧରିବା ପୂର୍ବରୁ ବେଦର ସେହି ମନ୍ତ୍ର 'ଅଭୟଂ ମିତ୍ରାଦ୍ – ଅଭୟଂ ଅମିତ୍ରାଦ୍' ବୋଲିବାକୁ ପଡ଼ିବ । ସବୁତଥ୍ୟ ଭିନ୍ନ ଭିନ୍ନ ଫାଇଲରେ ସାଇତା ହୋଇଥିଲେ ଯାଇ ଜଣେ ନିଜେ ଦେଖିବ ତ ତାହାର ହୃଦ୍‌ବୋଧ ହେବ ଯେ ଯାହା ଲେଖା ଯାଇଛି ତାହା ଅତିରଞ୍ଜନ ବା ଅସତ୍ୟ ନୁହେଁ । ମନରେ କାହାରି ପ୍ରତି ଈର୍ଷା ନ ରଖି ଘୃଣା ନରଖି ଘଟଣାବଳୀର ଉଲ୍ଲେଖ କରିଯିବା କଣ ସହଜ କଥା

ନୁହେଁ । ସେତକ କରିବାକୁହିଁ ହେବ ନିଜର ଶିକ୍ଷା ପାଇଁ—ଅନ୍ୟମାନଙ୍କର ଶିକ୍ଷା ପାଇଁ । ଫାଇଲଗୁଡ଼ିକର ଗୁରୁତ୍ୱ ବା ଉପଯୋଗିତା ବିଷୟରେ ଏତେ କଥା ଜଣାଇଲା ପରେ ଗୋଟିଏ କଥା କହି ଦେଲେ କେହି ଭାବିବେ ନାହିଁ ଯେ ମୁଁ ଅଯଥା ଦାମ୍ଭିକତା ଦେଖାଉଛି ଯେତେବେଳେ କହୁଛି— "ଭବିଷ୍ୟତ ବଂଶଧରମାନଙ୍କ ପାଇଁ ପାଥେୟ ହିଁ ରଖିଯାଉଛି ।" ସେଭଳି ରଖିବା ବେଳେ ମୋର ଯାହା ଲାଭ ହେଉଛି ତାହା ମୁଁ ଜାଣେ—ଅନ୍ୟ ଜଣେ ସହଜରେ ଜାଣି ପାରିବ ନାହିଁ ।

୧୯୮୬ ଶେଷ ହେଲା ବେଳକୁ ମୋର ଫାଇଲ ସଜଡ଼ା ଉଦ୍ୟମ ବା ପ୍ରକ୍ରିୟାକୁ ତେତିଶ ବର୍ଷ ପୂରିଗଲା । ଏଇ ପୃଷ୍ଠାଟି ଲେଖିଲାବେଳକୁ ମନେ ମନେ ହିସାବ କରୁଛି ଏଇଟି କିଭଳି ବ୍ୟୟସାଧ୍ୟ । ଏବେ ୧୫୦୦ ଟଙ୍କା ପଡ଼ୁଛି—କେତେ ବର୍ଷ ପୂର୍ବେ ହଜାରେ—ଆଉଟିକିଏ ପୂର୍ବରୁ ଛ' ସାତଶହ ଟଙ୍କା ଦରକାର ହେଉଥିଲା ମାସକର ଖବର କାଗଜ ପତ୍ରପତ୍ରିକା କିଣିବା ପାଇଁ । ବହୁ ପତ୍ର ପତ୍ରିକା ଦୁଇଖଣ୍ଡ ଲେଖାଁ କିଣିବାକୁ ହୁଏ । କାରଣ ପୃଷ୍ଠାକାଟି ରଖିବାରେ ଅସୁବିଧା ହୋଇଥାଏ ଯଦି ଗୋଟିଏ ପୃଷ୍ଠାର ଏପାଖ ସେପାଖ ଲେଖାଥାଏ । ମାସକୁ ହାରାହାରି ହଜାରେ ଟଙ୍କା ଧରିଲେବି ବର୍ଷକୁ ବାର ହଜାର ଓ ତେତିଶ ବର୍ଷରେ ଖର୍ଚ୍ଚ ହେଲାଣି ପ୍ରାୟ ଚାରିଲକ୍ଷ ଟଙ୍କା । ସେତକରୁ କାଟି ଅଠା ମଡ଼ାଇବା ମଜୁରି ମାସକୁ ମାତ୍ର ପାଞ୍ଚଶହ ଟଙ୍କା ହିସାବକଲେ କେତେ ହେଲା ହିସାବ କରିଯାଉ । ଯେଉଁ ଫୁଲ୍‌ସ୍କେପ୍ କାଗଜରେ ମଡ଼ାଯାଉଛି ତାହାର ମୂଲ୍ୟ ପ୍ରାୟ ଲକ୍ଷେ ଟଙ୍କା । ଏହିସବୁକୁ ସାଇତି ରଖିବା ପାଇଁ ଘରଭଡ଼ା ପ୍ରାୟ ଚାରିଲକ୍ଷ ଟଙ୍କା । ୧୯୭୪ରେ ସ୍ୱାଧୀନ ଭାରତର ପ୍ରଥମ କମାଣ୍ଡର ଇନ୍ ଚିଫ୍ ଜେନେରାଲ କାରିଅପା ଆସିଥିଲେ ଜ୍ଞାନମଣ୍ଡଳ ଅଫିସକୁ । ସେତେବେଳକୁ ମୋ ଉଦ୍ୟମର ବୟସ କୋଡ଼ିଏ । ଏହିସବୁ ହିସାବ ସେ ଜାଣିବାକୁ ଇଚ୍ଛା କଲେ । ଶେଷରେ କହିଲେ ତମ ମଜୁରିର ହିସାବ କଲ ନାହିଁ । (What about your wages) ? ମୁଁ ନୀରବ ରହିଲାରୁ କହିଲେ—ଦେଖୁଛି ତୁମେ ତ ତିନିଜଣ ସେକ୍ରେଟାରୀଙ୍କ କାମ କରୁଛ । ତୁମକୁ ଯଦି ମାସକୁ ଦୁ' ହଜାର ଦିଆଯାଉଥାଆନ୍ତା ଚାରି ଲକ୍ଷ ଅଶୀ ହଜାର ହୋଇ ଯାଆନ୍ତା । ନିଜେ କିଛି ଶିଖିଛ—ଶେଷରେ ମୂର୍ଖ ହୋଇ ମରିବ ନାହିଁ—ଅନ୍ୟକୁ କିଛି ଶିଖାଇବ ବୋଲି ଯେଉଁ ପଣ କଲ ସେଥିପାଇଁ ଯାହା ଖର୍ଚ୍ଚ ହେଲା ତାହାର କୋଟି

ମୋ ଅଣ୍ଟା ଭାଙ୍ଗି ଦେଇଛି । ଶରୀର ଶ୍ରମ କିଛି କମ୍ ହୋଇ ନାହିଁ । ଯେତେ-ବେଳେ କାବୁଲିବାଲାଠାରୁ ଶତକଡ଼ା ୧୨୦ ସୁଧରେ ଟଙ୍କା ଆଣୁଥିଲି ସେହି ସମୟରେ ସବୁକାମତ ମୁଁ ଏକା କରୁଥିଲି ବୋଲି କହିଲେ ହିଁ ଠିକ୍ ହେବ । ଅବଶ୍ୟ ପରେ ପିଲାଏ ଯେତେବେଳେ ଟିକିଏ ବଡ଼ ହୋଇଗଲେ କିଛି କିଛି ସାହାଯ୍ୟ କଲେ । ସେ ଯାହାହେଉ ପଛକେ ଆଜି ମୋର ସନ୍ତୋଷ ଯେ ଭବିଷ୍ୟତ ବଂଶଧରଙ୍କ ପାଇଁ କିଛି ସାଇତା ହୋଇ ରହିଯାଉଛି ।

ମୋର ଦ୍ୱିତୀୟ 'ଗୁରୁ' ହେଲେ 'ପୁସ୍ତକ' । "ଉପାଦେୟ ପୁସ୍ତକ ଅଭାବରେ ଭଗବାନ ନୀରବ, ନ୍ୟାୟ ସୁପ୍ତ, ବିଜ୍ଞାନର ଗତିରୁଦ୍ଧ, ଦାର୍ଶନିକ ପଙ୍ଗୁ, ବିଦ୍ୟା ମୂକ—ଅନ୍ୟ ସବୁକିଛି ଅନ୍ଧକାର ଗର୍ଭରେ ସଂପୂର୍ଣ୍ଣ ଅସ୍ପଷ୍ଟ" ବୋଲି ଯିଏ କହିଛନ୍ତି ତାଙ୍କୁହିଁ ଗୁରୁକରି ମୁଁ ବହି ପଢ଼େ । କେତେ ଅଳ୍ପ ସଂଖ୍ୟକ ବହି ପଢ଼ିଛି ବୋଲି ଯେତେବେଳେ ଅନ୍ୟମାନେ ଜାଣନ୍ତି ଟିକିଏ ବିସ୍ମିତ ହୁଅନ୍ତି । ସେମାନଙ୍କୁ କହେ– ପିଲାଦିନୁ ମୁଁ ଯେତେ ସଂଖ୍ୟକ ବହି ଦେଖିଛି, ପୃଷ୍ଠା ଓଲଟାଇଛି, ଟିକିଏ ଟିକିଏ ଦେଖି ଦେଇଛି ସେଗୁଡ଼ିକ ମୋ କାମରେ ଆସିବ କି ନାହିଁ ଜାଣିବା ପାଇଁ, ଅନ୍ୟ କାହାରି (ମୋରି ପରିସ୍ଥିତିରେ ରହିବା ଲୋକର) ସେଭଳି ସୁଯୋଗ ହୋଇ ନାହିଁ । କିନ୍ତୁ କେଉଁଟିକୁ ପଢ଼ିବି କେଉଁଟିକି ନପଢ଼ିବି ସେ ବିଷୟରେ ମୋ ମନ ଭିତରେ ଗୋଟିଏ ମାପକାଠି ରହିଛି । ସେଇଥିରେ ମାପିଦେଇ, ମୋ ମନ ଭିତରରେ ସେହିଭଳି ଗୋଟିଏ ନକତିରେ ତଉଲି ଦେଇ ସ୍ଥିର କରିନିଏ କେଉଁ ବହିଟି ପଢ଼ିବି—କେଉଁଟି ନପଢ଼ିବି । କେବଳ ଚିତ୍ତ ବିନୋଦନ ପାଇଁ କୌଣସି ବହି ପଢ଼ିବା ଅଭ୍ୟାସ ମୋର ପଚିଶ ବର୍ଷ ହେଲା ନାହିଁ । ବିଶେଷକରି ଚାଲି ଚାଳିଶ ବର୍ଷ ହେଲା ସେ ଦିଗରେ ବରାବର ସତର୍କ ରହିଥାଏ । ମୋର ଗୋଟିଏ ଦୋଷ ସ୍ୱୀକାର କରିଗଲେ ଭଲ । ଓଡ଼ିଶାର ବହୁ ପ୍ରସିଦ୍ଧ ଲେଖକ ଔପନ୍ୟାସିକ କବିଙ୍କର କୌଣସି ଲେଖା ପଢ଼ିବାକୁ ସମୟ ପାଇନାହିଁ । ସେଦିନ ଜଣେ ବିଶିଷ୍ଟ ଲୋକ ମୋର ଏହି 'ଅଜ୍ଞତା' ଦେଖି ବିସ୍ମିତ ହେଲେ । ଜଣେ ପ୍ରସିଦ୍ଧ ଔପନ୍ୟାସିକଙ୍କ ଲେଖା ବିଷୟରେ ମୋ ମତ କଅଣ ବୋଲି ସେ ଜାଣିବାକୁ ଇଚ୍ଛା କଲେ । ତାଙ୍କୁ କାହିଁକି ନୋବେଲ ପ୍ରାଇଜ ଦିଆ ନ ଯାଉଛି ବୋଲି ତାଙ୍କର ଦୁଃଖ । ଯେତେବେଳେ କହିଲି—ତାଙ୍କର କୌଣସି ବହି ମୁଁ ପଢ଼ିନାହିଁ ସେ

ହଠାତ୍ ବିଶ୍ୱାସ କରି ପାରିଲେ ନାହିଁ । ତାଙ୍କୁ ବୁଝାଇଲି କାହିଁକି ପଢ଼ି ନାହିଁ । ଯେଉଁଟିକୁ ପଢ଼ିଲେ ମୋର କିଛି କାମରେ ଆସିବ ତାକୁହିଁ ପଢ଼େ । ନୀରସ ଅଭିଧାନ ପଢ଼ିବାରେ କେତେ ବର୍ଷ କଟାଇଛି ତାଙ୍କୁ କହିଲି । ସେହି ପଢ଼ା ମୋତେ ବହୁଦିଗରୁ ସାହାଯ୍ୟ କରିଛି । ମନୁଷ୍ୟ ପ୍ରତି, ସମାଜ ପ୍ରତି, ଶାସନକଳ ପ୍ରତି, ପୃଥିବୀରେ ଦେଖାଦେଇଥିବା ସମସ୍ୟା ଗୁଡ଼ିକ ପ୍ରତି ଜଣ ଜଣକର ମତଗତ କଅଣ ଜାଣିଲି ପରେ ତାଙ୍କର ବହି ମୁଁ ପଢ଼େ ନାହିଁ । କାରଣ ସେ ତ ତାଙ୍କ ମତ ସପକ୍ଷରେ ସବୁକଥାକୁ ବାଗେଇ ଦେଇଥିବେ—ମୁଁ ପଢ଼ିବି କାହିଁକି ?

ପୁସ୍ତକ ଏବଂ ଉପାଦେୟ ପୁସ୍ତକ ଭିତରେ ବହୁତ କିଛି ପାର୍ଥକ୍ୟ ରହିଛି । ଆହୁରି ପୁଣି 'ଉପାଦେୟ' ଶବ୍ଦଟି ଆପେକ୍ଷିକ । କାହାପାଇଁ କେଉଁଟି ଉପାଦେୟ ତାହାର ମାପକାଠି ସମସ୍ତଙ୍କ ହାତରେ ରହିଛି । ଥରେ ଥରେ ଏଭଳି ହୁଏ ଯେ କେତେ ଗୁଡ଼ିଏ ବହି ନପଢ଼ିଲେ ନ ଚଳେ । ପୂର୍ବରୁ ଯେଉଁ 'ଗ୍ରେଟ୍‌ବୁକ୍‌ସ୍ ସିରିଜ' କଥା କହିଛି ସେଥିରେ ଥିବା ୪୪୩ଟି ଯାକ ବହିକୁ 'ଉଣାଅଧିକେ' ପଢ଼ିବାକୁ ପଡ଼ିଲା—ନ ହେଲେ ପାଶ୍ଚାତ୍ୟ ଚିନ୍ତାଧାରା ସହିତ ବିଧିବଦ୍ଧ ଭାବରେ ପରିଚୟ ହେଉନାହିଁ । ଯାହା ପ୍ରାୟ କେହି କରନ୍ତି ନାହିଁ ସେଭଳି କରିବାକୁ ମୁଁ ବାଧ୍ୟ ହୁଏ । ମହାକାଶ ଯାତ୍ରା ବିଷୟରେ ବିଖଣ୍ଡିତ ଭାବରେ ଯେତେ ପଢ଼ିଥିଲେ ମଧ୍ୟ ଯେତେବେଳେ ୧୯୬୪ରେ ବୃହତ ଭଲ୍ୟୁମରେ ସମାପ୍ତ ଏନସାଇକ୍ଳୋପିଡିଆ ଅଫ୍ ସ୍ପେସ୍ ସାଇନ୍‌ସ୍ ଆସିଗଲା ମୂଳରୁ ଶେଷ ପର୍ଯ୍ୟନ୍ତ ପଢ଼ିବାର ଆବଶ୍ୟକତା ଅନୁଭବ କଲି । କଟକରୁ ଗାଁକୁ ଚାଲିଗଲି ନିରୋଳାରେ ବସି ପଢ଼ା ସାରିଦେବି ବୋଲି । ଜଣେ ପଚାରିଲେ—'ସବୁଯାକ ପଢ଼ିବା ପାଇଁ ଏତେ ତରତର କାହିଁକି ?' ତାଙ୍କୁ ବୁଝାଇଥିଲି—ଏଇଟି ହେଉଛି ମହାକାଶ ବିଜ୍ଞାନର ବର୍ଣ୍ଣବୋଧ । ଏଥିର ସବୁତକ "ଅକ୍ଷର" ନ ଚିହ୍ନିଲେ ସେହି ବିଜ୍ଞାନ ବିଷୟରେ ଯେଉଁ ସବୁ ଲେଖା ବାହାରି ପଡ଼ୁଛି ସେଗୁଡ଼ିକୁ ଭଲ ଭାବରେ ବୁଝିବା ସହଜ ହେବନାହିଁ । ସେମିତି ଲାଜପତରାୟଙ୍କ ଇଂଲଣ୍ଡର ଭାରତକୁ ଋଣ ( Englands' Debt To India) ବହିଟିର ପୁନଃ ମୁଦ୍ରଣ ୧୯୬୭ରେ ହୋଇଗଲା ପରେ ମୂଳରୁ ଶେଷଯାଏ ପଢ଼ିଗଲି । ଏହାର ପ୍ରଥମ ମୁଦ୍ରଣ ହୋଇଥିଲା ୧୯୧୭ ରେ—ମୁଁ ଖୋଜି ପାଉନଥିଲି । କିନ୍ତୁ ଯୁକ୍ତରାଷ୍ଟ୍ର ଆମେରିକାର

କୃଷି ବିଭାଗ ଦ୍ୱାରା ପ୍ରକାଶିତ ୭୫୦ ପୃଷ୍ଠାର ବହି ପାଣି (water) ଟିକୁ ଯେତେବେଳେ ପାଇଲି ତିନିଘଣ୍ଟା ଭିତରେ କିଛି ଅଂଶ ପଢ଼ିଦେଇ ପରେ ପଢ଼ିବି ବୋଲି ରଖିଦେଲି । ଆଜି ଗୋଟିଏ ୧୨୫୦ ପୃଷ୍ଠାର ବହିକୁ ମାତ୍ର ତିରିଶ ମିନିଟ୍ ଦେଖିଦେଇ ଜଣେ ବନ୍ଧୁଙ୍କୁ ଦେଇଦେଲି—କାରଣ ତାକୁ ରଖିବା ଦ୍ୱାରା ମୋ ଆଲମାରୀର କିଛି ସ୍ଥାନ ନଷ୍ଟ ହୁଅନ୍ତା । ଏହି ସବୁ ହେଲା ମୋର ବହି ପଢ଼ିବା ଢଙ୍ଗ । ଏଥିଭିତରେ ଯେ ପାଗଳାମି ନାହିଁ ଏକଥା ମୁଁ କେବେ କହୁନାହିଁ । କିନ୍ତୁ ବହିବାଛି ପଢ଼ିବା ବିଷୟରେ ସମସ୍ତଙ୍କର ମତ ବା କୌଶଳ କଦାପି ଏକା ପ୍ରକାରର ହୋଇ ପାରିବ ନାହିଁ । ଯେତିକି ସଂଖ୍ୟକ ବହି ମୁଁ ସାଇତି ରଖିଛି ସେଥି ଭିତରୁ ପ୍ରତ୍ୟେକଟିକୁ କିଛି ନା କିଛି କାମରେ ଲଗାଇଛି । ଅଳ୍ପଦିନ ପୂର୍ବେ 'ଲାଇବ୍ରେରୀ' ଫାଇଲଟି ଦେଖୁଥିଲି । ବଡ଼ ବଡ଼ ଲାଇବ୍ରେରୀରେ ଯେତେ ସଂଖ୍ୟକ ବହି ଅଛି ତାହାର ଶତକଡ଼ା ଷାଠିଏକୁ ଗୋଟିଏ ଟୋଟିଏ ନିର୍ଦ୍ଦିଷ୍ଟ ବର୍ଷରେ କେହିଜଣେ ହେଲେ ନିଅନ୍ତି ନାହିଁ । ପାଠକମାନଙ୍କୁ ମୁଁ ଏତିକି ଭରସା ଦେଇ ପାରେ ଯେ ଯେତିକି ବହି ଗଲା ପଚିଶ ବର୍ଷ ଭିତରେ କିଣିଛି ସବୁତକ ମୋ ପାଇଁ ଦରକାରୀ—ଉପାଦେୟ । ସେଥିଭିତରୁ ଶତକଡ଼ା ନବେକୁ କାଳ କେବେ ହେଲେ ପୁରୁଣା କରି ଦେଇ ପାରିବ ନାହିଁ । ଯେଉଁମାନେ ଏ ପର୍ଯ୍ୟନ୍ତ ପ୍ରକାଶିତ ଗୃଳଶ ଖଣ୍ଡ ଜ୍ଞାନମଣ୍ଡଳ ପଢ଼ିଲେଣି ସେମାନେ ଜାଣିପାରୁଥିବେ କେତେ ସଂଖ୍ୟକ ଓ କେଉଁ ଧରଣର ବହିରୁ ସାର ଗ୍ରହଣ କରିଛି । ଗୋଟିଏ ବାକ୍ୟରେ କହିବାକୁ ଗଲେ କେବଳ ମାନସିକ ବିଳାସ ପାଇଁ କୌଣସି ବହି ପଢ଼ିନାହିଁ ।



# ଲେଖିଲେ ଯାଇ ଶିଖିବ

କହିତ ଅନେକ ଲୋକ ପଢ଼ନ୍ତି—ମନେ ରଖନ୍ତି ମଧ୍ୟ । କିନ୍ତୁ ଦେଖା ଯାଇଛି ପ୍ରକୃତରେ ଶିକ୍ଷା ହୁଏ ଯେତେବେଳେ ଜଣେ ଲେଖିବାକୁ ଆରମ୍ଭ କରେ । ଶ୍ରୀ ବିଜୟ କୁମାର ପାଣିଗ୍ରାହୀ ଜଣେ ଖୁବ୍ ଉଚ୍ଚଶିକ୍ଷିତ ବ୍ୟକ୍ତି । ସେ ଥରେ ନିଜଆଡ଼ୁ କହିଲେ ଜ୍ଞାନମଣ୍ଡଳର କେତେକ ପ୍ରବନ୍ଧ ଲେଖିବାରେ ମୋତେ ସାହାଯ୍ୟ କରିବେ । ସେ ତଥ୍ୟ ସମ୍ବଳିତ ଲେଖାଟିଏ ପ୍ରସ୍ତୁତ କରିଦେବେ—ମୁଁ ତାକୁ ଜ୍ଞାନମଣ୍ଡଳର ଶୈଳୀ—ଭାଷା ଗୁମ୍ଫରେ ପକାଇ ଦେବି । ତାଙ୍କୁ କହିଲି—ଜ୍ୟୋତିଷ ବିଦ୍ୟା ବିଷୟରେ ମୁଁ କିଛି ବୁଝିପାରୁ ନାହିଁ । ଆପଣ ଟିକିଏ ସାହାଯ୍ୟ କରନ୍ତୁ । ସେ ଲାଗିଲେ ସେହି କାମରେ । ଚଉଦ ପନ୍ଦରଟା ବହି ପଢିଲେ । ଶିକ୍ଷିତ ଜ୍ୟୋତିଷ ମାନଙ୍କୁ ପଚାରିଲେ । ଶେଷରେ ଦିନେ କହିଲେ—ମୁଁ ଯେତିକି ଅଧିକ ପଢ଼ୁଛି ସେତିକି ଗୋଳମାଳିଆ ପ୍ରଶ୍ନ ମନ ଭିତରେ ଉଠୁଛି । ତାଙ୍କୁ ଯାହା କହିଲି ତାହା ସମସ୍ତଙ୍କ ପାଇଁ ଉଦ୍ଦିଷ୍ଟ । ଏଇଆ କହିଲି—"ମୋର ଅଭିଜ୍ଞତା ହେଲା ଲେଖିଲେ ଯାଇ ଶିଖିବାଟା ପକ୍କା ହୋଇଯାଏ । ନ ଲେଖିଲେ ମନେ ହେଉଥିବ ଅନେକକଥା ଜାଣିଗଲିଣି—କିନ୍ତୁ ଲେଖିବା ଆରମ୍ଭ କଲେ ଦେଖାଯିବ 'ଜାଣିବା'ଟା ସତେ ଯେପରିକି ଖାପଛଡ଼ା ହୋଇ ଯାଉଛି, ତେଣିକି ଶୂନ୍ୟସ୍ଥାନ ପୂରଣ କରି ଦେଇହେବ । ଏହି ଅଭିଜ୍ଞତା ମୋ ପାଇଁ ଅତି ମୂଲ୍ୟବାନ ହୋଇଛି । ଯେଉଁ ୧୨୦୦ ଫର୍ମା ପ୍ରକାଶିତ ହେଲଣି ସେଥିରେ ଥିବା ଲେଖା ଗୁଡ଼ିକ ଯେତେବେଳେ ମଝିରେ ମଝିରେ ପଢ଼େ ସେତେବେଳେ ଭାବୁରେ—ନ ଲେଖିଥିଲେ ଏହିସବୁ ବିଷୟରେ ମୋର ସ୍ପଷ୍ଟଧାରଣା ହୋଇ ନଥାନ୍ତା ।

●

# 'ବିଦେଶ ଭ୍ରମଣ'ର ଗୁରୁତ୍ୱ

ଏଠାରେ 'ବିଦେଶ ଭ୍ରମଣ' କଥାଟିକୁ ଗୋଟିଏ ସ୍ୱତନ୍ତ୍ର ଅର୍ଥରେ ବ୍ୟବହାର କରୁଛୁ । "ଯାବତ ନକରେ ନର ବିଦେଶ ଭ୍ରମଣ—ତାବତ ନ ହୁଏ ତାର ଜ୍ଞାନ ଉପାର୍ଜନ" ବୋଲି ଯେଉଁ କଥାଟି ମଣିଷ ଉଦ୍ଦେଶ୍ୟରେ କୁହାଯାଉଛି ସେହିଟିକୁ ଏଠାରେ ବହି ଉଦ୍ଦେଶ୍ୟରେ ବ୍ୟବହାର କରୁଛୁ । ଇଂରାଜୀ ଭାଷାରେ ଭଲ ବହିଟିଏ ପ୍ରକାଶିତ ହେଲାପରେ ତାହା ଯେତେବେଳେ ଅନ୍ୟ ବହୁତ ଭାଷାକୁ ଅନୁବାଦିତ ହୋଇ ଯାଉଛି ଇଂରାଜୀ ଭାଷା ଭାଷୀଙ୍କ ବାହାରେ ଅନ୍ୟ ଲୋକେ ପଢୁଛନ୍ତି । ସେମାନଙ୍କ ଭାଷାରେ ଯଦି ସେହି ଧରଣର କୌଣସି ପୁସ୍ତକ ଅଛି ତାହା ସହିତ ଏହିଟିର ତୁଳନା କରୁଛନ୍ତି । ଯଦି ଦେଖୁଛନ୍ତି ସେଇଟି ତୁଳନାରେ ଭଲ ହୋଇଛି ତାହାର ପ୍ରଶଂସା କରିବା ସଙ୍ଗେ ସଙ୍ଗେ ଇଂରାଜୀ ଭାଷାର ମଧ୍ୟ ପ୍ରଶଂସା କରୁଛନ୍ତି । ବିଦେଶର ମାପ କାଠିରେ ମାପିଲେ ଯାଇ ବହିଟିର ଗୋଟିଏ ଦୃଷ୍ଟିରୁ ଉପଯୋଗିତା ବା ଉତ୍କର୍ଷତା ପ୍ରମାଣିତ ହେଉଛି । ସେମିତି ଯେ ପର୍ଯ୍ୟନ୍ତ ଓଡ଼ିଆରେ ଲେଖା ଯାଇଥିବା ଭଲ ଭଲ ବହି ଗୁଡିକର ହିନ୍ଦୀ ବା ଅନ୍ୟ ଭାରତୀୟ ଭାଷାରେ ଅନୁବାଦ ନ ହୋଇଛି, ସେ ପର୍ଯ୍ୟନ୍ତ ଜଣାପଡ଼ିବ ନାହିଁ ଏହି ଗୁଡ଼ିକର ପ୍ରକୃତ ମୂଲ୍ୟ କେତେ ଦୂରକୁ ଅଛି । ତେଣୁ ମନହେଲା ପିଲାମାନଙ୍କ ପାଇଁ ଯେଉଁ ବହି ଗୁଡିକ ଲେଖୁଛି ସେ ସବୁର ପ୍ରଥମେ ହିନ୍ଦୀ ଅନୁବାଦ ହୋଇଯାଉ । ବର୍ତ୍ତମାନ ପାଇଁ 'ହିନ୍ଦୀ ନୌକା' ଆମ କାମ ଚଳାଇ ଦେବ । ସେହି ନୌକାରେ ବସିଲେ ଓଡିଆ ବହିଟି ଭାରତର ସବୁ ଅଞ୍ଚଳ ବୁଲି ଆସି ପାରିବ । ୧୯୮୭ ଶେଷ ପର୍ଯ୍ୟନ୍ତ ଯେଉଁ ଶହେଟି ପିଲାଙ୍କ ବହି ପ୍ରକାଶିତ ହୋଇ ସାରିଛି ସେଗୁଡ଼ିକର ହିନ୍ଦୀ ଅନୁବାଦ ହୋଇ ଯାଉଛି । ସେଥିରୁ ଦୁଇଟି ପ୍ରକାଶିତ ମଧ୍ୟ ହୋଇଛି । ଗଲା ବାରବର୍ଷ ହେଲା ଓଡ଼ିଶା ବାହାରୁ ଯେଉଁମାନେ ଆସୁଥିଲେ ସେମାନେ ଆମ ବହି ଗୁଡ଼ିକ ଦେଖି, ଥିବା ଚିତ୍ର ଗୁଡ଼ିକୁ ଦେଖି, ବିଷୟ ବସ୍ତୁ ଜାଣି ଖୁସିହେଉ ଥିଲେ ।

କିନ୍ତୁ ହିନ୍ଦୀ ଅନୁବାଦକୁ ପଢ଼ି ସେମାନେ ବୁଝିପାରୁଛନ୍ତି ଶଙ୍କରଙ୍କୁ ପିଲାମାନଙ୍କ ମନ ସୁଆଦିଆ କରିବା ପାଇଁ କିଭଳି ଉଦ୍ୟମ ଆମେ କରୁଛୁ । ସେମାନଙ୍କର ମତ ହେଲା—ଏଗୁଡ଼ିକ ହିନ୍ଦୀରେ ପ୍ରକାଶିତ ହୋଇଗଲେ ହିନ୍ଦୀ ଜଗତର କୋଟି କୋଟି ପିଲା ଉପକୃତ ହେବେ । ଏହାବାଦେ ମହାରାଷ୍ଟ୍ର, ଗୁଜୁରାଟର ପିଲା ମଧ୍ୟ ଜାଣିବେ । ସେ ସବୁ ଭାଷାରେ ଏହି ଧରଣର ଉପାଦେୟ ଶିଶୁ ପୁସ୍ତକ ଅଛି ବୋଲି ମୁଁ ଯେତେବେଳେ କହୁଛି ସେମାନେ ଯୁକ୍ତି କରୁଛନ୍ତି—'ଥାଉ ସେଥିରେ କଅଣ ଅଛି ? ସେଗୁଡ଼ିକ ଗୋଟିଏ ପ୍ରକାରର, ଏଗୁଡ଼ିକ ଆଉ ଗୋଟିଏ ପ୍ରକାରର ।' ମୁଁ ତ ସ୍ୱପ୍ନ ଦେଖୁଛି ହିନେ ଏଗୁଡ଼ିକ ପ୍ରତ୍ୟେକ ଭାରତୀୟ ଭାଷାରେ ଅନୁବାଦିତ ହୋଇ ଯିବ । ଶିଶୁ ପୁସ୍ତକ ବାଦେ ଅନ୍ୟ ଯେଉଁସବୁ ବହି ଲେଖୁଛି ସେଗୁଡ଼ିକ ମଧ୍ୟ ଦିନେ ହିନ୍ଦୀବେଶ ପିନ୍ଧି ଭାରତୀୟ ଭାଷାରଙ୍ଗ ମଞ୍ଚରେ ଠିଆ ହୋଇ ଯିବେ । ସମଗ୍ର ଜ୍ଞାନମଣ୍ଡଳ ସେଣ୍ଟି ହିନ୍ଦୀରେ ଅନୁବାଦିତ ହୋଇଯାଉ ବୋଲି ଯେଉଁ ପ୍ରସ୍ତାବ ଆସୁଛି ତାହାର ହିଗରର ଗୁରୁତ୍ୱର ସହିତ କରାଯାଉଛି ।

ଓଡ଼ିଆ ବିଷୟରେ ଯାହା କହିଲି ଅନ୍ୟ ଭାରତୀୟ ଭାଷା ସମ୍ପର୍କରେ ମଧ୍ୟ ସେହିକଥା କୁହାଯାଇପାରେ । ହିନ୍ଦୀ, ବଙ୍ଗଳା, ତାମିଲ, ମରହଟ୍ଠୀ, ମଲୟାଲମ, ତେଲୁଗୁ, କନ୍ନଡ଼ ଭାଷାର ପ୍ରତ୍ୟେକ ଉପାଦେୟ ପୁସ୍ତକର ଓଡ଼ିଆ ଅନୁବାଦ ହୋଇଗଲେ ଓଡ଼ିଆମାନେ ଆଶାତୀତ ଭାବରେ ଉପକୃତ ହେବେ । ହିନ୍ଦୀ, ବଙ୍ଗଳା ଅସମିୟା ଭାଷାରୁ ଓଡ଼ିଆ ଅନୁବାଦ ତ ଖୁବ ସହଜ ।

ଏଭଳି ହେଲେ କଅଣ ହେବ ନା ଗୋଟାଏ "ଭାରତୀୟ ଭାଷା"ର ସୃଷ୍ଟି ହୋଇଯିବ । ଏ ପର୍ଯ୍ୟନ୍ତ ଆମେ ହିନ୍ଦୀ, ବଙ୍ଗଳା, ଉର୍ଦ୍ଦୁ, ତାମିଲ, ଭାଷାର ବିଶେଷତ୍ୱ ବିଷୟରେ କହି ଆସୁଛୁ—'ଭାରତୀୟ ଭାଷା' କଥାଟି ଉପରେ ଯେତିକି ଗୁରୁତ୍ୱ ଦିଆଯିବାର କଥା ସେତେ ଦେଉନାହୁଁ । ସେଭଳି ହେଲେ ଆମେ ଜାତୀୟ ସଂହତିର ଅସଲ ମର୍ମ ଗୋଟାଏ ଦୃଷ୍ଟିରୁ ବୁଝିଯିବା । ଓଡ଼ିଆ ବାହାରେ ମାତ୍ର ଦୁଇଟି ଭାରତୀୟ ଭାଷା ବିଷୟରେ ମୋର କିଛି କିଛି ଜ୍ଞାନ ଅଛି । ସେ ଦୁଇଟି ହେଲା ହିନ୍ଦୀ ଓ ବଙ୍ଗଳା । ଉର୍ଦ୍ଦୁ ବୁଝିପାରେ—ଅସମିୟା ମଧ୍ୟ । ସେଥିରୁ ମୋର ଧାରଣା ହୋଇ ଯାଇଛି ଏଗୁଡ଼ିକ ଭିତରେ ସେଭଳି କିଛି ପାର୍ଥକ୍ୟ ନାହିଁ ।

ଆଜି ଗୋଟିଏ ଲାଭ ହେବ । କେଉଁ ଭାରତୀୟ ଭାଷାର ଅନ୍ୟ ଭାରତୀୟ ଭାଷାକୁ କଭଳି ଶବ୍ଦ ଦାନ କରିଛି ତାହା ଜାଣିଲେ ସେ ଭାଷା ପ୍ରତି ଆମର କୃତଜ୍ଞତା ରହିବ । ଉର୍ଦ୍ଦୁ ଭାଷା ଉପରେ ଗୋଟିଏ ଆଲୋଚନା ଚକ୍ର ଆୟୋଜନ କଟକରେ କରାଯାଇଥିଲା । ଓଡ଼ିଶାର ଗଭର୍ଣ୍ଣର ଶ୍ରୀଯୁକ୍ତ ପାଣ୍ଡେ ଥିଲେ ସଭାରେ ସଭାପତି । ଆୟୋଜକ ଥିଲେ ଅବସର ପ୍ରାପ୍ତ ଆଇ: ଏ: ଏସ୍: ହାଜି ମଇନୁଦ୍ଦିନ ଅହମ୍ମଦ । ସେ ମୋତେ କହିଲେ 'ଉର୍ଦ୍ଦୁ ଭାଷାର ଓଡ଼ିଆ ଭାଷା ଉପରେ ପ୍ରଭାବ' ଏବଂ 'ଓଡ଼ିଆ ଭାଷାର ଉର୍ଦ୍ଦୁ ଭାଷା ଉପରେ ପ୍ରଭାବ'—ଏହିଭଳି ଦୁଇଟି ପେପର ମୁଁ ପଢ଼ିବ । ତାଙ୍କୁ ସ୍ପଷ୍ଟ ଭାଷାରେ କହିଦେଲି ଓଡ଼ିଆର ଉର୍ଦ୍ଦୁ ଉପରେ ପ୍ରଭାବ ବିଷୟରେ ମୁଁ କିଛି କହିପାରିବି ନାହିଁ । ଅନ୍ୟ ବିଷୟଟି ଉପରେ କହିବି । ସେଥିରେ ଉଲ୍ଲେଖ କରିଥିଲି—ଓଡ଼ିଆ ଭାଷାରେ ଯଦି ପ୍ରାୟ ଦୁଇ ଅଢ଼େଇ ଶହ ଉର୍ଦ୍ଦୁ ଶବ୍ଦ ମିଶିଯାଇ ନଥାନ୍ତା ଓ ଓଡ଼ିଆଭାଷା ସେଗୁଡ଼ିକୁ ଅତି ଆଦରର ସହିତ ନିଜର କରି ନ ନେଇଥାଆନ୍ତା, ଓଡ଼ିଆଟି ଏତେ ସୁନ୍ଦର ଓ ସମର୍ଥ ହୋଇ ନଥାନ୍ତା, ଅନ୍ତତଃ କେତୋଟି ବିଷୟରେ ଭାବ ପ୍ରକାଶ ହିଁ ଗରେ । ଅକଲ, ଅଦାଲତ, ଅବଶୋଷ, ଅଲବତ୍, ଆଇନ୍ଦା, ଓମରାନ, ଇଜ୍ଜତ, ଆବାଜ, ଇଲମ, ଇଶାରା, କଳିଆ, କଦର, କମ୍, କମାଲ, କାରାମତି, କଲମ, କାଏମ୍, କନାରା, କସରତ୍, ଖପା, ଖିଆଲ, ଖଜଣା, ଖବର, ଖରାପ, ଖରିଦ୍, କମତି, ଖାଲି, ଖାସ୍, ଖିଜମତ, ଖିଲାପ, ଖର୍ଚ୍ଚ, ଖୋଦ୍, ଖୁସୀ, ଖୁସାମତ, ଖୁନ୍, ଖୁବ୍, ଖଇରାତି, ଗରଜ, ଗର୍ଜନ, ଗରିବ, ଗଲ୍ତି, ଗସ୍ତ, ଗାଏବ୍, ଗାରଦ, ଗୁଜୁରାଣ, ଗୋଲାମ, ଚିଜ, ଜବତ, ଜମି, ଜରୁରୀ, ଜବାବ, ତରବ, ଜହର, ଜାନ୍, ଜାହିର୍, ଜମା, ଜୁଲୁମ, ଜୋର, ତକଗିର, ତଲବ, ତହବିଲ୍, ତକିଆ, ତଦ୍‌ବିର, ତୋଫାନ୍, ଦଙ୍ଗଲ, ଦସ୍ତର, ତାଜା, ଦାମ, ଦରଜା ଦିମାକ, ଦିଲ୍, ଦଉଲତ, ନଗଦ, ନକ୍ସା, ନିମକ, ପନ୍ଥା, ପରଦା, ପସନ୍ଦ, ପହଲମାନ୍, ଫଜଲ୍, ଫକୀର, ଫେରାର, ଫେରାଦ, ଫରକ, ଫୁରୁସତ, ବନ୍ଦୋବସ୍ତ, ବକ୍‌ସିସ୍, ବଦ, ବୟାନ, ବଜାର, ବାଜ, ବରଫ, ବସ୍ତା, ବାକି, ବରାବର, ମଜ୍‌ଦୁର, ମତଲବ, ମର୍ଦ୍ଦ, ମାଳିସ, ମାଲୁମ, ମିଜାଜ୍, ମିଆଦ, ମକଦ୍ଦମା, ମୁକାବିଲା, ମୁକାମ, ମୁସ୍‌କଲ, ମୋହବତ, ମଇଦାନ, ମଉଜା, ମହଜୁଦ, ମଉରସୀ, ରଦ୍ଦୀ, ରଫା, ରଫୁ, ରାସ୍ତା, ରୁମାଲ, ରେଜା, ରୋଜଗାର, ରୋଜ୍, ଲାଶ୍,

ରେଷମୀ, ଲଗାମ, ବଖତ, ଓଜନ, ଇଆପସ, ସର୍ତ୍ତ, ଶରମ, ଶଇତାନ, ସଫା, ଶର୍ଦ୍ଦି, ସଲ, ସାଜ, ସାଦା, ସାଲଆନା, ସାହେବ, ହଜମ, ହାକମ, ହାଜର, ହାସଲ, ହେପାଜତ, ହିସାବ, ହୁକୁମ, ହୁରୁମତ ଇତ୍ୟାଦି ଠିକ୍ ନିଜ ରୂପରେ ବା ସାମାନ୍ୟ ପରିବର୍ତ୍ତିତ ହୋଇ ଓଡ଼ିଆ ଭାଷାକୁ ଚାଲି ଆସିଛନ୍ତି । ଉର୍ଦ୍ଦୁ ଭାଷା ପ୍ରତି ଓଡ଼ିଆ ଭାଷା କୃତଜ୍ଞ ଯେ କେତେକ ସ୍ଥଳରେ ସେହି ଶବ୍ଦଗୁଡ଼ିକୁ ଆମେ ଏଭଳି ବ୍ୟବହାର କରିଦେଇଛୁ ଯେ ଓଡ଼ିଆ ଭାଷା ଟିକିଏ ଅଧିକ ସୁନ୍ଦର ହୋଇ ଉଠୁଛି । କିଛିସ୍ଥ ସ୍ଥାନରେ ଅଲବତ୍ ଶବ୍ଦଟି ପାଟିରୁ ହଠାତ୍ ବାହାରି ଆସୁଛି । ଏତେହିନ ମୋର ଓରମାନ ମେଣ୍ଟିଲି ବୋଲି ଯେତେବେଳେ ଗାଁ ଗହଳରେ ଜଣେ କହିଦେଉଛି ସେତେବେଳେ ସେ ଜାଣୁନାହିଁ ଯେ ଅରମାନ ଶବ୍ଦଟି ସୁଦୂର ପାରସ୍ୟରୁ ଆସିଛି ଏବଂ ଏଠାରେ ଓରମାନ ରୂପରେ ଠିଆ ହୋଇଯାଇଛି । ସମ୍ମାନ ଶବ୍ଦ ଜାଣିଥିଲେ ମଧ୍ୟ ଗାଁ ଗହଳର ଓଡ଼ିଆ ପାଟିରୁ ବାହାରି ପଡ଼ୁଛି ମୋର କ'ଣ ଟିକିଏ ଇଜ୍ଜତ ନାହିଁ ? ଜ୍ଞାନ ବା ବିଦ୍ୟା ବଦଳରେ ଇଲମ କହିବାଟା ସହଜ ହୋଇଯାଉଛି । ତା' ପେଟରେ କଅଣ ଟିକିଏ ହେଲେ ଇଲମ ଅଛି' ବୋଲି ବହୁଲୋକ କହନ୍ତି । କଳହରୁ କଳି ଶବ୍ଦ ଆସିଛି, କିନ୍ତୁ ଆମେ ସାଧାରଣତଃ ବ୍ୟବହାର କରୁ କଜିଆ । ଯେଉଁଠି ଟିକିଏ ଜୋର ଦେବାକୁ ପଡ଼ିଲା ସେଠାରେ କଳିକଜିଆ ବୋଲି ବ୍ୟବହାର କଲୁ । ସିଏ କଅଣ କମ କଦର ଜାଣେ, ତା' କିସ୍ମତ ଦେଖିବ କିଏ ? କଳି କନାର ପାଉ ନାହିଁ, ତାହାର କଥା କାଏମ ରହିଲା, ଟିକିଏକେ ସିଏ ଖପା ହୋଇଯାଉଛି, ତା'ଭଳି ଖରାପ ଲୋକ କେଉଁଠିନାହିଁ ଇତ୍ୟାଦି କଥା ଯେତେବେଳେ ଜଣେ ଓଡ଼ିଆ କହୁଛି ସେତେବେଳେ ଲକ୍ଷ୍ୟ କଲେ ଜଣା ପଡ଼ିବ ଯେ ଏହିସବୁର ସଂସ୍କୃତ ପ୍ରତିଶବ୍ଦ ଥିଲେ ମଧ୍ୟ ଗାଁ ଲୋକେ ଏଗୁଡ଼ିକୁ ଆଦରି ଯାଉଛନ୍ତି । ଭାରତ ଭୂମିରେ ଜନ୍ମ ନେଇଥିବା ଓ ଲାଳିତ ପାଳିତ ହୋଇଥିବା ଏହି ଭାରତୀୟ ଭାଷାଟି ପାରସୀ ଆରବୀରୁ କେତେ ସୁନ୍ଦର ଶବ୍ଦ ନେଇଆସି ଭାରତର ଅନ୍ୟ ଭାଷା ଗୁଡ଼ିକରେ ମିଶାଇ ଦେଇଛି ତାହାର ଆଲୋଚନା ସାହାଯ୍ୟ କରିବ ସର୍ବଭାରତୀୟ ଭାଷା ବିଷୟରେ ଧାରଣା ଦେବା ପାଇଁ ।

ଆମେ ବିଜ୍ଞାନର ଜଟିଳତତ୍ତ୍ୱଗୁଡ଼ିକୁ ପିଲାମାନଙ୍କୁ କିଭଳି ବୁଝାଉଛୁ, ଆମ ଘରପଟରୁ କେମିତି ସବୁ ଉଦାହରଣ ଖୋଜି ପିଲାମାନଙ୍କ ମନକୁ ପାଇଲି

ଭଲ କହୁଛି ସେ ବିଷୟରେ ପାଶ୍ଚାତ୍ୟ ଜଗତର ଲେଖକମାନେ ଜାଣିଲେ ଭଲ ହେବ । ତେଣୁ କେତେଗୁଡ଼ିଏ ବହିର ଇଂରାଜୀ ଅନୁବାଦ କରାଇ ଦେଉଛି—ସବୁ ଗୁଡ଼ିକ କରିବାର ଆବଶ୍ୟକତା ହୁଏ ତ ନାହିଁ ।

ମୋ ଶିଖିବା ପ୍ରକ୍ରିୟାର ଶେଷ ଅଧ୍ୟାୟଟି ଲେଖିଦିଏ । ଜୀବନ ବ୍ୟାପୀ ଶିକ୍ଷା ବା Continuous Educationର ଗୁରୁତ୍ୱ ବୁଝିଛି । ଯାହାକୁ କୁହନ୍ତି ନାହିଁ—"ତୁମେ କେତେ ପଢ଼ିଲେ ଜାଣିଲେ ଯାଇ, ତୁମ ଅଜ୍ଞତା ବିଷୟରେ ଧାରଣା କରିପାରିବ ସେ ବିଷୟରେ ଥରେ ଚିନ୍ତାକର" ତାହାର ପ୍ରକୃତ ଅର୍ଥ ମୋ ଅନୁଭୂତିରୁ ମୁଁ ବୁଝିଛି । ତେଣୁ ଜୀବନର ଶେଷ ମୁହୂର୍ତ୍ତ ପର୍ଯ୍ୟନ୍ତ ପଢ଼ୁଥିବି, ଶିଖୁଥିବି । ନିଜକୁ ନିଜର ଗୁରୁ କରି ଆଗେଇ ଯାଉଥିବି । ଅନ୍ୟ ଜଣେ ହୁଏ ତ ସେମିତି କରୁଥିବେ । କିନ୍ତୁ ତାଙ୍କ ଓ ମୋ ଭିତରେ ପାର୍ଥକ୍ୟ ହେଉଛି ସେ ନିଜେ ଜାଣିଯାଇ ସନ୍ତୁଷ୍ଟ ରହିବେ— ମୁଁ କିନ୍ତୁ ଯାହା ଜାଣିବି ସେଥିରେ ଅନ୍ୟମାନଙ୍କୁ ଭାଗୀ କରିବା ପାଇଁ ବରାବର ଉଦ୍ୟମ କରିବି ।

ଏହି ପ୍ରତିଶ୍ରୁତି ଦେଲାବେଳେ ଗୋଟିଏ କଥା ଲେଖିଦେବାକୁ ବାଧ୍ୟ ହେଉଛି—ଯଦିଓ ନ ଲେଖିଲେ ଖୁବ ଭଲ ହୁଅନ୍ତା । ଲେଖିଲେ ନିଜକୁ ନିଜେ ଗୋଟାଏ ସାର୍ଟିଫିକେଟ ଦେଲାଭଳି ହେବ—ନହେଲେ ମନର କଥାଟା ପ୍ରକାଶ କରି ପାରୁନାହିଁ । ଏହି ହେଲା ସଙ୍କଟ । ୧୯୭୨ ମେ ମାସ ପହିଲା ଦିନ ଭାରତର ଜଣେ ଶ୍ରେଷ୍ଠ ଗାନ୍ଧିବାଦୀ, ମୁକ୍ତି ସଂଗ୍ରାମର ଯୋଦ୍ଧା, ଶ୍ରୀଯୁକ୍ତ ଆର୍, ଆର୍, ଦିବାକର ଜ୍ଞାନମଣ୍ଡଳ ଅଫିସକୁ ଆସିଥିଲେ । ଘଣ୍ଟାଏ କାଳ ରହି ସବୁକଥା ଜାଣିଲେ—ଆଖିରେ ଦେଖିଲେ । ତାଙ୍କ ସହିତ ଥାଆନ୍ତି ସମାଜ ସମ୍ପାଦକ ଶ୍ରୀଯୁକ୍ତ ରାଧାନାଥ ରଥ । ତାଙ୍କୁ ସେ ପଚାରିଲେ —ବିନୋଦ କାନୁନ୍‌ଗୋ ଏତେ କଷ୍ଟକରି ଏହି ଯେଉଁ କାମ କରୁଛନ୍ତି ତା' ପଛରେ କି ଇନ୍‌ସ୍ପିରେଶନ (ପ୍ରୋତ୍ସାହନା ବା ପ୍ରେରଣା) ଅଛି ? କିଛି ଉତ୍ତର ନ ପାଇଲାରୁ ପୁଣି ସେହି ପ୍ରଶ୍ନ । ତିନି ଥର ପଚାରିଲା ପରେ ଶ୍ରୀଯୁକ୍ତ ରଥ କଅଣ ଗୋଟାଏ କହିଲେ । ତାଙ୍କ ମନ ସେଥିରେ ମାନିଲା ନାହିଁ । ପଣ୍ଡିତ ଦିବାକର କହି ଉଠାଇଲେ—"The insperation which is operating here is the urge to share his Knowledge with his brethren at present and

with generations to come." (ସେ ଯେଉଁ ଜ୍ଞାନ ଅର୍ଜନ କରୁଛନ୍ତି ସେଥିରେ ତାଙ୍କର ଆଜିକାର ଭାଇମାନଙ୍କୁ ଓ ଏହାପରେ ଯେଉଁମାନେ ଆସିବେ ସେମାନଙ୍କୁ ଅଂଶୀଦାର କରିବାର ଯେଉଁ ବ୍ୟଗ୍ରତା ବା ଉତ୍ସୁକତା ତାଙ୍କ ଭିତରେ କାମ କରୁଛି, ତାହାହିଁ ହେଉଛି ଏଠାରେ ଚାଲିଥିବା କାମ ପାଇଁ ପ୍ରେରଣା ବା ପ୍ରୋତ୍ସାହନା) । ପୂଜ୍ୟ ହବାକରଙ୍କ ଆଶୀର୍ବାଦ ମୋ ମନ ଭିତରେ ସବୁବେଳେ ଥାଇ ମୋତେ ପ୍ରେରଣା ଯୋଗାଉଥାଉ ଏତିକି ମୋର ଭଗବାନଙ୍କ ନିକଟରେ ପ୍ରାର୍ଥନା । ପୂଜ୍ୟ ହବାକରଜୀ ଜଣେ ପ୍ରକୃତ ଗାନ୍ଧିବାଦୀ ହୋଇଥିବାରୁ ଗାନ୍ଧୀଙ୍କଠାରୁ ହିଁ ଶିଖିଥିଲେ—ନିଜର ଯାହା ଅଛି ତାକୁ କେବଳ ତୁମର ବୋଲି ନ ଭାବି ଅନ୍ୟକୁ ସେଥିରେ ଅଂଶୀଦାର କରାଅ । ସେହି କଥାକୁ ସେ ଏଠାରେ ଆଣି ଲଗାଇଦେଲେ ଓ ପରୋକ୍ଷରେ ମୋତେ ସତର୍କ କରାଇ ଦେଲେ—"ତୁ ଯେମିତି ପଥଚ୍ୟୁତ ହୋଇ ଯାହା କରୁଛି ଜାଣିବୁ ତାକୁ ନିଜ ଭିତରେ ସାଇତି ନ ଦେଇ ଓ ସବୁବେଳେ ଅନ୍ୟକୁ ସେଥିରେ ଅଂଶୀଦାର କରିବାକୁ ଉଦ୍ୟମ କରୁ ।"



# କିନ୍ତୁ ମୁଁ ଉଦ୍ଦେଶ୍ୟରେ ପହଁଚୁଛି.....

ଏଇତକ ଲେଖିଲାବେଳେ ମୋ ଜୀବନର ଦୀର୍ଘ ଅଟସ୍ତରି ବର୍ଷ ପାର ହୋଇଗଲାଣି । ଏଭଳି ଗୋଟିଏ ସମୟ ହୋଇଗଲାଣି ଯେ ଆଉ ପାଞ୍ଚବର୍ଷ ଦଶବର୍ଷ ପାଇଁ କୌଣସି ଯୋଜନା କରିବା ଆଦୌ ଠିକ୍ ହେବ ନାହିଁ । ଅନ୍ୟମାନେ ହସିବେ । ଯଦି ମୋର ୧୯୮୭ରେ ମୃତ୍ୟୁ ହୋଇଯାଏ ବହୁଲୋକ ଦୁଃଖିତ ହେବେ ସିନା—କେହି ବିସ୍ମିତ ହେବେ ନାହିଁ । 'ହଁ— ବୟସ ହୋଇଥିଲା ଚାଲିଗଲେ' ବୋଲି ବହୁଲୋକଙ୍କ ମୁହଁରୁ ଶୁଣାଯିବ । ତେଣୁ ତିନି ବର୍ଷିଆ ଯୋଜନାଟିଏ କରୁଛି । ଶରୀର ଅନୁମତି ଦେଉଥିଲା ପର୍ଯ୍ୟନ୍ତ ଯେତେ ଅଧିକ ପାରେ ଲୋକଙ୍କ ପାଖକୁ ପ୍ରତି ମାସରେ ସାତଦିନ ଲେଖାଁଯାଇ ଏହି "ଦଶପଇସି ଯୋଜନା" ବିଷୟରେ କହିବି । ମୋର କାହିଁକି କେଜାଣି ବିଶ୍ୱାସ ହୋଇଯାଉଛି—ବହୁସଂଖ୍ୟକ ଲୋକ ମୋର ଏହି କାମ ପାଇଁ ସମର୍ଥନ ଜଣାଇବେ । ଆର୍ଥିକ ସାହାଯ୍ୟର କୌଣସି ଆବଶ୍ୟକତା ନାହିଁ । ଖୁବ୍ ହେଲେ ତ ଦଶ ପଇସା ଦେବାପାଇଁ ପ୍ରସ୍ତୁତ ହୋଇଯିବେ । ତାହାପୁଣି ଅନ୍ୟ କାହାକୁ ଦେବା ପାଇଁ ନୁହେଁ—ନିଜ ପାଇଁ ଖର୍ଚ୍ଚ କରିବେ । ଏମିତି ହେଉ ହେଉ ଯଦି ଲକ୍ଷ ଲକ୍ଷ ପିଲା, ବେଶୀ ପାଠ ପଢ଼ାରୁ ବଞ୍ଚିତ ହୋଇଥିବା ଯୁବକ, ଅଳ୍ପ ପାଠ ପଢ଼ିଥିବା ବୟସ୍କ ଲୋକ ଯେତିକ ଜାଣିଛନ୍ତି ତା'ଠାରୁ ଟିକିଏ ଅଧିକ ଜାଣିଯିବେ ମୋ ଶ୍ରମ ସାର୍ଥକ ହେବ ।

କିନ୍ତୁ ଗୋଟିଏ ପ୍ରଶ୍ନ ସବୁବେଳେ ମନ ଭିତରେ ଉଠୁଛି । ତାହାର ସନ୍ତୋଷଜନକ ଉତ୍ତର ପାଉନାହିଁ । ପ୍ରଶ୍ନଟି ହେଲା—"ମୁଁ କଅଣ ମୁଁ ଉଦ୍ଦେଶ୍ୟରେ ପହଁଚୁଛି ?" ଯାହା କରୁଛି ବା ଗଲା ଦୀର୍ଘ ଚାରିଦଶନ୍ଧି ଧରି କରିଆସୁଛି ତାହାର ଉଦ୍ଦେଶ୍ୟକୁ ତ ଏମିତି ବୁଝାଇ ଦିଆଯାଇପାରେ— ସବୁଲୋକେ ତ ଶିକ୍ଷା ପାଇବେ, ଓଡ଼ିଆ ଭାଷାର ସାମର୍ଥ୍ୟକୁ ଏଭଳି ଭାବରେ ବୃଦ୍ଧି କରାଯିବ ଯେ ତାହାର ମାଧ୍ୟମରେ ସବୁ ପ୍ରକାର ଭାବପ୍ରକାଶ ସମ୍ଭବ ହୋଇଯିବ । ସେହି ଉଦ୍ଦେଶ୍ୟ ପୂରଣ ପାଇଁ ପ୍ରଥମ ପ୍ରତିବନ୍ଧକ ହେଲା— 'ଲୋକ କହିଲେ ଆଜି ସମସ୍ତଙ୍କୁ ବୁଝାଉନାହିଁ । ସମସ୍ତେ ଏତିକ ଜାଣିବେ

—ଯେତକ ଦରକାର ମନୁଷ୍ୟ ଭାବରେ ଜୀବନ ବଞ୍ଚାଇବା ପାଇଁ—ଏହି କଥାଟାକୁ ଆମେ ସ୍ୱୀକାର କରୁନାହୁଁ । ଶହକେ ଦଶ ପନ୍ଦର ଜଣ ବା ଖୁବ୍ ବେଶୀହେଲେ ପଚଶ ଜଣଙ୍କ ପାଇଁ ଯଦି ଭଲ ଶିକ୍ଷାର ବ୍ୟବସ୍ଥା ହୋଇଗଲା ବହୁତ କଣ୍ଟ ହୋଇଗଲା ବୋଲି ଧରି ନେଉଛୁ । ଅନ୍ୟମାନଙ୍କ ଶିକ୍ଷା ପାଇଁ ଯେତକ ବ୍ୟବସ୍ଥା ହେବ ତାହା ଯେତେ ଅଳ୍ପ ହେଲେ ବି ଚଳିବ—ଏଇ ହେଲା ଆମର ବିଶ୍ୱାସ । ସର୍ବନିମ୍ନ ଯେତକ ଦରକାର ସେତକ ନ ଜାଣିଲେ ଲକ୍ଷ ଲକ୍ଷ କୋଟି କୋଟି ଲୋକ ଜାତିଟାକୁ ଗଢ଼ିବା ଉଦ୍ୟମରେ ଭାଗ ନେବା ପାଇଁ ସମର୍ଥ ହେବେ ନାହିଁ— ଏହି ନିରାଟ ସତ୍ୟଟିକୁ ମଧ୍ୟ ସ୍ୱୀକାର କରିବା ପାଇଁ ଆମେ ପ୍ରସ୍ତୁତ ନୋହୁଁ । ତେଣୁ ସେମାନଙ୍କର ଶିକ୍ଷା ବା ପ୍ରକୃତ ଅର୍ଥରେ ଲୋକଶିକ୍ଷା ପାଇଁ କାହିଁକି ବା ବ୍ୟଗ୍ରତା ଦେଖାଦେବ ?

ଦ୍ୱିତୀୟଟି ହେଲା ମାତୃଭାଷା—ଆମ କ୍ଷେତ୍ରରେ ଓଡ଼ିଆ ସମୃଦ୍ଧ ହେଉ ବୋଲି କାହିଁକି ବ୍ୟାକୁଳତା ଦେଖାଦେବ ? ଯେଉଁମାନେ ଉଚ୍ଚଶିକ୍ଷା ପାଇବେ ସେମାନେ ତ ଇଂରାଜୀ ମାଧ୍ୟମରେ ପାଇଯିବେ । ଅନ୍ୟମାନେ ସେଣିକି ମନ ବଳାଇବାର ଆବଶ୍ୟକତା ନାହିଁ । ଅତି ଅଳ୍ପ ଜାଣି ଯେଉଁ ସବୁ କାମ କରିହେବ ସେହି କାମରେ ସେମାନେ ନିଯୁକ୍ତ ହେବେ । ତେଣୁ ସମସ୍ତଙ୍କୁ ପ୍ରକୃତ ଅର୍ଥରେ ଶିକ୍ଷିତ କରିବାର ଦାୟିତ୍ୱରୁ ସରକାର, ସମାଜ, ଆମେ ସମସ୍ତେ ମୁକ୍ତ । ଏହି "ବାସ୍ତବତା"ଟିକୁ ଗ୍ରହଣ କରିଗଲେ ଓଡ଼ିଆ ଭାଷାକୁ ସମୃଦ୍ଧ କରିବା, ତା' ଭିତରେ ସାମର୍ଥ୍ୟ ଭରିବା କାର୍ଯ୍ୟକ୍ରମ 'ଜରୁରୀ ଦୃଷ୍ଟି ପଡ଼ିବା ତାଲିକା'ର ଶେଷକୁ ରହିଯାଉଛି । ଓଡ଼ିଆ ଭାଷାରେ ଗୋଟିଏ ଭଲ ଅଭିଧାନ ଯେ ସ୍ୱାଧୀନତା ପ୍ରାପ୍ତିର ତିରିଶ ବର୍ଷ ଭିତରେ ବି ହୋଇ ପାରିଲା ନାହିଁ ଏ ବିଷୟରେ ଶହେ ବର୍ଷ ପରେ ଓଡ଼ିଆରେ ସେମିନାର ହେଉଥିବ ଓ ସେଥିର ବିଷୟବସ୍ତୁ ଥିବ 'ଏଭଳି ଅକ୍ଷମଣୀୟ ଅବହେଳା ସବୁଦଳର ସରକାର କଲେ କାହିଁକି ?' ଏନ୍‌ସାଇକ୍ଲୋପିଡିଆ ବିଷୟରେ ମଧ୍ୟ ସେହିଭଳି ଆଲୋଚନା ନିଶ୍ଚୟ ହେଉଥିବ ।

ଏଇଥିପାଇଁ କହିଲି ଯେ ମୁଁ ସୁଅ ବିରୁଦ୍ଧରେ, ସୁଅର ବିପରୀତ ଦିଗରେ ପହଁରୁଛି । ସେଭଳି ପହଁରିବାରେ ମଧ୍ୟ ଆନନ୍ଦ ଅଛି । ଅତି ଧୀର ବେଗରେ ଉପର ଆଡ଼କୁ ଆଗେଇଲେ ମଧ୍ୟ 'ଆଗକୁ ତ ଯାଉଛି'—ଏଇ ହେଲା ମୋର ସନ୍ତୋଷ ।

●